ସିଦ୍ଧେଶ୍ୱର ଦାସ ବିରଚିତ

# ବିଚିତ୍ର ରାମାୟଣ

ସମ୍ପାଦକ

ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର

[ସରକାରଙ୍କ ଆନୁକୂଲ୍ୟରେ ସୁଲଭ ମୂଲ୍ୟରେ ପ୍ରାପ୍ତ କାଗଜରେ ମୁଦ୍ରିତ]

୧୯୮୦, ଜାନୁଆରି

ମୂଲ୍ୟ [redacted]ଟଙ୍କା ୮ କ୍ଷ

ସିଦ୍ଧେଶ୍ୱର ଦାସଙ୍କ

# ବିଚିତ୍ର ରାମାୟଣ


ପ୍ରକାଶକ :

**ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର**
ଆଇନ ବିଭାଗ
ଓଡ଼ିଶା ସଚିବାଳୟ
ଭୁବନେଶ୍ୱର-୧





ମୁଦ୍ରକ :

**ସ୍ନେହ ପ୍ରେସ୍**
ଖାରବେଳ ନଗର
ଭୁବନେଶ୍ୱର

ଓଡ଼ିଶା ସରକାରଙ୍କ ସାଂସ୍କୃତିକ ବ୍ୟାପାର ନିର୍ଦ୍ଦେଶାଳୟ ଏହି ପୁସ୍ତକର ମୁଦ୍ରଣପାଇଁ ବାଇଶି ଶହ ଟଙ୍କା ସାହାଯ୍ୟ ଦେଇଥିବା ଯୋଗେ ପୁସ୍ତକର ମୂଲ୍ୟ ତଦନୁସାରେ ହ୍ରାସ କରିବାକୁ ହୋଇଛି ।


## VICHITRA RAMAYANA

of Siddheswara Dasa

(An Oriya epic poem of the 15th Cent.)

*Edited by :*


Sri Satchidananda Misra
Law Deptt. ; Orissa Secretariate
Bhubaneswar, 751001



First Edition, 1980, January.

୰ ସତ୍ୟଭାମା ଦେବୀଙ୍କ ପୁଣ୍ୟ ସ୍ମୃତି ଉଦ୍ଦେଶ୍ୟରେ

**ବୋଉ,**

ଏଣେ ସ୍କୁଲରେ ଛପା ପୁସ୍ତକ ପଢ଼ିବା ଶିଖୁଥାଏ ତେଣେ ତୁ ମୋତେ ତାଳପତ୍ର ପୋଥି ପଢ଼ିବା ଶିଖାଉଥାଉ । ତାଳପତ୍ର ପୋଥି ପଢ଼ିବାରେ ତୋର ସବୁକାଳେ ଶ୍ରଦ୍ଧା । ଓଡ଼ିଆ ପୁରାଣ, ଭାରତ, ରାମାୟଣ ଆଦି ତୋ ତୁଣ୍ଡରୁ ଶୁଣିଲା ବେଳେ ସେ ସବୁକୁ ବୁଝିପାରିଲା ଭଳି ବୟସ ମୋର ହୋଇ ନ ଥିଲା । ତୁ ମଲା ବେଳକୁ ମୁଁ ଦଶବର୍ଷର ପିଲାବକଟେ । ତୋତେ ଛାଡ଼ି ସମୟ ସୁଅରେ ମୁଁ ଯେତିକି ଯେତିକି ଦୂରକୁ ଗଲି ତୋର କଅଁଳ ସ୍ମୃତି ସେତିକି ସେତିକି ବହଳ ହେଲା । ତୋରି ପରି ମୁଁ ପ୍ରତ୍ୟହ ତାଳପତ୍ର ପୋଥିରେ ପୁରାଣପତ୍ର ପଢ଼ିଲି । ପୋଥି ଦରଣ୍ଡିବାର ଝୁଙ୍କ ତୋଠାରୁ ପାଇଥିଲି ବୋଲି ଆଜି ବିଚିତ୍ର ରାମାୟଣ ସମ୍ପାଦନା କଲି । ତେଣୁ ଏହାକୁ ତୋର ସ୍ମୃତି ଉଦ୍ଦେଶ୍ୟରେ ଭେଟି ଦେଉଛି ।

ତୋର ଆଦରର

**ବାବୁ**

# ଭୂମିକା

ଓଡ଼ିଆ ଲୋକ ବିଶ୍ୱାସରେ ସୀତା ମନ୍ଦୋଦରୀର ପାଳିତା କନ୍ୟା:— ବାପର ମରଣ ପୁଅର ଦଣ୍ଡ, ଦୁଆରେ କରିଛି ବାବାଙ୍କ ବସା, ମାଅକୁ ଲାଗିଛି ବର, ଝିଅ ଯିବ ଶାଶୁଘର (ପ୍ରହେଳିକା) । ଅନ୍ୟ ଏକ ଲୋକ ବିଶ୍ୱାସ ହେଲା ମାୟାମୃଗ (ମାରିଚ) ଏକ ଦୁଇମୁଣ୍ଡିଆ ହରିଣ ଥିଲା । ଓଡ଼ିଶାର ଗାଉଁଲି କଣ୍ଢେଇ ଶିଳ୍ପୀ ଦୁଇମୁଣ୍ଡିଆ ହରିଣ କରିଥାନ୍ତି । ଏହି ପ୍ରକାର ବହୁତ କୌତୂହଳଜନକ ବିଶ୍ୱାସର ମୂଳ ଗ୍ରନ୍ଥ ହେଉଛି ସିଦ୍ଧେଶ୍ୱର ଦାସଙ୍କ ବିଚିତ୍ର ରାମାୟଣ । ଏହି ରାମାୟଣର ପରିଚୟ ପ୍ରଥମେ ଡଃ ଆର୍ତ୍ତବଲ୍ଲଭ ମହାନ୍ତି ଦେଲେ:— "ସିଦ୍ଧେଶ୍ୱର ଦାସ -ଉନ୍‌ହୋନେ ସୀତାବନବାସସେ ଲେକର ରାମାୟଣକେ ଅନ୍ତତକ କଥାଭାଗକୋ ଲେକର ବିଚିତ୍ର ରାମାୟଣ ନାମକ କାବ୍ୟଗ୍ରନ୍ଥ ଲିଖା ହୈ । ୟହ ରଚନା ଉଚ୍ଚକୋଟୀକି ନହି ହୈ । ୟେ ମୁକୁନ୍ଦ ଦାସ କେ ସମସାମୟିକ ଥେ" (ରାଷ୍ଟ୍ରଭାଷା ରଜତ ଜୟନ୍ତୀ ଗ୍ରନ୍ଥ ; ପୃ· ୭୦) ଡଃ ମହାନ୍ତିଙ୍କ ମତରେ "ମୁକୁନ୍ଦ ଦାସ ୧୭ଶ ଶତାବ୍ଦୀ କୋ ମଧ୍ୟଭାଗ କେ କବି ହୈ" ।

ବିଚିତ୍ର ରାମାୟଣର ତେଲୁଗୁ ଅନୁବାଦକ ତୋଙ୍କାଡ଼ ଗୋପୀନାଥ ଲେଖିଛନ୍ତି ଯେ ସେ ଏହି 'ପୁରାତନ ଓଡ଼ିଆ କାବ୍ୟକୁ ତେଲୁଗୁ ଗଦ୍ୟରେ ପ୍ରକାଶ କରୁଛନ୍ତି 'ପୁରାତନୋତ୍କଳ ବଚ ଶ୍ରୀଶାଲୀ ଗଦ୍ୟାନୁକୃତନ୍' । ତେଲୁଗୁ ସାହିତ୍ୟର ଐତିହାସିକଙ୍କ ମତରେ ତୋଙ୍କାଡ଼ ଗୋପୀନାଥ ୧୭ଶ ଶତାବ୍ଦୀର କବି । ତେଣୁ ମୂଳ ବିଚିତ୍ର ରାମାୟଣର ରଚନା କାଳ ୧୭ଶ ଶତାବ୍ଦୀ ହୋଇ ନ ପାରେ ବୋଲି ବିଖ୍ୟାତ ତେଲୁଗୁ ସାହିତ୍ୟିକ ଡଃ ପୁରିପଣ୍ଡା ଅପ୍ପଲ ସ୍ୱାମୀ ବ୍ୟକ୍ତିଗତଭାବେ ଭେଟି ଡଃ ମହାନ୍ତିଙ୍କୁ ଜଣାଇଥିଲେ । ଭେଟିଲା ବେଳେ ଡଃ ପୁରିପଣ୍ଡା ପୋଥିର ସ୍ଥିତି ବିଷୟ ଜିଜ୍ଞାସା କରିଥିଲେହେଁ ଡଃ ମହାନ୍ତି ତାହା ନିଜେ ପାଠ କରିଥିବା ବା ତାହା କେଉଁଠି ଅଛି ଜଣାଇ ନଥିଲେ । ବିଚିତ୍ର ରାମାୟଣରେ ସୀତା ବନବାସରୁ ରାମାୟଣର ଶେଷଯାଏଁ ବିଷୟ ଅଛି ବୋଲି ସେ ଦେଇଥିବା ମତରୁ ଅନୁମେୟ ଯେ ସେ ନିଜେ ତାହା ପଢ଼ିନାହାନ୍ତି । ପଢ଼ିଥିଲେ ତାହାର ଭାଷାର ପ୍ରାଚୀନତା, କଥାବସ୍ତୁର ଅନନ୍ୟସାମାନ୍ୟତା ଆଦି ବିଷୟ ଆଲୋଚନା କରି ରହିପାରନ୍ତେ ନାହିଁ । ଏହି ପ୍ରକାରେ ଏହାର ରଚନା କାଳ ସମ୍ପର୍କରେ ତାହାଙ୍କ ମତ କୌଣସି ଯୁକ୍ତି ଉପରେ ଆଧାରିତ ନୁହେଁ ।

ବିଚିତ୍ର ରାମାୟଣ ପୋଥି ମୁଁ ୧୯୬୭ ରେ ଛତ୍ରପୁରରୁ ପାଇଲି (ଏହା ଏହି ସମ୍ପାଦନାର କ-ପୋଥି) । ଓଡ଼ିଆ ବିଚିତ୍ର ରାମାୟଣ ପୋଥି ମିଳିଥିବା କଥା ଡଃ ପୁରୀପଣ୍ଡାଙ୍କୁ ଜଣାଇବାରୁ ସେ ଅତ୍ୟନ୍ତ ଆନନ୍ଦିତ ହୋଇ ପୋଥିକୁ ଦେଖିବା ପାଇଁ ସ୍ୱୟଂ ମୋ ଘରେ ପଦାର୍ପଣ କଲେ । ତେଲୁଗୁ ଅନୁବାଦ ସଙ୍ଗେ ବିଚିତ୍ର ରାମାୟଣକୁ ମିଳାଇ ଦେଖିବା ପରେ ଆଉ ସନ୍ଦେହ ରହିଲା ନାହିଁ ଯେ ଏହା ହିଁ ମୂଳ ବିଚିତ୍ର ରାମାୟଣ ।

ଏହାପରେ ମୁଁ 'ସିଦ୍ଧେଶ୍ୱର ଦାସଙ୍କ ବିଚିତ୍ର ରାମାୟଣ' ଶୀର୍ଷକ ଏକ ଦୀର୍ଘ ପ୍ରବନ୍ଧ ଲେଖିଲି । ପ୍ରବନ୍ଧରେ ଡଗରରେ କ୍ରମାନ୍ୱୟରେ ପ୍ରକାଶ ପାଇଛି । ତାହା ଏହି ସମ୍ପାଦନାର ପ୍ରକୃତ ମୁଖବନ୍ଧ ହୋଇପାରନ୍ତା କିନ୍ତୁ ତାହାକୁ ପୃଥକ୍ ପୁସ୍ତକାକାରେ ଛପାଇବା କଳ୍ପନା ରହିଛି, ଅର୍ଥାଭାବରୁ ତାହାକୁ ଏଠାରେ ଛାପି ପାରିଲି ନାହିଁ । ପ୍ରବନ୍ଧର ପ୍ରଥମ ଭାଗ (ଡଗର, ୧୯୬୯ ଡିସେମ୍ବର) ମଧ୍ୟରେ କ-ପୋଥିର ଅବସ୍ଥା, ତାହାର ଲିପି, ବିଚିତ୍ର ରାମାୟଣର ଛଅଜଣ ତେଲୁଗୁ ଅନୁବାଦକଙ୍କ ସମୟ ଓ ପରିଚୟ, ଅନୁବାଦଗୁଡ଼ିକର ମୂଲ୍ୟାଙ୍କନ, ଅନୁବାଦରେ ମୂଳ ଗ୍ରନ୍ଥ ଓ ସିଦ୍ଧେଶ୍ୱର ଦାସଙ୍କ ବିଷୟରେ ଲିଖିତ ବିବରଣ ଆଦିର ବିଶଦ ଆଲୋଚନା ରହିଛି । ତେଲୁଗୁ ଅନୁବାଦକମାନେ ହେଲେ:— ୧. ତୋଣ୍ଡାଡ଼ି ଗୋପୀନାଥ (ଗଦ୍ୟାନୁବାଦକ), ୨. ନରସିଂହ ବେହେରା ବେଙ୍କଟଶାସ୍ତ୍ରୀ (ଗଦ୍ୟପଦ୍ୟାତ୍ମକ ଅନୁବାଦକ), ୩. ବେଲପୁରି ବେଙ୍କଟେଶ୍ୱର (ଗଦ୍ୟପଦ୍ୟାତ୍ମକ ଅନୁବାଦକ), ୪. କାଣ୍ଡ୍ରେକୁଳି ବେଙ୍କଟ ନରସିଂହ ମୂର୍ତ୍ତି (ପଦ୍ୟାନୁବାଦକ) ୫. କେମ୍ଭେଜୁ ସୋମୟ୍ୟା (ପଦ୍ୟାନୁବାଦକ) ଓ ୬ ମାଚିନା ସୋମୟ୍ୟା । ଏହାଙ୍କ ମଧ୍ୟରୁ ଗୋପୀନାଥ ଓଡ଼ିଆରୁ ଅନୁବାଦ କରିଛନ୍ତି, ବେଙ୍କଟଶାସ୍ତ୍ରୀ ଗୋପୀନାଥଙ୍କ ଅନୁବାଦକୁ ଗଦ୍ୟପଦ୍ୟାତ୍ମକ ରୂପ ଦେଇଛନ୍ତି ଓ ଅନ୍ୟାନ୍ୟ ଅନୁବାଦକ ଗୋପୀନାଥ ଓ ବେଙ୍କଟଶାସ୍ତ୍ରୀଙ୍କୁ ହିଁ ଆଶ୍ରୟ କରିଛନ୍ତି ।

ପ୍ରବନ୍ଧର ଦ୍ୱିତୀୟ ଭାଗ (ଡଗର, ୧୯୭୦ ନଭେମ୍ବର) ମଧ୍ୟରେ ବିଚିତ୍ର ରାମାୟଣର ରାମ କଥାର ବୈଚିତ୍ର୍ୟ ଓ ଅନ୍ୟ ରାମକଥା ସଙ୍ଗେ ତୁଳନାତ୍ମକ ଆଲୋଚନା ରହିଛି । ପ୍ରବନ୍ଧର ତୃତୀୟ ଭାଗ (ଡଗର ୧୯୭୧ ଜୁଲାଇ) ମଧ୍ୟରେ ବିଚିତ୍ର ରାମାୟଣ ସମ୍ପର୍କରେ ଭାଷାତାତ୍ତ୍ୱିକ ଆଲୋଚନା କରି ନିରୂପଣ କରିଛି ଯେ ଏହା ସାରଳା ଦାସଙ୍କ ମହାଭାରତର ପୂର୍ବଜ କିନ୍ତୁ ବିଚିତ୍ର ରାମାୟଣ ମହାଭାରତର ରଚନା କାଳ ମଧ୍ୟରେ ସମୟ ବ୍ୟବଧାନ ବିଶେଷ ନୁହେଁ ।

ପ୍ରବନ୍ଧର ଚତୁର୍ଥ ଭାଗ (ଡଗରର ୧୯୭୩ ନଭେମ୍ବର ଓ ଡିସେମ୍ବର ଦୁଇଟି ସଂଖ୍ୟା) ମଧ୍ୟରେ ସିଦ୍ଧେଶ୍ୱର ଦାସଙ୍କ ପରିଚୟ ଓ ସମୟ ନିରୂପଣ କରିଅଛି ଓ ପ୍ରବନ୍ଧର ପଞ୍ଚମ ଭାଗ (ଡଗରର ୧୯୭୪ ଜାନୁଆରି ଓ ଫେବୃଆରି

କୋଇଟି ସଂଖ୍ୟା) ମଧ୍ୟରେ ସିଦ୍ଧାନ୍ତ କରିଛନ୍ତି ଯେ ବିଲଙ୍କା ରାମାୟଣକାର ସିଦ୍ଧେଶ୍ୱର ଦାସ ସାରଳା ଦାସ ନୁହନ୍ତି ସେ ସାରଳା ଦାସଙ୍କ ବହୁ ପରକାଳୀନ ବ୍ୟକ୍ତି ।

ପ୍ରବନ୍ଧର ଶେଷ ଭାଗ (ଉତ୍ତର ୧୯୭୪ ମାର୍ଚ୍ଚ) ମଧ୍ୟରେ ନାନା ଯୁକ୍ତି ଦର୍ଶାଇ ମହାଭାରତକାର ସାରଳା ଦାସ ଓ ବିଚିତ୍ର ରାମାୟଣକାର ସିଦ୍ଧେଶ୍ୱର ଦାସ ଜଣେ ବ୍ୟକ୍ତି ବୋଲି ନିର୍ଣ୍ଣୟ କରିଅଛି ।

ଇତି ମଧ୍ୟରେ ବିଚିତ୍ର ରାମାୟଣର ଆଉ ଗୋଟିଏ ପୋଥି ଶିକାକୁଳ (ଶ୍ରୀକାକୁଲମ୍ ଜିଲ୍ଲା)ରୁ ମିଳିଛି । ଏହା ଏହି ସମ୍ପାଦନାର ଝ-ପୋଥି । ବହୁ ସ୍ଥାନରେ ପାଠ ନଷ୍ଟ ହୋଇ ଯାଇଥିବା ଏହି ପୋଥିଟି ବର୍ତ୍ତମାନ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ରହିଛି ।

ଡଃ ବେଣୀମାଧବ ପାଢ଼ୀ 'ବିଚିତ୍ର ରାମାୟଣ ଓ ସିଦ୍ଧେଶ୍ୱର ଦାସ' ଶୀର୍ଷକ ଏକ ପ୍ରବନ୍ଧରେ ମତ ଦେଇଛନ୍ତି ଯେ ବିଚିତ୍ର ରାମାୟଣ ପ୍ରଣେତା ସିଦ୍ଧେଶ୍ୱର ଦାସ ଓ ମହାଭାରତ ପ୍ରଣେତା ସାରଳା ଦାସ ଭିନ୍ନ ଭିନ୍ନ ବ୍ୟକ୍ତି ଓ ବିଚିତ୍ର ରାମାୟଣ 'ସାରଳା ମହାଭାରତଠାରୁ ଅନ୍ୟୂନ ଦୁଇଶହ ବର୍ଷ ତଳର ରଚନା' (ଝଙ୍କାର, ୧୯୭୧ ଫେବୃଆରି) । ମୁଁ ଏହି ପ୍ରବନ୍ଧ ବିଷୟ ମୋ ପ୍ରବନ୍ଧରେ ଉଲ୍ଲେଖ କରି ନ ଥିଲେହେଁ ତାହାଙ୍କର ସମସ୍ତ ଯୁକ୍ତି ନିଃସାର ଥିବା କଥା ମୋର ପୂର୍ଣ୍ଣ ପ୍ରବନ୍ଧଟି ପାଠ କରିବା ପରେ ପ୍ରାଞ୍ଜଳ ହୋଇଯିବ । ଡଃ ପାଢ଼ୀ ମୋର ପ୍ରବନ୍ଧରେ ମାତ୍ର ପ୍ରଥମ ଭାଗଟି ପାଠ କରି ତରବରରେ ମତ ଦେଇଥିବା ଯୋଗୁ ଭ୍ରମରେ ପଡ଼ିଲେ ।

ଏହି ସମ୍ପାଦନା ପ୍ରକାଶ ପାଇଁ ସରକାର ଆଂଶିକ ଅର୍ଥ ସାହାଯ୍ୟ ଓ ସୁଲଭ ମୂଲ୍ୟରେ କାଗଜ ଯୋଗାଇଥିବାରୁ କୃତଜ୍ଞତା ଜଣାଉଛି । ତଥାପି ଅର୍ଥାଭାବରୁ ମୁଁ ଏହାକୁ ପ୍ରକାଶ କରି ପାରି ନ ଥାନ୍ତି । ଶ୍ରୀ ହୃଦୟାନନ୍ଦ ନାୟକ (ଗୃହର୍ଡ ଆକାଉଣ୍ଟାଣ୍ଟ) ଉଦାର ଭାବରେ, ଏଥିପାଇଁ ପାଞ୍ଚଶହ ଟଙ୍କା ସାହାଯ୍ୟ ଦେବା ପ୍ରତିଶ୍ରୁତି ଦେବାରୁ ଏହି ପୁସ୍ତକ ମୁଦ୍ରିତ ହୋଇ ପାରିଲା । ମୋର ଲେଖାର ପ୍ରଥମ ପାଠିକା (ମୋ ପତ୍ନୀ) ସ୍ୱତଃପ୍ରବୃତ୍ତ ହୋଇ ନିଜ ପାଣ୍ଠିରୁ ଅବଶିଷ୍ଟ ବ୍ୟୟ ଭାର ବହନ କରିଥିବା ଯୋଗୁଁ ପ୍ରତିଦାନ ସ୍ୱରୂପ ଏହାର ସର୍ବସ୍ୱତ୍ତ୍ୱ ମୁଁ ତାହାଙ୍କ ହାତରେ ଦେଉଛି ।

ସଚ୍ଚିଦାନନ୍ଦ ମିଶ୍ର

# ପାଠୋଦ୍ଧାର ସମ୍ପର୍କରେ

ଏଥିରେ ଗୃହୀତ ପାଠ ସାଧାରଣତଃ କ-ପୋଥିର ପାଠ ଅଟେ । ଯେ ଥିରେ ପାଠ ଅଭାବ ଥିଲେ ସମ୍ଭାବ୍ୟ ପାଠ ଚନ୍ଦ୍ରବନ୍ଧନୀ ମଧ୍ୟରେ ଦେଇଛୁ । କ-ପୋଥିରେ ନଥିବା କିନ୍ତୁ ଖ-ପୋଥିରେ ଥିବା ପାଠ ବର୍ଗବନ୍ଧନୀ ମଧ୍ୟରେ ଯୋଗ କରିଛୁ । ପୋଥିରେ ଶବ୍ଦ ଶବ୍ଦ ମଧ୍ୟରେ ଅନ୍ତରାଳ, ପରିଚ୍ଛେଦ ବିଭାଗ, ପରିଚ୍ଛେଦର ଶିରୋନାମ ଓ ପଦଗୁଡ଼ିକର ସଂଖ୍ୟା ଲେଖା ନାହିଁ । ଅଧ୍ୟୟନର ସୁବିଧା ଲକ୍ଷ୍ୟରେ ଏହିକୁ ଯୋଗ କରିଛୁ ।

ପଦଶୀର୍ଷରେ ସଂଖ୍ୟା ସେହି ପୃଷ୍ଠାର ପଦ ସଂଖ୍ୟା । ସଂଖ୍ୟା ପରେ ଦିଆ ପାଠଟି ଗୃହୀତ ପାଠ କିନ୍ତୁ ତାହା ପରେ ଲିଖିତ ପାଠଟି ପୋଥି ପାଠ ଅଟେ । ଯେଉଁ ସ୍ଥଳେ ସୂଚନା ଶେଷକୁ ବନ୍ଧନୀ ମଧ୍ୟରେ କ ବା ଖ ଲେଖାଅଛୁ ସେହିସ୍ଥଳେ ପୋଥି ପାଠଟି ସେହି ପୋଥିର କିନ୍ତୁ ଗୃହୀତ ପାଠଟି ଅନ୍ୟତର ପୋଥିର ଅଟେ । ଯେଉଁଠି କ ଓ ଖ ଉଭୟ ପୋଥିର ପାଠ ଦିଆଯାଇଛି ସେହିସ୍ଥଳେ ଗୃହୀତ ପାଠଟି ସଂପାଦକଙ୍କ ଦ୍ୱାରା ପ୍ରସ୍ତୁତ ପାଠ ଅଟେ ।

ପୋଥିରେ ହ୍ରସ୍ୱ ଦୀର୍ଘ ଇକାର ଓ ଉକାର ମଧ୍ୟର ପାର୍ଥକ୍ୟ, ଏ-ୟେ ମଧ୍ୟର ପାର୍ଥକ୍ୟ, ନ-ଣ ମଧ୍ୟର ପାର୍ଥକ୍ୟ, ଶ-ଷ-ସ ମଧ୍ୟର ପାର୍ଥକ୍ୟ, ଧ୍ୟ-ଛ ମଧ୍ୟର ପାର୍ଥକ୍ୟ ରକ୍ଷା କରାଯାଇ ନାହିଁ । ଏ ସବୁକୁ ଗୃହୀତ ପାଠରେ ଆଧୁନିକ ଓଡ଼ିଆ ପଦ୍ଧତିରେ ଲେଖାଯାଇଛି । ଗୃହୀତ ପାଠର ଚନ୍ଦ୍ରବିନ୍ଦୁ ଓ ଅନୁସ୍ୱାର ଉଭୟ ବଦଳେ ପୋଥିରେ ଅଛି କେବଳ ଅନୁସ୍ୱାର । ଗୃହୀତ ପାଠର ସର୍ବନାମ 'ମୁଁ' ବଦଳେ ପୋଥିରେ ସର୍ବଦା ଅଛି 'ମୁ' । ପୋଥିରେ ରୁ-ରୂ ମଧ୍ୟରେ ପାର୍ଥକ୍ୟ ରକ୍ଷା କରାଯାଇ ନାହିଁ ପାଠୋଦ୍ଧାର ବେଳେ ତାହାକୁ ଆବଶ୍ୟକ ସ୍ଥଳେ ବଦଳାଇଛୁ କିନ୍ତୁ ଋକାର ମାତ୍ରାକୁ ବଦଳାଇ ନାହିଁ । ପୋଥିରେ ଠାଏଁ ଠାଏଁ 'S' ଲେଖା ଅଛି, ତାହା ଗୃହୀତ ପାଠରେ ହୋଇଛି 'ଲୁ' । ଏହି ପରିବର୍ତ୍ତନଛଡ଼ା ଗୃହୀତ ପାଠ ପୋଥି ପାଠରୁ ଭିନ୍ନ ହୋଇଥିଲେ ତାହାକୁ ପାଦଟିକାରେ ସୂଚାଇଛୁ ।

**ସଂପାଦକ**

"ଶ୍ରୀ ଶୁଭମସ୍ତୁ ଅବିଘ୍ନମସ୍ତୁ

# ବିଚିତ୍ର ରାମାୟେଣ

## ଲିଖିତମିଦଂ ପୁସ୍ତକଂ ॥

## ମଙ୍ଗଳା ଚରଣ

ଜୟ ତୁ ମଙ୍ଗଳ ଅଶେଷ ବିଘ୍ନରାଜ ।
ଯାହାର ପ୍ରସନ୍ନେ ସକଳ କାର୍ଯ୍ୟ ସିଦ୍ଧ ॥ ୧ ॥
ଜୟ ତୁ ବିଘ୍ନରାଜ ସର୍ବ ବିଘ୍ନ ବିନାଶନ ।
ଜୟ ତୁ ବିଘ୍ନରାଜ ପାପ ବିମୋଚନ ॥ ୨ ॥
ମଙ୍ଗଳ ଯୋଗେ (ଶ୍ୱର) ତୁ ପରମ ଆନନ୍ଦ ।
ଜୟତୁ ବିଘ୍ନରାଜ ଅତ୍ରେଜ ଅସ୍ପନ୍ଦ ॥ ୩ ॥
ଜୟ ତୁ ଗଜାନନ ବ୍ରହ୍ମ ସିନ୍ଦୁରେ ମୁଖମଣ୍ଡି ।
ଯମଦଣ୍ଡ ବିନାଶନ ସର୍ବ ଅପରାଧ ଖଣ୍ଡି ॥ ୪ ॥
ଜୟ ତୁ ଜୟ ତୁ ଦେବ ଶଶାଙ୍କ ଶିଖର ।
ଜୟ ତୁ ପ୍ରସନ୍ନ ସିଦ୍ଧ ଲମ୍ବୋଦର ॥ ୫ ॥
ଜୟ ତୁ ଜୟ ତୁ ଦେବ ଶରଣ ରକ୍ଷନ୍ତା ।
ଜୟ ତୁ ଜୟ ତୁ ଦେବ ପ୍ରତକ୍ଷେ ମତ ଦେନ୍ତା ॥ ୬ ॥
ସୀତାଙ୍କର ବନବାସ ବିଚିତ୍ର ରାମାୟେଣ ।
ଶୁଣନ୍ତେ ମହାପାପ ହୁଅଇ ଦହନ ॥ ୭ ॥
ଜୟ ତୁ ଜୟ ତୁ ଦେବ ଗଣନାଥ ସ୍ୱାମୀ ।
ଗ୍ରନ୍ଥକାର ସିଦ୍ଧେଶ୍ୱର ଦାସ ପାଦପଦ୍ମେ ପ୍ରଣାମି ॥ ୮ ॥

---

୫. ଶିଖର—ସଙ୍କର

## ଉପକ୍ରମଣିକା-

ଏଥୁ ଅନନ୍ତରେ ଶୁଣ ବିଚିତ୍ର ଆଖ୍ୟାନ ।
ସୀତା ଦୋଷଯୁକ୍ତା ବୋଲି ଜନମୁଖେ ଶୁଣିଲେ ରଘୁନନ୍ଦନ ॥ ୧ ॥
ସେ କଥା ଶ୍ରୀରାମ ଶୁଣନ୍ତି ହୃଦଗତେ ।
ମୁନିଗଣଙ୍କୁ ଘେନି ଆସ୍ଥାନେ ବିଜୟେ ରଘୁନାଥେ ॥ ୨ ॥
ବଶିଷ୍ଠ ଜାବାଲି କାଶ୍ୟପ ସୁମନ୍ତ ।
ଏମାନଙ୍କର ମୁଖ ଚାହିଁ ବୋଲନ୍ତି ରଘୁନାଥ ॥ ୩ ॥
ଶ୍ରୀରାମ କହନ୍ତି ଶୁଣ ହୋ ମହାମୁନ୍ୟ ।
ସୀତାସ୍ତ୍ରୀ ଥିଲେ ମତେ ଜଗତେ ଅପମାନ ॥ ୪ ॥
ପରମୁଖେ ଉପହାସ୍ୟ ମୁଁ ନପାରଇ ସହି ।
ସୀତାକୁ ଦେଖିଲେ ଯେ କମ୍ପଇ ମୋହର ଦେହି ॥ ୫ ॥
ପବିତ୍ର କୁଳ ଅମଳାଣ ସୂର୍ଯ୍ୟବଂଶର ସାର ହି ।
ଉପାଣି କଥା ମୁହିଂ ସହି ନ ପାରଇ ॥ ୬ ॥
ଅବଶ୍ୟ ସୀତାକୁ ମୁଁ ବାହାର କରିବି ।
ଲୋକ ଅପବାଦ ମୁଁ ସହି ନପାରିବି ॥
[ ନୋହିଲେ ଆତ୍ମାଦାହ ହୋଇଣ ମରିବି ] ॥ ୭ ॥
ବଶିଷ୍ଠ କହନ୍ତି ଯେ ତୋହର ଇଚ୍ଛା ।
ନୃପତି ଶିରୋମଣି ତୁ ସାରବର କକ୍ଷା ॥ ୮ ॥
ସୀତାକୁଇ ଅନ୍ତପୁର (ଯେବେ) ବାହାର କରିବୁ ।
ଆବର ବେଳେ ସତୀକି ଦେଖି ନ ପାରିବୁ ॥ ୯ ॥
ପ୍ରତାପୀଂ ଶିରୋମଣି ଅଛନ୍ତି ଜନେକ କୁମାରୀ ।
ଆବର ତୋହର ମୁଖ ନ ଚାହିଁବେଟି ସୁନ୍ଦରୀ ॥ ୧୦ ॥
ଏସନ କହି ଆସ୍ଥାନୁ ଉଠିଗଲେ ତପୋଧନ ।
ନବରେ ବିଜେ କଲେ ଦଶରଥଙ୍କ ନନ୍ଦନ ॥ ୧୧ ॥
ସନ୍ଧ୍ୟାତର୍ପଣ ଦେବାର୍ଚ୍ଚନ ନିତ୍ୟକର୍ମ ସାରି ।
ମଣୋହିରେ ବିଜେ କଲେ କୋଦଣ୍ଡ ଗୃପଧାରୀ ॥ ୧୨ ॥
ଅନ୍ନ ନରୁଚଇ ହୃଦରେ ମହାବ୍ୟଥା ।
ଶୁଣ ହୋ ଯୁଧିଷ୍ଠି ଏଥୁ ସୀତାସ୍ତ୍ରୀର ବେବସ୍ଥା ॥ ୧୩ ॥
ଜୟ ଜୟ ଦେବ ଗରୁଡ଼ଗବନ ଶ୍ରୀହରି ।
ବାସୁଦେବ ସୁମର ନରେ ଦୁରିତ ନିବାରି ॥ ୧୪ ॥

---

୬. ଉପାଣି—ଉଜାଣି (କ) ଉପାଳମ୍ଭ (ଖ) ।
୧୦. ପ୍ରତାପୀଂ ଶିରୋମଣି—କ୍ଷତ୍ରି ବିକ୍ଷାବନ୍ତ (କ)

ବାସୁଦେବ ଚରଣ ସୁମରଇ ଯେହୁ ନିତ ।
[ ବାସୁଦେବଙ୍କି ନାମ ଯେ ନିତ୍ୟେହେ ଶୁଣନ୍ତି ]
ବାରସ୍ପତ ଭୁବନେ ବସଇ ଯୋଗମୁର୍ତ୍ତି ।। ୧୫ ।।
ବାସୁଦେବ ଚରଣ କହିବ ମୁଁ କିସ ।
ଯେ ସେ ବାସୁଦେବ ଅନାଦି ପୁରୁଷ ।। ୧୬ ।।
ବାସୁଦେବର ଚରଣ ଜଗତେ ଧାରଣଇ
ବାସୁଦେବର ଚରଣ ବଡ଼ ପୁନ୍ୟ ଅଟଇ ।। ୧୭ ।।
ଅନେକ ପାତକ ତାହାର ଶରୀରେ ନ ରହେ
ବାସୁଦେବର ନାମ ଧରନ୍ତେ ଦୁଷ୍କୃତ ଯାଇ କ୍ଷୟେ ।। ୧୮ ।।
ବାସୁଦେବର କଥା ଶୁଣନ୍ତି ସୁଗ୍ୟଂଜନ ।
ବାବୁ ବାସୁଦେବ ପ୍ରସନ୍ନେ ଦୁରିତ ବିନାଶନ ।। ୧୯ ।।
ବାସୁଦେବ ସୁମରନ୍ତେ ପୁନ୍ୟ ବିଶେଷଇ ।
ବାସୁଦେବ ଚରଣେ ସେବା ସିଦ୍ଧେଶ୍ୱର ଦାସଇ ।। ୨୦ ।।
ଏଥୁ ଅନନ୍ତରେ ଶୁଣ ପଣ୍ଡୁର ତନୟେ ।
ମାରକଣ୍ଡଙ୍କ ଚରଣେ ହୋଇଲେ ବିନୋୟେ
[ ମାରକଣ୍ଡଙ୍କ ଚରଣ ଧରି ପ୍ରଣପତ୍ୟ ହୋଏ ] ।। ୨୧ ।।
ଉଠି କରଯୋଡ଼ି ଉଭା ହୋଇ ପଚ୍ଚରଇ ।
ହେ ମହର୍ଷି ତୁମ୍ଭେ ଋଷିକୁଳେ ଗରୁଅଂଶଇ ।। ୨୨ ।।
ବିଶ୍ୱନାଥ ଗର୍ଭେ ପଶିଲୁ ତୁ ଯହୁଁ
ସପୂର୍ଣ୍ଣେ ଗରୁଅଂଶ ହୋଇଲୁ ତୁ ତହୁଁ ।। ୨୩ ।।
ଭୂତ ଭବିଷ୍ୟ ବର୍ତ୍ତମାନ ତୋତେ ସେ ଦିଶଇ ।
ସୁଦେବକୁଳ ମଣ୍ଡନ ତୁହି ଋଷିଙ୍କର ଶ୍ରେଷ୍ଠଇ ।। ୨୪ ।।
ତହୁଁ ଶ୍ରୀରାମ କେବଣ କୃତ୍ୟ କଲେ ।
କେସନେକେ ସୀତାଙ୍କୁ ବନକୁ ପଠିଆଇଲେ ।। ୨୫ ।।
ଏଥିର କଥା ମୋତେ କ ହସି ତପସ୍ୱୀ ।
ଶୁଣିଣ ଭ୍ରାନ୍ତି ଯେତେ ଯାଉ ନା ମୋହର ।। ୨୬ ।।

## ସୀତାଙ୍କ ବନଗମନ

କହନ୍ତି ମାରକଣ୍ଡେ ଶୁଣ ତୁ ମହାରାୟେ ।
ଅରିଷ୍ଟି ଉତପାତ ହୋଉ ତୋର କ୍ଷୟେ ।। ୧ ।।

---

୨୦. ସୁମରନ୍ତେ—ପ୍ରସନ୍ନେ (କ) । ୨୨. ଗରୁ—ଗୋରୁ ।
୨୩. ତହୁଂ—କାହୁଂ । ୨୬. ନା—କା (କ), ତ (ଖ) ।

ସୀତା ବନବାସ ଶୁଣଇ ଯେବଣ ଜନ ।
ଶତେ ଜନ୍ମ ତାହାକୁ ନୋହିବ ଦୁଃଖମାନ ॥ ୨ ॥
ବିମନେ ଶ୍ରୀରାମ ପଲଙ୍କରେ ସୁତ ।
ନିଦ୍ରା ନ ମାଡ଼ଇ ଯେ ହୃଦରେ ମହାଚିନ୍ତା ଅତ ॥ ୩ ॥
ଶୁଭେଣ ରଯ୍ୟଣୀ ପ୍ରଭାତ ହୋଇଲା ଯହୁଁ ।
ଲକ୍ଷ୍ମଣକହ୍ନି ଶ୍ରୀରାମ ହକାରିଲେ ତହୁଁ ॥ ୪ ॥
ନିଜ ନବରେ ଲକ୍ଷ୍ମଣ ବସି ଯେ ଥିଲେ ।
ଶ୍ରୀରାମ ଆଗ୍ୟାଂ ଶୁଣି ଶୀଘ୍ରେଣ ଅଇଲେ ॥ ୫ ॥
ପୟର ଧରି ଓଲଗନ୍ତି ସଉମିତ୍ରି ।
ଲକ୍ଷ୍ମଣରେ ମୁଖଃ ଚୃହିଁ କହନ୍ତି ସୀତାପତି ॥ ୬ ॥
ତୁ ହୋ ଲକ୍ଷ୍ମଣ ସୀତାକୁ ଘେନଯିବୁ
ଅଗମ୍ୟ ଘୋର ବନେ ଛାଡ଼ିଣ ଆସିବୁ ॥ ୭ ॥
କପଟ କରି ରଂଜିବୁ ସୀତୟାର ମନ ।
ବିପିନ୍ୟେ ତେଜି ଆସିବୁ ସୀତାର ନୋହିବଟି ଗ୍ୟାଂନ ॥ ୮ ॥
ଲକ୍ଷ୍ମଣ କହଇ ଶୁଣ ହେ ରଘୁପତି ।
ସୀତାର କୋପକୁ ଦେବ କରଇ ମୁହିଂ ଭୀତ ॥ ୯ ॥
ତୋହର ଅର୍ଧଅଙ୍ଗ ସେ ରାଜ୍ୟର କାରେଣୀ ।
ଜଗ୍ନସମ୍ଭବା ସେ ରଘୁବଂଶର ମଣ୍ଡନୀ ॥ ୧୦ ॥
ତୋହର ବୋଲେ କଂପା ସେ ନବରୁ ବାହାର ହୋଇବେ ।
ମନ ବିରଙ୍ଗ କରି ଶ୍ୟାପ ମୋତେ ଦେବେ ॥ ୧୧ ॥
ଲକ୍ଷ୍ମଣର କଥା ଶୁଣି କହନ୍ତି ରଘୁନାହା ।
ସୀତାର ମନଭାବନା ବନକଇ ସେ ଉଚ୍ଛାହା ॥ ୧୨ ॥
ତୁହି ଯେ ନ ଜାଣୁ ତାହାର ମନ୍ଦପଣ ।
ଦୋରୃଣୀ ଯୁବତୀ ସେ ପ୍ରତକ୍ଷଣେ ଶୁଣ ॥ ୧୩ ॥
ପରବାସକଇ ସେ ତାହାଙ୍କର ମତି ।
ଦୁରୃଣୀ ଯୁବତୀ ସେ ପରବାସ ଲୋଡ଼ନ୍ତି ॥ ୧୪ ॥
ସ୍ୱାମୀସେବା ଯୁବତୀଙ୍କର ନିଷ୍ଚଳ ମନ ଅଟଇ ।
ବନବାସ ଯିବାକୁ ସୀତୟାର ମନ ଉଦ୍‌ବେଗଇ ॥ ୧୫ ॥
ପିତା ବନବାସ ଯେବଣ କାଳେ ପଠିଆଇଲା ।
ପତି ଭକ୍ତୀ ବୋଲି ମୋ ସଙ୍ଗେ ଗୋଡ଼ାଇ ଅଇଲା ॥ ୧୬ ॥

---

୪. ଲକ୍ଷ୍ମଣ—ଲକ୍ଷଣ (କ) । ୯. ସୀତା—ସ୍ୟତ (ଖ) । ଭୀତ—ଭକ୍ତି(କ) ।
୧୦. ଅର୍ଧଅଙ୍ଗ ସେ—ଅର୍ଥ ଅଙ୍ଗ କହି ଯେ (କ) । ଜଗ୍ନ—ବଗ୍ନ (କ)(ଖ) ।
୧୫. ନିଷ୍ଚଳ ମନ—ଧର୍ମ (ଖ)

ସେ ଯେବେ ପତିଭକ୍ତା ପଣେ ନିଷ୍ଫଳ ହୁଅନ୍ତା ।
ତପସ୍ୱି ମାଗନ୍ତେ ସେ କିଂପା ଭିକ୍ଷା ଦେନ୍ତା ।। ୧୭ ।।
ତୋତେ ଧିଙ୍କାସି ସେ ମନ୍ଦକଥା କହିଲା ।
ତୋହର ବଚନ ଲଂଘି କିମ୍ପା ରେଖା ଡେଇଁଗଲା ।। ୧୮ ।।
ରାବଣର ଭୁଜେ ସେ କଲା ଅଭିଳାଷ ।
ଏବେ ପୁଣି ଇଚ୍ଛା ସେ କରଇ ବନବାସ ।। ୧୯
ତୋହର ଆଗରେ ସେ କହଇ ଗୁପ୍ତକଥା ।
ବିଗୃର ଭୁଞ୍ଜସି ସୀତାୟା ଚରିତ୍ର ବ୍ୟବସ୍ଥା ।। ୨୦ ।।
ନିଜ-ଅବକାଶ ରୟୁଣୀର କାଳେ ।
ପଲଙ୍କେ ଶୋଇଲି ମୁଁ ସୀତାର ମେଳେ ।। ୨୧ ।।
ସୀତା ଉପେଖି ମୁଁ ଗଲଇ ଏକାସରେ ।
ନିଶ୍ର ବୁଲଇ କୋଦଣ୍ଡ ଧରି କରେ ।। ୨୨ ।।
ଜାଗ୍ରନାଗ୍ନି ମୁଖେ ମୁଁ ସୀତାର ସ୍ତ୍ରିଖୀପଣ ଶୁଣିଲି ।
ତହୁଁ ବାହୁଡ଼ି ମୁଁ ନବଡ଼ିଲଇ ଅଇଲି ।। ୨୩ ।।
ପଲଙ୍କେ ଶୟନେ ନିଦ୍ରା ନ ମାଡ଼ଇ ମୋତେ ସହୁଂ ।
ଜାନକୀ ନିବେଶି ପଗୃରଲିକ ତହୁଂ ।। ୨୪ ।।
ବୋଇଲି କିପାଇଁ ବିରସ ହୋଇଲେ ମୋର ପତି ।
ବଂଶ ଉଦ୍ଧତ ମୁହିଂ ଏବେ ହୋଇଲି ଗର୍ଭବତୀ ।। ୨୫ ।।
ଏସନେକ କଥା ଶୁଣି (କହି)ଲି ମୁହିଁ ଯେବେ ।
ପ୍ରସାଦ ମାଗସି ଦେବଇ ମୁହିଁ ଏବେ ।। ୨୬ ।।
ସେ କଇତ(ବ) ଯୁବତୀ ପ୍ରସାଦ ମାଗିଲା ।
ଧନରତ୍ନ ଛାଡ଼ି ବନକୁ ତ ଇଚ୍ଛା କଲା ।। ୨୭ ।।
ନିସ୍ତୃତେ ସେ ରେ ଦୋଗୃଣୀ କପଟୀ
ତେଣୁ ସେ ବନକୁ ଯିବାକୁ ଉଦେ ମନ ଘୋଟି ।। ୨୮ ।।
ସେ କିଂପାଇ ତୋତେ କୋପ କଣବ ।
ହରଷ ଚିତ୍ତେ ସେ ବାହାର ହୋଇଯିବ ।। ୨୯ ।।
ଅଗମ୍ୟ ବନକୁ ତାହାକୁ ଘେନି ଯିବୁ ।
ଦୁସହ କନ୍ଦରେ ଛାଡ଼ିଣ ଆସିବୁ ।। ୩୦ ।।

---

୧୭. ତପସ୍ୱୀ—ତପୁସି (ଖ) । ୧୮. ଲଂଘି—ମେଣ୍ଟି (ଖ) । ୧୯. ଅଭିଳାଷ—ରମଣ ଅଭିଳାଷ (ଖ) ୨୩. ଜାଗ୍ରନାଗ୍ନି—ରଜନୀର (କ) ରଜକାଗ୍ନି (ଖ) । ୨୫. ବୋଇଲି—ବୋଇଲେ (କ) । ବଂଶ—ବଂସେ (କ) । ୨୮. ନିସ୍ତୃତେ—ନିଅନ୍ତେ (କ), ନିଷ୍ଟଏ (ଖ)

ବନକାବେ ସୀତାଙ୍କୁ କରନ୍ତୁ ଆଧାର ।
ତେବେ ସେ କଲଙ୍କ ଛୁଡ଼଼ଇ ମୋହର ।। ୩୧ ।।
ଏହୁକ୍ଷଣି ତୁହ୍ମ ସୀତୟ୍ନା କଥା ଶୁଣୁ ।
ଆମ୍ଭର କଥା ତୁହ୍ମ ସତମିଛ ମଣୁ ।। ୩୨ ।।

ଏତେ କହ୍ଲ ସେ କୋଦଣ୍ଡ ଶୃପଧାରୀ ।
ସନଧେ ହକାରଲେ ଜନେକ କୁମାରୀ ।। ୩୩ ।।
ସ୍ୱାମୀର ଆଗ୍ୟାଂ ଶୁଣିଲେ ସେ ମହାସତୀ ।
ଶ୍ରୀରାମ ଛାମୁରେ ମିଳିଲ ତତ୍ପର ।। ୩୪ ।।

ସୀତା ଶ୍ରୀରାମ ପାଶେ ଉଭା ହେଲେ ଯହୁଂ ।
ଛନି କର ସୁନ୍ଦର ପ୍ରକାଶନ୍ତ ତହୁଂ ।। ୩୫ ।।
ତୁ ଯେ ଆମ୍ଭଙ୍କୁ ପ୍ରସାଦ ମାଗିଲୁ ।
ବନକୁ ଯିବୁ ବୋଲି ଆଶ ଯେବେ କଲୁ ।। ୩୬ ।।

ଲକ୍ଷ୍ମଣର ତୁଲେ ବନକୁ ଏବେ ଯାଅ ।
ଯେ ତୋହର ଇଚ୍ଛା ଫଳମୂଳ ଖାଅ ।। ୩୭ ।।
ଶୁଣିଣ ସୀତୟ୍ନା ମନରେ ହରଷ
ସ୍ୱାମୀର ମୁଖ ଚାହିଁ କହଇ ହୃହାସ ।। ୩୮ ।।

ସ୍ୱାମୀର ଆଗରେ କହଇ ମହାସତୀ ।
ଶାଶୁଙ୍କୁ କହିବ ମୋହର ମିଳଇ ଯୁଗତ ।। ୩୯ ।।
ଏସନକ କହ୍ଲ ସେ ଜନକ ଦୁଲାଳୀ
କୌଶୁଲ୍ୟାଙ୍କର ସନଧେ ତତକ୍ଷଣେ ମିଳି ।। ୪୦ ।।

କଇକେୟୀ ସୁମିତ୍ରା ଏକଇ(ଶ) ଶତ ଯୁବତୀ ।
ସମସ୍ତଙ୍କୁ ବସାଇ କହଇ ମହାସତୀ ।। ୪୧ ।।
ତୁମ୍ଭେ ମୋର ଗୁରୁଜନ ଧର୍ମର ଗୋ ମାତ ।
ବନକୁ ଯିବାକୁ ମୁହିଂ ଶରଧା କଲି ,ଚିତ୍ତ ।। ୪୨ ।।

ଅନେକ କାଳ ମୁହିଂ ଯେ ବନସ୍ତରେ ଥିଲି ।
ତେଣୁ ସେ ତହିଂକ ଶରଧା ମୁହିଂ କଲି ।। ୪୩ ।।
କଉଶୁଲ୍ୟା କହନ୍ତ କଥା ନୁହଇ ଯୁଗତ ।
ବଶେଷେଣ ଗର୍ଭିଣୀ ଗୋ ଏକଇ ଯୁବତୀ ।। ୪୪ ।।

---

୩୧. ବନକାବେ—ବନକାଯେ (କ) । ୩୬. ଯେ—ଯେବେ (କ) । ୩୭. ଯାଅ—ଯାସି (ଖ) ଫଳମୂଳ ଖାଅ—କନ୍ଦମୂଳ ଭକ୍ଷସି । ୩୮. ହରଷ—ବରସ
୪୧. ଏକଇଶତ—ସାତଶ ପଞ୍ଚାଶ (ଖ) ।

ଗର୍ଭେଣ ତୋହର ହୋଇଛୁ ଛନମାସ ।
ନିଦ୍ରା କାଳେ ବନେ ପାଇବୁ ନାନା ତ୍ରାସ ।। ୪୫ ।।
କୈକେଇ କହନ୍ତି ତୁମ୍ଭେ କିଛୁ ହିଂ ନ ଜାଣ ।
ତୁମ୍ଭର ପ୍ରାସ୍ତେ ଗୋ ସତ୍ରୁଙ୍କୁ ହି ମଣ ।। ୪୬ ।।
ଯେବଣ ସ୍ତିରୀଏ ତୋ ହୁଅନ୍ତି ଗର୍ଭବାସ ।
ପରପୁହେ ପରଅନ୍ନକୁ ସେ କରନ୍ତି ଆଶ ।। ୪୭ ।
ଏ କଥାକୁ ତୁମ୍ଭେ ଗୋ କିଛୁ ହି ନ ଜାଣ ।
ଶୁଣିଣ ସୀତାଙ୍କର ଆନନ୍ଦ ହୋଏ ମନ ।। ୪୮ ।।
କଉଶୂଲ୍ୟା କହନ୍ତି ତୁ ଯଦ୍ୟପି ଯିବୁ ।
ଶୀଘ୍ର ହୋଇ ବନସ୍ତରୁ ବାହୁଡ଼ି ଆସିବୁ ।। ୪୯ ।।
ଶୁଣିଣ ହରଷ ଯେ ହୋଇଲା ମହାସତୀ ।
ଭୂମିରେ ଅଞ୍ଚଳ ପାଡ଼ି ଓଳଗଇ ପାଦଗତି ।। ୫୦ ।।
ହାତ ଯୋଡ଼ି ଧରନ୍ତି ସୁମିତ୍ରା ମହାଦେଈ ।
ଶୀଘ୍ରେ ବନସ୍ତୁ ବାହୁଡ଼ି ଆସ ଗୋ ବଇଦେହୀ ।। ୫୧ ।।
ତହୁଂ ରମଣୀ ଅଇଲେକ ବେଗେ ।
ପୁଣି ହି ଆସି ହୋଏ ଶ୍ରୀରାମର ଆଗେ ।। ୫୨ ।।
ପଦ୍ମରେ ନମସ୍କାରେ ଯେ ଜନେକ ଦୋହିତା
ପଦ୍ମର ଧୂଳି ଆଣି ଲଗାଇଲେ ମଥା ।। ୫୩ ।।
ରାଗେଣ ରାମ ନ କହିବେ କିଛୁ ।
ଶ୍ରୀମୁଖରେ ଉଣ୍ଣ ହୋଇଅଛୁ ସୁମିତ୍ରାର ବହି ।। ୫୪ ।।
ଲକ୍ଷ୍ମଣଙ୍କୁ କହନ୍ତି ସୀତାଙ୍କର ପତି
ମୋହର କଥା ତୁହି ସୁମରିଥାଅ ସଉମିତ୍ରି ।। ୫୫ ।।
ମନବ୍ୟଥା ତାହାର ତୁ ଆଶ ନ କରିବୁ ।
[ ମନରେ ବ୍ୟଥା ତୋର ମୁହାସ ନ କରିବୁ ]
ଯେତେବେଳେ ଅବକାଶ ହେବ ବାହୁଡ଼ି ଆସିବୁ ।। ୫୬ ।।
ସୀତାଙ୍କୁ ସେ କଥା ବୁଝି ନ ପାରିଲେ ।
ଉପୁରାଣ ବଷ୍ଟେକ ଯେନ ବାହାର ହୋଇଲେ ।। ୫୭ ।।
ଏକର ଆଗରେ ଯେ ଆରେକ କହଇ ଧୀର ଅତି ।
ମାୟା କଥା ସେ ନ ଜାଣଇ ସତୀ ।
ମନ ମୋହିଅଛୁ ଦେବୀ ସରସ୍ୱତୀ ।। ୫୮ ।।

---

୫୮. ଏହି ପଦର ଛନପାଦ ମଧ୍ୟରୁ ପ୍ରଥମ ପାଦଟି କ ପୋଥିରେ ନାହିଁ ।

ଅଟେଣ ଲକ୍ଷ୍ମଣ କୋଦଣ୍ଡ କରେ ଧରି ।
ପଛେଣ ମେଳି ସେ ଜନେକ କୁମାରୀ ।। ୫୯ ।।
ନଗ୍ର ନରନାରୀ ସୀତାଙ୍କୁ ଦେଖିଲେ ।
ଯେ ଯାହାର ରତ ଛୁଡ଼ି ବାହାର ହୋଇଲେ ।। ୬୦ ।।

ଏକର ଆଗରେ କହନ୍ତି ସଧୀର ।
କେବଣ ବିପରୀତ ଗୋ ହୋଇଲା ଏ ପୁର ।। ୬୧ ।।
ଅତି ଅଗୋଚର ତ ଅସମ୍ଭବ କଥା
ଏକେସରେ ଗମଇଁ ଜନେକ ଦୋହିତା ।। ୬୨ ।।

ଦୃଷ୍ଟିକରଣ ତ ନ ଲାଗଇ ଯାହାର କାୟେ ।
ଇତର ଜନଙ୍କର ମତେ ଗମଇଁ ଏକଲାଏ ।। ୬୩ ।।
ଏସନେକ ବୋଲି ଅନେକ ଯୁବତୀ ।
ସୀତାଙ୍କର ପଛେ ଯେ ବିମନେ ଗୋଡ଼ାବନ୍ତି ।। ୬୪ ।।

ମୁହଁ ଟେକି ଶୁଣି ଲକ୍ଷ୍ମଣ ଲେଉଟି ଗୃହିଲା ।
ପୁରଜନ ଯୁବତୀଙ୍କ କୋପେଣ ଡାକ ଦେଲା ।। ୬୫ ।।
ରାଜପତ୍ନୀ ପଛେ ଯେ ଗୋଡ଼ାଅ କାହିଁ ପାଇଁ
ଜୀବନକୁ ଆଶ କି ତୁମ୍ଭର ଅଛେ ନାହିଁ ।। ୬୬ ।।

ଯେ ଯାହାର ମନ୍ଦିରକୁ ତୁମ୍ଭେ ଚଳିଯାଅ ।
ଶରୀର ରଖାଇ ଅପମାନ ନ ପାଅ ।। ୬୭ ।।
ଲକ୍ଷ୍ମଣ କଠୋର କଥା ଯହୁଁ ପୁରଜନେ ଶୁଣିଲେ ।
ସମସ୍ତ କାମିନୀ ସେଠାରେ ରହିଲେ ।। ୬୮ ।।
କେହି କାହାର ଗୃହରେ ନ ପଶନ୍ତି ।
ଦଣ୍ଡବଂଶ ଠାବେ ଠାବେ ରହିଣ ଭାଳନ୍ତି ।। ୬୯ ।।

କେବଣ ବିପରୀତ ହୋଇଲା ନ ଜାଣିଲୁ ଏହା ।
କେ ଅବା ଏ ସମୟେ ହୁଅ ସାହା ।। ୭୦ ।।
ଏସନେକ ମନେ ବିରସ ସର୍ବ ନାରୀ ।
ବଇକୁଳୀ ଝରେ ନୟନୁ ଲୁହ ଝର ।। ୭୧ ।।
ଦେଖି ଆହାକାର କରନ୍ତି ସର୍ବଜନ ।
ତହୁଁ ମହାସତୀ କରନ୍ତି ଗବନ ।। ୭୨ ।।

---

୬୦.ରତ—ହିତ (ଖ) । ୬୩. ଏକଲାଏ—ଏକଲୟେ (କ) । ୬୪. ବିମନେ—ବିପଛେ (ଖ) । ୬୮–୭୦. ଏହି ପଦତ୍ରୟ କ ପୋଥିରେ ନାହିଁ ।
୭୦. କେ—କି (ଖ)

ବୈଶାଖ ଶୁକଳ ପଞ୍ଚମୀ ଗୁରୁବାର ।
ପୁନର୍ବସୁ ନକ୍ଷତ୍ର ଚନ୍ଦ୍ରପତ୍ର ଦିବାକର ।। ୭୩ ।।
ଏବେ ମହାସତୀର ହୋଇଛନ୍ତି ଷନମାସ
ମନର ହରଷେ ନ ଭୁଞ୍ଜଇ ଗ୍ରାସ ।। ୭୪ ।।
ଆଗେଣ ଲକ୍ଷ୍ମଣ କଢ଼ାବନ୍ତି ବାଟ ।
ଥୋକାଏକ ଧୂରେ ସତୀ ପାଇଲେକ କଷ୍ଟ ।। ୭୫ ।।
ଗହନ ବନେ ବେନି ଜନେ ପଶନ୍ତି ।
ଦେଖି ବନଜବେ ନନ୍ଦନ ଗୁହାନ୍ତି ।। ୭୬ ।।
ମତ୍ତଗଜ ଯୂଥ ଶରୀର ବିଶାଳଇ ।
ଗଜଇନ୍ଦ୍ରକୁ ତେଜ ପ୍ରକାଶଇ ।। ୭୭ ।।
ସୁହସ୍ତ ଅଶ୍ୱେ ଅଛନ୍ତି ପନ୍ତପନ୍ତ ।
ଉଚ୍ଚୈଶ୍ରବା ପ୍ରାୟେ ଦିଶନ୍ତି ଧବଳ କ୍ୟୋଢ଼ ।। ୭୮ ।।
ହରଣ ବାହୁଟିଆ ଲୋକ ବଳିହା ।
ମତ୍ତଗଜ ସମାନେ ଦିଶନ୍ତି ବରେହା ।। ୭୯ ।।
ଗଣ୍ଡା ଗବଳ ଯେ କୁରଙ୍ଗ ସମ୍ବର ।
ସିଂହ ଶାର୍ଦ୍ଦୂଳ ଯେ ଅଛଇ ବିସ୍ତାର ।। ୮୦ ।।
ଶୁକ କୋକିଳ ଯେ ଆବର ଝିଙ୍କ ମଞ୍ଜାର ।
ଉର୍ଦ୍ଧ୍ୱକେଶୀ ମହର୍ଷି ସମ୍ମୁଖେ କ୍ରୀଡା କରଣ ।। ୮୧ ।।
ଆନନ୍ଦେ ମହାମତ୍ତ ଗୁହାନ୍ତି ଲୋକମନେ ।
ଅନେକ ପକ୍ଷୀଜନ୍ତୁ ଅଛନ୍ତି ସେ ବନେ ।। ୮୨ ।।
ସୁସ୍ୱରେ ରାବ ଦେଇ ମୟୂରଇ ।
କୋକିଳ ରାବ ଶୁଣି ଶରୀର କି ଝଡ଼ଇ ।। ୮୩ ।।
ବନ ଗହନରେ ପବନ ବହଇ ନ ଲାଗଇ ରବିର ତେଜ
ସେ ବନେ ପଶିଲୁ ଯାଇ ସୁମିତ୍ରା ତନୁଜ ।। ୮୪ ।।

## ସୀତାଙ୍କୁ ଛାଡ଼ି ଲକ୍ଷ୍ମଣଙ୍କ ପ୍ରତ୍ୟାଗମନ

ଲକ୍ଷ୍ମଣର ପଛେ ଗୋଡାଇ ସତୀ ଥିଲା ।
ଝାଳେ ଘୁମାଇଁ ମୂର୍ଚ୍ଛା ମଉଳିଲା ।। ୧ ।।
ଗୋଡ଼ାଇ ଗଲେ ନ ପାରିଲା ସତୀ ଯହିଂ ।
ଆସ ବୋଲି ଲକ୍ଷ୍ମଣ ଡାକ ଦେଲା ତହିଂ ।। ୨ ।।

---

୭୭. କୁ ତେଜ—ସାମାନ୍ୟ ବହୁତ (ଖ) । ୭୮. କ୍ୟୋଟ—ଯୋଦ୍ଧା ।
୧. ମଉଳିଲା—ଉଲୁସିଲା (କ)

ତୁମ୍ଭେ ଗୋ ବନକୁ ଅଇଲହୁ ଯେବେ ।
(ନ) ଜାଣିଲି ମୁଁ ତୁମ୍ଭନ୍ତ ପଚାରୁଛୁ ଏବେ ।। ୩ ।।
କେବଣ ନିମନ୍ତେ ବନକୁ ଶରଧା କଲ ।
ସୁକୁମାର ସ୍ତିରୀ ଗୋ ଚାଲି ତ ନ ପାର ।। ୪ ।।
ଏବେ ତୁମ୍ଭେ ଗୋ ଆସ ଶୀଘ୍ର ହୋଇ ।
ଭଲ ଠାବ ଦେଖି ବିଶ୍ରାମିବା ଯାଇ ।। ୫ ।।
ଲକ୍ଷ୍ମଣର ସମାଦ ଶୁଣିଣ ମହାସତୀ ।
ଆଗଭର ହୋଇଣ ଧାମନ୍ତି ତଡ଼ତ ।। ୬ ।।
ପର୍ବତ ଉପରେ ଅଛୁ ଏକ ପୁଷ୍କରଣୀ ।
ମୁଖ ପଖାଳନ୍ତି ତହିଁ ଶ୍ରୀରାମର ରାଣୀ ।। ୭ ।।
ଶରୀର ଶ୍ରମେଣ ସତୀ ଜଳପାନ କରଇ ।
ଦେଖିଣ ବିକଳେ ଭାଳନ୍ତି ସୁମିତ୍ରାର କୁମରଇ ।। ୮ ।।
ସହସ୍ରେକ ଭାର ଗଙ୍ଗାର ପାଣି ।
ନିତ୍ୟେ ଗଉଡ଼େ ତୋର ରାଜ୍ୟକୁ ବହି ଆଣି ।। ୯ ।।
ସେ ଜଳେ ସ୍ନାହାନ କରୁ ଗୋ ମହାସତୀ ।
ପାଣି ତୋଳି ଦିଅନ୍ତି ଲକ୍ଷେକ ଯୁବତୀ ।। ୧୦ ।।
କୁଙ୍କୁମ ଘଷନ୍ତି ସହସ୍ରେକ ବାଳୀ ।
ସୁବର୍ଣ୍ଣ ଘଟେ ଶରୀର ପଖାଳି ।। ୧୧ ।।
ସୁସଞ୍ଚ ପାଟୋଳି ପବିତ୍ର ଚୀନ ବାସ ।
ଶରୀର ପୋଛନ୍ତେ ପାଉ ଅତି ତ୍ରାସ ।। ୧୨ ।।
ରତ୍ନଖଣ୍ଡରେ ସୁବାସିତ ନୀର (ଲ)ଇ ।
ତହୁଂ ସେ ଜାନକୀ ମୁଖ ପଖାଳଇ ।। ୧୩ ।।
ବନ୍ଧୁର ଲେଖନେ ଏବେ କରେ ପିଅଇ ପାଣି ।
ହେ ବିହି ବିଧାତା ଏସନେକ ଅଛୁ ନିର୍ମାଣି ।। ୧୪ ।।
ଏ ଦ୍ରବ୍ୟ କାମିନୀକ ଛାଡ଼ି ଯଦ ଯିବ ।
କେବଣ ମତେ ମୁହିଂ ଦେହ ଧରିବି ।। ୧୫ ।।
ଯଦ୍ୟପି ରହିବ ଯେ ସୀତାଙ୍କର ତୁଳେ ।
କୋପ କରିବେ ରାମ ଆଜ ମୁହିଂ ନ ଗଲେ ।। ୧୬ ।।
ଏତେ ବିଚାରି ଲକ୍ଷ୍ମଣ ବିକଳେ ଭାଳଇ ମନ ।
ଆସ ଗୋ ମହାସତୀ ଏଥୁ ଯିବାକ ବହନ ।। ୧୭ ।।

---

୮. କୁମରଇ—ସୁତଇ (କ) । ୯. ଗଉଡେ—ଗୋଉଡ଼େ (କ) ।
୧୦. ଦିଅନ୍ତି—ସ୍ନାନ୍ତି (କ) । ୧୨. ପାଟୋଳି—ପାଟ (ଖ)

ଫଳ ମୂଳ ଯେବଣ ଠାବରେ ପାଇବା ।
ତହିଁ ଯାଇ ଆମ୍ଭେ ବିଶ୍ରାମ କରିବା ।। ୧୮ ।।
ଶୁଣିଣ ମହାସତୀ ପାଣିରୁ ହୋଇଲେ ବାହାର ।
ଜଳ ପିଅନ୍ତେ ତ୍ରାସ ହୋଇଲା ତାହାର ଶରୀର ।। ୧୯ ।।
ଚାଲନ୍ତେ ସୀତଯ୍ୟା ପୟର ନ ଚଳଇ ।
ଆପଣା ହୃଦରେ ଶଶୀମୁଖୀ ଖାଳଇ ।। ୨୦ ।।
କେବଣ ଦଇବ ମୋର ମନକୁ ମୋହିଲା ।
ବନସ୍ତକୁ ଆସିବ ବୋଲି ଉଦବେଗ କଲି ।। ୨୧ ।।
ଅରଷ୍ଟି କଥା ଏହା ବିଚାରି ନ ପାରିଲି ।
ସ୍ୱାମୀଙ୍କ ଏକାନ୍ତେ ମୁଁ ପ୍ରସାଦ ମାଗିଲି ।। ୨୨ ।।
କାହାକୁ କହିବ ଯେ ମୋହର କୃତ ଦୋଷ ।
ଆପଣେ ମୁହିଂ ହୋଇଲି କଂଗାସ ।। ୨୩ ।।
ଲକ୍ଷ୍ମଣକୁ ମହାସତୀ ଡାକ ଦେଲେ ସଧୀରଇ ।
ସମ୍ଭାଳି ନଅ ମତେ ମୁଁ ଚାଲି ନ ପାରଇ ।। ୨୪ ।।
ପଥର ଭୂମିରେ ଚାଲନ୍ତେ ପୟର ତୁଟିଲା ।
ଗର୍ଭେଣ ତନ୍ନମାସ ଗର୍ଭ ବ୍ୟଥା କଲା ।। ୨୫ ।।
ଶୁଣିଣ ଲକ୍ଷ୍ମଣ ପ୍ରାଣ ଉଛର୍ଗିଲା ଦେହ
ତରୁ ତଳେ ବସିଲେ ନୟନୁ ଲୁହ ବହି ।। ୨୬ ।।
ସେହି ବୃକ୍ଷତଳେ ବସିଲେ ରାମରାଣୀ ।
ଜାନୁ ଭର ଦେଇ ବସିଲା ଧରଣୀ ।। ୨୭ ।।
ବାହାଡ଼ା ବୃକ୍ଷତଳେ ଅତ ବିତପନ ।
ସୁଶୀତଳ ସମୀର ବହଇ ଘନଘନ
[ ସୁଶୀତଳ ଧୀରେ ତହିଂ ବହଇ ପବନ ] ।। ୨୮ ।।
ରବିର ଦ୍ରୋଛନା ଯେ ନ ଲାଗଇ ତହିଁ ଖରା ।
କେଉଟି ଆଦିତ୍ୟ ଦେବତା ହୋଇଲେ ଅଢ଼ାଇ ପ୍ରହରା ।।୨୯।।
ବୃକ୍ଷର ତଳେଣ ବସନ୍ତେ ମହାସତୀ ।
ଶରୀର ଶ୍ରମେଣ ପାଇ (ଅ)ଚେତନ ମୂର୍ତ୍ତି ।। ୩୦ ।।
ଅଞ୍ଚଳ ପାଡ଼ି ହସ୍ତ ସୀମସ୍ଥାନ କଲା ।
ନିଦ୍ରାଏଣ ମହାସତୀ ଅଚେତନ ହୋଇଲା ।। ୩୧ ।।

---

୨୩. ଏହି ପଦଟି ଖ ପୋଥିରେ ନାହିଁ । ୨୫. ଗର୍ଭ ବ୍ୟଥା କଲା—ଦେହ ଅଥିର ହୋଇଲା (ଖ) । ୨୭. ଜାନୁଭର—ଜାନୁରେ କର (ଙ) । ୩୦. ଅଚେତନ ମୂର୍ତ୍ତି—ଅଚେତନ ମତି (ଖ) ।

ଦେଖି କରି ଲକ୍ଷ୍ମଣ ମନରେ ବିଚାରି ।
ଏହି ସମୟେ ଉପେକ୍ଷି ମୁଁ ଯିବି କନକପୁରୀ ॥ ୩୨ ॥
ଯଦ୍ୟପି ନିଦ୍ରାରୁ ଉଠିବେ ଜନେକ କୁମାରୀ ।
ଓପ୍ରଧ ରୁହିଁ ଏହାଙ୍କୁ ଯାଇ ତ ନ ପାରି ॥ ୩୩ ॥
ନ ଗଲେ କୋପ ମତେ କରିବେ ରାମଚନ୍ଦ୍ର
ବୋଲିବେ ମୋହର ଭରଯା ଯେନ ରାଣ୍ଡେ ରହିଲାକ ମନ୍ଦ
ମନେ ବିକାର ତାର କୋପ କରିଅଛୁ ।
ତମେ ଭରତ ସେ ନ ପୁରଇ କିଛୁ ॥ ୩୪ ॥
ନାରୀମାନେ ସତୀଙ୍କ ରହିତ ଗଲେ ।
ଏ ମତେ କୋପ କରିବ ସନଧେ (ନ) ଦେଖିଲେ ॥ ୩୬ ॥
ସେବକ ଲୋକର ହୋ ଜୀବନ ଧିକ ଯାଉ ।
ପରର ବଶେ ବର୍ତ୍ତିଇ ପୁଣ ଯେହୁ ॥ ୩୭ ॥
ଏସନେକ ପଞ୍ଚଭୂତେ ଭାଳନ୍ତି ଲକ୍ଷ୍ମଣ ।
ହୋଣ୍ଟୁ ଶରେକ କାଢି ପନ୍ଦେ କରଇ ଲେଖନ ॥ ୩୮ ॥
ମୋହର କଥା ଗୋ ଶୁଣସି ମହାସତୀ ।
ତୋତେ ଉପେକ୍ଷା ଗୋ କଲେ ତୋର ପତି ॥ ୩୯ ॥
ରାବଣ ରାଜ୍ୟେ ରୁ ଚଉଦ ମାସ ଥିଲୁ ।
ଲୋକତ କଥାରେ ରୁ ଦୋଗୃହୀ ହୋଇଲୁ ॥ ୪୦ ॥
ବହୁତ ମୁଁରାବ ରାମ ସହି ନ ପାରିଲେ ।
ତେଣୁ ସେ ତୋତେ ଗୋ ବନକୁ ବାହାର କଲେ ॥ ୪୧ ॥
ଅଯୋଧ୍ୟା ନଗରକୁ ରୁ ବାହୁଡ଼ି ନ ଯିବୁ ।
ପିତା ଘରେ ତୋର ଗୋ ଯାଇଣ ରହିବୁ ॥ ୪୨ ॥
ଭୁହି ମତେ କୋପ ଗୋ ନକର ବଇଦେହୀ ।
ଏସନେକ ବୋଲି ଲକ୍ଷ୍ମଣ ଲେଖି ଲିହି ॥ ୪୩ ॥
ଯେବଣ ବୃକ୍ଷ ତଳେ ଶୋଇଛନ୍ତି ମହାସତୀ
ତରୁଡ଼ାଳେ ପନ୍ଦ ଲମ୍ବାଇ ସଉମିତ୍ରି ॥ ୪୪ ॥
ତହୁଁ ବାହୁଡ଼ଇ ଲକ୍ଷ୍ମଣ ମହାବୀର ।
ଆଗଭର ହୋଇ ତାର ନ ଚଳେ ପୟର ॥ ୪୫ ॥
ଶଙ୍ଖରୁ ଝାଳ ବହଇ ଅବକ୍ଷଣ ।
ଲେଉଟି ଚାହାନ୍ତି ପୁଣି ସୀତାଙ୍କ ବଦନ ॥ ୪୬ ॥

---

୩୪. ପୁରଇ—ଜାଣଇ (ଖ) । ୩୭. ପରରବଶେ—ପରବଶ୍ୟା ବୃତ୍ତେ (ଖ) । ଯେହୁ—ଯହୁଂ (କ) । ୪୦. ଲୋକତ—ଲୋକକ (ଖ) ।

ଶାରଦ ପୌର୍ଣ୍ଣମୀ କି ନିର୍ମଳ ଶଶୀ ।
ତେସନେକ ଜାନକୀର ବଦନ ବିକାଶି ।। ୪୭ ।।
ମୁହିଂ ଏହାଙ୍କୁ ଛାଡ଼ି ଯିବି ଯେବେ ।
ଏହିକ୍ଷଣି ଏହାଙ୍କୁ ବନଜନ୍ତେ ଆହାର କରିବେ ।। ୪୮ ।।
ଏସନେକ ବିଗୁରି ଆସଇ ଧୀର ଧୀର ।
ମୁକ୍ତା ଛିଡ଼ଇ ଯେସନେ ନୟନରୁ ଲୁହ ଝରି ।। ୪୯ ।।

## ସୁବର୍ଣ୍ଣ ସୀତା ନିର୍ମାଣ

ଏହି ଅନନ୍ତରେ କଥା ଶୁଣ ପଣ୍ଡୁ ସୁତ ।
ସୀତାଙ୍କୁ ତେଜି ଯହୁଂ ଅଇଲା ସୁମିତ୍ରାର ସୁତ ।। ୧ ।।

ଆଦିତ୍ୟ ଯେ ଅଡ଼ାଇ ପ୍ରହର ହୋଇଥିଲା ।
ସେହିଠାବେ ସେ ସ୍ଥିର ହୋଇଣ ରହିଲା ।। ୨ ।।

ସୀତାୟା ବନରୁ ବାହାର ହୋଇଲେକ ଯେବେ ।
ଏକଦଣ୍ଡି ସାତଦଣ୍ଡି ହୋଇଲାକ ତେବେ ।। ୩ ।।

ବିରଞ୍ଚି ବିଗୁଚଇ ଏ ଜନେକ ଦୁଲାଳି ।
ସୃଷ୍ଟିଟଣ ମଣ୍ଡନୀ ଏ ସତୀ ଶୁଦ୍ଧ୍ୟଶାଳୀ ।। ୪ ।।

ଅଦୋଷେ ଏହାଙ୍କୁ କୋପ କଲେ ଶ୍ରୀରାମ ।
ଲକ୍ଷ୍ମଣ କହିଲେ ଅବା ଉପେଖଇ ଡମ ।। ୫ ।।

ନାହିଁତ ଅବା ସୀତାୟାଙ୍କୁ ନଅଁ ନିଜ ପୁର ।
ମୋହର ଗଲେ ହୋଇବ ଅନ୍ଧକାର ।। ୬ ।।

ଏସନେକ ଭାଳି ରହିଲେ ଗଗନେ ।
ନଦ୍ୱାରେ ସୀତାୟା ହୋଇଲେ ଅଜ୍ଞାନେ ।। ୭ ।।

ସୀତାୟାଙ୍କୁ ଛାଡ଼ି ଲକ୍ଷ୍ମଣ ହି ଗଲା ।
ଅଯୋଧ୍ୟା ଭୁବନେ ସେ ପ୍ରବେଶ ହୋଇଲା ।। ୮ ।।

ସଭାମଧ୍ୟେ ଲକ୍ଷ୍ମଣ ମିଳିଲାକ ଯାଇ ।
ସଥା ପୋଡି ବସିଛନ୍ତି ରଘୁକୁଳ ସାଇଂ ।। ୯ ।।

ସୀତାର ବଲ୍ଲଭ ଯେ ଲକ୍ଷ୍ମଣଙ୍କୁ ଦେଖି ।
ଶରୀରୁ ପ୍ରାଣ କି ଯେ ଗଲାକ ଉପେଖି ।। ୧୦ ।।

---

୪୭. ବିକାଶି—ସାଦୃଶୀ (ଖ) । ୪୮. ଆହାର—ଆଧାର (ଖ) । ୪୯. ଛିଡ଼ଇ—ଚଡ଼ଇ । ୫. ଲକ୍ଷ୍ମଣ—ଲକ୍ଷ୍ମଣଙ୍କୁ । ଅବା—ଏବେ । ୬. ନଅଁ—ନଅ (କ) ।

ମଜ୍ଜନ ହୋଇଣ ଲକ୍ଷ୍ମଣ ଭୂମିକି ଘଅଇ ଦୃଷ୍ଟି ।
ତବଦ ହୋଇ ଶ୍ରୀରାମ ନଖେ ଚରନ୍ତୁ ସୃଷ୍ଟି ॥ ୧୧ ॥
ଏକକୁ ଆରକ ନ ଘଅନ୍ତୁ ଉତ୍ତର ।
ଘଡ଼ିକେ ଲକ୍ଷ୍ମଣଙ୍କୁ ପୁଚ୍ଛନ୍ତି ଗୃପଧର ॥ ୧୨ ॥
ସୀତାକୁ ଦେନେ ତୁ ଯେ ବପିନ୍ୟକୁ ଗଲୁ ।
କେବଣ ଅରଣ୍ୟେ ସୀତାକୁ ଗୁଡ଼ିଣ ଆଇଲୁ ॥ ୧୩ ॥
ଲକ୍ଷ୍ମଣ କହଇ ଶୁଣ ରଘୁନାଥ ।
ଦୁସହ ଘୋର କନ୍ଦର ଅଗମ୍ୟ ବପିନ୍ୟ ॥ ୧୪ ॥
ଏକଧାରା ପର୍ବତ ତହିଁକି ନିକଟ ।
ବାହାଡ଼ା ବୃକ୍ଷ ଅଛୁ ପୁଷ୍କରଣୀ ତଟ ॥ ୧୫ ॥
କେତେବେଳେ କେତେ ଧୂର ଗଲଇ ଦେବ ମୁହିଂ
ମୋତେ ହେ ଅଗୋଚର ମଣଇ ରଘୁସାଇଁ ॥ ୧୬ ॥
ସେ ତରୁତଳେ ନିଦ୍ରା ଗଲେ ମହାସତୀ
ପଥଶ୍ରାନ୍ତେ ତାହାର ଅଚେତନ ମତି ॥ ୧୭ ॥
ନିଦ୍ରାରେ ଅଚେତ ହୋଇଲେକ ଯହୁଂ
ତାହାକୁ ଉପେଖି ମୁଁ ଅଇଲଇ ତହୁଂ ॥ ୧୮ ॥
ଏସନେକ କୃତ ନ କରିବା ରଘୁମଣି ।
ଜନପୁରେ ସାଧେବା ସେ ଜନେକ ଦୁଲଣି ॥ ୧୯ ॥
ନଗ୍ରଜନଙ୍କର ମୁଖେ ସ୍ୱାମୀ ପାଇଲୁ ଉପହାସ୍ୟ ।
ସକଳ ରାଜ୍ୟେ ସ୍ୱାମୀ ପାଇବୁ ଅପଯଶ ॥ ୨୦ ॥
କିସ ବୋଲିବେ ମତେ ଋଷିଗଣ ମାନେ ।
ଆମ୍ଭା ଉଛର୍ଗିବେ ଶୁଣି ଜନେକ ମହାମୁନେ୍ୟ ॥ ୨୧ ॥
କାହାର କଥା ନ ପୁଣି ଉପେଖିଲୁ ସତୀ ।
କେବଣ ଦଇବ ମୋହିଲା ତୋହର ମତି ॥ ୨୨ ॥
ଲକ୍ଷ୍ମଣର କଥା ଶ୍ରୀରାମଚନ୍ଦ୍ରେ ଶୁଣିଲେ ।
କପାଳେ କର ଦେଇ ଉଚ୍ଚେ ରୋଦନ କଲେ ॥ ୨୩ ॥
ମାତୃଗଣମାନେ ଆସି ସନ୍ନଧ୍ୟେ ମିଳିଲେ ।
ଭରତ ଶତ୍ରୁଘନ କଥଦେ ପ୍ରବେଶିଲେ ॥ ୨୪ ॥
ଶ୍ରୀରାମ ମୁଖଗୃହିଁ ପୁର ନରନାରୀ ।
ରୋଦନ କରନ୍ତି ହୃଦରେ କର ତାଡ଼ି ॥ ୨୫ ॥

---

୧୨. ଘଡ଼ିକେ—କ୍ଷଣକେ (କ) । ୨୦. ରାଜ୍ୟେ ସ୍ୱାମୀ—ରାଜାମୁଖେ (ଖ) ।
୨୨. ତୋହର—ମୋର (କ) ।

ନଗରେ ମୁଖଗୋଳ ଶୁଭିଲାକ ନାଦ ।
ମନ୍ତ୍ରୀ ଅମାତ୍ୟଗଣେ ହୋଇଲେ ବିଷାଦ ।। ୨୬ ।।
ବଶିଷ୍ଠ ସୁମନ୍ତ ଗୁଣନିଧି ପାତ୍ର ।
ରାମର ସନ୍ନିଧ୍ୟେ ଆସି ମିଳିଲେ ସମସ୍ତ ।। ୨୭ ।।
ବଶିଷ୍ଠଙ୍କ ମୁଖ ରାମଚନ୍ଦ୍ର ଚାହିଂଲେ ।
ସମାସ୍ୟା ନ ଦେଇ ମଥା ଲୁହାଂଇଲେ ।। ୨୮ ।।
ନୟନୁ ଲୁହ ଗଳି ପଡ଼ଇ ଘନଘନ ।
ପଦ୍ମପତ୍ରେ ଶିଶିର ପଡ଼ଇ ଯେସନ ।। ୨୯ ।।
ସନ୍ନିଧ୍ୟେ ବଶିଷ୍ଠ ମହାଋଷି ବସିଲେ ।
ଶରୀର ଆଶ୍ୱାସି କୋମଳ କରଣ କହିଲେ ।। ୩୦ ।।
ଅନେକ ମଣାଇଁ ବୁଝାଇଲୁ ତୋତେ
କେବଣ ଦୋଷେ ସୀତାକୁ ବିସର୍ଜିଲୁ କୋପ ଚିତ୍ତେ ।। ୩୧ ।।
ଏବେ ସୀତାଙ୍କୁ ପାଇବା ଆଉ କାହିଁ
ବନେଣ ଲକ୍ଷ୍ମଣ ଯେ ଛାଡ଼ି ଅଇଲାକ ସହିଁ ।। ୩୨ ।।
ବନଜାବେ ସୀତାକୁ କରିବେ(ନ) ଆହାର
ଆବର ଜାନକୀଙ୍କ କିସ ମୁହାଂସ ତୋହର ।। ୩୩ ।।
ଏବେ ଆମ୍ଭର ବଚନେକ କରିବା ।
ରାଜାଙ୍କର ନଗରକୁ ଡଗର ବରଗିବା ।। ୩୪ ।।
ଯେବଣ ନୃପତିର ଥାଇ ରୂପବନ୍ତୀ ଦୁଲ୍ଲଣି
ତାହାକୁ ବିଭା ତୁ ହୁଅସି ଚକ୍ରପାଣି ।। ୩୫ ।।
ପତ୍ନୀ ବିହୁନେ ଯେବଣ ମହୀପତି ।
କି ସୁଖ ହୁଜଇ ସକଳ ଧର୍ମକୀର୍ତ୍ତି ।। ୩୬ ।।
ଶ୍ରୀରାମ କହନ୍ତି ଶୁଣସି ତପୋଧନ ।
ଯେବଣ ବେଳେ ବିଭା ମୁଁ ହୋଇଲି ଜନେକନନ୍ଦନୀ ।।୩୭।।
ମହୁଶେଯ୍ୟାରେ ମୁହିଂ ରମଣୀର ଭାଗେ ।
ସତ୍ୟ ଉଚ୍ଚରି ଅଛୁ ସୀତାଙ୍କର ଆଗେ ।। ୩୮ ।।
ତୋ ତହୁଂ ପ୍ରୀତି ଆନର ତୁଲେ ନୋହିବ ।
ଆନ ଯୁବତୀର ଦେହ ନ ଛୁଇଁବ ।। ୩୯ ।।
ମୁହିଂ ଯତି ସେ ହି ପତିଭଗତା ।
ଏଥେ ବିଚ୍ଛେଦ ମତେ କଲାକ ବିଧାତା ।। ୪୦ ।।

---

୨୯. ଶିଶିର—ନୀର (ଖ) । ୩୨. ସୀତାଙ୍କୁ—ବେଦନ କଲେ (ଖ) ।
୩୩. ମୁହାଂସ—ଶରଧା (ଖ) । ୩୫. ଦୁଲ୍ଲଣି—ନନ୍ଦନୀ (ଖ)

ପିତାର ବଚନେ ମୁଁ ଗଲଇ ବନବାସ ।
ପତିଭଗତା ସୀତା ନ ଛାଡ଼ଇ ମୋର ପାଶ ।। ୪୧ ।।
କନ୍ଦମୂଳ ଆହାର କରି ବନସ୍ତେଣ ଥିଲା ।
ଦୁଇମୁଣ୍ଡ ହରଣ ଦେଖି ଶରଧା ସେ କଲା ।। ୪୨ ।।
କୋଦଣ୍ଡ କରେ ଧରି ମୃଗ ମାରି ଗଲି ।
ସୀତାରକ୍ଷଣେ ଲକ୍ଷ୍ମଣକୁ ଥୋଇ ମୁଁ ବାହାର ହୋଇଲି ୪୩
ମାୟାହରଣ ମୋତେ ଦେଖିଲାକ ଯହ୍ନିଂ ।
କହୁତ ଦୂର ସେ ପଳାଇଲାକ ତହୁଂ ।। ୪୪ ।।
ମୃଗକୁ ଯହୁଂ ମୁଁ ଧରି ନ ପାରିଲି ।
କୋଦଣ୍ଡେ ବାଣ ବନ୍ଧି ଦୁଇମୁଣ୍ଡ ଛେଦିଲି ।। ୪୫ ।।
ମୃଗର ଦୁଇମୁଣ୍ଡ ଯହୁଂ ଛିଡ଼ିଣ ପଡ଼ିଲା ।
ହାହା ଲକ୍ଷ୍ମଣ ବୋଲି ଶୃନ୍ୟେଣ ଡାକଦେଲା
[ ପ୍ରତକାର ଲକ୍ଷଣ ବୋଲି ଉଚ୍ଚେଣ ଡାକିଲା ] ।। ୪୬ ।।
ସେ ବୟାଣ ସୀତୟା ଶୁଣିଲାକ ଯେବେ ।
ଲକ୍ଷ୍ମଣକୁ ମୋର ତହିଂକି ପମନ୍ତ୍ରିଲାକ ତେବେ ।। ୪୭ ।।
ଏତେବେଳେ ଲକ୍ଷ୍ମଣ ଗୋଡ଼ାଇ ଗଲାକ ଯହିଁ ।
ତପସ୍ୱୀ ରୂପେ ରାବଣ ଅଇଲାକ ତାହିଂ ।। ୪୮ ।।
ଅନେକ ମାୟା କରି ବଚନ କହିଲା ।
ଦଇବ ନିର୍ବାଣେ ସୀତା ମୋହିତ ହୋଇଲା ।। ୪୯ ।।
ରେଖା ଡେଇଁ ଭିକ୍ଷା ଦେଲା ଜନେକକୁମାରୀ ।
ଯାନେ ବସାଇ ହରି ନେଲାକ ଦଶଗିରି ।। ୫୦ ।।
ଅଶୋକ ବଣିନ୍ୟେ ନେଇଣ ଥୋଇଲା ।
ତୁନେଣ ଅନେକ ଅସୁଖ ରଖାଇଲା ।। ୫୧ ।।
ମୃଗ ମାରି ମୁହିଂ ବାହୁଡ଼ି ଅଇଲି ।
ବାଟେ ଆସନ୍ତେ ଯେ ଲକ୍ଷ୍ମଣକୁ ଦେଖିଲି ।। ୫୨ ।।
ଦୁଇ ଭାଇ ଆସି ପର୍ଣ୍ଣକୋଠୀରେ ହୋଇଲୁ ।
ଜନେକକୁମାରୀଙ୍କି ଦେଖି ତ ନ ପାରିଲୁ ।। ୫୩ ।।
ଅନେକ ବନ କନ୍ଦରେ ଲୋଡ଼ିତ ନ ପାଇଲୁ ।
ପକ୍ଷୀଜଟା ଠାରୁ ସୀତାର ବାରତା ପାଇଲୁ ।। ୫୪ ।।

---

୪୪. ଦୂର—ଧୂର (ଖ) ।  ୪୭. ବୟାଣ—ବଚନ (ଖ) ।  ୫୧. ଅଶୋକ—ଓସେକ (ଖ) । ୫୩. ଏ ପଦର ପ୍ରଥମ ପାଦଟି କ ପୋଥିରେ ନାହିଁ ।
୫୪. ଲୋଡ଼ିତ ନ ପାଇଲୁ—ବୁଲିଲୁ (କ) ।

ପକ୍ଷୀ ଜଟାକୁ ଦହନ କରିଗଲୁ ।
ପିମ୍ପା ସରୋବରରେ ହନୁମନ୍ତକୁ ଦେଖିଲୁ ॥ ୫୫ ॥
ଋଷିମୁଖ ପର୍ବତେ ସୁଗ୍ରୀବରକୁ ଭେଟିଲୁ ।
ହନୁମନ୍ତ ଜମ୍ବୁ ଶତବାଳୀକି ଦେଖିଲୁ ॥ ୫୬ ॥
ସୁଗ୍ରୀବର ତୁଳେ ଆମ୍ଭେ ହୋଇଲୁ ମଇତ୍ର ।
ସୁଗ୍ରୀବର ଛଳେ ବାଳୀକି କଲୁ ପ୍ରାଣହତ ॥ ୫୭ ॥
ବାଳୀକି ମାରନ୍ତେ କପିସୈନ୍ୟ ହୋଇଲେ ମତେ ସାଥ ।
ବାନରସୈନ୍ୟ ଘେନଣ ମୁହିଂ ବାନ୍ଧିଲି ସେତୁବନ୍ଧ ॥ ୫୮ ॥
ଅନେକ ଯୁଦ୍ଧ କରି ରାବଣ ମାଇଲି ।
ସୀତାକୁ ମନର ବିକଳେ ଅଗ୍ନି ପରୀକ୍ଷ କରାଇଲି ॥ ୫୯ ॥
ତଦ୍ୟପି ମନରେ ପ୍ରତେ ନ ଗଲି ମହିଂ ।
ଦଶରଥ ନୃପତ ମତେ ସମର୍ପି ଗଲେ ତହିଂ ॥ ୬୦ ॥
ସୀତା ଘେନି ଅଯୋଦ୍ଧ୍ୟା ପୁରେ ପ୍ରବେଶିଲି ।
ତୁମ୍ଭେ ଜାଣ ନା ପାଟେଅଭିଷେକ ହୋଇଲି ॥ ୬୧ ॥
ନଗ୍ର ଲୋକେ ମୋତେ ପ୍ରତେ ନ ଗଲେ ।
ଦୋଗୃଣୀ ବୋଲି ମୋତେ ସମସ୍ତେ ବୋଇଲେ ॥ ୬୨ ॥
ତେଣୁ ସେ ମୁହିଂ ବହୁତ ଲଜ୍ଜା ପାଇଲି ।
ତୁମ୍ଭେ କେତେ କହିଲ ତୁମ୍ଭର ବୋଲ ନ କଲି ॥ ୬୩ ॥
ତେମନ୍ତେ ସୀତାକୁ ତେଜିଲି ମୁହାଂସ ।
ବନକୁ ପଠିଆଇଲି ପାଇଲି ମହାତ୍ରାସ ॥ ୬୪ ॥
ବଶିଷ୍ଠେ କହନ୍ତି ଶୁଣ ରଘୁକୁଳ ଈଶ ।
ଅନେକ ପ୍ରତିମା କରାଇବା ସୀତାର ସାଦୃଶ ॥ ୬୫ ॥
ଅନେକ ମଣିଗଣ ତାହାକୁ ଆଭରଣ କରିବା ।
ଅନ୍ତଃପୁର ଭିତରେଣ ବସାଇଣ ଥିବା ॥ ୬୬ ॥
ରାଜ୍ୟର ଚନ୍ତା ତୋର ଦେବ ଦେବାର୍ଚ୍ଚନ ।
କନେକ ପ୍ରତିମାକୁ ପୂଛିବୁ ସକଳ ବିଧାନ ॥ ୬୭ ॥
ଶୁଣିଣ ଶ୍ରୀରାମ କଲେକ ସନମତ ।
ବୋଇଲେ ଯୋ ତୋହର ବଚ୍ନର କରସି ତପୋବନ୍ତ ॥ ୬୮ ॥

---

୫୫. ଏ ପଦଟି ଖ ପୋଥିରେ ନାହିଁ । ୫୬. ଏ ପଦର ଶେଷ ପାଦଟି କ ପୋଥିରେ ନାହିଁ । ୫୭. ସୁଗ୍ରୀବର ତୁଳେ—ତାହାର ତୁଳେ (କ) । ୬୧. ଅଭିଷେକ—ଅବସେକ (ଖ) । ୬୩. ବୋଲ ନ କଲି—ବଚନ ଉପେଖିଲି (ଖ) ୬୫. ଅନେକ—କନେକ (ଖ)

ଶୁଣିଣ ବଶିଷ୍ଠେ ବିସ୍ମରନ୍ତି ମନେମନ ।
ମୋହର କଥା ନ କଲା କଉଶଲ୍ୟା ନନ୍ଦନ ॥ ୬୯ ॥
ସେ ପ୍ରତିମାକୁ ଦେଖି ସୀତାକୁ ଓହ୍ନଣି ସୁମରୁ ।
ଭ୍ରଣ ସୁମର ଯେ ଓହ୍ନଣି ଝୁରୁ ॥ ୭୦ ॥
ଶୁଦ୍ଧ ସୁବର୍ଣ୍ଣର ତୁଳ ପଞ୍ଚବିଂଶ ।
ଅନେକ ପ୍ରତିମା କରାଇଲେ ସୀତାର ସାଦୃଶ ॥ ୭୧ ॥
ବିଶ୍ୱକର୍ମା ରୂପେ ଗଢିଲ ବେଦପତି ।
ଦୃଷ୍ଟାସ୍ତୁ ସୀତା କି ନବଯୁବା ମୂରତି ॥ ୭୨ ॥
ନେତ ପଟନ ପରିହରଣ କରାଇଲେ ।
କନେକର ପ୍ରତିମା ଶ୍ରୀରାମର ସନ୍ନିଧ୍ୟେ ନେଇଣ ଥୋଇଲେ ॥୭୩॥
ଗଜଦନ୍ତ ଖଟେ କରନ୍ତେଣ ନିର୍ମାଣି ।
ତହିଁ ଉପରେ ପ୍ରତିମା ବସାଇଲେ ଆଣି ॥ ୭୪ ॥
ସୀତଙ୍କର ରୂପ ଅଶାସୃତେ ଚାହିଁ ।
ଦିନେ ଦିନେ ଶ୍ରୀରାମର ମନେଣ ସ୍ୱସ୍ତି ନାହିଁ ॥ ୭୫ ॥
ଅନ୍ନ ନ ରୁଚଇ ରାତ୍ରେ ନ ମାଡ଼ଇ ନିଦ ।
ରାତ୍ରି ଦିବସେ ଶ୍ରୀରାମ ମନେଣ ବିଷାଦ ॥ ୭୬ ॥
କାହାକୁ ହୃଦୟର ବ୍ୟଥା ନ କହଇ ।
କୋଟାନଳ ଯେସନେ ତରୁବର ଦହଇ ॥ ୭୭ ॥
ଏସନେକ ତିନି ଦିବସ ଗଲା ଯେବେ ।
ଶତ୍ରୁଘନ ହକାରି କହନ୍ତି ରାମ ତେବେ ॥ ୭୮ ॥
ତୁ ହୋ କନେଷ୍ଟ ମଧୁବନକୁ ଏବେ ଯାସି ।
ସେ ନଗ୍ରଜନଙ୍କୁ ପ୍ରତିପାଳିଣ ତୁ ଆସି ॥ ୭୯ ॥
ଯହିଁର ଅର୍ଥେ ତୋତେ ଅଣାଇଲି ।
ଏବେ ତ ସୀତଙ୍କାକୁ ଉପେକ୍ଷା ମୁଁ କଲି ॥ ୮୦ ॥
ଶ୍ରୀରାମର ଆଜ୍ଞାରେ ଶତ୍ରୁଘନ ବୀର ।
ଶୀଘ୍ରେଣ ମିଳିଲ ସେ ମଧୁବନପୁର ॥ ୮୧ ॥
ସୁବାହୁ ବନକୁ ଭରତକୁ ପଠିଆଇଲେ ।
ଲକ୍ଷ୍ମଣକୁ ମାତ୍ର ସନଧେଣ ଥୋଇଲେ ॥ ୮୨ ॥
କଦଳୀବନସ୍ତ୍ରେଣ ହନୁମନ୍ତ ରାଜ୍ୟ କରଇ ।
ଅଯୋଧ୍ୟାରୁ ଯହୁଁ ଗଲା ପବନକୁମାରଇ ॥ ୮୩ ॥

---

୭୨. ଦୃଷ୍ଟାସ୍ତୁ—ଦୃଢ (ଖ) । ମୂରତି—ଯୁବତି (କ) । ୭୩. କନେକର—ଅନେକ (ଙ) ୭୫. ଅଶାସୃତେ—ଅଶହୃତେ (କ), ଆନନ୍ଦିତ (ଖ) । ସ୍ୱସ୍ତି—ସୁଖ (ଙ) ।

ହନୁମନ୍ତ ଯେବେ ଶ୍ରୀରାମର ସନ୍ନିଧେଣ ଥାନ୍ତା ।
କିପାଇଁ ଋଷି ବର ସୀତାଙ୍କୁ ଉପେକ୍ଷନ୍ତା ।। ୮୪ ।।
ଦଇବର ନିର୍ବାଣ କି ହୋଇବ ଆନକୃତ
ବିଚିତ୍ର ରାମାୟଣ ଏ ଶୁଣିସି ପଣ୍ଡୁସୁତ ।। ୮୫ ।।
ଜୟ ତୁ ଶ୍ରୀଧର ଶ୍ରୀୟାଦେବୀର ପତି
[ ଜୟ ତୁ ଶ୍ରୀରାମ ସୀତାଦେବୀର ପତି ] ।
ସାନନ୍ଦେ ଶ୍ରୀଧର ଯେ ସୁମରଇ ନିତି ।। ୮୬ ।।
ଶ୍ରୀଧର ରୂପକୁ କରଇ ମୁହିଁ ଧ୍ୟାନ ।
ଅ(ନ)ନ୍ତପୁରେ ଶ୍ରୀଧର ନାମ ଅନୁପାମ ।। ୮୭ ।।
ଶ୍ରୀଧର ସୁମରନ୍ତେ ଭବଜଳୁ ତରି ।
ଶ୍ରୀଧର ନାମ ଯେ ଦତ୍ୟଙ୍କର ଅଇରି ।। ୮୮ ।।
ମନର ହରଷେ ଶ୍ରୀଧର ନାମ ସୁମରଇ ।
ତାହାକୁ ଅନୁଗ୍ରହ କରନ୍ତ ଶ୍ରୀଧରଇ
[ ତାହାକଇ ଶ୍ରୀଧର ଅନୁଗତ କରଇ ] ।। ୮୯ ।।
ଶ୍ରୀଧର ସୁମରନ୍ତେ ଭୁଗତି ମୁକତି ।
ସିଦ୍ଧେଶ୍ୱର ଦାସ ଶ୍ରୀଧର ପଦ୍ମରେ ଭଗତି ।। ୯୦ ।।

## ପରିତ୍ୟକ୍ତା ସୀତାଙ୍କ ଶୋକ

ଏସନେକ କଥା ଶୁଣି ଯୁଧିଷ୍ଠିରଙ୍କର ରାଣୀ ।
ଶିରେ କର ଦେଇ ପଞ୍ଚାଳନୃକାର ଦୁଲ୍ଲଣି ।। ୧ ।।
ହେ ମହାମୁନି ତୁମେ ମହତ ମହାଯତି ।
ତୁମ୍ଭେ ସେ ବୋଇଲୁ ନା ଧାର୍ମିକ ରଘୁପତି ।। ୨ ।।
ଅଦୋଷେ ସୀତୟାକୁ ଉପେକ୍ଷା ସେହୁ କଲେ ।
ବନେଣ ଲକ୍ଷ୍ମଣ ଗୁଡ଼ିଣଅଇଲେ ।। ୩ ।।
କି ରୂପେ ପୁରୁଷେ ନିରାପକ୍ଷ ହୁଅନ୍ତି ।
ପରର କଥା ଶୁଣିଲେ ରଘୁପତି ।। ୪ ।।
ଏକଇ ଯୁବତୀ ଗର୍ଭବାସ କାମିନୀ ।
କି ଦୋଷ କଲା ତହିଁ ଯେ ଜନେକନନ୍ଦନୀ ।। ୫ ।।
ଏ କଥା ଶୁଣି ଦୁଃଖିତ ମୋର ମନ ।
ସୀତାର କଥା ମତେ ଶୁଣାଇବା ତପୋଧନ ।। ୬ ।।

---

୮୫. ରାମାୟଣ—ରାବାଏଣ (ଖ) । ୮୮. ଦତ୍ୟ—ଦନୁଜ (ଖ) । ୯୦. ଭୁଗତି—ଭଗତି । ଭଗତି—ମତି (ଖ) । ୨. ମହତ—ମହନ୍ତ (କ) ।

ଯୁଧିଷ୍ଠି ପୁଚ୍ଛନ୍ତି କହସି ତପସ୍ୟାଳୀ ।
ସୀତାର କଥା ମତେ କହସି ବଖୋଳି ॥ ୭ ॥
ବଶେଷି କହ ମତେ ରାମାୟେଣ କଥିତ ।
ତୋହର ମୁଖୁ ଶୁଣି ହୋଇବ ପବିତ୍ର ॥ ୮ ॥
ଏକଥା ଶୁଣି (ବଦନ୍ତି) ମୃକଣ୍ଡ ନନ୍ଦନ ।
ସାବଧାନେ ଶୁଣ ହେ ଯୁଧିଷ୍ଠି ରାଜନ ॥ ୯ ॥
ତଲ୍ୟସ୍ତେ କର ଶୁଣ ବନ୍ଧୁଜନମାନ ।
ଶତେ ଜନ୍ମର କଷ୍ଟ ହୁଅଇ ବନାଶନ ॥ ୧୦ ॥
ଆଗତ ଜନ୍ମେ ଉତ୍ତମ କୁଳେ ହୋଇ ଜାତ ।
ଦସ୍ୟୁ କରଇ ତାହାକୁ ରତ୍ନାକର ଦୋହତି ॥ ୧୧ ॥
ସ୍ତ୍ରୀ ଖୀ ହୋଇ ଯେବେ ସୀତାର ବନବାସ ଶୁଣନ୍ତି ।
ଦୁର୍ଭାଗୀ ନୁହନ୍ତି ସେ ପୁନ୍ୟବତୀ ହୁବନ୍ତି ॥ ୧୨ ॥

ତୁମ୍ଭ ଗୋ ଦ୍ରୌପଦୀ ରାମାୟେଣ ଶୁଣିଲୁ ।
ଦ୍ରୋପଦର ହସ୍ତାଣୋଇ ପୁରୁଷଙ୍କୁ ମୁକତ କରାଇଲୁ ॥ ୧୩ ॥

ମନବାଞ୍ଛା ପୂର୍ଣ୍ଣ ହୋଉ ତୋହର ଆଶ ।
ଯେ ତୋତେ ମନ୍ଦ ଚିନ୍ତଇ ସେ ଯିବଇ ପ୍ରାଣେନାଶ ॥ ୧୪ ॥

ଦ୍ରୋପଦୀ ବୋଲଇ ତୁମ୍ଭର ବାକ୍ୟ ସିଦ୍ଧ ହୋଉ ।
ଅନ୍ଧରାଜାର ଶତେ ପୁତ୍ର ବେଗେ କ୍ଷୟେ ଯାଉ ॥ ୧୫ ॥

ଆବର କ୍ଷୟେ ହୋଉ ଗାନ୍ଧାରୀଦେବୀର ଭାଇ ।
ଖଳ ଦୁଷ୍ଟ ଜନେ ବେଗେଣ କ୍ଷୟେ ଯାଇ ॥ ୧୬ ॥

ତେବେ ସେ ମହାମୁନି ସରଇ ମୋହର ମାନ ।
ଏହା ହୁଂ ମହର୍ଷି ନ ବାଞ୍ଛଇ ମୁହିଂ ଆନ ॥ ୧୭ ॥

ମାରକଣ୍ଡେ କହନ୍ତି ଶୁଣସି ସାବଧାନେ ।
ଲକ୍ଷ୍ମଣ ସୀତଯାକୁ ଛାଡ଼ି ଅଇଲେକ ବନେ ॥ ୧୮ ॥

ଏଗାର ଦଣ୍ଡ ଉପରେ ଆଦିତ୍ୟ ହୋଇ(ଥି)ଲା ।
ଅନେକ ପ୍ରତମା ଶ୍ରୀରାମ ଯହୁଂ କଲ ॥ ୧୯ ॥

ମନର ବଇରାଗେ ତହୁଂ ଗଲକ ଦିବାକର ।
ତକ୍ଷଣେ ହୋଇଲା ବେଳ ତିନ ପ୍ରହର ॥ ୨୦ ॥

---

୧୨. ପୁନ୍ୟବତୀ—ସଂପୂର୍ଣ୍ଣ (କ) । ୧୫. ଯାଉ—ହୋଉ (କ) । ୧୮. ସରଇ—କରଇ (କ) । ୧୯-୨୧. ଖ ପୋଥିରେ ୧୯ ପଦର ଶେଷ ପାଦ, ୨୦ ପଦ ଓ ୨୧ ପଦର ପ୍ରଥମ ପାଦ ନାହିଁ ।

ଶରୀର ଶ୍ରମେ ସତୀ ନିଦ୍ରା ଯାଇଥିଲା ।
ନୟନ ମଳିଣ ଜାନେକୀ ଚଉକଡ଼ ଗୃହଂଲା ॥ ୨୧ ॥
ବସିଲ ଠାବରେ ଦେଖିଲାଇ ଲକ୍ଷ୍ମଣ ନାହିଂ ।
ଚମତ୍କାର ହୋଇଲା ସତୀ ଚଉକଡ଼ ଗୃହିଂ ॥ ୨୨ ॥
ଭାଳଇ ଅବା ପାଣି ଆଣି ପୁଷ୍କରଣୀକି ଗଲା ।
ଲକ୍ଷ୍ମଣ ନାମ ଧରି ଉଚ୍ଛେଣ ଡାକ ଦେଲା
[ ଲକ୍ଷଣ ଲକ୍ଷଣ ବୋଲି ସ୍ୱୟଂ ତିନ ଡାକ ଦେଲା ] ॥ ୨୩ ॥
ଏକଇ ଯୁବତୀ ମୋତେ ଛାଡ଼ି କେମନ୍ତେ ଗଲୁ ।
କନ୍ଦମୂଳ ନିମନ୍ତେ ଅବା ଗହନେ ପଶିଲୁ ॥ ୨୪ ॥
ବେଗକୁ ମୋହର ସନଧ୍ୟକୁ ଆସ ।
ତୋତେ ନ ଦେଖି ମୁହିଂ କଲଇ ମନେ ତ୍ରାସ ॥ ୨୫ ॥
ଲକ୍ଷ୍ମଣର ସମାସ୍ୟା ଯହୁଂ ନ ପାଇଲା ମହାସତୀ ।
ଶଙ୍କିତ ହୋଇଣ ଗୃହାଂଇ ଚଉକଡ଼ ॥ ୨୬ ॥
ବୋଇଲା ଯଦ୍ୟପି ଲକ୍ଷ୍ମଣ ଜୀବନ୍ତେଣ ଥାଇ ।
ମୋତେ ଉପେକ୍ଷି କି ସେ ଆନ କତକି ଯାଇ ॥ ୨୭ ॥
ଜନଗମ୍ୟ ନାହିଂ ଅଗମ୍ୟ ବନ ଘୋର ।
କେଉଣ ଜୀବେ ଲକ୍ଷ୍ମଣକୁ କଲେକ ଆଧାର ॥ ୨୮ ॥
ଆହା ଲକ୍ଷ୍ମଣ ତୁହି ରୂପେଣ ମଦନ ।
ତିନି ଜଗତେ ଖଣି ତୋତେ ନାହିଁ ସରସମାନ ॥ ୨୯ ॥
ସପୂର୍ଣ୍ଣ ଚନ୍ଦ୍ରମା ଜାଣି ମୁଖ ତୋର ଦିଶଇ ।
ନୟନ ବେନି ଉପାମା ଓଲକାପଦ୍ମ ସାଦ୍ରିଶଇ ॥ ୩୦ ॥
ପୁଷ୍ପଧନୁ ଯେସନ ଭ୍ରୁଲୁତା ପରମାଣି ।
ନାସିକା ଦିଶଇ ତୋର ଗରୁଡ଼ ଜାଣି ॥ ୩୧ ॥
ଶ୍ରବଣେ କୁଣ୍ଡଳ ତୋର ଦିଶଇ ଚଳଦଳ ।
ଓଷ୍ଠ ବିକାଶଇ ସୁସଞ୍ଚ ପକୁ ଫଳ ॥ ୩୨ ॥
କ୍ଷୁଦ୍ର ମୋତି ଜାଣି ଯେ ଦିଶଇ ଦନ୍ତପନ୍ତ ।
ଉଜ୍ଜଳ ହୀରା ଯେସନେ ଶୋଭଇ ଦିବ୍ୟଖାତ ॥ ୩୩ ॥
ଗୃଚର ଚକୁର କୁଟିଳ ଦିବ୍ୟ କେଶ ।
ଲୁବୁଧେ ମଧୁକରେ ନ ତେଜନ୍ତି ନିଜ ପାଶ ॥ ୩୪ ॥
ଅକଣ୍ଟେକ ମୃନାଲ ସାଦ୍ରିଶ ବେନି ଭୁଜ ।
ଚମ୍ପାକଢ଼ି ଯେସନେକ ପଞ୍ଚାନ୍ତର ପାଣିଜ ॥ ୩୫ ॥

---

୨୧. ମଳିଣ—ମଳୀନ (କ) । ଜାନେକୀ—ଜାନ୍ୟକ (କ) । ୨୪. କନ୍ଦମୂଳ—ଗନ୍ଦମୂଳ (କ) । ୩୧. ପରମାଣି—ପରଣାମି । ୩୩. କ୍ଷୁଦ୍ର—ଖ୍ୟୁଦ୍ର ।

ରଜତ କୁମୋଦ ଜାଣି ତୋହର ପସ୍ତ୍ରତଳି ।
ଜାଣିକରି ଯେସନେକ ଦଂଶନ ଓହ୍ଲା ॥ ୩୬ ॥
ଉଲଟ କଦଳୀ ପ୍ରାୟେ ଦିଶଇ ତୋହର ଜାନୁ ।
ସ୍ୱରୂପ ସାଦୃଶ ରୂହ୍ମ ଦିଶୁ ପୁଷ୍ପଧନୁ ॥ ୩୭ ॥
ମୁହିଂ ନଲକ୍ଷଣୀ ଏସନେକ କର୍ମସ୍ଥାନ ।
ମୋହର ରୂଲେ ଆସି ଏଥେ ହୋଇଲୁ ବନାସ୍ଥାନ ॥ ୩୮ ॥
ଏକଇ ଯୁବତୀ ମୋତେ ଉପେଖିଣ ଗଲୁ ।
କେବଣ ଜୀବଙ୍କର ମୁଖେ ପତ୍ରିଣ ପ୍ରାଣ ଦେଲୁ । ୩୯ ॥
ମୁହିଂ ଦ୍ୱାଟେଣୀ ନଷ୍ଟି ନ୍ତ୍ରେ ନଦ୍ରାଗଲି ।
ତୋହର ମରନ୍ତେଣ ଦେଖି ନ ପାରଲି ।
[ ଏ ତୋହର ବଚନ ମୁଁ କର୍ଣ୍ଣରେ ନ ଶୁଣିଲି ] ॥ ୪୦ ॥
ଏକଇ କାଷ୍ଠ କେସନେ ଅଯୋଧ୍ୟାକୁ ଯିବ ।
ଏକଇ ନାସ୍ଥ କେସନେ ଅଯୋଧ୍ୟାକୁ ଯିବ ।
ଦୁଗମ ଅଗମ୍ୟ ପଥ କେସନେକ ଗୁଲିବ ॥ ୪୧ ॥
ଯଦ୍ୟପି ଅନୁସର ପାରଇ ଅବା ଯାଇ ।
ଲକ୍ଷ୍ମଣ କାହିଂ ଅଛୁ ବୋଲି ପଚ୍ଚରିବେ ତୋହର ଆଇ ॥ ୪୨ ॥
କକସ୍ଥା କଉଶୁଲ୍ୟା ପାଇବେ ମନେ ତ୍ରାସ ।
ସକଳ ସ୍ତ୍ରିଙ୍ଗମାନେ ମୋତେ କରିବେ ଉପ(ହା)ସ୍ୟ ॥ ୪୩ ॥
କିସ ବୋଲି ମୁହିଂ ତାହାଙ୍କର ଅଗ୍ରତେଣ କହିବ
ବହୁତ ସ୍ତ୍ରିଙ୍ଗଙ୍କର ମୁଖ କେମନ୍ତେଣ ଗୃହିଂବ ॥ ୪୪ ॥
ସମସ୍ତ ଶାଶୁ ଇ ମୋତେ କିସ ବୋଲିବେ ।
ତିନ ଭଗ୍ନୀ ମୋହର ଦେହ ଧରି ନ ପାରିବେ ॥ ୪୫ ॥
ମୋହର ଭଗ୍ନୀର ନାମ ଉର୍ମିଳା ।
ସେ କାମେନୀ ତ ବିଧବା ହୋଇଲା ॥ ୪୬ ॥
ଅକଳଙ୍କ ଉର୍ମିଲାର ମୁଖ ଗୃହିଂବ କେମନେ ।
ଧିକାର କରିବେ ମୋତେ ସକଳ ଗୁରୁଜନେ ॥ ୪୭ ॥
ମରଣୁ ଅଧିକ ପାଇବଇ ଲାଜ
କେଣେ ଗଲୁ ବାବୁ ସୁମିତ୍ରାଙ୍କ ତନୁଜ ॥ ୪୮ ॥

---

୩୭. ସାଦୃଶ—ସାରକ୍ଷ (ଖ) । ୩୮. କର୍ମସ୍ଥାନ—ଜନ୍ମସ୍ଥାନ (ଖ) । ୪୧. ଦୁଗମ—ଦୁଗମ୍ୟ (କ) । ପଥ—ବନ (ଖ) । ୪୩. ଏ ପଦଟି କ ପୋଥିରେ ନାହିଁ । ୪୪–୪୬. ଏ ତିନ ପଦ ଖ ପୋଥିରେ ନାହିଁ । ୪୭. ଏ ପଦଟି କ ପୋଥିରେ ନାହିଁ । ଅକଳଂକ ଉର୍ମିଲା—ଅଳଙ୍କାକ ଭୂମିବା (ଖ) ।

ଭୁଜବଳ ପ୍ରତାପ ତୁମ୍ଭ ଅତୁଳାଇତ କୀର୍ତ୍ତି ।
ସମରେ ଶଜତା ତୁମ୍ଭ ଅଟ ବୀର ମୂର୍ତ୍ତି
[ ସମରେ ସକଳ ଜୋଦ୍ଧା ଦୃଶିଅ ତୁମ୍ଭ ମୁଣ୍ଡ ] ॥ ୪୯ ॥
ଚଉଦ ବରଷ ତୁମ୍ଭ ସ୍ୱାମୀର ତଟେ ଥିଲ ।
ଭୃତ୍ୟପଣେ ସ୍ୱାମୀର ମନ ରଞ୍ଜିଲ
[ ଭୃତ୍ୟ ଜାଣି ଶ୍ରୀରାମର ଚିତ୍ତ ହରିଲ ] ॥ ୫୦ ॥
କାମ କ୍ଷୁଧା ନିଦ୍ରା ତେଜିଲ ବନବାସ ।
ଦୁର୍ଭର ଇନ୍ଦ୍ରଜିତକୁ ତୁମ୍ଭ ପ୍ରାଣେ କଲ ନାଶ ॥ ୫୧ ॥
ଲଙ୍କାର ସମରେ ତୁମ୍ଭ କେତେ ଦୈତ୍ୟ ନ ମାଇଲ ।
କାହାର ହାତରେ ଏବେ ବନେ ପ୍ରାଣ ଦେଲ
[ କେବଣ ଜୀବର ହାତେ ବାବୁ ପ୍ରାଣ ହରାଇଲ ] ॥ ୫୨ ॥
ଯେଠି ଡାକ ଦିଅଇ ଜନକ ନନ୍ଦିନୀ
[ ଉଠଇ ବସଇ ସେ ଜନକନନ୍ଦିନୀ ] ।
କେଣେ ଗଲ ଲକ୍ଷ୍ମଣ ବୀରବର ମଣି ॥ ୫୩ ॥
କାନ୍ଦଇ ମହାସତୀ ଦଶ ଦିଗ ଚାହିଁ
ମୁହିଂ ପାପିଷ୍ଠ ଜୀବନ ଅଛୁ କାହିଂପାଇଁ ॥ ୫୪ ॥
ଏସନେକେ ଉଠଇ ବସଇ ତରୁ ତଳେ ।
ବେନି ନୟନରୁ ଲୁହ ବହଇ ଶରୀରୁ ଝାଳ ଗଳେ ॥ ୫୫ ॥
ଚକିତ ଚକିତ ହୋଇଣ ଶଶୀମୁଖୀ ।
ଚକିତ ହୋଇ ଚଉକଣ୍ଠ ଗଗନକୁ ଗୃହାଂଇ ନିରେଖି ॥ ୫୬ ॥
ବୃକ୍ଷ ଡାଳେ ପତ୍ର ଖଣ୍ଡି ଏକ ଦେଖଇ ।
ହସ୍ତରେ ଧରି ସେ ପତ୍ରଖଣ୍ଡି ଉପଲେଖଇ ॥ ୫୭ ॥
ଲକ୍ଷ୍ମଣ ସଙ୍କେତ ପତ୍ରରେ ଲେଖନ ।
ତାହା ଦେଖି ସୀତୟା ଅସ୍ଥିର କଲା ମନ ॥ ୫୮ ॥
ଅକ୍ଷର ଦିଶଇ ମୁକ୍ତାପନ୍ତି ଜାଣି
ଅବଶେଷ କରି ତାହା ପଢ଼ଇ ରାମରାଣୀ ॥ ୫୯ ॥

---

୫୧. ବନବାସ—ହରିମାନ (ଖ) ତୁମ୍ଭ ପ୍ରାଣେ କଲୁ ନାଶ—ତୁ କଲୁ ନିଧନ (ଖ) ୫୩. ଡାକ—ଜାଡ଼ । ୫୪-୫୬. ଏହି ତିନି ପଦ ବଦଳେ ଖ ପୋଥିରେ ରହିଛି : "ରୋଦଇ ମହାସ୍ୟନ୍ତି ଗୃହଂଣ ଦଗ ଗୃରି । ବିଧାତା ସୁମରି ସେ ବୋଲଇ ରାମନାରୀ ॥ ମୁହିଂ ନିଲକ୍ଷଣୀ ଯିବି ଆର କାହିଂ । ଏସନେକ ବୋଲି ରୋଦଇ ବଇଦେହୀ ॥ ଆକୁଳେ ରୋଦଇ ସେ ପଡ଼ିଣ ମହୀତଳେ । ବେନି ଲୋଚନେ ଲୁହ ଗଳଇ ଅଶ୍ରୁଜଳେ ॥ କ୍ଷଣେ ଉଠଇ କ୍ଷଣେ ବସଇ ଶଶୀମୁଖୀ । ଚଉକଣ୍ଠ ଗଗନେ ଗୃହାଂଇ ନିରେଖି ॥" ୫୯. ଏ ପଦ ବଦଳେ ଖ ପୋଥିରେ ଅଛି "ଅକ୍ଷରପନ୍ତି ଦିଶଇ ମୁକୁତାର ଜ୍ୟୋତି । ଅବଶେଷ କରିଣ ତାହା ପଢ଼ଇ ସତୀ" ।

ପଏପଡ଼ି ଲକ୍ଷ୍ମଣେର ତହିଂ ମୁହାଂସ ଗ୍ଭଡ଼ିଲା ।
ବୋଇଲା ଏଥେ ଅଣି ମୋତେ ନବାଖିଣ ଗଲା ॥ ୬୦ ॥

ଯାହା ଅରଜିଛୁ ଭୁଞ୍ଜିବି ମୁଁ ତାହା ।
ଅଦୋଷେ ଦୟା ଯେବେ ଉପେକ୍ଷିଲେ ମୋହର ନାହା ୬୧

ମୁହିଂ କଲକ୍ଷଣୀ କର୍ମା ପରକୁ ଦୋଷ ଦେବ ।
ଯାହା ଅର୍ଜିଅଛୁ ଅବଶ୍ୟ ଭୁଞ୍ଜିବ ॥ ୬୨ ॥

ଏକ ଅକଗୁଣ ଲକ୍ଷ୍ମଣ କଲା ।
କହୁ କର୍ମା ମୋତେ ଗ୍ଭଡ଼ିଣ ନ ଗଲା ॥ ୬୩ ॥

ଏତକ ହ ତାଙ୍କର ଅଛଇ ନା ଦୋଷ ।
ସ୍ୱାମୀର ଆଗ୍ୟାଂ ପୁଣ କରିବ ସେ କସ ॥ ୬୪ ॥

ମଲା ପ୍ରାୟେ ବୁଦ୍ଧି ବକଳ ହୋଉଥିଲା ।
ପଣ ପଡ଼ି ସେ କପଟ ବୋଲି ଜାଣିଲି ॥ ୬୫ ॥

ମୁହିଂ ଯେବେ ସତୀ ପଥରେ ଭଗତ ।
ପରପୁରୁଷକୁ ଯେବେ ନ ବଳଇ ମୋହର ମତ ॥ ୬୬ ॥

ଗୁରୁ ଗଉରବେ ଭଗତ ମୋହର ଯେବେ ।
ଅଯୋଦ୍ଧ୍ୟାକୁ ଲକ୍ଷ୍ମଣ ଯାଉ ଏଥୁ ଶୁଭେ ॥ ୬୭ ॥

ଶ୍ରୀରାମଙ୍କ ଆଗେ ଏ କଥା ଯାଇ କହୁ ।
ବାଟେ ଯାନ୍ତେଣ ତାକୁ ବିଘ୍ନ ଜାତ ନୋହୁ ॥ ୬୮ ॥

ଶ୍ରୀରାମଙ୍କ ଆଗେ ବାରତା ମୋହର କହୁ ।
ଶୁଣି କରି ରଘୁନାଥ ଯେ ଅରଷ୍ଟି ଶାନ୍ତ ହୋଉ ॥ ୬୯ ॥

ଏବେ ମୁହ ଏଥି କସ କରିବ ।
ବାଟ ନ ଜାଣଇ କେହୁଣ କତ ଯିବ ॥ ୭୦ ॥

ରବିର କିରଣ କଉନ ଭୂମିର ବ୍ୟାପିଲା ।
ସନ୍ଧ୍ୟାଭାଗ ଦିଗ ଯେ ଅନ୍ଧାର ଆଗୁଡିଲା ॥ ୭୧ ॥

---

୬୩–୬୯· ଏହି ସାତଟି ପଦ ବଦଳେ ଖ ପୋଥିରେ ଅଛି—"ଯଦ୍ୟପି ଗୁରୁଜନେ ସେବା କରଇ ମୁହିଂ ଶ୍ରମର ପଯ୍ୟରୁ ଆନରେ ଇଚ୍ଛା ନାହିଂ । ମୋହର ଯେବେ ଅଛଇ ପୂର୍ବର ପାପଦୋଷ । ଶୁଭେ ଯାଉ ଲକ୍ଷଣ ଶ୍ରୀରାମର ପାଶ ।" ୭୦. ଏଥି କସ—କେବଣ କୃତ (ଖ) । ବାଟ—ପନ୍ଥ (ଖ) । ୭୧. ବ୍ୟାପିଲା—ପ୍ରବେଶ (ଖ) ଭାଗ ଦିଗ ଯେ ଅନ୍ଧାର ଆଗୁଡିଲା—ଭାଗେ ଅନ୍ଧାର ବ୍ୟାପଇ ଦଶଦିଶ ।

# ସୀତାଙ୍କୁ ବନ୍ୟଜନ୍ତୁଙ୍କ ସହାୟତା

ଭୟେ କର ସେ ଠାବେ ବସିଲାକ ସତୀ
[ ଶଙ୍କରେ ଶଙ୍କା ଯେ ବସିଲ ଦେବୀ ସତୀ ] ।
ବନସ୍ତର ଜୀବେ ଅସି ସନ୍ନଧେ ମିଳନ୍ତୁ ॥ ୧ ॥
କପି କେଶରୀ ଗଣ୍ଡା ଗଇଲ ।
କୁରଙ୍ଗ ବରହା ଝିଙ୍କ ଶାର୍ଦ୍ଦୋଳ ॥ ୨ ॥
କୋକାଦନ ବଲିଆ ବ୍ରାଘ ମର୍କଟି ।
ସୀତାର ପାରୁଶ୍ୱେ ଉଭା ପାଇଲେକ ଆସି ॥ ୩ ॥
ଦେଖି ମହାସତୀ ମହାଭୟ କଲ ।
ମନ ଛନଛନ ହୃଦୟ କମ୍ପିଲ ॥ ୪ ॥
ନିଜ ଶିରେ ସତୀ ଦେଲ ନେଇ ହସ୍ତ ।
ଆଜ ଜୀବେ ମୋତେ ଭକ୍ଷିବାକ ଏଥ
[ ଯେ ମୋହର ଲଲଟେ ଅଛଇ ଲେଖନ ।
ଆଜ ଏ ବନଯେବେ କରିବେ ଭୋଜନ ] ॥ ୫ ॥
ସାହା ସଙ୍ଗ ତ ଆନ ଲୋକ ନାହିଁ ।
ଏହାଙ୍କୁ ଡରିଲେ ଯିବି ମୁହିଂ କାହିଂ ॥ ୬ ॥
ଏତେ ବୋଲି ଦେବୀ ମଥା ପୋତି ବସିଲ ।
ବନଜୀବଙ୍କର କଣ୍ଠେ ସରସ୍ୱତୀ ବସିଲ ॥ ୭ ॥
ଆଧାର ଅର୍ଥେଣ ବିକମି ଅଇଲେ ।
ସତୀର ମୁଖ ଦେଖି ମୋହେଣ ବଶ୍ୟ ହୋଇଲେ ॥ ୮ ॥
ସନ୍ନଧ ହୋଇଣ ପଗ୍ଚରନ୍ତି ବନଜୀବମାନେ
ଏକଇ ଯୁବତୀ କମ୍ପା ଅଇଲୁ ଏ ବନେ ॥ ୯ ॥
ଏ ବନ ଘନେ ପଶି କେସନେକ ଅଇଲୁ ।
କେବଣ ଭରସା ତୋହର ଭୟେଖିତ ନ କଲୁ ।
କି ଅବା ମହାମ୍ଭାଣୀ ବାଟବଣା ହୋଇଲୁ ॥ ୧୦ ॥
ମୁଖ ଗୋଟି ଦିଶଇ ତୋର ଶରଦଚନ୍ଦ୍ର ଜ୍ୟୋତି ।
କାହାର ଦୁହିତା ତୁହି କେ ତୋହର ପତି ॥ ୧୧ ॥

---

୨. କପି କେଶରୀ—ହରିଣ ବାହୁଟିଆ (ଖ) । ୩. କୋକାଦନ—କୋକନଦ ।
୩–୪. ଖ ପୋଥିର ପାଠ ସାର୍ଥକ ନୁହେଁ । ୮. ବିକମି—ଆକେସିଣ (ଖ) ।
୯. କମ୍ପା ଅଇଲ ଏ ବନେ—ଗୋ କାହିଁକି ଗବନେ (ଖ) ୧୦. ଏ ପଦର
ପ୍ରଥମ ପାଦ କ ପୋଥିରେ ଓ ତୃତୀୟ ପାଦ ଖ ପୋଥିରେ ନାହିଁ । ୧୧. ମୁଖ-
ଗୋଟି—ବଦନ (ଖ) ୧୧. ଜ୍ୟୋତି—ଯୋତି ।

କେସନେକ ହେ ପୁରୁଷ ଉପେଖିଲ ତୋତେ ।
ଦେହେ ପ୍ରାଣ ସେ ଧରିବ କେମନ୍ତେ ॥ ୧୨ ॥
ଦେବକୁମାରୀ ପ୍ରାୟେ ତୋତେ ଦେଖିଲୁ ।
ବନଦେବତା ରୂପ ତୋହର ପ୍ରତକ୍ଷେ ମଣିଲୁ ॥ ୧୩ ॥
କହସି ଗୋ ରୂପବନ୍ତୀ ଭୟେ ନ କର ମନ ।
ପରକୁ ହତ୍ୟା କଲେ କିସ ପ୍ରୟୋଜନ ॥ ୧୪ ॥
ସୀତାୟେ କହଇ ଶୁଣସି ବନବାସୀ ।
ପିତାର ନାମ ମୋହର ଜନେକ ମହାଋଷି ॥ ୧୫ ॥
ରଘୁବଂଶେ ଦଶରଥ ବୋଲି ଧାର୍ମିକ ନୃପତି ।
ମହାପ୍ରତାପୀ ସେ ତୈଲୋକ୍ୟେଣ ବିଖ୍ୟାତ ॥ ୧୬ ॥
ତାହାର ଜେଷ୍ଟ ତନୟେ ଶ୍ରୀରାମଚନ୍ଦ୍ର ନାମ ।
ବୀରବର ଗଞ୍ଜନ କନ୍ଦର୍ପ ଅନୁପାମ ॥ ୧୭ ॥
ସୀତାୟେ ନାମ ମୋହର ତୈଲୋକ୍ୟେ ବିଖ୍ୟାତ ।
କ୍ଷତ୍ରି ବର ସୁନ୍ଦର ଏ ଦେହର ଅଧିପତି ॥ ୧୮ ॥
ରାଜ୍ୟ କରୁଥିଲୁ ଆମ୍ଭେ ଅଯୋଧ୍ୟା ନଗରୀ ।
[ ମୋହର ବଲ୍ଲଭ ସେ ପ୍ରାଣର ଅଧିକାରୀ ] ।
ଲୋକତ କଥା ଶୁଣି ମୋତେ ଦୋଷ ଧରି ॥ ୧୯ ॥
ଦୟା ଓପ୍ରଧ ମୋତେ କିଛୁ ହିଁ ନ କଲେ
[ ମାୟା କଥା ଶୁଣି କୋପ ଯେ ମୋତେ କଲେ ] ।
କପଟେ ମୋତେ ବନକୁ ପଠିଆଇଲେ ।
[ କପଟକୂଟ କରି ମୋତେ ବନବାସ ବିହିଲେ ] ॥ ୨୦ ॥
ସ୍ୱାମୀର କନେଷ୍ଟ ଲକ୍ଷ୍ମଣ ନାମେ ବୀର
ସେ ମତେ ଆଣିଲା ଗହନ ବନ ଘୋର ॥ ୨୧ ॥
ଏ ତରୁତଳେ ହୋଇଲଇ ଯେତେବେଳେ ।
ଶରୀର ଆଲସ୍ୟେ ମୋହର ନିଦ୍ରା ଲଗିଲା ତେତେବେଳେ ॥୨୨
ସନଧେ ବସାଇ ନିଦ୍ରା ମୁହିଂ ଗଲି ।
ଚେତି ଲକ୍ଷ୍ମଣକୁ ମୁହିଂ ନ ଦେଖିଲି ॥ ୨୩ ॥
ବନଜୀବେ ଖାଇଲେ ବୋଲି ଚିନ୍ତା କରୁଥିଲି ।
ପକ୍ଷେକ ଡାଳେ ଲମ୍ବାଇଥିଲା ତାହା ମୁଁ ଦେଖିଲି ॥ ୨୪ ।
ତେବେ ଯେ ଲକ୍ଷ୍ମଣକୁ ଛାଡ଼ିଲି ଚିନ୍ତା ମୁହିଂ ।
ଶୁଣ ହେ ବନଜୀବେ ତୁମ୍ଭଙ୍କୁ କହିଲଇ ॥ ୨୫ ॥

୧୨-୧୪. ଏ ତିନ ପଦ ଖ ପୋଥିରେ ନାହିଁ । ୧୫. ପିତାର ନାମ—ପିଅର ଅଟନ୍ତି (ଖ) । ୧୮. ଏ ପଦଟି ଖ ପୋଥିରେ ନାହିଁ । ୨୧. ଗହନ—ଅରଣ୍ୟ (କ)

ଆବର ତାହାଙ୍କୁ ଚିନ୍ତା ମୋହର କିସ ।
ନ କହି ଗ୍ଳଣ୍ଡି ମୋତେ ଗଲ ସୁମିତ୍ରାର ଶିଷ୍ୟ ॥ ୨୭ ॥
ସେ ଦୁରାତ୍ମା ନ କହି ଗ୍ଳଣ୍ଡି ମୋତେ ଗଲ ବନ ।
ସେ ଲକ୍ଷ୍ମଣର ପଛେ ଗୋଡ଼ାଇଲେ ସରି ପାରେ କି ଧନ
ଏବେ ରଜନୀ ହୋଇଲା ପ୍ରବେଶ
କାହିଂକି ଯିବି ମୁହିଂ ନ ଜାଣଇ ଧିଗ ଦେଶ ॥ ୨୮ ॥
ବିଶେଷେ ଲଙ୍କା କୁଳକୁ ଲଙ୍ଘନ !
ଧିକ ଯାଇ କିନା ମୋହର ଜୀବନ ॥ ୨୯ ॥
ଏ ଦେହ ଥିବାର ମୋହର କିସ ପ୍ରୟୋଜନ ।
ଯେ ପାର ଜୀବେ ମୋତେ କରସି ଭକ୍ଷପାନ ।
[ ଆବର ଜୀବନକଇ କିସ ମୋର ଆଶ ।
କେବଣ ଜୀବ ଇଚ୍ଛା କରଇ ମୋତେ ଗ୍ରାସ ॥ ୩୦ ॥
ଶୁଣିଣ ବନଜୀବେ କରନ୍ତି ମହାଭୟେ ।
ବାତେଣ କଦଳୀପତ୍ର ଯେସନ ସବୁ କଂପଇ କାୟେ ॥୩୧॥
ଏକ ଆରକ କର୍ଣ୍ଣରେ କହନ୍ତି !
ଶ୍ରୀରାମର ଭାରିଯା ଏ ସୀତୟା ମହାସତୀ ॥ ୩୨ ॥
ସତୀଙ୍କର ମଧ୍ୟେ ଯାହାର ନାମ ଆଗେ ଧରି ।
ସର୍ବ ସୁଲକ୍ଷଣୀ ଏ ଜନେକ କୁମାରୀ ॥ ୩୩ ॥
ସତୀଙ୍କର ମୁଖକମଳ ଦେଖିଲୁ ଆମ୍ଭେ ଯେବେ ।
ପଶୁ ଜନ୍ମରୁ ମୁକତ ହୋଇବା ଆମ୍ଭେ ତେବେ ॥ ୩୪ ॥
ଆମ୍ଭଙ୍କୁ ହି ପାର କରିବାର ନିମନ୍ତେ ।
ଷଡ଼ି ବର ସୁନ୍ଦର ପଠିଆଇଲେ ଏଥେ ॥ ୩୫ ॥
ଏ ମହାସତୀକି ଆମ୍ଭେ ସେବା କରୁଣ ଥିବା ।
ଜନେକ ଋଷିଙ୍କର ଆଶ୍ରମେ ନେଇ ଦେବା ॥ ୩୬ ॥
ଏସନେକ ବନଜୀବେ ସମସ୍ତେ ଭାଳିଲେ ।
ସତୀର ପଯ୍ୟରେ ଓଳଗି କରଯୋଡ଼ିଣ କହିଲେ ॥ ୩୭ ॥
କିପାଇଂ ନରେଖ ବଚନ କହିଲ ରାମନାରୀ ।
ନଷ୍ଟି ନ୍ତେ ବିଶ୍ରାମ କର ଆମ୍ଭେ ହୋଇବୁ ପାହାରୀ ॥ ୩୮ ॥

---

୨୮. ଜାଣଇ ଧିଗ ଦେଶ—ଦିଶଇ ଦଶ ଦିଶ (ଖ) । ୩୧. କରନ୍ତି···କାୟେ—"ଶଙ୍କା କରନ୍ତି ମନେ । ଅବନୀ ଛୁଇଁ ନେସ ଧରନ୍ତି ବେନି କର୍ଣ୍ଣେ" (ଖ) ୩୨–୩୭. ଏହି ଛ ପଦ ଖ ପୋଥିରେ ନାହିଁ । ୩୮. ନରେଖ—ଅନୀତ (ଖ) । ପାହାରୀ—ପରିବାରୀ (ଖ) ।

ହ୍ୱସ୍ରଦବା ତୋହର ଗୋ ସନ୍ନିଧେଣ ଥିବୁ ।
ପିଅର ଅଶ୍ରମକୁ ତୋତେ ବାଟ କଢ଼ାଇଣ ନେବୁ ॥ ୩୯ ॥
ଶୁଣିଣ ମହାସତୀ ମନୁ ଶଙ୍କା ତେଜିଲେ ।
ବନ୍ଦିଣ ବ୍ରହ୍ମାଣୀ ରୁଦ୍ରାଣୀ ପୂଅଇଲେ ॥ ୪୦ ॥

## ବାଲ୍ମୀକି ଆଶ୍ରମରେ ସୀତା

ଆଦିତ୍ୟ ଉଦୟେ ତହୁଂ ଗମନ କରଇ ମହାସତୀ ।
ଆଗ ପଛ ପାରୁଶ୍ୱେ ବନଜୀବେ ଥାନ୍ତି ॥ ୧ ॥
ସଧୀରେ ଚାଲଇ ଜନକର ନନ୍ଦନୀ ।
ଜାତ ପଦ୍ମିନୀ ଦେବୀ ମରାଳ ଗମନୀ ॥ ୨ ॥
କେବଣ ଦିନେ ଚାଲଇ ଦୁଇ କୋଶ
[ କେନ୍ନ ଦିବସେଣ ଗମଇ କେନ କୋଶ ] ।
ଯୋଜନେ ଗମନ୍ତେ ପାବଇ ସେତ୍ରୁ ପ୍ରାସ ॥ ୩ ॥
ମହା ଝରା ଗ୍ରୀଷ୍ମ ଅତି ପ୍ରଖର ।
ବାଟ ଚାଲନ୍ତେ ବୋଧିବ ଗଳଇ ପସ୍ୱର ॥ ୪ ॥
ଗ୍ରୀଷ୍ମ ଋତୁ ସରିଲା ବରଷା ପ୍ରବେଶ ହୋଇଲା ।
ମେଘ ଦୂରୁଦୂରୁ ପାଣି ବରଷିଲା ॥ ୫ ॥
ଧାରା ଶ୍ରାବଣ ବୃଷ୍ଟି ମହାଜଳ ।
ବରଷା ବଞ୍ଚଇ ସତୀ ବୃକ୍ଷଙ୍କର ତଳ ॥ ୬ ॥
ଏମନ୍ତେ ଚାରି ମାସ ସତୀ ବନସ୍ତେ ବୁଲିଲା
ବାଲ୍ମୀକି ମହରଷିଙ୍କର ଆଶ୍ରମେ ମିଳିଲା ॥ ୭ ॥
ପର୍ଣ୍ଣକୋଠୀ ଦେଖି ସତୀ ହରଷ କଲା ମନ ।
ସୀତାଙ୍କୁ ଦେଖି ଚହ୍ନିଲେ ବାଲମୀକ ତପୋଧନ ॥ ୮ ॥
ପଣନ୍ତ ପ୍ରସାରି ସତୀ ଓଳଗଇ ପସ୍ୱର ଧରି ।
ଚରଣ ଧୂଳି ଆଣି ଶିରରେ ଲେପନ କରି ॥ ୯ ॥
ମଥା ଲୁହାଇଂ ଦେବୀ ଉଭା ହୋଇଲା ।
ଦେଖି ମହାସତୀର ଶୋକ ବସିଲା ॥ ୧୦ ॥

୩୯. ହ୍ୱସ୍ରଦବା—ରଜନୀସମଏ (ଖ) ୧. ତହୁଂ...ଥାନ୍ତି—"ସିତ୍ୟା ଉଠିଣ ଗବନ । ସନଧେ ଗୋଡ଼ାଇଛନ୍ତି ବନଜୀବମାନ ॥" (ଖ) । ୨. ମରାଳ—ମଉଳ (ଖ) । ୩. ଯୋଜନେ—ଜୁଣେକ (ଖ) । ୪-୫. ଏ ଦୁଇ ପଦ ଖ ପୋଥିରେ ନାହିଁ । ୭. ଚାରିମାସ...ମିଳିଲା—"ଚତୁର୍ମାଶ ଗମନ୍ତେଣ ସ୍ୟତ । ଆଶ୍ରମେ ଭେଟିଲେ ଯାଇ ବାଲମିକ ମହାସତ" (ଖ) ୯-୧୦. ଧରି...ବସିଲା—"ଧରଣି ଶୋଇ । ଉଭା ହୋଇଲା ସ୍ୟତ ଅବନୀକ ଗୃହଂ" (ଖ) ।

ବେନି ନୟନରୁ ଲୁହ ଗଳଇ ଡଳାହଳା ।
ଘଠଘଠ ପଡ଼ଇ ଯେହ୍ନେ ମୁକୁତାର ଫଳ ॥ ୧୧ ॥
ଦେଖିଣ ମହାଋଷି ଆସନୁ ଉଠିଲେ ।
ମଥା ଅଙ୍ଗଂସ ହମେ କଲ୍ୟାଣ ବାଞ୍ଛିଲେ ॥ ୧୨ ॥
କମଣ୍ଡଳୁ ପାଣି ଆଣି ଦେଲେ ତପସ୍ୟାଳୀ ।
ବୋଇଲେ ମୁଖ ପଖାଳ ଗୋ ଜନେକ ଦୁଲ୍ଲାଳୀ ॥ ୧୩ ॥
ଯେ ତୋହର କଷ୍ଟ ଆଇ ପଛେ ମୋତେ କହ ।
ତୋତେ ଦେଖି ମୋହର ବିକଳ ହୋଏ ଦେହ ॥ ୧୪ ॥
ଏବେ ପର୍ଣ୍ଣକୁଟୀରେ ବିଶ୍ରାମ କର ଗୋ ମାତ ।
ଜନକଙ୍କୁ ଅଧିକ ମୁଁ ଅଟଇ ତୋହର ତାତ ॥ ୧୫ ॥
ଋଷିଙ୍କର ବଚନେ ସୀତା ଶୋକ ସମ୍ଭାଳିଲା ।
କମଣ୍ଡଳୁ ପାଣି ଆଣି ପୟର ପଖାଳିଲା ॥ ୧୬ ॥
ପୟର ଧୋଇ ଅଞ୍ଚଳେ ପୋଛଇ ମହାସତୀ ।
ପତ୍ରକୋଠୀ ଘରେ ପଶଇ ବଇକୁଣ୍ଠ ମତି ॥ ୧୭ ॥
କନ୍ଦମୂଳ ଆଣି ଦେଲେ ବ୍ରହ୍ମସୁତ ।
ଭୁଞ୍ଜିଣ ମହାସତୀ ସନ୍ତୋଷ କଲ ଚିତ୍ତ ॥ ୧୮ ॥
ବନଜୀବନ୍ତ ହକାର କହନ୍ତି ମହାମୁନ୍ୟ ।
ତୁମ୍ଭେ ଯାଅରେ ଏବେ ଯେ ଯାହାର ସ୍ଥାନ ॥ ୧୯ ॥
ପଶୁ ଜନ୍ମରୁ ତୁମ୍ଭେ ରେ ପାର ହୋଇଲ ।
ଶ୍ରୀରାମର ଭାରଯାକୁ ଯେବେ ଏଥକୁ ଆଣିଲ ॥ ୨୦ ॥
ଗୃଶଯୁଗେ ଇନ୍ଦ୍ର ଯେ ଆସ୍ଥାନରେ ବସିବ ।
ତହୁଂ ମାନବ କୁଳେ ଉତ୍ତମେ ଉପୁଜିବ ॥ ୨୧ ॥
ମନୁଷ୍ୟ ଜନ୍ମ ହୋଇ କରିବ ଦାନ ପୁନ୍ୟ ।
ତେବେ ସେ ବସିବ ବଇକୁଣ୍ଠ ଭୁବନ ॥ ୨୨ ॥
ବାଲ୍ମୀକଙ୍କର ବଚନ ଶୁଣି ବନଜୀବେ ଗଲେ ।
ନିଜ ବନସ୍ତେ ପ୍ରବେଶ ହୋଇଲେ ॥ ୨୩ ॥
ଏଥୁ ଅନନ୍ତରେ ବାଲ୍ମୀକ ତପଗୃଷ୍ଟ ।
ସୀତାକୁ ପଗ୍ଗରନ୍ତି ସନ୍ଧେ ହକାରି ॥ ୨୪ ॥

---

୧୧. ଘଠଘଠ ପଡ଼ଇ—ଗୋଟିଗୋଟି (ଖ) । ୧୨...୩୬ ଏ ପଦର ପାଠ ଖ ପୋଥିରେ ସାମାନ୍ୟ ଭିନ୍ନ କିନ୍ତୁ ତାହା ସ୍ଥାନେ ସ୍ଥାନେ ନଷ୍ଟ ହୋଇ ଥିବାରୁ ସାର୍ଥକ ନୁହେଁ । ୧୮. ମହାସତୀ—ବିପ୍ରସେନ (କିପ୍ରସେନା) । ୧୯-୨୩. ଏ ପାଞ୍ଚ ପଦ ଖ ପୋଥିରେ ନାହିଁ ।

କସ ଅର୍ଥେ ମାଗୋ ବନକୁ ଅଇଲୁ ।
ମାଗୋ ଏ ଘୋର କାନନେ ତୁ କାହାକୁ ନ ଆଣିଲୁ ।। ୨୫
ରତ୍ନ ଅଲଙ୍କାର ତୋର ଲେଚ୍ଛାଲୁ ଏକଇ ବସନ ।
ଏକସରେ ଅଇଲୁ ଯେସନେ ଇତର ଜନ ।। ୨୬ ।।
ଏସନେକ ଚରଣ କେସନେକ ଯୁଗତ ।
ଆବର ବଶେଷେ ତୁ ଗର୍ଭିଣୀ ଯୁବତୀ ।। ୨୭ ।।
ସୀତସ୍ନା କହନ୍ତ୍ର ଶୁଣସି ତପୋଧନ ।
କହ୍ନ ନ ପାରଇ ମୋହ୍ନର ଶରୀରେ ବସଇ ଶୋକମାନ ।।୨୮
ଭୂତ ଭବିଷ୍ୟ ତୋତେ ସକଳ କଥା ଦୃଶ ।
ତୁହ୍ମ ଜାଣୁ ନା ମୋହ୍ନର କେବଣ ଦୋଷ ।। ୨୯ ।।
ଙ୍ଖେ ତପୋଧନ ତୁ ପରମ ମହାଗ୍ୟାଂତା ।
ଏ ଭବ ସାଗର (ତରିବା)କୁ ତୁହ୍ମ ସେ ବିଧାତା ।। ୩୦ ।।
ମୋହ୍ନର ଗ୍ୟାଂନେ ତ ଦୋଷ କଲି ନାହ୍ନିଂ ।
କପାଇଁ ବନ ପଠିଆଇଲେ ମୋହ୍ନର ସାଇଁ ।। ୩୧ ।।
ଏଥିର କଥା ତ ଅଗୋଚର ମୋତେ ।
ଙ୍ଖେ ତପରୃଷୀ ମୁହ୍ନିଂ ପରୁରଇ ତୋତେ ।। ୩୨ ।।
ସୀତସ୍ନାର ବଚନ ବାଲ୍ମୀକ ଶୁଣିଲେ ।
ଯୋଗ ଲସ୍ଥ କରି ଧ୍ୟାନେଣ ବସିଲେ ।। ୩୩ ।।
ଅନନ୍ତ କୋଟି ବ୍ରହ୍ମାଣ୍ଡର ଚରିତ ଦେଖିଲି ।
ଯୁଗଶେଷ ନମନ୍ତେ ପଦ୍ମଯୋନି ମିଳାଲି ।। ୩୪ ।।
ସୀତସ୍ନା ଶ୍ରୀରାମର ସନଧେ ଯେବେ ଥାଇ ।
ଦଶରଥ ସୁତ ଯହ୍ନିଂ ଲକ୍ଷ୍ମୀ ନ ତେଜଇ ।। ୩୫ ।।
ଅମର କଲପକାସ୍ଥା ରଘୁକୁଳମଣ୍ଡନ ।
କ୍ଷତ୍ରି ବର ସୁନ୍ଦର ବୀରବର ପଣ ।। ୩୬ ।।
ସୀତାର ସମୀପେ ଅଯୋଦ୍ଧ୍ୟାପୁରେ ଥିଲେ ।
ସକଳ ଲୋକେ ମୁକତ ଶ୍ରୀରାମ ମୁଖ ଦେଖିଲେ ।। ୩୭ ।।
ତେଣେ ସେ ଦେବଗଣେ ସରସ୍ୱତୀକ ପମନ୍ତ ।
ଶ୍ରୀରାମର ହୃଦେ ବସି ଶାରଦା କଲି ବିକୃତ ।। ୩୮ ।।
ନଗ୍ର ଲୋକେ ସମସ୍ତେ ହେ ବିପକ୍ଷ ହୋଇଲେ ।
ସୀତସ୍ନା ଦୋଗୃଷ୍ଣ ବୋଲି ସମସ୍ତେ ଘୃଷିଲେ ।। ୩୯ ।।

---

୩୭. ଖ ପୋଥିରେ ପାଠ : ପତ୍ନୀ ସମେତେ ରାମ ଅଯୋଧାରେ ଥାନ୍ତେ । ସକଳ ମୁକତ ଶ୍ରୀରାମ ଦେଖନ୍ତେ । ୩୮. ଶାରଦା—ଶାରଳା (ଖ) ।

ସେ କଥା ଶ୍ରୀରାମ ସହି ନ ପାରିଲେ ।
ତେମନ୍ତେ ସେ ସୀତାଙ୍କୁ ବନନ୍ତେ ନିବାସିଲେ ॥ ୪୦ ॥
ଧ୍ୟାନରେ ଜାଣିଲା ବାଲ୍ମୀକ ମହାମୁନ୍ୟ ।
ସୀତାଙ୍କୁ ମୁଣ୍ଡ ଗୃହିଁ କହନ୍ତି ତପୋଧନ ॥ ୪୧ ॥
ଶ୍ରୀରାମର ଘିଣ୍ଣା ଭ୍ରଷ୍ଟ ଏବେ ହୋଇଲା ।
ତେମନ୍ତେ ସେ ତୋତେ ଏତେ କଷ୍ଟ ଦେଲା ॥ ୪୨ ॥
ଦଣ୍ଡ ଭାରିଯାକୁ ଯେବେ ଅଦୋଷେ ଦୋଷ ଧରଇ ।
ଲକ୍ଷ୍ମୀ ବିଜେ ନ କରଇ ଗୋ ତାହାର ପୁରକଇ ॥ ୪୩ ॥
ତୁହି ମୋହର ମାତା ଗୋ ବଇରାଗ ନୋହିବୁ ।
ମୋହର ଆଶ୍ରମେଣ ତୁହି ନିଷ୍ଟନ୍ତେଣ ଥିବୁ ॥ ୪୪ ॥
ସୀତାଙ୍କୁ କହଇ ଶୁଣସି ବିଶେଷ ।
ଦେହି ଅଣକାତ ମୋର ଶରୀରେ ସାତମାସ ॥ ୪୫ ॥
ବସ୍ତ୍ର ନ ଅଣିଲୁ ବୋଲି ପୁଚ୍ଛିଲୁ ଯେ ମୋତେ ।
ବନକୁ ଅଇଲି ବସ୍ତ୍ର ମାଗିବି କେମନ୍ତେ ॥ ୪୬ ॥
ମୁହିଂ ବ୍ରାହ୍ମଣୀ ଯେ ମୋହର ମୂଳ ଦୋଷ ।
ପ୍ରସାଦ ମାଗିଲି ମୁହିଂ ଯିବଇ ବନବାସ ॥ ୪୭ ॥
ଏହି କଥା ତାର ବିଶ୍ୱରକୁ ଯୋଗାଇଲା ।
ଲକ୍ଷ୍ମଣର ତୁଳେ ମୋତେ ବନକୁ ପଠିଆଇଲା ॥ ୪୮ ॥
ଯେବଣ ଯୁବତୀ ତୀର୍ଥ ଯାତ୍ରା ଯାଇ ଲୋଡ଼ନ୍ତି ।
ପୁରୁଷ ଦୟା ଥିଲେ କି ଘରୁ ବାହାର କରି ଦେନ୍ତି ॥ ୪୯ ॥
ଅଳଙ୍କାର ବସ୍ତ୍ର ମୋର ସମସ୍ତ ଘେନିଲା ।
ଅନ୍ତଃପୁର ଭିତରୁ ବାହାର କରି ଦେଲା ॥ ୫୦ ॥
ମୁହିଂ ଯେବେ ଏ କଥା କପଟ ବୋଲି ଜାଣନ୍ତି ।
ଅନ୍ତଃପୁରୁ କିମ୍ପା ବାହାର ହୁଅନ୍ତି ॥ ୫୧ ॥

୩୯–୪୦. ଖ ପୋଥିରେ ନାହିଁ । ୪୧–୪୫. ଏହି ପାଞ୍ଚ ପଦର ପାଠ ଖ ପୋଥିରେ : "ଧ୍ୟାନେଣ ଜାଣିଲେ ତାହା ବାଲ୍ମୀକ ମହର୍ଷି । ଯେଣେ ସେ ସୀତା କଇ ଶ୍ରୀରାମ ନିବାସି ॥ ଜାନକୀ ବଦନ ଗୃହିଁ ବୋଲନ୍ତି ମାହାମୁନି । ଶୁଣସି ବଚନରେ ଜନେକ ନନ୍ଦନୀ ॥ ଶ୍ରୀରାମଙ୍କୁ ଶିରୀହୀନ ହୋଇଲା ଗୋ ଆଇ । ତେଣୁ କରି ଦାଶରଥି ଦୁଃସହ କଷ୍ଟ ଦେଇ ॥ ଏବେ ତୁ ଗୋ ମନେଣ ଆନ ନ ଧର । ନିଷ୍ଟନ୍ତ ହୋଇ ଥାଆସି ମୋର ପୁର ॥ ବୋଲନ୍ତି ଜନ୍ମସେନ ଶୁଣସି ବିଶ୍ୱାସେ । ଶରୀରେ ଆସକତ ମୋର ଗର୍ଭରେ ସାତ ମାସ ॥" ୪୬–୫୨. ଏ ସାତ ପଦ ଖ ପୋଥିରେ ନାହିଁ ।

ରାମର ବୋଲେ କି ମୋତେ ପାରିଲ ବାହାର କରି ।
ଏତେ ଦୁଃଖ ପାଇଲି ମୁହିଂ ଆପଣେ ନ ବିଗୁଣି ।। ୫୨ ।।
ଏ ତୋହର ଆଶ୍ରମେ ଯୁବତୀ ଜନ ନାହିଁ ।
ଏକସରେ ମହାତ୍ମା ତୁ ଯୋଗମାର୍ଗ ଦେଖି ।। ୫୩ ।।
ମୋହର ଥିଲେ ତୁ ଦୁଃଖ ପାଇବୁ ମହାମୁନୀ ।
ପିତା ଘରକୁ ମୋତେ ନିଅସି ତପୋଧନ ।। ୫୪ ।।
ବନଜୀବମାନେ ପିତା ଘରକୁ ନେଉଥିଲେ ।
ତୋହର ଆଜ୍ଞାରେ ସେ ବାହୁଡ଼ିଣ ଗଲେ ।। ୫୫ ।।
ଏକା ହୋଇ ଯାନ୍ତି ନ ଜାଣଇ ପଥ ।
ବାଟ କଢ଼ାଇ ମୋତେ ନିଅସି ତପୋବନ୍ତ ।। ୫୬ ।।
ସୀତାର ବଚନ ଶୁଣି କହନ୍ତି ମହର୍ଷି ।
କେତେହେକ ଦିବସ ଏଥି ବିଶ୍ରାମ କରସି ।। ୫୭ ।।
ଏ ତୋହର ଅଙ୍ଗଶର୍ମିଭାରି କର ଗୋ ଉତ୍ସାହ ।
ତଦନ୍ତରେ ନେମି ଜନେକର ପାଶ ।। ୫୮ ।।
ଶୁଣିଣ ଜାନକୀ ଯେ ସନମତ କଲି ।
ବାଲମୀକଙ୍କର ଆଶ୍ରମେ ଦଶଦିନ ବିଶ୍ରାମିଲା ।। ୫୯ ।।
ରାତ୍ର ଦିବସେ ରାମ ନାମ ସୁମରଇ ।
ନାନାଦି ଚିନ୍ତାମାନଙ୍କରେ ନିଦ୍ରା ନ ମାଡ଼ଇ ।। ୬୦ ।।

## ସୀତାଙ୍କ ବିଦେହ ଯାତ୍ରା

ଏ ମନ୍ତେ ଦଶ ଦିବସ ଗଲା ଯହୁଁ ।
ବାଲମୀକ ଋଷିଙ୍କି ବିନୋପନ୍ତି ତହୁଁ ।। ୧ ।।
ହେ ତପୋଧନ ପିତାର ଭୁବନକୁ ଚାଲି ଯିବା ।
ମୋତେ ତହିଂ ନେଇ ପଛେ ତୁମ୍ଭେ ଏଥକୁ ଆସିବା ।। ୨ ।।
ସୀତସ୍ଥାର କଥା ଯହୁଁ ବାଲମୀକ ଶୁଣିଲେ ।
ଦଣ୍ଡ କମଣ୍ଡଳ ଘେନ ବାହାର ହୋଇଲେ ।। ୩ ।।

---

୫୩–୫୪. ଦୁଇ ପଦ ବଦଳେ ଖ ପୋଥିରେ ଏକ ପଦ : "ଏ ତୋହର ମନ୍ଦିରେ ନାହିଁ ସ୍ତ୍ରି ଶିଜନ । ପିତାର ମନ୍ଦିରକୁ ମୋର ନିଅସି ତପୋଧନ ।।" ୫୫–୫୬. ଏ ଦୁଇପଦ ଖ ପୋଥିରେ ନାହିଁ । ୫୭. କରସି—ମହାସତୀ (କ) । ୫୮. ଅଙ୍ଗଶର୍ମି—ଗର୍ଭର (କ) । ୫୯–୬୦. ଏ ପଦଗୁଡ଼ିକର ପାଠ ଖ ପୋଥିରେ ନଷ୍ଟ ହୋଇଛି । ୧–୧୭. ଖ ପୋଥିର ପାଠ ନଷ୍ଟ ହୋଇଛି ।

କାଢ ଖଣନ୍ତି ପାଖେ ବିଭୂତି ଆଧାର ।
କାଠମାଳ ରୁଦ୍ରାକ୍ଷ ଗଳାରେ ଆଣି ଭର ॥ ୪ ॥
କଟିରେ ଭୂଷଣ ବ୍ରାଘଚର୍ମ କାଛଟା ।
କର୍ଣ୍ଣେଣ ତମ୍ବାର କୁଣ୍ଡଳ ଶିରେ ବିଶାଳ ଜଟା ॥ ୫ ॥
ଆଗେ ବାଲ୍ମୀକି ପଛେ ଜନେକ କୁମାରୀ ।
ଅଗମ୍ୟ ବନେ ଯାନ୍ତି ପନ୍ଥ ଅନୁସରି ॥ ୬ ॥
ଦୁର୍ଗମ ଅରଣ୍ୟ ବିଶାଳ ଶାଳ ଶାଖ ।
ଗୃଲନ୍ତେ ମହାସତୀ ପାଇଲୁ ବିମୁଖ ॥ ୭ ॥
ପ୍ରାତ ସ୍ନାହାନ ମୁନି ନିତ୍ୟକର୍ମ ସାରି ।
ଶଗ୍ରୀରେ ପବିତ୍ର କରଇ ଜନେକକୁମାରୀ ॥ ୮ ॥
ଏକଇ ବସ୍ତ୍ର ଭୁଲେ ଅଯୋଧ୍ୟାରୁ ଗଲା ।
ନିତି ପଖାଳନ୍ତେ ସେ ଚିରି ହୋଇଗଲା ॥ ୯ ॥
ଏକ ବସ୍ତ୍ର ନାଇ (ପିନ୍ଧି) ସ୍ନାହାନ କରଇ ନିତି ।
ଅଧେକ ପିନ୍ଧଇ ଅଧେ ପଖାଳଇ ଘିତି ॥ ୧୦ ॥
ବେଲ ପ୍ରହରକେ ନିତ୍ୟକର୍ମ ସାରଇ ଯେବେ ।
ଜପ ସାରି ଋଷି ଆଗ ହୁଅନ୍ତି ତେବେ ॥ ୧୧ ॥
ପଛେଣ ଗୋଡ଼ାଇ ଗୃଲଇ ସୀତାୟୀ ।
ଗର୍ଭ ଭାରରେ ତାହାର ବିକଳ ହୋଏ କାୟୀ ॥ ୧୨ ॥
କିଛୁ ବେଲ ଥାଇ ବିଶ୍ରାମ କରନ୍ତି ।
ଫଳ ଆହାରେ ଆତ୍ମାକୁ ତୋଷନ୍ତି ॥ ୧୩ ॥
ଶରଦ ସରିଲା ହୋଇଲା ହେମ ମାସ ।
ବାଟ ଗୃଲନ୍ତେନି ଅଶୀଏ ଦିବସ ॥ ୧୪ ॥
ସତଷଠି ଯୋଜନ ତହିଂକ ବହୁଦେହୀପୁରୀ ।
ତହିଂ ତପ କରଇ ଜନେକ ତପଗୃରୀ ॥ ୧୫ ॥
ସିଂହାମଣ୍ଡପ ଅଛଇ ଏକ କୋଶ ।
ବିଶାଳ ଶାଳଶାଖା ଲାଗନ୍ତି ଆକାଶ ॥ ୧୬ ॥
ସେ ତରୁ ତଳେ ସତୀ ବସିଲେକ ଫୁଟି ।
ବାଲ୍ମୀକ ମହଋଷି ଗୃହିଂଲେ ଲେଉଟି ॥ ୧୭ ॥

୫. ବ୍ରାଘ—ବ୍ରାଘ୍ର । ୭. ଅରଣ୍ୟ—ଅନଳ । ଶାଳ—ମାଳ । ୧୦. ଘିତି—ନିତି । ୧୩. ଫଳ—କନ୍ଦମୂଳ (ଖ) ୧୫. ତପ—ବିଶ୍ରାମ (ଖ) ୧୬. ସିଂହାମଣ୍ଡପ—ସିଧମଣ୍ଡଳ (ଖ) । ୧୭. ସତୀ—ସଖି ।

## ଲବକୁଶ ଜନ୍ମ

ସୀତାୟୀ ବସିବାର ସନ୍ଧ୍ୟା ମୁନି ଦେଖିଲା ।
ସନ୍ଧ୍ୟେ ମହର୍ଷି ଯାଇଣ ହୋଇଲା ॥ ୧ ॥
ଦଣ୍ଡ କମଣ୍ଡଳ ଥୋଇ ବସିଲେ ମହାଯତ ।
ମୟୂରପକ୍ଷୀ ବିଞ୍ଚଣା କରେ ଧରଣ ବିଞ୍ଚନ୍ତି ॥ ୨ ॥
ଯାହା ସେ ବିଧାତା କର(ନ୍ତି) ତ ନିର୍ମିତ ।
ଜନେକ ଦୋହିତା ପେଟ ବଥାଇଲା ଭୂରତ ॥ ୩ ॥
ବଇକୁଲ୍ୟ କହଇ ସୀତାୟୀ ମହାସତୀ ।
ମୋତେ ପ୍ରତକାର କହସି ମହାଯତ ॥ ୪ ॥
ପେଟ ବଥାଇ ମୋହର କରିବଇ କିସ ।
କ୍ଷଣେ କ୍ଷଣେ ଅନ୍ଧାର ମୋତେ ହୋଉଛି ଦଶଦିଶ ॥ ୫ ॥
ବାଲମୀକ କହନ୍ତି ଶୁଣ ଗୋ ମୋହର ମାଏ ।
ପିତାର ରାଜ୍ୟ ଅସି ସନ୍ଧେ ଆସି ହୋଏ ॥ ୬ ॥
ସଧୀର ହୋଇ ରହିଲ ଏଥୁ ଯିବା ।
ଏହିକ୍ଷଣି ତୋହର ପିତା ପୁରେ ହୋଇବା ॥ ୭ ॥
ଶୁଣିଣ ସୀତାୟୀ ଉଠିଲେ ତତ୍ପର ।
ମୁହିଂ ବୁଲାଇ ରହିଲ ନ ପାରି ବସିଲା ମହାସତୀ ॥ ୮ ॥
ମୂର୍ଚ୍ଛାଗତ ହୋଇ ସତୀ ଅଚେତନ ହୋଇଲା ।
ଗ୍ୟାଂନ ହାରି ମହାସତୀ ଧରଣୀ ଉପରେ ଲୋଟିଲା ॥ ୯ ॥
ମୁଖେ ପାଣି ସିଞ୍ଚିଲେ ବାଲମୀକ ତପୋଧନ ।
କ୍ଷଣକେ ଜାନକୀ ପାଇଲା ଚେତନ ॥ ୧୦ ॥
ବସି ନ ପାରଇ ସତୀ ଉଚେଣ ରାବ ଦେଇ ।
ରାମ ରାମ ସ୍ମରି କାନ୍ଦଇ ବଇଦେହୀ ॥ ୧୧ ॥
କପାଇଂ ହେ ନାଥ ମୋତେ ଏତେକ ଦୁଃଖ ଦେଲୁ ।
ଲୋକଙ୍କର କଥା ଶୁଣି ଶରୀରେ କୋପ କଲୁ ॥ ୧୨ ॥
ତୁହି ଯେ ପୁରୁଷ ଧର୍ମିକ ମହତ ଜନ ।
ବନକୁ ପଠାଇଲ କେବଣ କାରଣ ॥ ୧୩ ॥
ଏକଇ ସତୀ ମୋତେ ଶାଶୁଇ ଅଛନ୍ତି ।
ତାହାଙ୍କର ଥାନ୍ତେ ମୁହିଂ ପାଇଲି ଏତେ ଶାସ୍ତି ॥ ୧୪ ॥

---

୧. ଏହିଠାରୁ ଖ ପୋଥିର ପାଠର ଗୁରୁତ୍ୱପୂର୍ଣ୍ଣ ତାରତମ୍ୟକୁ ହିଁ ଗ୍ରହଣ କରାଯାଉଛି । ୨. ଦଣ୍ଡ—ତ୍ରିଦଣ୍ଡ (ଖ) । ୪. କହସି—କରସି (ଖ)

ଏ ମୋହର ଦୁଃଖ କେହି ନ ଦେଖିଲେ ନୟନେ ।
ତୋହର ବଲ୍ଲଭି ହୋଇ ବୁଲଇ ମୁହିଂ ବନେ ॥ ୧୫ ॥
କ୍ଷଣେ କାନ୍ଦଇ କ୍ଷଣେ ମୂର୍ଚ୍ଛା ଯାଇ ସତୀ ।
ସୀତାକୁ କହନ୍ତି ବାଲ୍ମୀକ ମହାଯତି ॥ ୧୬ ॥
ଶୁଣ ଗୋ ମହାସତୀ ମୋହର ବଯାଣ ।
ରୋଦନ କରିବାର ଏବେ ନୁହଇ କାରଣ ॥ ୧୭ ॥
ଦୁଃଖ ପାଇଲେ ସେ ଧୈର୍ଯ୍ୟ ହୋଇ ଯେବେ ।
ଆପାଦ ବଥା ପାର ହୋଇବଇ ତେବେ ॥ ୧୮ ॥
ତୋହର କାନ୍ଦିଲେ କେ ନେନମ ଏଥି ପ୍ରାସ ।
ମହତେ ଦୁଃଖ ସହି ପାରନ୍ତି ବିଧାତାର ବଶ୍ୟ ॥ ୧୯ ॥
ନ ରୋଦ ନ ରୋଦ ଗୋ ଜନେକ ଦୋହିତ ।
ଏହିକ୍ଷଣି ପୁତ୍ର ତୋହର ହୋଇବାକ ଜାତ ॥ ୨୦ ॥
ଜିଘ୍ନହେମୀ କହଇ ଶୁଣ ତପସାଇଁ ।
ପ୍ରସବର ଧର୍ମ କଥା ନ ଜାଣଇ ମୁହିଂ ॥ ୨୧ ॥
ସ୍ତିରି ଜଣେକ ତ ନାହିଂ ମୋହର ସଙ୍ଗ ।
କେ ତପିଷ୍ଟ କେ ଧରିବ ମୋହର ଅଙ୍ଗ ॥ ୨୨ ॥
ସୀତାର ବଚନ ଶୁଣି କହନ୍ତି ତପଗୁରି ।
ପ୍ରସବ ହୁଅସି ସିଆଡ଼ି ଲତା ଧରି ॥ ୨୩ ॥
ଶୁଣିଣ ଜାନେକୀ ଯେ ବିକଳିତ ଚିତ୍ତେ ।
ସିଆଡ଼ି ଲତା ଧଇଲେ ବେନି କରପଦ୍ମେ ॥ ୨୪ ॥
ମାର୍ଗଶିର ଶୁକ୍ଳପକ୍ଷ ପଞ୍ଚମୀର ଦିନ ।
ରୋହିଣୀ ନକ୍ଷତ୍ର ଗୁରୁବାର ବିଦ୍ୟମାନ ॥ ୨୫ ॥
ଆଦିତ୍ୟ ଅର୍ଦ୍ଧ ନବ ଦଣ୍ଡ ଉଦିତ ।
ମାହେନ୍ଦ୍ର ଲଗ୍ନେ କୁମର ହୋଇଲାକ ଜାତ ॥ ୨୬ ॥
ବାଳ ସୂର୍ଯ୍ୟ ପ୍ରାୟେକ ଦିଶଇ ଦିବ୍ୟ ଜ୍ୟୋତି ।
ଦେଖି ହରଷ ସୀତାୟୀ ମହାସତୀ ॥ ୨୭ ॥
ଅବନୀରେ ପଡ଼ି ତନୟ ରୋଦନ କଲା ।
ପୁଣି କି ଜିଘ୍ନସେନୀର ପେଟ ବଥାଇଲା ॥ ୨୮ ॥

---

୧୫. ବଲ୍ଲଭି—ବଲଭ । ୧୭. ଶୁଣ—ମୁଣ । ୨୧. ଜିଘ୍ନହେମୀ—ବିଘ୍ନସେନ । ୨୫. ଉଭୟ ପୋଥିରେ ପଞ୍ଚମୀ ପାଠ ରହିଛି; ତାହା ପୂର୍ଣ୍ଣିମୀ ହେଲେ ନକ୍ଷତ୍ର ସହ ମେଳ ସମ୍ଭବ ହେବ । ୨୬. ଲଗ୍ନେ—ଯୋଗେ (ଖ) । ୨୮. ଜିଘ୍ନସେନୀ—ବିଘ୍ନ-ସେନ (କ) ।

ଆତ୍ମା ଅସ୍ଥିର ହୋଇଲେ ଜନେକ କୁମାରୀ ।
ବାଲ୍ମୀକ ମହର୍ଷିଙ୍କି ସେନେହେ ପଗ୍ଭରି ॥ ୨୯ ॥
ହେ ମହର୍ଷି ଶୁଣ ମୋହର ବଚନ ।
ପୁତ୍ରେକ ଉପୁଜିଲା ବାଳଅର୍କ ଯେସନ ॥ ୩୦ ॥
କସ ଅର୍ଥେଣ ବଥାଇ ପୁଣି ପେଟ ।
ଏଥକୁ ଉପାୟ କରସି ତପନଷ୍ଟ ॥ ୩୧ ॥
ତୋହର ପ୍ରସାଦେ ଅବା ପାଇବ ଜୀବନ ।
ନଉଚେତେ ପ୍ରାଣ ହୋଇବ ବିସର୍ଜନ ॥ ୩୨ ॥
ସୀତାର ବିକଳ କଥା ଯହୁଂ ମୁନି ଶୁଣିଲେ ।
କୁଶବଟୁ ମନ୍ତ୍ରିଣ ହାତରେ ନେଇ ଦେଲେ ॥ ୩୩ ॥
ଏ କୁଶବଟୁ ତୋହର ପେଟରେ ବୁଲାବସି ।
ଏହ୍ଷଣି ଶରୀରବ୍ୟଥା ଉପ୍ସାସ ହୋଇବ ଶୁଭ୍‌କେଶୀ ॥ ୩୪ ॥
ଋଷିଙ୍କର କଥା ସୀତା ଶୁଣିଲାକ ଯହୁଂ ।
କୁଶବଟୁ ପେଟରେ ଘଷିଲାକ ତହୁଂ ॥ ୩୫ ॥
ତପେଣ କୁଶଳ ବିତକ୍ଷଣେ ମହାଯତ ।
ବ୍ରହ୍ମାର ଦେହୁ ଯେ ହୋଇଲା ଉତ୍ପତ ॥ ୩୬ ॥
ରାମାୟେଣ ଗ୍ରନ୍ଥ ଯେହୁ ମୁନି ଉକତ କଲା ।
ସାମବେଦ ମହାମନ୍ତ୍ର ଶ୍ଳୋକ ବଖାଇଲା ॥ ୩୭ ॥
କୁଶବଟୁ ତାର ଓଦରେ ଲଗାବନ୍ତେ ।
ପୁଣି ହି ପୁତ୍ରେକ ଜନ୍ମ ହୋଇଲା ତ୍ୱରିତେ ॥ ୩୮ ॥
ଦୁଖ ଇନ୍ଦୁ ଜାଣି ତାର ତେଜ ଦିଶଇ ।
ଶତେ ଚନ୍ଦ୍ରକାନ୍ତ ବଦନ ବିକାଶଇ ॥ ୩୯ ॥
ଦେଖି ସୀତସ୍ୱା ଆନନ୍ଦ ହୋଏ ମନ ।
ଦୁଇ କୁମାରେ କରନ୍ତ ରୋଦନ ॥ ୪୦ ॥
ସନ୍ଧ୍ୟେଣ ଯାଇ ମହର୍ଷି ମିଳିଲେ ।
କୁମରନ୍ତ ଦେଖି ମୁନି ହରଷ ହୋଇଲେ ॥ ୪୧ ॥
ରୂପେଣ କୁମାରେ ହରିହର ମୂରତ ।
ରଘୁବଂଶ ମଣ୍ଡନ ଏ ଅଯୋଧ୍ୟାରେ ହୋଇବେ ଆଧିପତ ୪୨

---

୩୧. ତପନଷ୍ଟ—ତପଶ୍ରେଷ୍ଠ । ୩୬. ଯେହୁ—ଯହୁ । ୩୮. ତାର ଓଦରେ—ସୀତସ୍ୱାର ହୃଦରେ (କ), ତାର ହୃଦରେ (ଖ) । ୪୨. ହରିହର ମୂରତ—ଶ୍ରୀରାମର ଯୋଡ (ଖ) ।

ବନସ୍ତେ ଆସି ଆଈ ଦୁଃଖ ଯେ ପାଇଲୁ ।
ପୁଣ ଶ୍ରୀରାମ କୂଳ ଉଦ୍ଧାରଣ କଲୁ ।। ୪୩ ।।
ଲହି କାଟିଣ ପୁତ୍ରନ୍ତ କୋଳେ ଧର ।
କୁମରଙ୍କ ମୁଖେ ଦଅସି ଏବେ କ୍ଷୀର ।। ୪୪ ।।
ସୀତାୟା କହଇ ମୁନଙ୍କର ମୁଖ ଚାହିଁ ।
କିସ ଦେବଇ ମୋର ସ୍ତନରେ କ୍ଷୀର ନାହିଁ ।। ୪୫ ।।
ତୁହି ସେ ମୋହର ମାତା ହୋଇଲୁନ ଯେବେ ।
ତୋତେ କହି ଲଜ କଲେ ପାର ହୋଇବ କି ଏବେ ।।୪୬।।
ଶୁଣି ମହାଋଷି କମଣ୍ଡଳୁ ନୀର ଘେନଲେ ।
କୁଶେଣ ମନ୍ତ୍ରି ସୀତାୟାର ଶରୀରେ ସିଞ୍ଚିଲେ ।। ୪୭ ।।
ଅମୃତ ପୂରିତ ସୀତାୟାର ବେନି ସ୍ତନ ।
କୋଳେ ଧଇଲା ସତୀ ବେନି ନନ୍ଦନ ।। ୪୮ ।।
କୁମାରଙ୍କ ମୁଖେ କ୍ଷୀରପାନ ଦେଇ ।
ରୂପ ବର୍ଣ୍ଣଇ ସତୀ ପୁତ୍ରଙ୍କୁ ଚାହିଁ ।। ୪୯ ।।
କ୍ଷୀରପାନେ କୁମରେ ରୋଦନ ଛାଡ଼ିଲେ ।
ବାଲମୀକ ମହାଋଷି ସୀତାକୁ କହିଲେ ।। ୫୦ ।।
ପୁତ୍ର ଦୁଇଗୋଟିଙ୍କର ଏବେ କାଟସି ଗୋ ନାହି ।
ବେଣୁ ପାତ୍ରଏକ ସୀତାୟା କରେ ଦେଇ ।। ୫୧ ।।
ବେଣୁ ପାତ୍ର ଘେନି ସୀତାୟା ନାହି କାଟିଲା ।
କମଣ୍ଡଳୁ ମହାଋଷି ପାଣି ଆଣି ଦେଲା ।। ୫୨ ।।
ଅନେକ ତୀର୍ଥର ଜଳ ସେ କମଣ୍ଡଳେ ଥାଇ ।
ସେ ନୀରେ କୁମାରଙ୍କର ଦେହ ପଖାଳଇ ।। ୫୩ ।।
ସୀତାୟା କହଇ ମୁନଙ୍କର ମୁଖ ଚାହିଁ ।
କାହିଂ ପୁତ୍ରନ୍ତ ଶୁଆଇବ ମୋହର ବସ୍ତ୍ର ନାହିଂ ।। ୫୪ ।।
ମହାଋଷି କହନ୍ତ ମୋହର ବାଘ୍ରଚର୍ମ କାଛଟା ।
ମୃଗଚର୍ମେ ଶୟନ ନ କରନ୍ତୁ ସେହି ଜାତ ଅପାଲଟା ।।୫୫
ଏସନେକ କହି ତହୁଂ ମୁନି ଗଲେ ।
କୋମଳ ଶାଳପତ୍ର ଆଣି ସୀତାୟାର ସନଧେଣ ଦେଲେ।।୫୬
ଏଥିରେ ପୁତ୍ରନ୍ତ ଶୁଆବସି ଆଈ ।
ବହିର ବଣେ ଗୋ ଦୁଃଖସୁଖ ପାଇ ।। ୫୭ ।।

---

୪୭. ସିଞ୍ଚିଲେ—ସଞ୍ଚିଲେ । ୫୩-୫୫. ଖ ପୋଥିରେ ନାହିଁ । ୫୭. ଶୁଆବସି ଆଈ ଶୁଆଅବସିଥାଇ ୫୭-୫୯. ଖ ପୋଥିରେ ନାହିଁ ।

ଜନେକର ପୁରକୁ ଯାଇଥାନ୍ତୁ ଯେବେ ।
ତୁହ୍ମ କର୍ମା ଏତେ କଷ୍ଟ ପାଇଥାନ୍ତେ ଏବେ ॥ ୫୮ ॥
କର୍ମର ନିର୍ବାଣ କେ କରିବାକୁ ଆନ ।
ଏଥିକୁ ମହାସତୀ ନ କର ଅଭିମାନ ॥ ୫୯ ॥
ମୁନିଙ୍କର ବଚନେ ସତୀ ପଣନ୍ତି ଓଗ୍ରିଇଲା ।
କୁମରଙ୍କର ଉପରେ ହସ୍ତ ଦେଇ ପେଟମାଡ଼ି ସୁତିଲା ॥ ୬୦ ॥
ବୃକ୍ଷର ପର୍ଣ୍ଣି ମଣ୍ଡାଗେ ସୁତିଲାକ ସତୀ ।
ତରୁର ପୂର୍ବ ପ୍ରଦେଶେ ବାଲ୍ମୀକ ମହାଯତି ॥ ୬୧ ॥
ସାଙ୍ଗାର ବଲ୍ଲଭ ହୋଇଲେ ଆତୁରି ।
ପିଠିରେ ଢମିଢମି ଲାଗୁଅଛି ଖରି ॥ ୬୨ ॥

## ପିତ୍ରାଳୟରେ ସୀତା

ଶୁଣିଲୁ କ ଦ୍ରୌପଦୀ ଗୋ ସୀତାର ଦୁଃଖଭାର ।
ଏସନେକେ ଦୁଇପୁତ୍ରେ ହୋଇଲେ ଅବତାର ॥ ୧ ॥
ଶୁଣିଣ ବିକଳ ପାଣ୍ଡବଙ୍କ ରାଣୀ ।
ନୟନୁ ଲୁହ ଗଡ଼ି ପଡ଼ଇ ଧରଣୀ ॥ ୨ ॥
କର ପଦ୍ମ ଯୋଡ଼ି ପଚାରଇ ପାଞ୍ଚାଳୀ ।
ଅତି କଷ୍ଟ ପାଇଲା ମୁନି ହେ ଜନେକର ଦୁଲାଳି ॥ ୩ ॥
ପିତାର ଆଶ୍ରମକୁ ଗଲାକ କେସନେ ।
କହ କଲେ ତହ୍ମଂ ଯେ ବାଲ୍ମୀକ ତପୋଧନେ ॥ ୪ ॥
ଏଥିର କଥା ମୋତେ ଶୁଣାଇବା ମହାଯତି ।
ତେବେ ସେ ତେଜଇ ମୁହ୍ମଂ ଉଦବେଗ ମତି ॥ ୫ ॥
କହନ୍ତି ମାରକଣ୍ଡେ ଶୁଣସି ଜଗ୍ନସେନୀ ।
ମନବାଞ୍ଛା ପୂରିଅ ତୋହର ଦ୍ରୌପଦ ନନ୍ଦନୀ ॥ ୬ ॥
ପାଞ୍ଚ ପାର୍ଥିଏ ତଳୟ କର ଶୁଣ ।
ଦୁସହ ଶତ୍ରୁ ତୁମ୍ଭର ସମରେଣ ଜିଣ ॥ ୭ ॥
ସୀତାୟା ପୁତ୍ରନ୍ତି ଜାତ କରି ସୁତିଲାକ ଯେବେ ।
ବାଲ୍ମୀକ ମହର୍ଷି ବସି ବିଚାରନ୍ତି ତେବେ ॥ ୮ ॥
ଜନକ ନଗ୍ରକୁ କେସନେ ଏହାକୁ ନେବା ।
ଦୁଇ ପୁତ୍ରନ୍ତି କେମନ୍ତେ କୋଳରେ ଧରିବା ॥ ୯ ॥

---

୬୧. ଭାଗେ—ଭାବେ । ୬୨. ପଦଟି ଖ ପୋଥିରେ ନାହିଁ । ୩. କରପଦ୍ମ ଯୋଡ଼ି—ଶିରେ କର ଦେଇ (ଖ) । ୮-୧୦. ଖ ପୋଥିରେ ନାହିଁ ।

ଆରେକ ଜଣେକ ନାହିଂ ମୋହର ସଙ୍ଗଇ ।
ଜନେକ ମହାଋଷି କହି ପଠିଆଇବ କ କହି ।। ୧୦ ।।
ଏସନେକ ଭାଳନ୍ତେ ବଇଦେହୀନବର ଶବର ।
କନ୍ଦମୂଳ ଅର୍ଥେଣ ଆସଇ ବନ ଘୋର ।। ୧୧ ।।
ଯେବଣ ଠାବରେ ଅଛଇ ତପଶାଳୀ ।
ଶବର ଯାଇ ମୁନିଙ୍କର ସନ୍ନିଧରେ ମିଳି ।। ୧୨ ।।
ତାହାକୁ ଦେଖି ହକାରନ୍ତି ମୁନିବର ।
ନିଅଡ଼କ ଆସି ଶବର ଶିରେ ଦେଲି କର ।। ୧୩ ।।
ବାଲ୍ମୀକେ କହନ୍ତି ବାସ କାହିଂ ତୋର ।
କରିତ କହଇ ଶୁଣ ହୋ ମୁନିବର ।। ୧୪ ।।
ବଇଦେହୀମଣ୍ଡଳେ ମୋହର ନିଜ ସ୍ଥିତ ।
ଜନେକ ରାଜଋଷି ତହିଂର ଆଧିପତ ।। ୧୫ ।।
ସୁରେଖା ନାମ ମୋହର ବିଦ୍ୟମାନ ।
କନ୍ଦମୂଳ ନେଇତ ନିତ ଆସଇ ଏ ବନ ।। ୧୬ ।।
ଫଳମୂଳ ନେଇ ଦିଅଇ ଋଷିଙ୍କର ପାଶ ।
ତାହା ସେ ଜନେକ ଋଷି କରନ୍ତି ଗ୍ରାସ ।। ୧୭ ।।
ଶୁଣିଣ ବାଲ୍ମୀକେ ଶବରକୁ ପ୍ରକାଶି ।
ତୁହି ରେ ସୁରେଖା ବାହୁଡ଼ ବେଗ ଯାସି ।। ୧୮ ।।
ମୋହର କଥା କହିବୁ ଜନେକ ଆଗର ।
ବାଲ୍ମୀକ ମହାଋଷି ବସିଅଛନ୍ତି ବନସ୍ତ ଭିତର ।। ୧୯ ।।
ତୁମ୍ଭର ତହିଂକ ଆସୁଣ ଥିଲେ ।
ଗୃଲ ନ ପାର ଫୁଟିଣ ବସିଲେ ।। ୨୦।।
ଏସନେକ କଥା ଜନେକର ଆଗେ କହି ।
ଶୀଘ୍ରେଣ ଚଳିଯାଅ ଏଥି କ୍ଷଣେହେ ନ ରହି ।। ୨୧ ।।
ଏ ଯେ ଶୋଇଅଛୁ ତାହାର ଦୋହିତା ।
ଜନେକର ଆଗେ (ନ) କହିବୁ ଏହାର କଥା ।। ୨୨ ।।
ରାଜଋଷି ସେ ଭୋଗ୍ୟ ବିଳାସ କରଇ ।
ସନ୍ନିଧେଣ ଖଟଇ ତାହାର ଅନେକ ମୁନିବରଇ ।। ୨୩ ।।
ସୀତାର କଥା ସେ ଶୁଣଇ ଯେବେ ।
ବଇରାଗ ହୋଇ ଦୁଃଖ ପାଇବ ସେ ତେବେ ।। ୨୪ ।।
ମୁହିଂ ଜନେକକୁ ବୁଝାଇ କହିବ ।
ସୀତାର ପୁତ୍ରକୁ ଘେନିଣ ତାହାର ପୁରକୁ ଯିବ ।। ୨୫ ।।

୧୦. ପଠିଆଇବା କ କହି—ପଠିଆଇବ କ କାହିଂ ।

ଶୁଣିଣ ଶବର ଝରେଣ ଚଳାଲା ।
ଜନେକ ଋଷିଙ୍କର ଗୁମୁରେ ଘଡ଼କେ ମିଳାଲା ॥ ୨୬ ॥
ଓଲଗଇ ଶବର ଶିରେଣ ଭୂଜ ଦେଇ ।
ଶର୍ଵରୁ ଶ୍ରମ ଝାଳ ତୁରତେ ଲେଇ ॥ ୨୭ ॥
ଜନେକ ମହର୍ଷି ପଗ୍ରୁରନ୍ତି ଶବରକୁ ଗ୍ରହି ।
କ ରେ ସୁରେଖା ଥିଲୁ ରୁହ୍ନ କାହିଂ ॥ ୨୮ ॥
ଝରତର ନିଶ୍ଵାସ ତୋହର ବହଇ ଘନଘନ ।
ଛନ୍ତ ଅଧିର ତୋହର ବସ୍ତୁସ୍ତେ ବଦନ ॥ ୨୯ ॥
କନ୍ଦମୂଳ ଫଳ କଛୁ ହ୍ନ ନ ଆଣିଲୁ ।
କାହାର ସଙ୍ଗରେ କଳସ ବଗ୍ରର ହୋ କଲୁ ॥ ୩୦ ॥
କରତ କହଇ ଶୁଣ ହୋ ମହାମୁନ ।
ବନସ୍ତେ ଦେଖିଲ ମୁହିଂ ବାଲମୀକ ତପୋଧନ ॥ ୩୧ ॥
ଶାଳ ବୃକ୍ଷର ତଳେ ଅଛନ୍ତି ସେ ବସି ।
ଶ୍ରାନ୍ତେ ବଶ୍ରାମିଲେ ଏଥକୁ ନ ପାରଲେ ଆସି ॥ ୩୨ ॥
ମୋତେ ପଠିଆଇଲେ କହ୍ନ ଜନେକ ଆଗ ।
ଯାବତ କର୍ମଗୁଡ଼ ଏଥକୁ ଆସୁ ବେଗ ॥ ୩୩ ॥
କନ୍ଦମୂଳ ଆଣିତ ଯାଉ ମୁହିଂ ଥିଲି ।
ତାହାଙ୍କର ଆଗ୍ୟାଂରେ ବାହୁଡ଼ି ଅଇଲି ॥ ୩୪ ॥
ତେଣେ ସେ ନିଶ୍ଵାସ ମୋହର ବହଇ ଘନଘନ ।
ଆସ ଆସ ମହାମୁନ ଗୃଲ ଯିବା ବହନ ॥ ୩୫ ॥
ଶୁଣିଣ ହରଷ ହୋଇଲେ ଜନେକ ମହର୍ଷି ।
ସନଧେ ହକାରଲେ ଚଉଦ ଗୋଟି ଶିଷି ॥ ୩୬ ॥
ସୋମକେଶୀ ରବଦାସୀ ପଶସିମୁନ ।
ସୁର ବନସ୍ଥୀ ଶୁଭାଙ୍ଗ ମହର୍ଷି ସୋମ ତପୋଧନ ॥ ୩୭ ॥
ଚନ୍ଦ୍ର କରସି ହ୍ନ ମଙ୍ଗଳ ତପୋସୀ ।
ସୁପ୍ରୀତି ମୁନ ସୁରର୍ଥ ମହର୍ଷି ॥ ୩୮ ॥
ଧାନଜସ୍ତେ (ମହର୍ଷି) ଧନଜସ୍ତେ ।
ଅଖିଳ ମୁନ ଆବର ତପୋଧନଏ ॥ ୩୯ ॥

---

୩୦. ଖ ପୋଥିରେ ନାହିଁ । କଳସ—କଳିମା । ୩୬. ଗୋଟି ଶିଷି—ମହର୍ଷି (କ), କୋଟିଶିଷି (ଖ) । ୩୭–୩୯. ଖ ପୋଥିରେ ଜନକଙ୍କ ଶିଷ୍ୟଙ୍କ ନାମ : "ଆବର ସୋମକେଶୀ ବଦ୍ୟାକେଶୀ ମୁନ । ଖିରବଲଙ୍କି ସୁରଙ୍ଗ ସାମ ତପୋଧନ ॥ ଚନ୍ଦ୍ରକେଶୀ ଋଷି ସଙ୍ଗତପ ଆତ୍ମା ଋଷି । ସୁରଙ୍ଗ ମୁନବର ସତ୍ୟଅ ମହର୍ଷି ॥ ବନଜଏ ଅନଜଏ କପୋଲ ତପୋଧନ । ସୁରବଦ୍ୟା ସିନା ଅଟଇ ସୁରଗ୍ୟାଂନ ॥"

ଏ ଚଉଦ ମୁନି ଅଟନ୍ତି ରାଜ ଋଷି ।
ସମସ୍ତ ମୁନିବୃନ୍ଦ ମନ୍ତ୍ର ଅଭ୍ୟାସି ॥ ୪୦ ॥
ତପସ୍ୱୀଙ୍କର ମଧ୍ୟେ ସେ ପବିତ୍ର ରାଜନ ।
ଲକ୍ଷେକ ମହରଷି ଯେ ଅଛଇ ସନିଧାନ ॥ ୪୧ ॥
ସୁରେଖାକୁ କହନ୍ତି ସେ ଜନେକ ମହର୍ଷି ।
ବାଟ କଢ଼ାଇ ତୁହି ଆଗ ହୋଇଣ ଚାଲସି ॥ ୪୨ ॥
ଜନେକ ଆଗ୍ୟାଂରେ ଶବର ପଥ କଢ଼ାଇ ଆଗେ ।
ସମସ୍ତ ମହର୍ଷି ଚାଲନ୍ତି ତାହାର ଲାଗେ ॥ ୪୩ ॥
ଯହିଁ ବସିଛନ୍ତି ବାଲମୀକ ତପୋଧନ ।
ପୁତ୍ରକୁ ଅବୋର ଶୋଇଅଛି କ୍ରିଜୃସେନୀ ॥ ୪୪ ॥
ଶବର ଧରିଅଛି ବାଲମୀକ ତପୋଧନ ।
ଆପଣାର ହୃଦରେ ବିଚାରଇ ମହାମୁନି ॥ ୪୫ ॥
ଏ ଅବସ୍ଥା ଯେବେ ସୀତାଙ୍କର ଜନେକ ଦେଖିବ ।
ତତକ୍ଷଣେ ସେହୁ ପ୍ରାଣ ଉପେକ୍ଷିବ ॥ ୪୬ ॥
ପର୍ଣ୍ଣଡ଼ାଳ ଆଣି କରନ୍ତି ପବନର ଉପାୟେ ।
ତହିଂର ଭିତରେ ସୀତା ପୁତ୍ରନ୍ତ ଯେନ ନିଦ୍ରା ଯାଏ ॥ ୪୭
ଶବର ବାଟ ଯେ କଢ଼ାଇଣ ନେଲା ।
ବୃକ୍ଷର ତଳେ ନେଇ ତପୋଧନନ୍ତ କଲା ॥ ୪୮ ॥
ବାଲମୀକ ମହର୍ଷିଙ୍କି ଜନେକ ଦେଖିଲେକ ଯହୁଂ ।
ଶିରେ କର ଦେଇ କ୍ଷିତରେ ଲୋଟିଲେକ ତହୁଂ ॥ ୪୯ ॥
କରେଣ ପୋଛଇ ମୁନିଙ୍କର ପଯ୍ୟର ।
ଚରଣ ଧୂଳି ଆଣି ଲଗାଇଲେ ଶିର ॥ ୫୦ ॥
ଯେତେକ ତପସ୍ୱୀ ସନିଧରେ ଥିଲେ ।
ବାଲମୀକ ପଯ୍ୟରେ ସମସ୍ତେ ଗଡ଼ପାଲି ସୁତଲେ ॥ ୫୧ ॥
ଜନେକର ହାତ ଧରି ତୋଳିଲେ ବିଧାତାର ସୁତ ।
ଉଠିଣ ରାଜଋଷି ଯୋଡ଼ଇ ଦୁଇ ହସ୍ତ ॥ ୫୨ ॥
କଲ୍ୟାଣ କରନ୍ତି ବାଲମୀକ ତପୋଧନ ।
ଯେ ତୋହର ମନବାଞ୍ଛା ହୋଉ ସମ୍ପୂର୍ଣ୍ଣ ॥ ୫୩ ॥
ଜନେକ ମହର୍ଷି କହନ୍ତି ଶୁଣ ବ୍ରହ୍ମର୍ଷି ।
ଯେତେ ମୋହର ଦୁଷ୍କୃତ ଥିଲା ହୋଇଲା ବିନାଶି ॥ ୫୪ ॥

୪୦. କ ପୋଥିରେ ନାହିଁ । ୪୧. ଲକ୍ଷେକ ମହରଷି—ଲକ୍ଷେକ ମହୁର (କ), ଲକ୍ଷେ ଋଷି (ଖ) । ୪୪. କ୍ରିଜୃସେନୀ—ବିଜୃସେନ । ୫୧. ଖ ପୋଥିରେ ନାହିଁ ।

ବ୍ରହ୍ମାର ତନୟେ ତୁହି ଭୂତ ଭବିଷ୍ୟ ଗ୍ୟାଂତା ।
ଯୋଗବଳେ ଦିଶଇ ତୋତେ ଅନନ୍ତ ଭୁବନ (ବାରତା) ୫୫
ସସାର ତରଣି ଜାଣୁ ତୁହି ଭଲେ ।
ଦୁଷ୍କୃତ ପାର ଗଲା ତୋହର ମୁଖ ଦେଖିଲେ ॥ ୫୬ ॥
ଆସ ଆସ ମହାତ୍ମା ଯିବା ମୋହର ପୁର ।
ଜନେକ ମୁଖ ଗୃହିଁ କହନ୍ତି ବ୍ରହ୍ମାଙ୍କ କୁମର ॥ ୫୭ ॥
ଯଜ୍ଞଂର ଅର୍ଥେ ଅଇଲି ତୋହର ପୁର ।
କହିଲେ ଶୋକ ତୁହି କରିବୁ ମୁନିବର ॥ ୫୮ ॥
ଜନେକ ପଚାରନ୍ତି କହସି କିସ କଥା ।
ତୋହର ପ୍ରସାଦେ କମ୍ପା ପାଇବଇ ବ୍ୟଥା ॥ ୫୯ ॥
ବାଲମୀକେ କହନ୍ତି ଶୁଣସି ତପଶ୍ୟାଳୀ ।
ଜ୍ୟେଷ୍ଠ ଦୋହିତା ତୋହର ସୀତସ୍ଥା ନାମେ ବାଳୀ ॥୬୦॥
ତାହାକୁ ଶ୍ରୀରାମ ବନେଣ ନିବାସିଲା ।
ଅରଣ୍ୟରେ ଆଣି ଲକ୍ଷ୍ମଣ ଛାଡ଼ିଗଲା ॥ ୬୧ ॥
ତୋହର ଆଶ୍ରମକୁ ଆସୁଥିଲା ସତୀ ।
ବନସ୍ତଙ୍କ ଜୀବେ ସେ ଥିଲେ ତାହାଙ୍କ କତ ॥ ୬୨ ॥
ମୋହର ଆଶ୍ରମେ ହୋଇଲାକ ଯଜ୍ଞଂ ।
ବନସ୍ତର ଜୀବନ୍ତ ମୁଦ୍ରଂ ପଠାଇଲି ତହୁଂ ॥ ୬୩ ॥
ଗର୍ଭବାସ ଯେ ହୋଇଥିଲା ତୋହର ନନ୍ଦନୀ ।
ତୋହର ଆଶ୍ରମକୁ ଆସୁଥିଲି ପେନ ॥ ୬୪ ॥
ଏ ତରୁତଳେ ପ୍ରବେଶ ହୋଇଲୁ ଆଜ ।
ଜନ୍ମ ହୋଇଲେ ସୀତାର ଦୁଇ ତନୁଜ ॥ ୬୫ ॥
ଶୁଣିଣ ଜନେକର ଚଉ ଛନଛନ ।
ଅନ୍ତସ୍ଥଳ ନୟନ କଣ୍ଠାଗତ ପ୍ରାଣ ॥ ୬୬ ॥
ଜନେକ ହାତ ଧରି ସୀତାର ସନିଧକୁ ନେଲେ ।
ପର୍ଣ୍ଣକୁଟୀ ଭିତରେ ନେଇଣ ଦେଖାଇଲେ ॥ ୬୭ ॥
ପୁସକୁ ପସ ପାଡ଼ି ଶୁଆଇଣ ଅଚ୍ଛୁ ।
ଦେଖିଣ ଜନେକ ମୁନିଙ୍କ ନ ପୁଚଇ କିଛୁ ॥ ୬୮ ॥
ଧାଡକାରେ ଶରୀର ରହା(ରେ)ଣ ଲଗିଲା ।
ଶରୀର ଗ୍ୟାଂନ ନାହିଂ ନିଚେଷ୍ଟ ହୋଇଲା ॥ ୬୯ ॥

---

୫୯—୬୩. ଏହି ପଦଗୁଡ଼ିକ ଖ ପୋଥିରେ ନାହିଁ । ୬୪—୬୫. ଖ ପୋଥିର ବିଷୟ ସମାନ କିନ୍ତୁ ଭାଷା ଭିନ୍ନ । ୬୬. ଏହି ପଦଟି କ ପୋଥିରେ ନାହିଁ । ୬୯. ଶରୀର —ଶରୀରେ ।

ଦେଖିଣ ଚକିତ ହୋଇଲେ ବାଲ୍ମୀକ ମହାଯତି ।
ବୋଇଲେ ବିପରୀତ ହୋଇଲା ତ ଏଥି ।। ୭୦ ।।
ମୁଖେ ପାଣି ସିଞ୍ଚିଲେ ବାଲ୍ମୀକ ଋଷି ।
ଉଚ୍ଚେ ରୋଦନ କଲେ ଚତୁର୍ଦ୍ଦଶ ଶିଷି ।
ମୁଃଖରବ ଶବଦ (କ) ଜାଣି ସିନ୍ଧୁ ଘୋଷି ।। ୭୧ ।।
ଯେତେକ ତପସ୍ବୀ ସନନ୍ଦନ ଥିଲେ ।
ଜନେକ ନଚେଷ୍ଟ ହୁଅନ୍ତେ ସର୍ବେ ରୋଦନ କଲେ ।।୭୨।।
ମୁଖେ ପାଣି ସିଞ୍ଚିଲେ ବାଲ୍ମୀକ ମହାମୁନ୍ୟ ।
କ୍ଷଣକେ ଜନେକ ତୃଷି ପାଇଲେ ଚେତନ ।। ୭୩ ।।
ନୟନ ଦିଶଇ ରକତ କୁମୋଦ ଜାଣି ।
ଲୁହ ଗଡ଼ି ଘନଘନ ପଡ଼ଇ ଧରଣୀ ।। ୭୪ ।।
ପୁତ୍ରନ୍ତ ଯେନ ସୀତା ନିଦ୍ରାରେ ଶୋଇଥିଲା ।
ଉଚ୍ଚେଣ ରୋଦନ ଶୁଣି ଉଠିଣ ବସିଲା ।। ୭୫ ।।
ପିତାର ମୁଖ ଗୃହିଂଲା ମହାସତୀ ।
କାନ୍ଦନ୍ତି ରାମରାଣୀ ଚନ୍ଦ୍ରବଦନ ପୋତି ।। ୭୬ ।।
ହେ ତାତ ଦେଖ ତୁହି ମୋହର ମହାଦୁଃଖ ।
ତୋହର କୋଳେ ଉପୁଜି ମୁହିଂ ହୋଇଲି ନିରେଖ ।।୭୭।
ଇତର ଲୋକେ ତାତ ନ ସହନ୍ତି ତାହା ।
କେତେ କଷ୍ଟ ପାଇଲି କହିବ ମୁଁ କାହା ।। ୭୮ ।।
ବନଜୀବଙ୍କର ସଙ୍ଗତେ ଗୃହମାସ ବୁଲିଲି ।
ବାଟ ନ ଜାଣଇ ତୋହର ତହିଂକି ଆସୁଥିଲି ।। ୭୯ ।।
କେବଣ ଦଇବ ତୋହର ପୁନ୍ୟ ବଳେ
ଯାଇ ହୋଇଲି ବାଲ୍ମୀକଙ୍କର ପର୍ଣ୍ଣଶଳେ ।। ୮୦ ।।
ତୋହର ତହିଂକି ବାଲ୍ମୀକ ଆଣୁଥିଲେ ।
ଏ ବୃକ୍ଷର ତଳେ ଦୁଇ ପୁତ୍ର ଉପୁଜିଲେ ।। ୮୧ ।।
ନିଲଜ୍ଜ ଦେହ ମୋହର କପାଇଂ ପ୍ରାଣ ନ ଗଲା ।
ଏସନ କହି ସୀତା ଉଚ୍ଚେ ରୋଦନ କଲା ।। ୮୨ ।।
ଦୋହିତା କାନ୍ଦନ୍ତେ ଜନେକ ରାଜମୁନି ।
ବେନିକର ନେଇ ତାଡ଼ିଲେକ ମୁଧୂନି ।। ୮୩ ।।

---

୭୦. କ ପୋଥିରେ ନାହିଁ । ୭୧. ପ୍ରଥମ ପାଦଟି ଖ ପୋଥିରେ ନାହିଁ ଓ ଦ୍ବିତୀୟ ପାଦଟି କ ପୋଥିରେ ନାହିଁ । ୭୨. ଖ ପୋଥିରେ ନାହିଁ । ୮୦-୮୧. ଖ ପୋଥିରେ ନାହିଁ ।

ବାବୁ ବିଧାତା ମୋତେ ଏତେ କଷ୍ଟ ଦେଲୁ ।
ଏ ବୟସେ ଦୋହିତା କଷ୍ଟ ଦେଖାଇଲୁ ॥ ୮୪ ॥
କି ଅବା ପୂର୍ବେ ମୁହିଂ ଦାନପୁଣ୍ୟ ନ କଲି ।
ଗୁରୁ ଅତିଥେ ଅବା ଭକତେ ନୋହିଲି ॥ ୮୫ ॥
ଏ ତୋହର ଦୁଃସହ ଅବସ୍ଥା ଦୁଃଖ ଦେଖି ।
ମୋହର ଦେହୁ ପ୍ରାଣ କିମ୍ପା ନ ଗଲା ଉପେଖି ॥ ୮୬ ॥
ମହନ୍ତ କୁଳ ଜାଣି ତୋତେ ବରିଲଇ ବର ।
ତ୍ରିଭୁବନ ଧାର୍ମିକ ଶୂରସିଦ୍ଧ ରଘୁବୀର ॥ ୮୭ ॥
ମହତ ମର୍ଯିତା ବୀରବର ଦାଶରଥି ।
ତାଡ଼କା ମାଇଲେ ପ୍ରଭୁ ଭୁଜବଳ କ୍ଷତ୍ରି ॥ ୮୮ ॥
ଶିବନାଥର ଧନୁ ଯେ ମୋହର ପୁରେ ଥିଲା ।
କ୍ଷତ୍ରି ବର ସୁନ୍ଦର ଅବହେଳେ ଭାଙ୍ଗିଲା ॥ ୮୯ ॥
ଶ୍ରୀରାମର ଶଉର୍ଯ୍ୟଗୁଣ ମୁଁ ଦେଖିଲି ।
ଚୃର ଭାଇଙ୍କି ଚୃର ଦୋହିତା ବିଭାଏଣ ଦେଲି ॥ ୯୦ ॥
ତୋତେ ଯେବେ ଏତେ ଦୁଃଖ ଦେଲେ ଗୃପଧାତ୍ରୀ ।
କିସ ମତେ ଥିବେ ମୋହର ତିନି କୁମାରୀ ॥ ୯୧ ॥
କେବଣ ଦୋଷ ସ୍ୱାମୀ ତହ୍ମଂ କଲୁ ।
ଶ୍ରୀରାମ ମନରୁ କେସନେ ବାହାର ହୋଇଲୁ ॥ ୯୨ ॥
ଏଥିର କଥା ଆଛି ତୁହ୍ମ ମୋତେ କହ ।
ତେବେ ସେ ଛାଡ଼ଇ ମୋହର ହୃଦୟର କୋହ ॥ ୯୩ ॥
ବାଲ୍ମୀକେ କହନ୍ତି ଶୁଣ ହେ ଜନେକ ମହର୍ଷି ।
ତାହାର ଦୁଃଖ କଥା ଏବେ ନ ପ୍ରକାଶି ॥ ୯୪ ॥
କୁମରନ୍ତ ଅପାର ଦୁଃଖେ ଜାତ କଲା ।
ତୁଲେଣ ସଙ୍ଗ ସାଖୀ କେହି ନ ଥିଲା ॥ ୯୫ ॥
ଏବେ ସୀତାୟାର ପୁତ୍ରନ୍ତ ଘେନ ତୋହର ପୁରକଇ ଯାସି ।
ପୁତ୍ରନ୍ତ ପ୍ରତିପାଳି ପଛେ ସୀତାୟାକୁ ପଗୁରସି ॥ ୯୬ ॥
ମାନନୀ ମାନଭରେ ଦୁଃଖ ମହାଗରୁ ।
ମାତାକୁ ଦେଖି ସୀତାୟା ଦୁଃଖ ପାସୋରୁ ॥ ୯୭ ॥
ବାଲ୍ମୀକଙ୍କର ବଚନେ ଜନେକ ତପସ୍ୱି ।
ବାଳୁତ ପୁଅ ଗୋଟାଏ ତୋଳି କରେ ଧରି ॥ ୯୮ ॥

୮୪. ଦୋହିତା–ଦୋହିତାକୁ । ୮୯–୯୧. ଖ ପୋଥିରେ ନାହିଁ । ୯୨. ସ୍ୱାମୀ ତହ୍ମଂ —ତୁହ୍ମ ସ୍ୱାମି । ୯୩. ଏଥିର କଥା ଆଛି—ଏଥରକଥାଥାଇ । ଏ ପଦ ଖ ପୋଥିରେ ନାହିଂ । ୯୪. ନ ପ୍ରକାଶି—ପ୍ରକାଶସି । ୯୭. ପାସୋରୁ—ସୋରୁ(କ)

ଆରକ ସୁନ୍ଦକୁ ବାଲମୀକେ ଘେନନ୍ତି ।
ପଛେ ଧୀରେ ଗୃହଇ ସୀତସ୍ୟା ମହାସତୀ ।। ୯୯ ।।
ଜନେକର ଚଉଦ ଶିଷ୍ୟ ଅଛନ୍ତି ସନଧାନେ ।
ଆଗ ପନ୍ଥ ହୋଇ ଯାନ୍ତି ତପୋଧନେ ।। ୧୦୦ ।।
ଆଦ୍ଦତ୍ୟ ହୋଛନା ହୋଇ(ଲା) ଅବଶେଷେ ।
ବଇଦେଇମଣ୍ଡଳେ ଋଷିଗଣ ପ୍ରବେଶ ।। ୧୦୧ ।।
ନଗ୍ର ନରନାରୀ ସୀତସ୍ୟାଙ୍କୁ ଯନ୍ତୁଂ ଦେଖିଲେ ।
ଯେ ଯାହାର ଗୃହନ୍ତ ତେଜି ସମସ୍ତ ଗୋଡ଼ାଇଲେ ।। ୧୦୨
ବୋଲନ୍ତି ଏ ସୀତସ୍ୟା ଜନେକର ନନ୍ଦନୀ ।
ଦଶରଥ ସୁତ ଯେ ଶ୍ରୀରାମର ଘରଣୀ ।। ୧୦୩ ।।
କେବଣ ଦଇବ ଏକା ଆସୁଅଛୁ ।
ଦେଖି ନଗ୍ରଲୋକଙ୍କର(ମୁଖେ) ନ ପୁରେଇ କଛୁ ।। ୧୦୪।।
ତହୁଂଣ ଥୋକେ ଲୋକେ ଧାଇଁଣ ଗଲେ ବେଗେ ।
ଅନ୍ତରରେ କହନ୍ତି ଋଷିଆଶିଙ୍କର ଆଗେ ।। ୧୦୫
ତୁମ୍ଭର ଦୋହିତା ସୀତସ୍ୟା ମହାସତୀ ।
ଏକଇ ଯୁବତୀ ଅଇଲାକ ଏଥି ।। ୧୦୬ ।।
ଶୁଣି ଚକ୍ରିତ ଜାନେକୀର ମାତ ।
ଅନ୍ତଃପୁର ଭିତରୁ ସେ ଆସନ୍ତି ତୁରିତ ।। ୧୦୭ ।।
ଆବର ତନ ଯୁବତୀ ତାହାର ପଛେ ଗୋଡ଼ାଇଲେ ।
ପରିଜନ ସହିତେ ନବର ଦ୍ୱାରେ ମିଳିଲେ ।। ୧୦୮ ।।
ଏସନେକ ସମୟେ ଜନେକ ରାଜଋଷି ।
ସୀତସ୍ୟା ପୁତ୍ର ସହିତେ ନବରେ ପ୍ରବେଶି ।। ୧୦୯ ।।
ସୀତାକୁ ଯନ୍ତୁଂ ତାହାର ମାତା ଦେଖିଲା ।
ଅଚେତ ହୋଇଣ ପଡ଼ିଣ ମୁର୍ଚ୍ଛା ଗଲା ।। ୧୧୦ ।।
କ୍ଷଣକେ ଚେତନା ପାଇଲା ଋଷିବାଳୀ ।
ଅନ୍ତଃପୁର ଭିତରୁ ସକଳ କାମେନୀ ଆସି ମିଳି ।। ୧୧୧ ।।
ତାହାର କାନ୍ଦନ୍ତେ କହନ୍ତି ବାଲମୀକ ମହାମୁନ୍ୟ ।
କିମ୍ପାଇଁ ତୁମ୍ଭେ ଗୋ କର ହୋ ରୋଦନ ।। ୧୧୨ ।।
ଶ୍ରୀରାମଙ୍କ ଭାରିଯା ଅଇଲା ତୁମ୍ଭର ପୁର ।
ଯେତେମାନ ପାର ଏହାଙ୍କୁ କର ଗୋ ଆଦର ।। ୧୧୩।।

---

୧୦୦. ଚଉଦ—ଚଉଦକୋଟି (ଙ) । ୧୦୪. ଦେଖି—ନ ଦେଖି ।
୧୦୮. ସହିତେ—ସମୀତେ

ଅତ୍ୟନ୍ତ କରି ପୁତ୍ରନ୍ତ ଯତ୍ନ କରି ପ୍ରତିପାଳ ।
କିପାଇଁ ରୋଦନ କର ଗୋ ଚହଳ ।। ୧୧୪ ।।
ପୁତ୍ର ଯେସନେକେ ହୁଅନ୍ତି ତେଜମନ୍ତେ ।
ତେସନେକ ଚରିତ୍ର ସେ କରିବାକ ଉପାୟେ ।। ୧୧୫ ।।
ତୁମ୍ଭର କାନ୍ଦନ୍ତେ ସୀତାସ୍ତ୍ରୀ ହିଁ କାନ୍ଦିବ ।
ଏ ଚନ୍ଦ୍ର ବଦନୀ ପ୍ରସ୍ତାସ ପାଇବ ।। ୧୧୬ ।।
ଏ ଯେତେ କଷ୍ଟ ପାଇଲି ଦୁଃଖର ଅଶଂଖ୍ୟ ।
ବାଲ୍ମୀକଙ୍କର ବଚନେ ତେଜିଲେ ସର୍ବ ଶୋକ ।।୧୧୭

## ଲବକୁଶଙ୍କର ଶୈଶବ ବିଧାନ

ସୀତାସ୍ତ୍ରୀର ଜନନୀ ପୁତ୍ରନ୍ତ କୋଳେ ଧରନ୍ତି ।
ଚନ୍ଦ୍ର ସୂର୍ଯ୍ୟ ପ୍ରାୟେକ କୁମରେ ଦିଶନ୍ତି ।। ୧ ।।
ଚନ୍ଦନ ଅଗ୍ର କାଠ କରନ୍ତି ଆତସ୍ତ ।
ଛନ୍ଦ ପାଟ ଅନ୍ତୋଢ଼ି କଲେ ଚଉକଠ ପଡ଼ଇ ଠେସ୍ତ ।। ୨ ।।
ଜନକର ପୁରେ ମଙ୍ଗଳ ହୁଳାହୁଳି ।
ତନସ୍ତନ୍ତ ବନ୍ଦାବନ୍ତି ସ୍ତ୍ରିଗଣେ ମିଳି ।। ୩ ।।
ନେତର ଚନ୍ଦ୍ରୁଆ ବାନ୍ଧନ୍ତି ଉପରେ ।
ମାଣିକ୍ୟର ଦୀପ ଜଳଇ ଅଭ୍ୟନ୍ତରେ ।। ୪ ।।
ଅନେକ ଧାତ୍ରୀ ବହୁତ ପରିବାରି ।
କୁମରନ୍ତ ପ୍ରତିପାଳନ୍ତି ଅନ୍ତଃପୁର ନରନାରୀ ।। ୫ ।।
ଦୁଧ ତରଣ କରନ୍ତି ପଞ୍ଚୁଆତି ।
ଷଷ୍ଠୀ ରାତ୍ରେ ଜାଗରେ ରମଣୀ ପୋହାନ୍ତି ।। ୬ ।।
ବଂଶରାନ୍ତ ପ୍ରବେଶ ହୋଇଲାକ ଯହୁଂ ।
ବାଲ୍ମୀକକଇ ଜନେକ ପଚାରିଲେ ତହୁଂ ।। ୭ ।।
ଦୁଇ କୁମାରନ୍ତ ଦୋଳ(ରେ) ଶୁଆଇବା ।
କିସ କିସ ନାମ ଦେବା ବିଚାରି କହିବା ।। ୮ ।।
ବାଲ୍ମୀକ କହନ୍ତି ଶୁଣସି ରାଜମୁନ୍ୟ ।
ଅତି ଦୁଃଖେ ସୀତାସ୍ତ୍ରୀ ଉପୁଜାଇଲେ ବେନି ସୂନ ।। ୯ ।।
ଶିମ୍ବାଢ଼ି ଲତା ଧରି ପ୍ରସବଲେ ଯେବଣେ କୁମାରଇ ।
ଲବ ବୋଲି ନାମ ହୋଉ ପ୍ରଚାରଇ ।। ୧୦ ।।

---

୬. ତରଣ—ତୋରଣ (କ) । ପୋହାନ୍ତି—ପାହାନ୍ତି (କ) ।
୭. ବାଲ୍ମୀକକଇ—ବାଲ୍ମିକକହିଇ ।

ପୁଣି ସୀତସ୍ୱାର ପେଟ ବଥାଇଲା ଯେବେ ।
କୁଶବନ୍ଧୁ ମନ୍ତ୍ରି ଣ ଦେଲଇ ମୁହିଂ ତେବେ ।। ୧୧ ।।
ତେବେ ସେ କୁମର ହୋଇଲାକ ଜାତ ।
କୁଶ ବୋଲି ନାମ ତାହାର ହୋଇବ ବଦିତ ।। ୧୨ ।।
ଶୁଣି ଜନେକ ମୁନି ମନେ ଆନନ୍ଦ ହୋଇ ।
ପାଟର ଦୋଳା ତହିଂ ରତ୍ନ ଲମ୍ବାଇ ।। ୧୩ ।।
ଅନ୍ତଃପୁରନଗ୍ରର ଯୁବତୀ ମିଳନ୍ତି ।
ଦିବ୍ୟ ସୁସ୍ୱରେ ହୁଳହୁଳି ଦେନ୍ତି ।। ୧୪ ।।
ସ୍ୱବର୍ଣ୍ଣର ଥାଳରେ ଦୂବ ଅକ୍ଷତ ଘେନି ।
କୁମାରଙ୍କ ଶିରେଣ ଦିଅନ୍ତି କାମେନୀ ।। ୧୫ ।।
ମାଣିକ୍ୟର ଦୀପାବଳୀ ଘେନଣ ବନ୍ଦାବନ୍ତି ।
ଲବକୁଶ ବୋଲି ଦୁଇ ଭାଇଙ୍କ ନାମ ଦେନ୍ତି ।। ୧୬ ।।
ବେଦ ଉଚ୍ଚାରନ୍ତି ଋଷିଗଣମାନେ ।
ଶୁଭ କଲ୍ୟାଣ ବାଞ୍ଛନ୍ତି ବାଲ୍ମୀକ ତପୋଧନେ ।। ୧୭ ।।
ସମୁଦ୍ର ଘୋଷ ଯେସନ ଶୁଭଇ ଅନ୍ତପୁରେ ।
ଶୁଣିଣ ହରଷ ହୋଇଲେ ବଜ୍ରଧରେ ।। ୧୮ ।।
ବ୍ରହ୍ମଋଷି ଦେବଋଷି ରାଜଋଷି ସିଦ୍ଧ ମୁନି ।
ଯତି ସନ୍ୟାସୀ ଭଗବନ୍ତ ତପୋଧନୀ ।। ୧୯ ।।
ସତୀ ପତିଭଗତା ଗୋମାତାର ମୂଳେ ।
ସନେକ ଲୋକ ବଶ୍ୱଦେବା ଦଶଦିଗ ପାଳେ ।। ୨୦ ।।
ଶୁଣିଣ ହରଷ ଦେବ ଅମରଗଣ ।
ଆନନ୍ଦେ ଉତସଲ୍ୟ ସବୁଙ୍କର ମନ ।
ପୁଷ୍ପସେନ ହକାର ଆଗ୍ୟାଂ ଦେଲେ ଶଚୀରରମଣ ।। ୨୧ ।।
ଶ୍ରୀରାମର ତନୟେ ନାମ ଦେଲେ ଲବକୁଶ ।
ତାଙ୍କର ଶିରେ ନେଇ କୁସୁମ ବରଷ ।। ୨୨ ।।
ଇନ୍ଦ୍ର ବଚନେ ଆସଇ ପୁଷ୍ପସେନ ।
ନଇଦେହୀନବରେ କୁସୁମ ବରଷଇ ଘନଘନ ।। ୨୩ ।।
ହରଷ ହୋଇଲେ ସକଳ ନରନାରୀ ।
ଗଲେ କାମେନୀ ଯେ ଯାହାର ପୁରୀ ।। ୨୪ ।।

---

୨୧. ପ୍ରଥମ ପାଦଟି ଖ ପୋଥିରେ ଓ ମଧ୍ୟ ପାଦଟି କ ପୋଥିରେ ନାହିଁ । ପୁଷ୍ପସେନ—ପୁସ୍ୟମେଧା (ଖ) । ୨୨. ତାଙ୍କର—ସୀତାଙ୍କର(କ), ତାହାଙ୍କର(ଖ)
୨୩. ପୁଷ୍ପସେନ—ପୁସ୍ୟମେଧା (ଖ) । ନବରେ—ବନରେ ।

ଧନେ ଧନେ କୁମର ହୋଇଲେ ବର୍ଦ୍ଧମାନ ।
ପୁତ୍ରନ୍ତ ଦେଖି ସୀତଯ୍ୟାର ଆନନ୍ଦମୟେ ମନ ॥ ୨୫ ॥

## ସୀତାଙ୍କ ଅଗ୍ନିପରୀକ୍ଷା

ଏସନେକ ଶୁଭେଣ ଗଲାକ ଛଡ଼ମାସ ।
ଜନେକ ମୁନି ପଗୃରନ୍ତ ବାଲ୍ମୀକଙ୍କର ପାଶ ॥ ୧ ॥
ହେ ମୁନି ମୋହର ଦୋହିତା ଶ୍ରୀରାମର ଘରଣୀ ।
କିମ୍ପାଇଁ ଏହାକୁ ତେଜିଲେ ଶୃପପାଣି ॥ ୨ ॥
ଋଷିଗଣେ ଏହି ବୋଲିବେ ମୋତେ କିସ ।
ସକଳ ଜନମୁଖେ ପାଇବି ଉପହାସ୍ୟ ॥ ୩ ॥
ହେ ଋଷି ଏଥିର କଥା ମୋତେ କହ ।
ବଡ଼ଇ ବଇରାଗ ହୋଉଛି ମୋହର ଦେହ ॥ ୪ ॥
ବାଲ୍ମୀକେ କହନ୍ତି ସୀତଯ୍ୟାକୁ ପଗୃର ।
ତାହାର ମୁଖେ ଶୁଣି ତୁହି ବଗୃର କର ॥ ୫ ॥
ବାଲ୍ମୀକଙ୍କର କଥା ଶୁଣି ଜନେକ ମହର୍ଷି ।
ସୀତଯ୍ୟାକୁ ହକାର ପୁଚ୍ଛନ୍ତି ଆଶ୍ୱାସି ॥ ୬ ॥
ଶୁଣ ଦୋହିତାଙ୍କର ତୁହି ସେ ମୋହର ଜ୍ୟେଷ୍ଠ ।
ଶିଖିବର ସୁନ୍ଦର ରାମ ସୂର୍ଯ୍ୟବଂଶ ଶ୍ରେଷ୍ଠ ॥ ୭ ॥
ଶିବନାଥର ଧନୁ ଅମଣ୍ଡିଲାକ ସହୁଂ ।
ମୋହର ସତ୍ୟ ଯେ ପୂରିଲାକ ତହୁଂ ॥ ୮ ॥
ତୋହର ବଲ୍ଲଭ ସେ ହୋଇଲା ଅଧିକାରୀ ।
ତିନି ଭାଇଙ୍କି ଦେଲି ତିନି କୁମାରୀ ॥ ୯ ॥
ତୋତେ ମୁହାଂସ ରାମ ତେଜିଲାକ ଯେବେ ।
ତିନି ଦୋହିତାଏ ମୋହର କିସ କରିବେ ॥ ୧୦ ॥
ହୀରା ମଣି ମାଣିକ୍ୟ ଯେ ଆଭରଣେ ହୋଇଥିଲୁ ।
ଅସମୟେ କାଳେ କିମ୍ପା ତାହା ନ ଆଣିଲୁ ॥ ୧୧ ॥

---

୪-୫. ଏ ଦୁଇ ପଦ ବଦଳେ ଖ ପୋଥିରେ ରହିଛି : "ହେ ମୁନି କରିବ ଏବେ କେବଣ ଉପାୟେ । ଅଗ୍ନିପରୀକ୍ଷା କରିବ ସୀତଯ୍ୟାର କାୟେ ॥ ବାଲ୍ମୀକ ବୋଇଲେ ସୀତଯ୍ୟାର ନାହିଂ ଦୋଷ । ଲୋକଙ୍କ ବଚନେ ରାମ ମନେ କଲେ ରୋଷ ॥ ତୋହର ଭ୍ରାନ୍ତି ଯେମନ୍ତେ ଫିଟଇ ମନ । ଋଷିଗଣ ଥୋଇ କରିହେ। ଦହନ ।" । ୭-୧୪. ଏ ପଦଗୁଡ଼ିକ ଖ ପୋଥିରେ ନାହିଁ ।

ନେତ ବସ୍ତ୍ର ପାଟଝୋଲ୍ଲି ଝୀନବସନ ।
ତାହା ତେଜି ଏକା ବସ୍ତ୍ରକେ ଅଇଲୁ ବନ ॥ ୧୨ ॥
ତୁହ୍ନ ଶ୍ରୀରାମଙ୍କୁ ଦୋଷ (ନ) କଲୁ ଯେବେ ।
କିପାଇଁ ଉପେକ୍ଷା ସେ କଲେ ପୁଣ ଏବେ ॥ ୧୩ ॥
ମୋହର ଆଗେ ଏଥିର କଥା ସତ କହ ।
ଶରୀରକୁ ବ୍ୟଥା ପାଇଲି ମହା କୋହ ॥ ୧୪ ॥
ତୁ ମୋହର ଦୋହ୍ନିତା କୁଳର ମଣ୍ଡଣୀ ।
କେବଣ ଦୋଷ ତୋତେ ଧଇଲେ ରଘୁମଣି ॥ ୧୫ ॥
କେବଣ ନିମନ୍ତେ ତୋତେ ବିହିଲେ ବନବାସ ।
ମୁନିଜନମୁଖେ ମୋତେ ଉପୁଜିଲି ଉପହାସ୍ୟ ॥ ୧୬ ॥
ସୀତଯ୍ୟା କହଇ ଶୁଣସି ହେ ତାତ ।
କଇକଯ୍ୟା ନାମେ ଯେ ଭରଥର ଜନମାତ ॥ ୧୭ ॥
ରାଜ୍ୟରେ ଅଭିଷେକ ସ୍ୱାମୀଙ୍କ କରିବେ ଯହୁଂ
ରାଣେ କଇକଯ୍ୟା ରାଜାକୁ ସତ୍ୟ ମନାଇଲେକ ତହୁଂ ॥ ୧୮ ॥
ଭରଥ ଅଯୋଧ୍ୟାରେ ରାଜ୍ୟଧର ହୋଉ ।
ଜ୍ୟେଷ୍ଠ ପୁତ୍ର ରାମ ତୋର ବନବାସ ଯାଉ ॥ ୧୯ ॥
ଶୁଣିଣ ନୃପତି ଅନେକ ବିକଳ ହୋଇଲେ ।
ମୋହର ସ୍ୱାମୀଙ୍କ ସତ୍ୟର କଥା କହିଲେ ॥ ୨୦ ॥
ପିତାର ବଚନେ ରାମ ବନକୁ ହି ଗଲି ।
ସୁମିତ୍ରାର ପୁତ୍ର ଲକ୍ଷ୍ମଣ ହି ନ ରହିଲି ॥ ୨୧ ॥
ଭୃତ୍ୟ ପଣେ ଗୋଡ଼ାଇଲି ଶ୍ରୀରାମର ତୁଲେ ।
ମୁହିଂ ନ ରହିଲି ଶାଶୁଙ୍କର ବୋଲେ ॥ ୨୨ ॥
ତିନିହେ ଅଗମ୍ୟ ବନେ ବିଶ୍ରାମ କରୁ ।
କନ୍ଦମୂଳ ଆହାରେ ତରୁତଳେ ଦିନ ହରୁ ॥ ୨୩ ॥
ଦଣ୍ଡକାଅରଣ୍ୟେ କଲୁ ଯାଇ ବାସ ।
ଅନେକ ମୃଗ ଦେଖି ମୁହିଂ ଲଗାଇଲି ମୁହାଂସ ॥ ୨୪ ॥
ଧନୁଶର ଧରି ରାମ ମୃଗମାରି ଗଲେ ।
ଦୂରକୁ ପଳାବନ୍ତେ ବାଣେ ଦୁଇମୁଣ୍ଡ ଛେଦିଲେ ॥ ୨୫ ॥
ମାୟାମୃଗ ସେ ତାଡ଼େଙ୍କର ସୁତ ।
ପ୍ରତିକାର ଲକ୍ଷ୍ମଣ ବୋଲି ଡାକ ଦେଲି ଧର୍ମଗତ ॥ ୨୬ ॥

---

୧୫–୧୬. ଏ ଦୁଇ ପଦ କ ପୋଥିରେ ନାହିଁ । ୧୭–୨୧. ଏହି ପାଞ୍ଚ ପଦ ବଦଳେ ଖ ପୋଥିରେ ରହିଛି : "ସୀତା ବୋଲନ୍ତି ଶୁଣସି ମୋହର ତାତ । ପିତାର ବଚନେ ରାମ ଗଲେ ବନବାସ ॥" ୨୨. ଭୃତ୍ୟପଣେ—ଲକ୍ଷଣ (ଖ) ।

ସେ ବକଲ ବସ୍ତ୍ରାଣ ମୁହିଂ ଯହୁଂ ଶୁଣିଲି ।
ଶ୍ରୀରାମକୁ ଘେନଆସ ବୋଲି ଲକ୍ଷ୍ମଣକୁ ପଠିଆଇଲି ।। ୨୭ ।।
ମୋତେ ତେଜିଣ ଲକ୍ଷ୍ମଣ ଯହୁଂ ଗଲା ।
ଋଷି ରୂପେ ରାବଣ ଭିକ୍ଷା ମାଗିଣ ଅଇଲା ।। ୨୮ ।
କନ୍ଦମୂଳ ଭିକ୍ଷା ଘେନ ପତ୍ରଘରୁ ବାହାର ହୋଇଲି ଯହୁଂ ୯
ରଥେ ବସାଇ ରାବଣ ମୋତେ ହରି ନେଲାକ ତହୁଂ ।। ୨।
ମୃଗ ମାରି ରାମ ବାହୁଡ଼ି ଆସନ୍ତେ ।
ଲକ୍ଷ୍ମଣଙ୍କୁ ଦେଖିଲେ ଅଗମ୍ୟ ବନପଥେ ।। ୩୦ ।।
ତହୁଂ ବିମନେ ଅଇଲେ ବେନି ଭାଇ ।
ପତ୍ରଘରେ ପଶି ମୋତେ ଲୋଡ଼ିଣ ନ ପାଇ ।। ୩୧ ।।
ତହୁଂ ରାମଲକ୍ଷ୍ମଣ ମୋତେ ଲୋଡ଼ିଣ ଗଲେ ।
ପକ୍ଷୀଜଟା ତହୁଂ ରାମ ବାରତା ପାଇଲେ ।। ୩୨ ।।
ସୁଗ୍ରୀବର ତୁଲେ ରାମ ହୋଇଲେ ମଇତ୍ର ।
ସୁଗ୍ରୀବର ଛଳେ ରାମ ବାଳିକି କଲେ ହତ ।। ୩୩ ।।
କପିବଳ ଘେନ ସେତୁବନ୍ଧ ବାନ୍ଧି ।
ଅସୁରନ୍ତ ମାରି ଦଶଶିର ଛେଦି ।। ୩୪ ।।
ବିଭୀଷଣଙ୍କୁ ଲଙ୍କାରେ କଲେ ରାଜ୍ୟଧର ।
ମନ୍ଦୋଦରୀ ଭାରିଯା ହୋଇଲା ତାହାର ।। ୩୫ ।।
ଅଗ୍ନି ପରୀକ୍ଷ ମୋତେ ସାତଦିବସ କଲେ ।
ତେବେ ସେ ସ୍ୱାମୀ ମୋତେ କୋପ ତେଜିଲେ ।। ୩୬ ।।
ପୁଷ୍ପକ ରଥ ଚଢ଼ି ଅଯୋଧ୍ୟାକୁ ଅଇଲୁ ।
ନିଜ ନଗରେ ପାଟେ ଅଭିଷେକ ହୋଇ(ଲୁ) ।। ୩୭ ।।
ଯାଜ୍ଞ ତପ ରାମ ଅନେକ ଧର୍ମ କଲା ।
ମୋତେ ଘେନ ରାମ ବାଣାରାସୀକି ଗଲା ।। ୩୮ ।।
କାଶୀପୁରୁ ଆସି ନରେଶ ହୋଇଲୁ ।
ନିଷ୍କଣ୍ଟେ ହୋଇ କେତେହେକ କାଲ ରାଜ୍ୟ କଲୁ ।। ୩୯ ।।
ଗର୍ଭେଣ ମୋହର ତିନିମାସ ହୋଇଲାକ ତହୁଂ ।
ଦୟା ଚଢ଼େ ପ୍ରସାଦ ଯାଚି ଦେଲେ ରାମ ତହୁଂ ।। ୪୦ ।।
କେବଣ ଦଇବର ବିଯୋଗେ ମୁହିଂ ମୋହିତ ହୋଇଲି ।
ବନକୁ ଯିବି ବୋଲି ପ୍ରସାଦ ମାଗିଲି ।। ୪୧ ।।
ତହୁଂଣ ଶ୍ରୀରାମ ଲକ୍ଷ୍ମଣଙ୍କୁ ବୋଇଲା ।
କପଟ କରି ମୋହ ତୁଲେଣ ପମନ୍ତ୍ରି ଲା ।।୪୨।।

୩୮. ଯାଜ୍ଞ—ଜପ (ଖ) ।

ବନସ୍ତକୁ ହି ଯେବେ ମୁହିଂ ଆସିବ ।
ଅଲଙ୍କାର ବସ୍ତ୍ର କେମନ୍ତେ ଆଣିବ ॥ ୪୩ ॥
ଧନବସ୍ତ୍ର ଥିଲେ ଦୁଷ୍ଟେ କରନ୍ତି ପ୍ରାଣନାଶ ।
ଏକାଇ ବସ୍ତ୍ର ଭୂଳେ ମୁହିଂ କଲଇ ବନବାସ ॥ ୪୪ ॥
ଏକା ଲକ୍ଷ୍ମଣ ମୋତେ ବନକୁ ଆଣିଲା ।
ନିଦ୍ରାଗଲି ଯହୁଂ ସେ ମୋତେ ତେଜିଣ ଗଲା ॥ ୪୫ ॥
ପରେକ ଲହି ଡାଳେ ସେ ଗଲାକ ଲମ୍ବାଇ ।
ରୋଦନ କଲି ମୁହିଂ ଲକ୍ଷ୍ମଣଙ୍କୁ ଦେଖି ନ ପାଇ ॥ ୪୬ ॥
ବନଜୀବେ ଖାଇବେ ବୋଲି ବ୍ୟାକୁଳ ହୋଇଥିଲି ।
ପତ୍ର ଦେଖି ସେ ତାହାର ଚରିତ୍ର ଜାଣିଲି ॥ ୪୭ ॥
ପତ୍ରେଣ ଲହିଲା ସୀତାୟୋ ତୁହି ଅଯୋଧ୍ୟା ନ ଯିବୁ ।
ପିତାର ଘରେ ତୋହର ଯାଇଣ ରହିବୁ ॥ ୪୮ ॥
ସେ ରାତ୍ରେକ ଯାକ ବସିଲି ମୁହିଂ ବନେ ।
ରଖିଥିଲେ ମୋତେ ଅରଣ୍ୟ ଜୀବମାନେ ॥ ୪୯ ॥
ତହୁଂ ବନଜୀବେ ବାଟ କଢ଼ାଇ ଆଣିଲେ ।
ବାଲ୍ମୀକଙ୍କର ଆଶ୍ରମେ ଛାଡ଼ି ମୋତେ ଗଲେ ॥ ୫୦ ॥
ସେ ଯତି ମୋତେ ଆଣିଲେକ ଏଥ ।
ତୋହର ନବରକୁ ଆସନ୍ତେ ଉପୁଜିଲା ବେନି ପୁତ୍ର ॥ ୫୧ ॥
ବହେଣୀଙ୍କର କଥା ନ ଜାଣଇ ତାତ ମୁହିଂ ।
ତେରମାସ ହୋଇଲା ଦେଖିଲା ମୋର ନାହିଁ ॥ ୫୨ ॥
ସତୀର କଥା ଯହୁଂ ଜନକ ଶୁଣିଲା ।
କ୍ଷଣେକ ସ୍ତମ୍ଭୀଭୂତ ହୋଇ ଦେହରୁ ଝାଳ ବାହାର ହୋଇଲା ॥
ସୀତାର ମୁଖ ଚାହିଂ କହଇ ମହାମୁନି ।
ତୁହି ଯେବେ ସତୀବ୍ରତେ ଥିଲୁ ଗୋ ନନ୍ଦନୀ ॥ ୫୪ ॥
ଋଷିଗଣଙ୍କର ମୁଖେ ଉପୁଜିବ ଲାଜ ।
ମୁହିଂ ଅଗ୍ନି ପରୀକ୍ଷ ତୋତେ କରିବ ଦହିଯ ॥ ୫୫ ॥

---

୪୩-୪୪. ଖ ପୋଥିରେ ନାହିଁ ୪୪. ଏକଇ—ଦୁଇ । ୪୬. ସେ—ସେ ମୋତେ
୪୬-୪୯. ଏ ଚ୍ଯାରି ପଦ ବଦଳେ ଖ ପୋଥିରେ ଅଛି "ପତ୍ରେକ ଲହିସେ ଲମ୍ବାଇଲା ଡାଳେ । ବୋଇଲା ସୀତ୍ୟା ଗୋ ନ ଯିବୁ ଅଯୋଧ୍ଯା ମଣ୍ଡଳେ ॥ ତହୁଂ ଲକ୍ଷ୍ମ ମୁଁ ଅଇଲି ଅପସରି ॥ ବନସ୍ତର ଜୀବେ ମୋତେ ହୋଇଲେ ପାହାଣ୍ଡ ॥"
୫୧-୫୩. ଏ ତିନିପଦ ବଦଳେ ଖ ପୋଥିରେ ଅଛି "ସେ ମହାଋଷି ମୋତେ ଆଣିଲାକ ପନ୍ଥ । ତୋହର ଆଗରେ କହିଲଇ ସ୍ୱରୂପ ବାରତ ।"

ଅଗ୍ନିରେ ଦହଯ ନୋହିବୁ ତୁହ ଯେବେ ।
ସନ୍ତାପଣ ଲୋକ ଜାଣିମେ ନା ତେବେ ॥ ୫୬ ॥
ଅଗ୍ନିର ପରୀହରୁ ଯେବେ ହୋଇବୁ ପାର ।
ତେବେ ସେ ଲାଞ୍ଛନ ଫିଟିବ ମୋହର ॥ ୫୭ ॥
ସୀତସ୍ତ୍ରା କହଇ ମନେ ଯେବେ ଧଇଲୁ ବାକୃଣ୍ଡ ।
ବେଗେଣ ସମ୍ଭାର କରସି ପିତା ବହ୍ନନହୋଅ ॥ ୫୮ ॥
ସୀତାର ବଚନ ଶୁଣି ଜନେକ ରାଜମୁନ୍ୟ ।
ତକ୍ଷଣେ ହକାରଲେ ଚଉଦ ନନ୍ଦନ ॥ ୫୯ ॥
ବିଶ୍ୱାସ କରନ୍ତି ଶିଷ୍ୟଙ୍କର ଆଗେ ।
ଅଗ୍ନି ଆରୋପଣ କର ହୋ ନେଇ ବେଗେ ॥ ୬୦ ॥
ଗୁରୁଙ୍କର ବଚନ ଶୁଣିଲେକ ଯହୁଂ ।
ଅଗ୍ନି ସମ୍ଭାର କରନ୍ତି ସେ ତହୁଂ ॥ ୬୧ ॥
ଚନ୍ଦନ ଅଗର ଦେବଦାରୁ ନେଇ ।
ଘୃତ ପକାନ୍ତେ ଅଗ୍ନି ପ୍ରଚଣ୍ଡରେ ଜଳଇ ॥ ୬୨ ॥
ସ୍ନାହାନ ସାର ଜନେକର ଦୁଲାଳି ।
ଅଗ୍ନିର ସନ୍ନଧେ ମିଳଇ ଶ୍ରୀରାମର ନାରୀ ॥ ୬୩ ॥
ସୋମକାନ୍ତି ନାମେ ସୀତସ୍ତ୍ରାର ଜନନୀ ।
ବିକଳେ ରୋଦନ କରଇ ଜନେକର ପତ୍ନୀ ॥ ୬୪ ॥
ସୀତସ୍ତ୍ରା କହଇ ମାତାକୁ ଗାଇ ।
କିପାଇଁ ରୋଦନ ଗୋ କରୁ ମୋହର ଆଈ ॥ ୬୫ ॥
ମନ୍ଦବେଳେ ମୁହିଂ ଯେ ହୋଇଲି ଉତପନ
ମୋହର ମଲେ ଏବେ ସରଇ ତୁମର ଅପମାନ ॥ ୬୬ ॥
ଏଥିକୁ ବିକଳ ନୁହସି ଗୋ ମାତ ।
ମୁହିଂ ଯେବେ ସତ୍ତ ଅଗ୍ନି କିମ୍ପା ଦହିବ ମୋର ଗାତ ॥ ୬୭ ॥
ନଗ୍ର ନରନାରୀ ଦେଖନ୍ତି ସର୍ବେ ମିଳି ।
ଅଗ୍ନି ପରୀକ୍ଷ କରନ୍ତି ଜନେକ ତପସ୍ୟାଳି ॥ ୬୮ ॥
ହସ୍ତେ ଶ୍ରୀଫଳ ଦେନ ଶ୍ରୀରାମ ଅବଳାକ୍ଷୀ ।
ଅଗ୍ନିକି ସ୍ତୁତି କରଇ ଶୁଭ୍ରକେଶୀ ॥ ୬୯ ॥
ଦଶ ଦିଗପାଳେ ହୋଇଥାଅ ସାକ୍ଷୀ ।
ତୁମ୍ଭେ ତ ପାପପୁନ୍ୟ ମୋହର ଅଛ ନା ନିରେଖି ॥ ୭୦ ॥

---

୫୮. କ ପୋଥିରେ ନାହିଁ । ୭୦. ଖ ପୋଥିରେ ଅଗ୍ନିପରୀକ୍ଷାର ବିଷୟ ସମାନ ହେଲେ ହେଁ ଭାଷା ଭିନ୍ନ ଓ ବର୍ଣ୍ଣନା ସଂକ୍ଷିପ୍ତ । ୬୬. ଉତପନ-ଉତ୍ପନ (କ) । ସରଇ—ମରଇ (କ) ।

ମୁହିଂ ଯେବେ ମନ ଧାନେ କରି ଅଛଇ ଦୋଷ
ଅଗ୍ନିରେ ଯାଇ ହୋଇବି ମୁଁ ଧ୍ୱଂସ ॥ ୭୧ ॥
ହେ ଅଗ୍ନି ତୁହି ବଶ୍ୱର କରି ଜାଣ ।
ମୋହର ଦୋଷ ତୁହି ସଶାସ୍ତୁ ପରିମାଣ ॥ ୭୨ ॥
ସ୍ୱାମୀର କୋପୁ ପୂର୍ବେ ପାର କଲୁ ମୋତେ ।
ଏବେ ବିନସ୍ତୁ କରି କହୁଅଛୁ ତୋତେ ॥ ୭୩ ॥
ବାଳୁତ କାଳେ ପୋଷଇ ପିତାମାତା ।
ଯୁବା ବୟସେ ଆଧିପତ ଅଟନ୍ତି ଭର୍ତା ॥ ୭୪ ॥
ମାରୁ କି ତାରୁ ସ୍ୱାମୀ ଅଧିକାରୀ ।
ପିତା କାହିଂ ଦୋହିତାକୁ ଏତେ ଜଂଦାସ କ୍ଷର ॥ ୭୫ ॥
ପୂର୍ବ ଜନ୍ମେ ରାଢ଼େଣୀ ଦାନ ପୁନ୍ୟ ନ କଲି ।
ଶାସ୍ତ୍ର ପୁରାଣ ଯେ କର୍ଣ୍ଣରେ ନ ଶୁଣିଲି ॥ ୭୬ ॥
ସ୍ୱାମୀରେ ଦୃଷ୍ଟୀ ଯେ ହୋଇଲି ମୁହିଂ ତହୁଂ ।
ଏବେ ପିତା ଘରେ ଆଶ୍ରମ କଲି ଯହୁଂ ॥ ୭୭ ॥
ପିଅର ମହାଗୁରୁ ମୋତେ ପରତେ ନ ଗଲା ।
କୁଳେ କଳଙ୍କ ନିମନ୍ତେ ଅଗ୍ନି ଆରୋପିଲା ॥ ୭୮ ॥
ମୁହିଂ ଯେବେ ମନ ଧାନେ କରିଅଛୁ ଦୋଷ ।
ତୋହର ତେଜେ ମୁହିଂ ହୋଇବଇ ଧ୍ୱଂସ ॥ ୭୯ ॥
ଏତେ କହି ଅନଳେ ପଶଇ ମହାସତୀ ।
ଦେଖି ଆହାକାର କରନ୍ତି ନଗ୍ରର ଯୁବତୀ ॥ ୮୦ ॥
ଏ ପୁତ୍ରନ୍ତ ଛାଡ଼ି କେହ୍ନେ ବଳିଲା ତୋ ମନ ।
କେ ପ୍ରତିପାଳିବ ତୋହର ବାଳୁତ ନନ୍ଦନ ॥ ୮୧ ॥
କିପାଇଁ ଜନେକ ମୁନି ଏସନ କୃତ୍ୟ କଲା ।
ଦୋହିତାକୁ କେସନେକେ ଅଗ୍ନିରେ ଭରିଲା ॥ ୮୨ ॥
କୁଳକୁ ଲାଞ୍ଛନ ନିମନ୍ତେ ହୋଇଲାକ ଦହି ।
ବାଲ୍ମୀକେ ଅଛନ୍ତି କିମ୍ପା ନ ରୁହାଇଲେ ସେହି ॥ ୮୩ ॥
ଏସନକ ବିକଳ ସକଳ ନରନାରୀ ।
ହୃଦୟରେ କରତାଡ଼ି ନୟନୁ ଲୁହ ଝରି ॥ ୮୪ ॥
ଋଷିଗଣ ସମେତେ ଜନେକ ରାଜମୁନ୍ୟ ।
ଆବର ଦେଖନ୍ତି ବାଲ୍ମୀକ ତପୋଧନ ॥ ୮୫ ॥
ଋଷଭ ଶୁକ୍ଳ ଦଶମୀ ଗୁରୁବାର ।
ପୁଷ୍ୟା ନକ୍ଷତ୍ର ସାତ ଘଡ଼ି ଦିବାକର ॥ ୮୬ ॥

---

୭୨. ପରିମାଣ—ପରିଣାମ । ୭୯. ମୁହିଂ ଯେବେ—ମୁନିଜେବେ । ୮୬. ଋଷଭ—ବୈଶାଖ (ଖ), ମାସଟି ଫାଲ୍‌ଗୁନ ହେଲେ ହିଁ ତିଥି ସହ ନକ୍ଷତ୍ରର ମେଳ ଘଟିବ ।

ସୀତାକୁ ଶୁଦ୍ଧ ଅଗ୍ନି ପରୀକ୍ଷ କରନ୍ତି ।
ଅନେକ ମହର୍ଷିଗଣେ ବେଢ଼ିଣ ଅଛନ୍ତି ॥ ୮୭ ॥
ଏମନ୍ତେ ଜନରାଜ ଜନଦ୍ଦବସ ହୋଇଲେକ ଯହୁଂ ।
ସାମନ୍ତ ହକାର ଜନେକ କହନ୍ତି ତହୁଂ ॥ ୮୮ ॥
ଅଗ୍ନି ର ଉପରେ ପକାବନ୍ତୁ ନୀର ।
ଦେଖିବା ସୀତାର ଅଛୁ କି ଶରୀର ॥ ୮୯ ॥
ଜନେକର ବାକ୍ୟ ଉଚ୍ଚୁଳିଲେକ ଯେବେ ।
ପାଣି ପକାଇ ଅଗ୍ନି ଲିବାଇଲେକ ତେବେ ॥ ୯୦ ॥
ଦହନ କାଞ୍ଚନ ଜାଣି ଦିଶଇ ଶରୀର ।
ଦେଖି ହରଷ ହୋଇଲେ ଜନେକ ମୁନିବର ॥ ୯୧ ॥
ବାଲମୀକ ସହିତେ ନଗ୍ର ନରନାରୀ ।
ଧନ୍ୟ ଧନ୍ୟ କରନ୍ତି ସକଳ ତପସ୍ୱୀ ॥ ୯୨ ॥
ସୀତାର ସନିଧେ କହେ ଜନେକ ରାଜମୁନି ।
କୁଳକୁ କଳଙ୍କ ଏବେ ତେଜିଲୁ ଜିଦ୍ନସେନୀ ॥ ୯୩ ॥
ଅଗ୍ନି ରୁ ବାହାର ହୋଇ ଆସସି ମହାସତୀ ।
ତ୍ରି ଭୁବନେ ବିଖ୍ୟାତ ଏବେ ହୋଇଲା ତୋହର କୀରତି ॥୯୪
ପିତାର ବଚନ ଯହୁଂ ସୀତା ଶୁଣିଲା ।
ଅଗ୍ନି ର ଭିତରୁ ସତୀ ବାହାର ହୋଇଲା ॥ ୯୫ ॥
ସୀତସ୍ୟାର ଜନନୀ ଦେଖି ହୋଇଲେ ହରଷ ।
ଅନେକ ଋଷିପତ୍ନୀ ତାର ବେଢିଛନ୍ତି ପାଶ ।
ଯେ ଯାହାର ଚିତ୍ତେ ହୋଇଣ ହରଷ ॥ ୯୬ ॥
ଦାନ ଦକ୍ଷିଣା ଦେଇ ଜନେକ ମୁନିବର ।
ସୀତାକୁ ଘେନିଗଲେ ନବର ଭିତର ॥ ୯୭ ॥
ପୁହନ୍ତି କୋଳେ ଧରି ସୀତସ୍ୟା ମହାସତୀ ।
ପିତା ଘରେ ଦେବୀ ରହିଲା ନିଭ୍ରାନ୍ତି ॥ ୯୮ ॥
ଶୁଣିଲୁ କି ଯୁଧିଷ୍ଠି ର ଲବକୁଶଙ୍କର ଜାତ ।
ଏ ଆଖ୍ୟାନ ଶୁଣିଲେ ଦୁଷ୍କୃତ ହୋଏ ହତ ॥ ୯୯ ॥
ଜୟ ତୁ ମଧୁସୂଦନ ଲକ୍ଷ୍ମୀଦେବୀର ପତି ।
ଶଙ୍ଖ ଚକ୍ର ଗଦା ପଦ୍ମ ଚତୁର୍ଭୁଜେଣ ସ୍ଥିତି ॥ ୧୦୦ ॥

---

୮୮. ସାମନ୍ତ—ସମସ୍ତଙ୍କୁ (ଖ) । ୮୯. ପକାବନ୍ତୁ—ପକାବନ୍ତି (କ) । ୯୦. ଲିବାଇଲେକ—ଲିବାଇଲେକ । ୯୩. ଜିଦ୍ନସେନୀ—ବିଦ୍ନଶେନ । ୯୪. ବିଖ୍ୟାତ —ବିକ୍ଷାତ (କ) । ୯୬. ଏହାର ତୃତୀୟ ପାଦଟି କ ପୋଥିରେ ନାହିଁ । ୯୯. ଏ ପଦଟି ଖ ପୋଥିରେ ନାହିଁ ।

କିରୀଟି ମକୁଟ ଶୋଭିତ ପୀତବାସ ।
କର୍ଣ୍ଣେଣ ବେନି କୁଣ୍ଡଳ ସମ୍ପୂର୍ଣ୍ଣ ଚନ୍ଦ୍ର ହାସ ।। ୧୦୧ ।।
ଶ୍ୱେତ ପଦ୍ମ ଜାଣି ବେନି ଲୋଚନ ଦିଶନ୍ତି ।
ମଧ୍ୟରେ ଭମରା କି ରାଜୀବ ଚୁମ୍ବନ୍ତି ।। ୧୦୨ ।।
ଶତେଯୋର ମୁକୁତା ଶୋଭିତ ଯାର ଗଳା ।
ହୃଦରେ ଲୁଲଇ ଯାହାର ଅନେକ ପଦ୍ମମାଳା ।। ୧୦୩ ।।
ମଧୁସୋଦନ ରୂପ ସର୍ବଦା ସମ୍ପୂର୍ଣ୍ଣ ।
ମହତ ପୁରୁଷ ସେ ମଧୁସୋଦନ ।। ୧୦୪ ।।
ମଧୁସୋଦନ ନାମ ସୁମରଇ ନିତ ।
ମଧୁସୋଦନ ସୁମରନ୍ତେ ଲୋକେ ମୁକତ ।। ୧୦୫ ।।
ନିତ୍ୟ ହୋ ସୁମରଇ ଯେ ମଧୁସୋଦନ ।
ଅନ୍ତେ ନ ଯାଇ ସେ ଯମର ଭୁବନ ।। ୧୦୬ ।।
ମଧୁସୋଦନ ସୁମରନ୍ତେ ଲଭଇ ମୁକତ ।
ସିଦ୍ଧେଶ୍ୱର ଦାସ ମଧୁସୋଦନ ପଦ୍ମରେ ଭଗତ ।। ୧୦୭ ।।

## ଲବକୁଶଙ୍କର ବିଦ୍ୟାଲାଭ

ଏଥୁ ଅନନ୍ତରେ ମାରକଣ୍ଡଙ୍କର ବଚନ ଶୁଣି ।
ହରଷ ହୋଇଲେ ଯୁଧିଷ୍ଠିର ନୃପମଣି ।। ୧ ।।
ଶୁଣି ଖୁଇନ୍ତି ପେନି ପଣ୍ଡୁର ନନ୍ଦନ ।
ଦ୍ରୌପଦୀ ସହିତେ ଯେ ଛଅଜଣ ।। ୨ ।।
ମାର୍କଣ୍ଡ ପଦ୍ମର ଧରି ପଦ୍ମେ ନମନ୍ତି ।
ଚରଣଧୂଳି ନେଇ କପୋଳେ ଲେପନ୍ତି ।। ୩ ।।
କଲ୍ୟାଣ କରନ୍ତି ମୃକଣ୍ଡର ସୁତ ।
ଯେ ମନବାଞ୍ଛା ସୁଫଳ ହୋଉ ତତ୍ର ।। ୪ ।।
ଅରିଷ୍ଟି ଉତପାତ ସମସ୍ତ ହୋଉ କ୍ଷୟେ ।
ନିଜ ଭୁବ ଲଭ ରଣେଣ ଅଜୟେ ।। ୫ ।।
ଯୁଧିଷ୍ଠି ପଚାରନ୍ତି ଶୁଣ ହେ କଳ୍ପମୁନି ।
ଭଲ ଅପୂର୍ବ କଥାଏ କହିଲ ରାମାୟେଣ ଧୁନି ।। ୬ ।।
ବନସ୍ତେ ସୀତାଙ୍କର ଦୁସହ କଷ୍ଟ ଶୁଣି ।
ଶରୀର ଦହୁଥିଲା କୋଟିଅଗ୍ନି ଜାଣି ।। ୭ ।।

---

୧୦୨. ଶ୍ୱେତପଦ୍ମ ଜାଣି—ଶତେପଦ୍ମ ଜିଣି (ଖ) । ଭମରା—ଭମ୍ବର (ଖ)
୧୦୩. ଅନେକ ପଦ୍ମ—ରତ୍ନ କଦମ୍ବ (ଖ) । ୬. ରାମାୟେଣ—ରାବାଏଣ (ଖ) ।

ପୁଚ୍ଛନ୍ତି ଯେବେ ପିତାର ଘରେଣ ରହିଲା ।
ଲୋକେଣ ମହାଋଷି ଅଗ୍ନି ପରୀକ୍ଷ କଲା ॥ ୮ ॥
କପଣ୍ଡ ମହାସତୀ ହୋଇଲାକ ପାର ।
ପୁଚ୍ଛନ୍ତି ଯେବେ ବଗ୍ରାମ କଲା ଜନେକର ଘର ॥ ୯ ॥
ଏକଥା ସହୁଂ କର୍ଣ୍ଣରେ ଶୁଣିଲ ।
ସକଲ ବ୍ୟଥା ତେଜି ହରଷ ହୋଇଲ ॥ ୧୦ ॥
ତହୁଂ କେବଣ କୃତ୍ୟ କଲେକ ରାମରାଣୀ ।
କହସି ମହାମୁନି ଅପୂର୍ବମସ୍ତେ ବାଣୀ ॥ ୧୧ ॥
କହନ୍ତି ମାରକଣ୍ଡ ଶୁଣସି ପଣ୍ଡୁସୁତ ।
ବଚନ ରାମାୟେଣ ପବନହୁ ପବନ ॥ ୧୨ ॥
ସକଲ୍ପ କରି ଯେ ରାମାୟେଣ ଶୁଣନ୍ତି ।
ଅବ୍ୟସ୍ତେ ବଇକୁଣ୍ଠେ ସେମାନେ ବସନ୍ତି ॥ ୧୩ ॥
ଶୁଣସି ପାଣ୍ଡବେ ଚିତ୍ତ ସ୍ଥିର କରି ।
ତଳସ୍ତେ କରି ଶୁଣ ଗୋ ଦ୍ରୋପଦକୁମାରୀ ॥ ୧୪ ॥
ଜନେକର ଘରେ ଆନ୍ତେଣ ଦେବୀ ସୀତା ।
ପୁତ୍ରକୁ ଦେଖି ରାମକଇ କରଇ ଚିନ୍ତା ॥ ୧୫ ॥
ଦୁଇ କୁମରେ ରାମର ସନ୍ତାତ ଦିଶନ୍ତି ।
ରୂପଗୁଣ ଦେଖି ଭାଳୁଥାଇ ମତ ॥ ୧୬ ॥
ରାମ ରାମ ରାତ୍ର ଦିବସେ ସୁମରଇ ।
ଦସ୍ତୀ ଗ୍ରୁଡ଼ିଲୁ କମ୍ପା ମୋତେ ଛନ୍ଦିବର ସୁନ୍ଦରଇ ॥ ୧୭ ॥
ମୋହର ନ ଥିଲେ ତୋତେ ଦିନେ ହେ ସୁଖ ନାହିଂ ।
ମୋ ତହୁଂ ପୀରତି ତୋତେ ଆନ ଯୁବତୀ ନାହିଂ ॥ ୧୮ ॥
ଏସନେକ ଭଳି ରାତ୍ରଦିବସ ସେ ଝୁରଇ ।
ଲାଜେ କାହାରି ଆଗେ ପ୍ରକାଶମୁ ନ କରଇ ॥ ୧୯ ॥
ଏସନେ ବରଷେ ହୋଇଲାକ ସହୁଂ ।
ଜନେକ ରାଜଋଷିକି ବାଲ୍ମୀକେ କହିଲେ ତହୁଂ ॥ ୨୦ ॥
ଶୁଣସି ଜନେକ ମୋହର ବଚନ ।
ନସୃତ ଆଶ୍ରମକୁ ମୁହିଂ କରିବି ଗମନ ॥ ୨୧ ॥
ପୁତ୍ରଦୁହିନ୍ତ ପ୍ରତିପାଳ ଥିବୁ ।
ପ୍ରାଣୁ ଅଧିକ ଶୀତସ୍ତାର ତନସ୍ତନ୍ତ ଦେଖିବୁ ॥ ୨୨ ॥

୧୨. ରାମାୟେଣ—ରାବାଏଣ (ଖ) । ପବନହୁ—ପବନକୁ । ୧୩. ରାମାୟେଣ—ରାବାଏଣ (ଖ) । ୧୬. ଦିଶନ୍ତି—ଦିଅନ୍ତି । ଏ ପଦଟି ଖ ପୋଥିରେ ନାହିଁ । ୨୧ ନସୃତ—ନଜ (ଖ)

ରଘୁବଂଶ ଉଦ୍ଧାରଣ ଏ ସୀତୟାର ବେନି ସୁତ ।
ଅଭିନବ ସୁନ୍ଦର ଏ ଷଣ୍ଢ ବର ସଞ୍ଜାତ ॥ ୨୩ ॥
ଯେସନେ କୁମାରେ ହୁଅନ୍ତି ବର୍ଦ୍ଧମାନ ।
ଶବ୍ଦସ୍ତ୍ରେ ଶାସ୍ତ୍ରସେ ପରିପୂର୍ଣ୍ଣ କରି ଶ୍ରୀରାମର ନନ୍ଦନ ॥ ୨୪ ॥
ଜନେକ କହଇ ବାଲ୍ମୀକିଙ୍କର ବଚନ ଶୁଣି ।
ତୁମ୍ଭେ କିମ୍ପାଇଁ ମହର୍ଷି କହିଲ ଏସନକ ବାଣୀ ॥ ୨୫ ॥
ତୁମ୍ଭେ ମୋହର ମହାଗୁରୁ ଏଥକୁ ଅଇଲୁ ଯେବେ ।
ସକଳ ପାପ ମୁହିଂ ବିନାଶିବି ଏବେ ॥ ୨୬ ॥
ସୀତାଙ୍କର କଷ୍ଟ ଦେଖି ମୁହିଂ ହୋଇଲି ବିରସ ।
ତୋହର ଥିଲେ ସେ ପାସୋରିବ ହୋଇବ ହରଷ ॥ ୨୭ ॥
ତୁମ୍ଭ ମୁନି ମୋହର ରାଜ୍ୟରେ ବହିଥିବୁ ।
ଯଦ୍ୟପି ଅବା ମୋତେ ଓପ୍ରଧ ଗ୍ରନ୍ତିବୁ ॥ ୨୮ ॥
ରାମ ନାମ ଯାହା ସୁମରିବୁ ନିତି ।
ପ୍ରତକ୍ଷେ ଦେଖ ତୁଇ କୁମାରେ ଶ୍ରୀରାମର ମୂରତି ॥ ୨୯ ॥
ସକଳ ଶାସ୍ତ୍ରେ ନିର୍ଜିତ ତୁମ୍ଭେ ତପୋଧନ ।
ଶାସ୍ତ୍ର ପଢ଼ାଇବ ଶ୍ରୀରାମର ପୁତ୍ର ବେନି ॥ ୩୦ ॥
ଏ ବେନି ତନୟନ୍ତି ପ୍ରତିପାଳିବା ।
ଏ ମୋହର ଭଗତି ଚେନି ଏଥେ ରହିଥିବା ॥ ୩୧ ॥
ମୋତେ ଯେବେ ଦୟା ନ ଥିବ ତୋହର ।
ଶ୍ରୀରାମର ପୁତ୍ର ଅର୍ଥେ ତୁମ୍ଭେ ଥିବ ମୋହର ପୁର ॥ ୩୨ ॥
ଏହାନ୍ତି ଉପେକ୍ଷିଣ ନ ଯିବ ବ୍ରହ୍ମସୁତ ।
ଏତେ କହି ଜନକ ଶିରେ ଦେଲେ ହସ୍ତ ॥ ୩୩ ॥
ବାଲ୍ମୀକେ ଜନେକର କଥା ଶୁଣିଲେକ ସହୁଂ ।
ଜନେକର ମନ୍ଦିରେ ବିଶ୍ରାମିଲେ ତହୁଂ ॥ ୩୪ ॥
ଏଥୁ ଅନନ୍ତରେ ଶୁଣ ପଣ୍ଡୁସୁନ ।
ଜନେକର ଘରେ ବଢ଼ନ୍ତି ଶ୍ରୀରାମର ନନ୍ଦନ ॥ ୩୫ ॥
ଶ୍ରୀରାମ ସ୍ୱରୂପ ପୁତ୍ରନ୍ତି ଦେଖି ।
ଓହନଶି ଶ୍ରୀରାମର ତହିଂ ମନ ଥାଇ ସୀତା ଶଶୀମୁଖୀ ॥୩୬

---

୨୩. ଉଦ୍ଧାରଣ—ଧାରଣ (ଖ) । ଷଣ୍ଢ ବର—ମଦନ (ଖ) । ୨୪. ଶବ୍ଦସେ ଶାସ୍ତ୍ରସ୍ତ୍ରେ ପରିପୂର୍ଣ୍ଣ—ସମସ୍ତ ଶାସ୍ତ୍ରେ ପବନ୍ତ (କ) । ୨୮–୨୯. ଖ ପୋଥିରେ ନାହିଁ । ୩୦–୩୨. ଏ ତିନି ପଦ କ ପୋଥିରେ ନାହିଁ । ୩୬. ଓହନଶି···ଶଶୀମୁଖୀ—ଶ୍ରୀରାମର ମୁହାଂସ ଛାଡ଼ଇ ଚନ୍ଦ୍ରମୁଖୀ (ଖ) ।

ସପତ ବରଷ ସହୁଂ ହୋଇଲେ ଦୁଇଭାଇ ।
ଜନେକ ରାଜଋଷି ଭନେକ ବାଲ୍ମୀକକୁ କହି ।। ୩୭ ।।
ହେ ଗୁରୁ ମୋହର ବଚନେକ ଶୁଣସି ।
ଏ ଦୁଇ କୁମରନ୍ତ ଅକ୍ଷର ପଢ଼ାସି ।। ୩୮ ।।
ଜନେକର କଥା ଶୁଣି ବାଲ୍ମୀକ ମହାଯତ ।
ଶୁଭ ଅନୁକୂଳ ତଥି ବଗୃରନ୍ତ ।। ୩୯ ।।
ମକର ଶୁକଲ ପଞ୍ଚମୀ ଗୁରୁବାର ।
ମାହେନ୍ଦ୍ର ଯୋଗେ ରୋହିଣୀ ନକ୍ଷତ୍ର ପ୍ରଗୃର ।। ୪୦ ।।
ଆରାଧ(ନା) କରନ୍ତ ଗଉଣାତନୟେ ।
ସରସ୍ୱତୀ ସ୍ଥାପି ଭଦ୍ରନ୍ତ ତୋଷ କଯ୍ରେ ।। ୪୧ ।।
ଖଡ଼ି ଛୁଆଂଇଲେ ରାମ ଦୁଇ ନନ୍ଦନ ।
ହେତୁମନ୍ତ କୁମାରେ ଗଣପତ ସମାନ ।। ୪୨ ।।
କଣ୍ଠରେଣ ବସଇ ଦେବୀ ସରସ୍ୱତୀ ।
ସକଲ ଶାସ୍ତ୍ରେ କୁମାରେ ନର୍ଜିତା ହୁଅନ୍ତ ।। ୪୩ ।।
ଏସନେକ ପାଠ କୁମାରେ ସହୁଂ ପଢ଼ିଲେ ।
ଶାସ୍ତ୍ର ସୁମୃତରେ ନର୍ଜିତା ହୋଇଲେ ।। ୪୪ ।।
ଆଠ ବରଷରେ ପାଠ ନର୍ଜିତା ହୋଇଲେକ ସହୁଂ ।
ଧନୁର୍ବେଦ ବଦ୍ୟା ମୁନ ପ୍ରକାଶନ୍ତ ତହୁଂ ।। ୪୫ ।।
ଆଧ୍ୟାନ ସନ୍ଧାନ ରଥ ଖଡ଼ଗ ଯୁଦ୍ଧଇ ।
ମାଲ୍ଗତ ଗଜଅଶ୍ୱ ସମରେ ମୁରାଟଇ ।। ୪୬ ।।
ରାଜମାତ ଆଚରଣ ଯେସନେକ ଶ୍ରେଷ୍ଠଇ ।
ସକଲ ବଦ୍ୟାରେ ପରପୂର୍ଣ୍ଣ ହୋଇଲେ ଦୁଇଭାଇ ।। ୪୭
ବେଲେକ ମହାମୁନ କହି ଦଅନ୍ତ ଯାହା ।
ହୃଦରେ ଗୁଣୁ ଥାନ୍ତ ନ ପାସୋରନ୍ତ ତାହା ।। ୪୮ ।।
ଏସନେକେ ଦଶ ଦଶ ବରଷ ହୋଇଲ ସପୂର୍ଣ୍ଣ ।
ନାନା ବଦ୍ୟାରେ ଦୁଇ କୁମାରେ ହୋଇଲେ ପରପୂର୍ଣ୍ଣ ।୪୯
କେବଣ ହି ଭନେକ ଶାସ୍ତ୍ର ପଢ଼ି ବାହୁଡ଼ନ୍ତ ।
ଅନ୍ନ ଭୁଞ୍ଜିବାକୁ ଆଶ୍ରମକୁ ଆସନ୍ତ ।। ୫୦ ।।

---

୩୯. ତଥି—ତଥିବାର (ଖ) । ୪୦. ଖ ପୋଥିରେ ତଥି ବାର ନକ୍ଷତ୍ର ଦଆଯାଇ ନାହିଁ । ୪୦. ଭଦ୍ରନ୍ତ—ଗୃହିନ୍ତ (କ) । ତୋଷ—ପୂଜା (ଖ) ୪୩. ସକଲଶାସ୍ତ୍ରେ —ବେଦସାଶ୍ରେ (ଖ) । ୪୪. ଖ ପୋଥିରେ ନାହିଁ । ୪୬. ଗଜଅଶ୍ୱ—ମାଲମୃତ (କ) । ୪୭. ଆଚରଣ—ଆଚର (କ) । ୪୮. ବେଲେକ—ବେଲକ (କ) । କହିଦଅନ୍ତ—କଥା ହୁଅନ୍ତ (କ) ।

କୁଶ କୁମର କହଇ ଶୁଣ ଆହୋ ଭାଇ ।
ମାତାକୁ ପଚାରିବା ଆମ୍ଭର ପିତା ଅଛୁ କାହିଁ ।। ୫୧ ।।
ଜନକ ଋଷି ଦୋହିତା ଅଟଇ ଆମ୍ଭର ମାତା ।
ପିତାକୁ ନ ଦେଖି ଆମ୍ଭର ବଡ଼ ଚିନ୍ତା ।। ୫୨ ।।
ବଡ଼ ଭାଇ ହୋଇ ତୁମ୍ଭେ କିଛୁ ହି ନ ବିଚାର ।
କନିଷ୍ଠ ବଚନେ ଜ୍ୟେଷ୍ଠ କହଇ ଉତ୍ତର ।। ୫୩ ।।
ଲବ କୁମର କହଇ ରଜଣୀର କାଳେ ।
ଜନନୀକି ପୁଚ୍ଛିବା ଶୟନର ବେଳେ ।। ୫୪ ।।
ଶୁଣି କୁଶ କୁମର ସନମତ କଲା ।
ଦିବସନ୍ତେ ରଜଣୀ ପ୍ରବେଶ ହୋଇଲା ।। ୫୫ ।।
ନିଶାର ସମୟେ ଦୁଇ କୁମରନ୍ତ ଘେନି ।
ପଲ୍ୟଙ୍କେ ଶୟନ ନିତ ଜନକନନ୍ଦିନୀ ।। ୫୬ ।।
ଯେତେକ ଶାସ୍ତ୍ର ଯେ ଗୁରୁ ମୁଖେ ଶିଖିଛନ୍ତି ।
ମାତାର ଆଗେ ତାହା ବଖାଣ କରନ୍ତି ।। ୫୭ ।।
ସେ ସ୍ଥାନେ ଉଠି ଲବ କୁମରଇ ।
କରପଦ୍ମ ଯୋଡ଼ି ମାତାକୁ ପଚାରଇ ।। ୫୮ ।।
ଜନକ ରାଜର୍ଷିର ଦୋହିତା ତୁ ଆମ୍ଭର ନିଜ ମାତା ।
କାହିଁକି ଗଲେ ଆନେ ଆମ୍ଭର ନିଜ ପିତା ।। ୫୯ ।।
ପିଅର ଦେଖିତ ଗୋ କଲୁ ଆମ୍ଭ ମନ ।
କହନ୍ତି ଗର୍ଭଧାତ୍ରୀ ଗୋ ସ୍ୱରୂପ ବଚନ ।। ୬୦ ।।
ଶୁଣିଣ ସୀତାୟାର ଦେହୁ ଆତ୍ମା ଉଚ୍ଛଗିଲା ।
ମାନସୀ ମାନଭରେ ଶୋକ ବସିଲା ।। ୬୧ ।।
ଘନ ଘନ ଅଶ୍ରୁଜଳ ନୟନୁ ଗଳି ।
ଧୈର୍ଯ୍ୟ ହୋଇ କହଇ ଜନକ ଦୁଲାଳୀ ।। ୬୨ ।।
ତୁମ୍ଭର ତାତରେ ଜୀବନ୍ତେଣ ନାହିଁ ।
ଆବର ପିତାକୁ ଦେଖିବ ତୁମ୍ଭେ କାହିଁ ।। ୬୩ ।।
ମୁହିଁ ନ ଜାଣଇ ସେ ଜୀଇଛି କି ମଲା ।
ନିର୍ଦୋଷେ ମୋତେ ରେ ବାହାର କରି ଦେଲା ।। ୬୪ ।।
ମୋହର ଗର୍ଭେ ପଡ଼ିଲ ତୁମ୍ଭେ ଯହୁଁ ।
ମୋତେ ମୁହାଁସ ସେ ତେଜିଲକ ତହୁଁ ।। ୬୫ ।।

---

୫୨-୫୩. ଏ ଦୁଇ ପଦ ଖ ପୋଥିରେ ନାହିଁ । ୫୪. ରଜଣୀ—ରହଣି ।
୬୨. ଗଳି—ଲୁହଗଳି ।

ତୁମ୍ଭର ପିତା ଜୀବନ୍ତେ ଯେବେ ଥାନ୍ତେ ।
ମୁହିଂ କମ୍ପା ରହିଥାନ୍ତି ଏ ବନସ୍ତେ ।। ୬୬ ।।
ଯାହାର ପିତା ବାରୁ ଜୀବନ୍ତେଣ ଥାଇ ।
ତାହାର ମାତା କି ପିତାର ଘରେ ଥାଇ ।। ୬୭ ।।
କୁଳ ଉଦିତ ହୋଇଲା ଆଦିତ୍ୟର ବଂଶ ।
ଦୁଃଖୀର ଗର୍ଭେ କଲ ତୁମ୍ଭେ ବାସ ।। ୬୮ ।।
ପିତାର ମୁଖ ତୁମ୍ଭେ କାହୁଁ ଦେଖିବ ।
ଯାହା ଅରଜିଲ ତୁମ୍ଭେ ତାହା ଭୁଞ୍ଜିବ ।। ୬୯ ।।
ଶୁଣିଣ କୁମରେ ହୋଇଲେ ମଉନ ।
ଲବ କୁମର କହଇ କୁଶର ଶୁଣିଣ ବଦନ ।। ୭୦ ।।
ପିତାକୁ ହି ଆମ୍ଭେ ପଚାରିଲୁ ଏବେ ।
ବହୁତ ଦୁଃଖ ମାତାକୁ ଦେଇଅଛୁ ଯେବେ ।। ୭୧ ।।
ପିତାର ନାମ ଯହୁଁ ପଚାରିଲୁ ।
ମହା ବ୍ୟଥା ଏକ ମାତାକୁ ହି ଦେଲୁ ।। ୭୨ ।।
ଆବର ବେଳେ ପିତାର ନାମ ନ ଧରିବା ।
ଏକମନ ହୋଇ ଆମ୍ଭେ ଶାସ୍ତ୍ର ପଢୁଥିବା ।। ୭୩ ।।
ଶୁଣିଣ କୁଶ କୁମର ହୋଇଲାକ ତୂନ ।
ଶେଯ୍ୟାରେ ଶୋଇ ନିଦ୍ରା ଗଲେ କୁମର ବେନି ।। ୭୪ ।।
ରାମ ରାମ ସୁମରନ୍ତେ ଜନେକ କୁମାରୀ ।
ଶୁଭେଣ ପ୍ରଭାତ ଯେ ହୋଇଲାକ ତମିର ।। ୭୫ ।।

## ରାମାୟଣ ଆବୃତ୍ତି

ଏଥୁ ଅନନ୍ତରେ ଶୁଣସି ପଣ୍ଡିତ ସନ୍ତ ।
ଦୁଇ କୁମାରେ ଶାସ୍ତ୍ର ପଢ଼ନ୍ତି ଯେ ନିତ୍ୟ ।। ୧ ।।
ରାମାୟେଣ ଚରିତ ବିଚିତ୍ର ଦିବ୍ୟ ଧ୍ୱନି ।
ଆଦ୍ୟ ଅନ୍ତ ସମସ୍ତ ଶିଖାଇଲେ ମହାମୁନି ।। ୨ ।।
ଦୁଇ କୁମାରେ ଗ୍ରନ୍ଥ ଅଭ୍ୟାସ କଲେ ଯହୁଁ ।
ଲବକୁଶ ହକାର ମହାଋଷି କହନ୍ତି ତହୁଁ ।। ୩ ।।
ତୀକ୍ଷ୍ଣ ବିଦ୍ୟାରେ ମହାଜ୍ଞାତା ହୋଇଲ ବାଳଶିଷ୍ୟ ।
ଗୃହ ଭିକ୍ଷା ବୁଲିରେ ତଣ୍ଡୁଲ ଘେନି ଆସ ।। ୪ ।।

---

୬୬-୭୫. କ ପୋଥିରେ ୬୭ ପଦଟି ନାହିଁ ଅନ୍ୟ ପଦ ଗୁଡ଼ିକ ଖ ପୋଥିରେ ନାହିଁ । ୭୧. ଦେଇଅଛୁ—ଦେଇଅଛୁ । ୨. ରାମାୟେଣ—ରାବାୟେଣ ।

ଦେବ ଦେବାର୍ଚ୍ଚନ ସିଦ୍ଧାନ୍ତ ତୋଷିବୁ ।
ଅତଥକୁ ଦେବୁ ଅନ୍ନେ ହେ ଭୁଞ୍ଜିବୁ ॥ ୫ ॥
ବାଲ୍ମୀକଙ୍କର ବଚନ ଶୁଣି ଦୁଇ ଭାଇ ।
ତତକ୍ଷଣେ ଯାଇ ମାତାର ଆଗେ କହି ॥ ୬ ॥
ଗୁରୁ ଆଜ୍ଞା ଦେଲେ ତ ଗୀତ ଗାଇ ଯିବୁ ।
ଚଉଳ ଆଣି ତାହାକୁ ହୁ ଦେବୁ ॥ ୭ ॥
ତୁମ୍ଭେ କିସ ବିଗୁର ଆମ୍ଭର ଆଗେ କହ ।
ଶୁଣି ସୀତାଙ୍କର ବିକଳ ହୋଇଲାକ ଦେହ ॥ ୮ ॥
ପୁତ୍ରଙ୍କର ମୁଖ ଚୁମ୍ବିଂ କହଇ ଜଗ୍ନସେନୀ ।
ଏହା କାହା ବୋଇଲେ ବାଲ୍ମୀକି ତପୋଧନ ॥ ୯ ॥
ବାଳୁତ ବୁଦ୍ଧି ଚଞ୍ଚଳ ଅଳପ ଅଟଇ ।
ନଗ୍ର ବୁଲନ୍ତେ ତୁମ୍ଭେ ପାଇବ ନାନା କଷ୍ଟଇ ॥ ୧୦ ॥
କୁମାରେ କହନ୍ତି ଗୁରୁଙ୍କର ଲଂଘନ୍ତେ ବଚନ ।
ଆମ୍ଭଙ୍କୁ କୋପ କରିବେନା ତପୋଧନ ॥ ୧୧ ॥
ଶାସ୍ତ୍ର ବିଦ୍ୟା ସେ କିପାଇଂ କହିବେ ।
ଅହୋନିଶି ହୃଦରେ ତାମସ କରିଥିବେ ॥ ୧୨ ॥
ସୀତାୟା କହନ୍ତି ତୁମ୍ଭନ୍ତ ନ ଦେଖିଲେ ।
ପ୍ରାଣ ଧରିବି କେସନେକେ ତୁମ୍ଭନ୍ତ ଉପେଖିଲେ ॥ ୧୩ ॥
ବାଳୁତ ବୟସ ଅଳପ ମୋହର ପୋଇ ।
ଦୁଃଖ ପାଇବନା ଦ୍ୱାରେ ଦ୍ୱାରେ ଗୀତ ଗାଇ ॥ ୧୪ ॥
ଯଦ୍ୟପି ବିଦ୍ୟା ତୁମ୍ଭେ କରିବ ଉକତ ।
ମୋହର କଥାରେ ତୁମ୍ଭେ ଥିବ ବେନି ଭ୍ରାଥ ॥ ୧୫ ॥
ଏହି ନଗ୍ରେ ବୁଲି ଗୀତ ଗାଇବ ।
ଦୁଇଗୋଟି ଭାଇ ତୁମ୍ଭେ ଛଡ଼ାଛଡ଼ି ନୋହିବ ॥ ୧୬ ॥
ତୁମ୍ଭର ଆସିବା ଯାଏ ମୁହିଂ ଦ୍ୱାରେଣ ବସିଥିବି ।
ବାହୁଡ଼ି ଅଇଲେ ସେ ଭିତରେଣ ପଶିବ ॥ ୧୭ ॥

---

୫. ଏ ପଦଟି ଖ ପୋଥିରେ ନାହିଁ । ୬-୯. ଚାରି ପଦ ସ୍ଥଳେ ଖ ପୋଥିରେ ଦୁଇ ପଦ : "ଶୁଣିଣ କୁମାରେ ମାତାକଇ କହିଲେ ଯାଇ । ଗୀତ ଗାଇ (ଯିବୁ) ଗୋ ଦ୍ୱାରେ ଦ୍ୱାରେ ହୋଇ ॥ ଏସନେକ ବୋଲି ଗୁରୁ ବୋଇଲେ ଆମ୍ଭନ୍ତା ଶୁଣିଣ ବିସ୍ମୟେ ହୋଇଲେ ଜନେକର ଦୋହିତ" ॥ ୯. ଜଗ୍ନସେନୀ—ଯଜ୍ଞସେନୀ ୧୦. ବୁଦ୍ଧି ଚଞ୍ଚଳ—ଚଞ୍ଚଳ ବୁଦ୍ଧି । ୧୧-୧୪. ଏ ଚାରି ପଦ ଖ ପୋଥିରେ ନାହିଁ । ୧୩. ଉପେଖିଲେ—ନ ଦେଖିଲେ ।

ତେବେ ସେ ମୁହିଂ କରିବି ଭୋଜନ ।
ଯେତେ ପାଅ ତେତେ ଘେନ ଆସିବ ବହନ ॥ ୧୮ ॥
ବହୁତ ତଣ୍ଡୁଳ ଯେ(ବେ) ଲୋଡ଼ନ୍ତି ମହାଋଷି ।
ନବର ଭିତରୁ ମୁହିଂ (ଦେବି) ଚାଉଳ ଢାଅସି ॥ ୧୯ ॥
ଲବକୁଶେ କହନ୍ତି ଶୁଣସି ଗୋ ଆଈ ।
ତୁମ୍ଭର କଥାରେ ଆମ୍ଭେ ବେନି ଭାଇ ॥ ୨୦ ॥
ଶୁଣିଣ ମହାସତୀ ହୋଇଲେ ହରଷ ।
ଧାତ୍ରୀଗଣେ କୁମରନ୍ତ କରନ୍ତି ସୁବେଶ ॥ ୨୧ ॥
ହରିଦ୍ରା ଗଂଷି ଶିରେ ପାଡ଼ିଲେକ ବେଣୀ ।
ନୟନେ କଜ୍ଜଳ ଢାଅନ୍ତି ତରୁଣୀ ॥ ୨୨ ॥
ରତ୍ନ ଅଳଂକାର ଯେ ଆଭରଣ ହୋଇଥିଲେ ।
ବନ ବାଟ ବୋଲି ତାହା କାଢ଼ିଣ ଥୋଇଲେ ॥ ୨୩ ॥
ଶୁକଳ ବସ୍ତ୍ର ପିନ୍ଧାନ୍ତି କାମେନି ।
କାଖେ ଘାଗ୍ରି ଚାପି ଯାନ୍ତି ଭାଇ ବେନି ॥ ୨୪ ॥
ସିଂହାମଣ୍ଡଳ ପୁରେ ଦ୍ୱାରେ ଦ୍ୱାରେ ଗାବନ୍ତି ଗୀତ ।
ଶୁଣି ନଗ୍ର ନରନାରୀ ହୁଅନ୍ତି ମୋହିତ ॥ ୨୫ ॥
ହରଷ ନଗ୍ର ଜନେ କୁମାରନ୍ତ ଦେଖି ।
ରାମାୟେଣ ଶୁଣନ୍ତି ଗୃହକର୍ମ ଉପେଖି ॥ ୨୬ ॥
ସୁସ୍ୱରେ ସୁସଞ୍ଚ ଶୁଭଇ ଦିବ୍ୟବାଣୀ ।
ମଧୁ ମାଧବ ମାସେ କି ଶବଦ କୋକିଳ ଧ୍ୱନି ॥ ୨୭ ॥
ଏସନେକେ ସିଂହାମଣ୍ଡଳପୁରେ ଘରେ୍ଘରେ ଗୀତ ଗାବନ୍ତି
ହରଷେ ଋଷିପତ୍ନୀ ତଣ୍ଡୁଳ ନେଇ ଦେନ୍ତି ॥ ୨୮ ॥
ବାହୁଡ଼ି କୁମରେ ହୁଅନ୍ତି ମାତାର ପାଶ ।
ପୁତ୍ରନ୍ତ ଦେଖି ସତୀ ହୋଇଲେ ହରଷ ॥ ୨୯ ॥
ତଣ୍ଡୁଳ ଘେନି ପୁତ୍ରଙ୍କର ଭୁଜ ଧରି ।
ବାଲ୍ମୀକଙ୍କର ସନିଧିକୁ ଗଲେ ଜନେକ କୁମାରୀ ॥ ୩୦ ॥
ଚାଉଳ ଥୋଇଣ ପ୍ରଣମିତ ହୋଇ ।
କହଇ ସୀତାୟୀ କୃତକୃତ ହୋଇ ॥ ୩୧ ॥
ଭୋ ମୁନି ମୋହର ପୁତ୍ରେ ଗାଇ ଯାଇଥିଲେ ।
ଏ ତଣ୍ଡୁଳ ସେ ଘେନିଣ ଅଇଲେ ॥ ୩୨ ॥

---

୨୭. ଶବଦ—ସରଦ(କ) । ୨୮. ସିଂହାମଣ୍ଡଳପୁରେ—ବଇଦେଶମଣ୍ଡଳେ (ଖ) । ଋଷିପତ୍ନୀତଣ୍ଡୁଳ—ନରନାରୀ କୋଣ ଭିକ୍ଷା (ଖ) । ୩୧–୩୬. ଏ ପଦର ବିଷୟ ଖ ପୋଥିରେ ନାହିଁ ।

ତଣ୍ଡୁଳ ଦେଖି ହରଷ ତପଗୃଷ୍ଣ ।
ବାଲମୀକେ କହନ୍ତ ଶୁଣ ଗୋ ସ୍ରାମନାୟି ।। ୩୩ ।।
ଏଙ୍ଗ ସୁଲକ୍ଷଣ ତୋହର ଦୁଇ କୁମର ।
ମାହେନ୍ଦ୍ର ବେଳେ ଯେ ହୋଇ ଅଛଇ ଅବତାର ।। ୩୪ ।।
ଏହାଙ୍କର ଅର୍ଜିଲା ଦେବ ଦେବାର୍ଚ୍ଚନ କରଣ୍ଣ ।
ବଳି ଚରୁ ଦେଇ ଆମ୍ଭଙ୍କୁ ତୋଷିବ ।। ୩୫ ।।
ଶୁଣିଣ ସୀତସ୍ସା ଯେ ହୋଇଲା ହରଷଇ ।
ତନସ୍ସ ଦୁଇ ସେନଣ ତହୁ ବାହୁଡ଼ଣ ଆସଇ ।। ୩୬ ।।
ତେବେ ସେ ସ୍ନାନ କର ଭୋଜନ କରଇ ।
ପୁଏଙ୍କର ମୁଖେ ବାକ୍ୟ ବଖାଣ ଯେ ଶୁଣଇ ।। ୩୭ ।।
ବିଧାତା ମୋତେ ଦସ୍ସା କରଇ ଯେବେ ।
ପୁତ୍ରଙ୍କର ମୁଖେ ସ୍ରାମ ବାକ୍ୟ ଶୁଣିବନା ତେବେ ।। ୩୮ ।।
ଏସନେକେ ମନେ ମନେ ଭାଳୁଥାଇ ସତୀ ।
ଶ୍ରୀସ୍ରାମର ତହିଂ ସେ ପଞ୍ଚୁ ମନ ସ୍ଥିତ ।। ୩୯ ।।

## ଲବକୁଶଙ୍କର ସ୍ରାଜ୍ୟାନ୍ତରରେ ଭିକ୍ଷା

ଏସନେକ କଥା ଶୁଣି ପଣ୍ଡୁର ନନ୍ଦନ ।
ମାରକଣ୍ଡ ଋଷିଙ୍କ ପୁଛନ୍ତ କୁନ୍ତୀର ଜେଷ୍ଠ ସୁନ ।। ୧ ।।
ହେ ମହର୍ଷି ଲବକୁଶଙ୍କର ଶାସ୍ତ୍ର ଉକତ ଶୁଣି ।
ଶରୀର ତୋଷ ହୋଇବ ଅମୃତ ଜାଣି ।। ୨ ।।
ଏଥୁ ଉତ୍ତରରେ କଲେ କେବଣ କୃତ୍ୟ ।
କହସି କଲପମୁନି ସୁଦେବର ସୁତ ।। ୩ ।।
ମାରକଣ୍ଡେ କହନ୍ତ ଶୁଣ ପାଞ୍ଚାଳୀର ପତ ।
ବଚନ ସ୍ରାମାସ୍ସେଣ ଏ ଶୁଣ ଦିବ୍ୟ ଗୀତ ।। ୪ ।।
ଏସନେକେ ଗୀତ ଗାବନ୍ତ ସୀତସ୍ସାର ବେନି ନନ୍ଦନ ।
ତଣ୍ଡୁଳ ଦିଅନ୍ତ ସେ ବାଲମୀକଙ୍କର ସନ୍ନିଧାନ ।। ୫ ।।

---

୩୮–୩୯. ଏ ଦୁଇ ପଦ ଖ ପୋଥିରେ ନାହିଁ । ୨. ତୋଷ ହୋଇବ ଅମୃତ— ଉତସଲ୍ଲ ହୋଇଲ ଅମୃତମସ୍ସେ (ଖ) । ୩. ଉତ୍ତରେ—ଉତାରେ (କ) । ୪. ସ୍ରାମାସ୍ସେଣ —ସ୍ରାବାଏଣ(ଖ) ଖ ପୋଥିରେ ପ୍ରାସ୍ସଶଃ ସ୍ରାମାସ୍ସଣ ସ୍ଥଳେ ସ୍ରାବାଏଣ ରହିଛି । ୫–୧୧. କ ପୋଥିର ସାତପଦ ବଦଳେ ଖ ପୋଥିରେ ଦୁଇ ପଦ : "ଏସନେକେ କୁମରେ ବୁଲନ୍ତ ବୈଦେହୀଭୁବନ , ଯେସନେକେ କୋଉହଳେ ବୁଲନ୍ତ ବନଘନ ।। ବାଲମୀକେ ବୋଲନ୍ତ ଲବକୁଶେ ହକାର । ନଅ ନଅ ଗୀତ ଗାଅ ଏହୁ ପୁଷ୍ପ ।"

ଜନେକ ମହ୍ୱଋଷି ଶାସ୍ତ୍ର ନିତ ଶୁଣଇ ।
ନାଟକ ଦେଖଇ ହୃଦୟର ପଞ୍ଚ ପ୍ରାଣେଇ ॥ ୬ ॥
ଅନ୍ତପୁର ଭିତରେ ଜନେକର ବନିତା ।
ଶାସ୍ତ୍ର ଶୁଣୁଥାନ୍ତି ସୀତସ୍ଥାର ଯେତେ ମାତା ॥ ୭ ॥
ଧାଈ ମୁନ୍ଦ୍ରୁସୁଲ୍ଲୀ ଅନେକ ପରିବାରି ।
ଲବକୁଶଙ୍କର ମୁଖୁ ବାକ୍ୟ ଶୁଣନ୍ତି ସର୍ବବାଳୀ ॥ ୮ ॥
ଜନେକ ରା(ଇ)ଜେ ଯେତେକ ମହାଋଷି ।
ଲବକୁଶଙ୍କର ମୁଖୁ ବାକ୍ୟ ଶୁଣୁଥାନ୍ତି ବସି ॥ ୯ ॥
ଏସନେକ ବରଷେକ ସରିଲକ ଯହୁଂ ।
ବାଲ୍ମୀକେ ଲବକୁଶକୁ ହକାରିଲେ ତହୁଂ ॥ ୧୦ ॥
ନିତ ଏ ନଗ୍ରେ ଗୀତ ଗାଅ ତୁମ୍ଭେ ।
ବିଶ୍ୱାସ କଥାଏକ କହିବୁନା ତେବେ ॥ ୧୧ ॥
ଏ ନଗ୍ର ଲୋକେ ହୋଇଲେନି ମୁକତ ।
ଆନ ରାଜ୍ୟେ ପଶି ରାମାୟେଣ କରିବା ନା ଉକତ ॥ ୧୨
ଲବକୁଶେ କହନ୍ତି ତୁମ୍ଭେ ଆଗ୍ୟାଂ ଦେବ ଯହୁଂ ।
ଯେ ପୁରୁ ହେ କାବ୍ୟ ବଖାଣିମୁ ତହୁଂ ॥ ୧୩ ॥
ତୁମ୍ଭର ପ୍ରସାଦେ ଗ୍ୟାଂନବନ୍ତ ହୋଇଲୁ ।
ରାମାୟେଣ ପୁରାଣ ଗର୍ଭଗତ କଲୁ ॥ ୧୪ ॥
ବାଲ୍ମୀକେ କହନ୍ତି ଶୁଣସି ବେନି ଭ୍ରାତ ।
ଯହୁଂ ଯହୁଂ ଶାସ୍ତ୍ର କରିବ ଉକତ ॥ ୧୫ ॥
ହରିହରପୁରେ ବାକ୍ୟ କରିବ ବଖାଣ ।
ବଇଷ୍ଣବ ମହନ୍ତ ଲୋକେ ସୁଜ୍ଞ ବ୍ରାହ୍ମଣ ॥ ୧୬ ॥
ଷତ୍ରି ଧାର୍ମିକ ନୃପତିଙ୍କର ଶିଷ୍ଟି ।
ବଇଶ୍ୟ ବାଣିଜ୍ୟଲୋକେ ତହୁଂ ହୁଅନ୍ତି ଗୋଷ୍ଠୀ ॥ ୧୭ ॥
ଶାସ୍ତ୍ର ଉକତ କରିବ ମାଗିବ ଧନ ।
ମନର ହରଷେ ଅବା ଯେ ଦିଅଇ ଦାନ ॥ ୧୮ ॥
ଗୁଣେକ ଦେଲେ ତାହାର ସହସ୍ରେ ଗୁଣ ସିଦ୍ଧି ।
ମନ ତୋଷ କରି ହୋଇବ ପ୍ରବୋଧୀ ॥ ୧୯ ॥
ଶୁଣି ଲବକୁଶେ କହନ୍ତି କର ଯୋଡ଼ି ।
ବଡ଼ କଥାଏକ କହିଲ ଅକୋଡ଼ି ॥ ୨୦ ॥
କାବ୍ୟ ପୁରାଣ ଉକତ କରିବୁ ।
ଆଗତ ଜନ୍ମେ ଯେବେ ବ୍ରଧିକ ଗୁଣେ ଦେବୁ ॥ ୨୧ ॥

---

୧୩. କାବ୍ୟ—କାର୍ଯ୍ୟ । ୧୩-୧୫. ଏ ତିନି ପଦ ଖ ପୋଥିରେ ନାହିଁ ।

କିସ ଅର୍ଥେ ଆବର ଦେନମୁ ସେ ଧନ ।
ହସିଣ କହନ୍ତି ବାଲ୍ମୀକି ତପୋଧନ ।। ୨୨ ।।
ଶାସ୍ତ୍ର ଶୁଣି ଯେବେ ଦକ୍ଷିଣା ଦାନ ଦେନ୍ତି ।
ତେବେ ସେ ଶୁଣିବାର ପାଇବ ଫଳଶ୍ରୁତି ।। ୨୩ ।।
ମନର ସନ୍ତୋଷେ ଯେ ଦକ୍ଷିଣା ଦାନ ଦେଇ ।
ତ୍ରିଭୁବନ ନାଥ ତାହାର ବାଞ୍ଛାସିଦ୍ଧି କରଇ ।। ୨୪ ।।
ସକଳ ଦାନପୁନ୍ୟଙ୍କୁ ସାକ୍ଷୀ ଶ୍ରୀହରି ।
ସେ ଅକ୍ଷର ନିରଞ୍ଜନ ତାହାଙ୍କୁ ଦଅଇ ନିର୍ବନ୍ଧ କରି ।। ୨୫
ଶୁଣିଣ କୁମାରେ ହୋଇଲେ ହରଷ ।
ମାତାର ଆଗେ ଯାଇ କରନ୍ତି ପ୍ରକାଶ ।। ୨୬ ।।
ତୁମ୍ଭେ ଯେ ବୋଇଲ ନିକଟେ ଗୀତ ଗାଇ ।
ଗୁରୁ ଆୟାଂ ଦେଲେ ଆନ ନଗ୍ରକୁ ହ ଯାଇ ।। ୨୭ ।।
ମନେଣ ବ୍ୟଥା ବଇଲୁଲ୍ଲି ନୋହିବ ।
ଆସିବା ବିଳମ୍ବ ହୋଇଲେ ଭୋଜନ କରିଥିବ ।। ୨୮ ।।
ସୀତାୟା କହନ୍ତି ତୁମ୍ଭନ୍ତ ନ ଦେଖିଲେ ।
ଅନ୍ନ ଭୁଞ୍ଜି ହୁଅଇ କି ଆନ୍ତର ବୋଲେ ।। ୨୯ ।।
ଗୁରୁଙ୍କର ବଚନ ଅନାସ୍ତ ନ କରିବ ।
ଶୀଘ୍ର ହୋଇ ବାକୁ ହେ ବାହୁଡ଼ି ଆସିବ ।। ୩୦ ।।
ଏସନେକ କହନ୍ତେ ପ୍ରଭାତ ରଜନୀ ।
କୁମରନ୍ତ ସୁବେଶ କରାଅ(ନ୍ତି) ପରିବାଣୀ କାମନୀ ।। ୩୧
ଅନ୍ନ ଭୁଞ୍ଜି କୁମରେ ପାଞ୍ଚି ଗୃପନ୍ତ କାଖେ ।
ଘରୁ ବାହାର ହୁଅନ୍ତି ଦ୍ରହସିତ ମୁଖେ ।। ୩୨ ।।
ପୂର୍ବକୁ ହ ଗୋଡ଼ାଇ ଥୋକାଏ ଦୂର ଦେଖା ଯାନ୍ତି ।
ତହୁଂ ବାହୁଡ଼ି ଆସିଣ ନବର ଦ୍ୱାରେଣ ନମନ୍ତି ।। ୩୩ ।।
ବିଧାତା ସୁମରି ମନେ ମନେ ଭାଳଇ ।
ଶୁଭେ ଆସନ୍ତୁ ମୋହର ବେନ ଦୁଲ୍ଲାଳଇ ।। ୩୪ ।।
ତହୁଂ ଲବକୁଶେ ନଗ୍ରୁ ବାହାର ହୋଇ ଯାନ୍ତି ।
ଶବର ପଲ୍ଲୀ ସନ୍ନିତେ ଋଷିଙ୍କର ମନ୍ଦିରେ ଗୀତ ଗାବନ୍ତି ।।
ଯେତେକ ତଣ୍ଡୁଳ ନିତ ଉପୁଜଇ ।
ମାତାର ଗୋଚରେ ଆଣି ଦଅନ୍ତି ତନୁଜଇ ।। ୩୬ ।।

---

୨୪. କରଇ—କରନ୍ତିଇ । ୨୫. ଅକ୍ଷର—ଅକ୍ଷରେ । ୨୬. କରନ୍ତି—କହନ୍ତି ।
୩୦. ଖ ପୋଥିରେ ନାହିଁ । ୩୨. ମୁଖେ—ମୁଖ । ୩୫. ହୋଇ—ହୋନ୍ତି ।

ପୁତ୍ରନ୍ତ ଘେନ ତଣ୍ଡୁଳ ସହିତେ ।
ନେଇ ଦିଅଇ ସତୀ ଗୁରୁଙ୍କର ଅଗ୍ରତେ ॥ ୩୭ ॥
ଦେଖି ବାଲ୍ମୀକେ ହୁଅନ୍ତି ହରଷ ।
ଏହନେକେ ଦିବସ ହୋଇଲା ଛଡ଼ମାସ ॥ ୩୮ ॥

## ଯୁଗାନ୍ତ ପାଇଁ ଦେବତାଙ୍କ ମନ୍ତ୍ରଣା

ଦେବପୁରେ ବ୍ରହ୍ମାଦି ସୁର ମେଳେ ।
ସଭାରେ ବିଚାର କରନ୍ତି ସକଳେ ॥ ୧ ॥
ଶ୍ରୀରାମ ସୀତା ଯେବେ ବିଚ୍ଛେଦ ହୋଇ ।
ଦୁହିଙ୍କର ଶରୀରେ ଦିନେ ହେ ସୁଖ ନାହିଁ ॥ ୨ ॥
ରାବଣ ନିଶାଚର ଦୁଷ୍ଟ ବୁଦ୍ଧି କଲା ସହୁଁ ।
ପଦ୍ମଲକ୍ଷ୍ମୀ ମଞ୍ଜେ ଜାତ ହୋଇଲେକ ତହୁଁ ॥ ୩ ॥
ଜନକ ଘରେ ସୀତାୟା ନାମ ବୋଲାଇଲା ।
ଦଶରଥ କୋଳେ ରାମ ଜନ୍ମ ହୋଇଲା ॥ ୪ ॥
ଯାଗ ରଖାଇ ନେଲେ ଗାଧିର କୁଲଳେ ।
ତ୍ରିବନାଥର ଧନୁ ରାମ ଭାଙ୍ଗି ପକାଇଲେ ॥ ୫ ॥
ସୀତା ବିଭା ହୋଇ ରାଜ୍ୟକୁ ଅଇଲା ।
ଏ କନ୍ୟା ଦେଖି ଦୁଷ୍ଟ ହିଂସା କଲା ॥ ୬ ॥
ଦଶରଥକୁ ସତ୍ୟ ମନାଇଁ ଭରଥକୁ କଲା ରାଜା ।
ସୀତା ଘେନି ବନକୁ ଗଲେ କଉଶଲ୍ୟା ତନୁଜା ॥ ୭ ॥
ପଞ୍ଚବଟୀ ବନେ ବିଶ୍ରାମ କଲେ ସହୁଁ ।
କପଟେ ରାବଣ ସୀତାକୁ ହରିନେଲା ତହୁଁ ॥ ୮ ॥
କପିବଳ ଘେନି ରାମ ସେତୁବନ୍ଧ ବାନ୍ଧି ।
ଅସୁର ବଳ ମାରି ଦଶଶିର ଛେଦି ॥ ୯ ॥
ସୀତାକୁ ଅଗ୍ନି ପରୀକ୍ଷା କରି ଆଣିଲା ।
ନିନ୍ଦକ ମୁଖେ ଦୋଷକଥା ଶୁଣି ବନବାସ ବହିଲା ॥ ୧୦ ॥
ସୀତାକୁ ବନବାସ ପଠାଇଲା ସହୁଁ ।
ବାଳକ ପ୍ରତିମା ନିର୍ମିତ୍ତ କରାଇଲେ ତହୁଁ ॥ ୧୧ ॥

---

୧. ଦେବପୁରେ—ବେଦପୁରେ । ୨-୧୭. ଏହି ଷୋଳଟି ପଦ ବଦଳେ ଖ ପୋଥିରେ : "ଶ୍ରୀରାମଙ୍କର ସୀତା ବିଚ୍ଛେଦ ହୋଇ । ବେନି ଜନେ ଦୁଃଖିତ ମହାକଷ୍ଟ ପାଇ ॥ କେସନେକେ ସୀତାୟା ଅଛନ୍ତି ନଜପୁର । ଏସନେକ ବୋଲି ବୋଲନ୍ତି ବଜ୍ରଧର ॥ ସ୍ୱରୂପ ବଚନ ତୁମ୍ଭେ କହ ମୁନିବର ।"

ସୀତାର ସାଦୃଶେ ପ୍ରତଚେ୍ଷ ଦେଖଇ ।
ତାହା ଦେଖି ରାମ ଅହୋନଶି ବିରସ ହୋଇ ॥ ୧୨ ॥
ନେ୍ତ୍ରକଜ ଶଯ୍ୟନେ ସୀତା ସୀତା ସୁମରଇ ।
ହୃଦୟ୍ଁ ଆବୁଳେ ବସି ରାମ ଝୁରଇ ॥ ୧୩ ॥
ମଥା ପୋଡ଼ ବସିଥାଇ ଶରୀରେ କଇଭାଗ ।
ଭାଳ ଭାଳ ଗୋଡ଼ ହୋଇଲା ବାତ ରୋଗ ॥ ୧୪ ॥
ସୀତାର ଦୁଃଖ କହନ୍ତେ ନ ସରଇ ।
ରାମର ସାଦୃଶ ଦିଶନ୍ତ ଦୁଇ କୁମାରଇ ॥ ୧୫ ॥
ପୁତ୍ରଙ୍କୁ ଦେଖି ରାମଙ୍କୁ ନ ପାସୋରଇ ସତୀ ।
ଅନ୍ନ ନ ରୁଚଇ ନିଦ୍ରା ନ ମାଡ଼ଇ ରାତି ॥ ୧୬ ॥
ଯେସନେକେ ଶ୍ରୀରାମସୀତା ଆସନ୍ତୁ ନିଜପୁର ।
ସ୍ୱରୂପ ବିଚାର କହସି ଦଉଣିର ॥ ୧୭ ॥
ବିଧାତା ପ୍ରକାଶଇ ଶୁଣସି ଆଖଣ୍ଡଳ ।
ରାମ ଦେଖଇ ଯେବେ ବେନି ଦୁଲାଳ ॥ ୧୮ ॥
ତେବେ ସେ ସୀତା ଅଛୁ ବୋଲି ଜାଣିବେ ରଘୁପତି ।
ଚନ୍ତାଭରେ ରାମ ଶୋକଭର ମତି ॥ ୧୯ ॥
ପୁତ୍ରଙ୍କୁ ଦେଖି ଯିବ ସୀତାଙ୍କୁ ଦୁ ଆଣି ।
ଦେଖି କୋପ କରିବ ଜନକ ଦୁଲଣୀ ॥ ୨୦ ॥
ମାନ(ନୀ) ଅପମାନ ସହି ନ ପାରିବ ।
ରାଗେ ମହାସତୀ ଅବନୀରେ ପଶିବ ॥ ୨୧ ॥
ତହୁଂ ବାହୁଡ଼ିବେ ରାମ ନବରଙ୍କୁ ଭ୍ରମନେ ।
ଆସି ହୋଇବେ ରାମ ଅଯୋଧ୍ୟା ଭୁବନେ ॥ ୨୨ ॥
ସୀତା ପୃଥିବୀରେ ପଶିଲେକ ପୁଣି ।
କୋପ କରିବେ ସେ ଦଶରଥଙ୍କର ରାଣୀ ॥ ୨୩ ॥
ଶ୍ରୀରାମଙ୍କୁ ବହୁତ କହିବେ କଂଦାସ ।
ସଜଳ ମାତାଏ ଅଗ୍ନିରେ ହୋଇବେ ପ୍ରବେଶ ॥ ୨୪ ॥
ତହୁଂ ରାମ ଅଯୋଦ୍ଧାରେ ବରଷେକ ଥିବେ ।
ମାତୃଗଣଙ୍କୁହି ବରଷିକା ଶ୍ରାଦ୍ଧ କରିବେ ॥ ୨୫ ॥
ଦୁଇ କୁମରନ୍ତ ବିଭା ଯୋଗ କରି ।
ଅଯୋଦ୍ଧ୍ୟାରେ ଲବକୁମର ହୋଇବେ ଦଣ୍ଡଧାରୀ ॥ ୨୬ ॥

---

୧୮-୪୧. ଖ ପୋଥିରେ ଏହି ଅଂଶର ବର୍ଣ୍ଣନା ସଂକ୍ଷିପ୍ତ । ୨୧. ଅବନୀରେ—ଅବନିଅବନିରେ ।

କୁଶକୁମର(କୁ) ମଧୁବନେ ପଠିଆଇବ ।
ଲବଣର ନଗ୍ରେ କୁଶ ରାଜା ହୋଇବ ॥ ୨୭ ॥
ତହୁଂଣ ରାମ ଶୋକଭର ଚିତ୍ତେ ।
ତୀର୍ଥେ ଗମନ କରିବ ଛଇ ମଇଣି ସହିତେ ॥ ୨୮ ॥
ତେବେ ସେ ତ୍ରେତୟା ଯୁଗ ହୋଇବାକ ଶେଷ ।
ଦ୍ୱାପର ଯୁଗ ହୋଇବ ପରବେଶ ॥ ୨୯ ॥
ଭବିଷ୍ୟ ପୁରାଣ ଏହନେକ ନିର୍ବାଣି ।
ଶୁଣି ହରଷ ହୋଇଲେ ବଜ୍ରପାଣି ॥ ୩୦ ॥
ଦେବତାଗଣ କହନ୍ତି ପିତାମହର ଆଗ ।
ହେ ପିତା ଏହା ନିର୍ବାଣ କର ବେଗ ॥ ୩୧ ॥
ସୀତାର କଷ୍ଟ, ଅମ୍ଭେ ନ ପାରୁ ଯେ ଦେଖି ।
ପିତା ଘରେ ଦେବୀ ହୋଇଲା ମହାଦୁଃଖୀ ॥ ୩୨ ॥
ଭାରିଯା ବିହୁନେ ରାମ କଷ୍ଟ ବହୁତ ।
ମହାବାଧାଏଣ ଶୋକଭର ଚିତ୍ତ ॥ ୩୩ ॥
ତୁମ୍ଭେ ସେ ଜାଣୁନା ଯେ ଯହିଂର ଚିତ୍ତ ।
ଦେବଙ୍କର ବଚନ ଶୁଣିଣ କୃଶକେତ ॥ ୩୪ ॥
ଶାରଦା ହକାରି କହଇ ଚଉଶିର ।
ତୁ ଯାଇ ପ୍ରବେଶ ହୁଅସି ଲବକୁଶଙ୍କର ଶରୀର ॥ ୩୫ ॥
ଯେସନେକେ ସେ ଅଯୋଧ୍ୟାକୁ ଗମନ କରନ୍ତି ।
ଶ୍ରୀରାମର ସମ୍ମୁଖରେ ଯେବଣ ମତେ ହୁଅନ୍ତି ॥ ୩୬ ॥
ତେସନେକ ଉପାୟ କରିବୁ ମୋର ମାତ ।
ତେବେ ସେ ଦେବଗଣେ ହୁଅନ୍ତି ତୋଷଚିତ୍ତ ॥ ୩୭ ॥
ପବନର ମୁଖ ବ୍ରହ୍ମ ବୋଲନ୍ତି ବେଦପଥ ।
ଲବକୁଶଙ୍କୁ ଅଯୋଧ୍ୟାକୁ ତୁ ନେବୁ ମାରୁତ ॥ ୩୮ ॥
ଅଯୋଧ୍ୟାନବରକୁ ବଇଦେହୀ ଭୁବନ ।
ଯୁଗତେ ହୋଇବ ସେ ଚଉବିଂଶି ଯୋଜନ ॥ ୩୯ ॥
ଏତେ ଦୂର ବୋଲି କୁମରେ ନ ଜାଣିବେ ।
ଘଡ଼ିକର ଭିତରେ ପ୍ରବେଶ ହୋଇବେ ॥ ୪୦ ॥
ବ୍ରହ୍ମାର ଆଦେଶେ ଦେବୀ ସରସ୍ୱତୀ ।
ଲବକୁମର ହୃଦରେ ସମ୍ଭାଇଲେ ତତ୍କ୍ଷଣ ॥ ୪୧ ॥
ଜମ୍ବୁରୁ ମାଧବ ବଇକୁଣ୍ଠପୁର ନାଥ ।
ଅନନ୍ତ କୋଟି ବ୍ରହ୍ମାଣ୍ଡେ ମାଧବ ଶ୍ରୀ ଅନନ୍ତ ॥ ୪୨ ॥

---

୨୮. ମଇଣି ସହିତେ—ମଇନ୍ଦ୍ରେ ମଇନେ । ୩୭. ମାତ—ତାତ

ଯାତ୍ରା ମଙ୍ଗଳ ବିଧି ଯାବତ ଉତ୍ସବ ।
ମାଧବ ସୁମରନ୍ତେ ସକଳ ସମ୍ଭବ ॥ ୪୩ ॥
ସ୍ୱର୍ଗ ମଞ୍ଚ ପାତାଳ ଅଲେଖ ଯାର ପୁରୀ ।
ଅମର କଲ୍ପସିଦ୍ଧ୍ୟ ମାଧେବ ନାମ ସୁମର ॥ ୪୪ ॥
ମାଧବ ସୁମର ଯେ କରଇ ଗମନ ।
କାର୍ଯ୍ୟ ସିଦ୍ଧ ହୋଇବ ଉତପାତ ଦହନ ॥ ୪୫ ॥
ମାଧେବ ମାଧବ ମୁହିଂ ସୁମରଇ ନିତ ।
ମାଧବ ସୁମରନ୍ତେ ପାପ କରଇ କିସ ଭିତ ॥ ୪୬ ॥
ଚଞ୍ଚଳ ମନଷା ନୁହଇ ମୋହର ସ୍ଥିର ।
ପୃରଣ ଦିଅ ମୋତେ ମାଧବ ଚକ୍ରଧର ॥ ୪୭ ॥
ଲବକୁଶ ଜନ୍ମ ଏ ଅବଶେଷ ଖଣ୍ଡ ।
ପାଣ୍ଡବଙ୍କ ଅଗ୍ରତେ ଯାହା କହିଲେ ମାରକଣ୍ଡ ॥ ୪୮ ॥
ଲବକୁଶ ଜନ୍ମ ମୁହିଂ କଲଇ ବଖାଣ ।
ସୁଜନ ଜନ ପ୍ରବୋଧନ ଏ ବିଚିତ୍ର ରାମାୟେଣ ॥ ୪୯ ॥
ସକଳି ଶୁଣନ୍ତେ ଲଭଇ ପୁଣ୍ୟଗତି ।
ବାଞ୍ଛା (ସିଦ୍ଧ) ମୁକତ ଅମରପୁରେ ସ୍ଥିତି ॥ ୫୦ ॥
ମାଧବ ସୁମର କହଇ ରାମାୟେଣ ।
ସିଦ୍ଧେଶ୍ୱର ଦାସ ନିତ୍ୟେ ମାଧବ ଚରଣେ ଶରଣ ॥ ୫୧ ॥

## ଲବର ଅଯୋଧ୍ୟା ଗମନ

ଏଥୁ ଅନନ୍ତରେ ଶୁଣସି ନୃପତି ।
ଲବକୁଶଙ୍କର ହୃଦରେ ବସିଲା ସରସ୍ୱତୀ ॥ ୧ ॥
କେବଣ ହି ଦିନେ ଯେ ଦୁଇ କୁମର ।
ଗୀତ ଗାଇ ଯାନ୍ତେ ପଶିଲେ ବନ ଘୋର ॥ ୨ ॥
କଥା କଥାକେ ଅମର୍ଷ ହୋଇଲେ ଦୁଇ ଭାଇ ।
କୁଶ କୁମର କହଇ ଲବ ମୁଖ ଗୃହିଂ ॥ ୩ ॥
ଗୀତ ଗାଇ ତୁମ୍ଭେ ନ ଜାଣ ପ୍ରବନ୍ଧ ।
ତୁମ୍ଭର ସଙ୍ଗତେ ମୁହିଂ ହୋଇଲି ସ୍ୱର ଧୋନ୍ଧ ॥ ୪ ॥

---

୪୭. ମନଷା—ମନ ଯେ (ଖ) । ଦିଅ—ଦିଶେ (କ) । ୪୯. ଲବକୁଶ ଜନ୍ମ—ଜନମୋହଣେ (ଖ) ରାମାୟେଣ—ରାବାୟଣ (ଖ) । ୫୦. ପୁଣ୍ୟ—ପୁତ୍ର (କ) । ୫୧. କହଇ ରାମାୟେଣ—କଲଇ ରାବାଏଣ (ଖ) ।

ଗୃଡ଼ଲ ଅଲପ ହୋଇଲାକ ଯେବେ ।
ତେବେ ସେ ଗୁରୁ ଆନ ନଗ୍ରକୁ ଯାଅ ବୋଇବେ ତେବେ ॥
ଦୁଇ ଭାଇ ଆଜ ଭିନ ଭିନ ହୋଇ ଗୀତ ଗାଇବା ।
କେ କେତେ ଗୃଡ଼ଲ ଆଣିବୁ ପ୍ରତକ୍ଷେ ଦିଶିବା ॥ ୬ ॥
ଲବ କୁମର କହଇ ଏକ ଏକ ହୁଅନ୍ତେ ।
ମାତାଏ କୋପ କରି ଗାଳି ଦେବେ ମୋତେ ॥ ୭ ॥
କିସ ବୋଲିବେ ଯେ ଜନେକ ରାଜମୁନ୍ୟ ।
ଶୁଣେ ପିଟିବେ ବାଲ୍ମୀକି ତପୋଧନ ॥ ୮ ॥
କୁଶ କୁମର କହଇ ତୁମ୍ଭନ୍ତ କିଛି ହିଂ ବାଞ୍ଛା ନାହିଂ ।
ତୁମ୍ଭର ତୁଟେ ଗୀତ ଗାଉନ୍ତ କେବେ ହେ ନ ଯାଉ ମୁହିଂ ॥
ଏତେ କହି ପୂର୍ବର ବାଟକୁ କୁଶ ଗଲା ।
ଲବ କୁମର ତହିଂ ମନେ ମନେ ବିଚାରିଲା ॥ ୧୦ ॥
ସାନ ଭାଇ ହୋଇ ମୋତେ କହିଲା ଉପହାସ ।
ଆବର କେବଣ ମତେ ଗୋଡ଼ାଇବ ତାର ପାଶ ॥ ୧୧ ॥
ମୁହିଂ ଆଜ ଆନ ଦେଶକୁ ଯେ ଯିବି ।
ଗୃଡ଼ଲ ଘେନି ମୁହିଂ ଆଗ ହୋଇ ଆସିବି ॥ ୧୨ ॥
ବିସ୍ମୟେ ହୋଇ ତହିଂ କ୍ଷଣେକ ରହିଲା ।
ଦକ୍ଷିଣ ଦିଗ ମାର୍ଗକୁ ପଥ ବାହିଚଲା ॥ ୧୩ ॥
ପବନ ଉଡ଼ାଇ ନେଲା ଶ୍ରୀରାମର କେଷ୍ଠ ନାନ ।
ତୁରିତେ ମିଳଇ କୁମର ଅଯୋଧ୍ୟାଭୁବନ ॥ ୧୪ ॥
ଚଉରାଶି ଯୋଜନ ଦୁର୍ଗମ ଅଟଇ ପନ୍ଥ ।
ଅର୍ଦ୍ଧ ଦଣ୍ଡକେ ମିଳିଲା ସୀତାଙ୍କର ସୁତ ॥ ୧୫ ॥
ବିଚିତ୍ର ପରିମଳ ଭୁବନ ଶୋଭିତ ଦିଶଇ ଦିବ୍ୟ ସ୍ଥିତ ।
ଦେଖି କୁମାର ହରଷ ହୋଇ ମତ ॥ ୧୬ ॥
ଦେଉଳ ମଣ୍ଡପ ଜଗତୀ ଧବଳହାର ।
ବତିଶ ଯୋଜନ ଅଯୋଧ୍ୟା ନଗର ॥ ୧୭ ॥
ସୁବର୍ଣ୍ଣ କଳସ ସବୁରି ମଧ୍ୟରେ ବସଇ ।
କାହିଂ ଦଶ ବିଂଶ ତିରିଶ ପଞ୍ଚାଶଇ ॥ ୧୮ ॥
ଲକ୍ଷେକ ମାତ୍ରକୁ ବ୍ରତଇ ଯେବଣ ପ୍ରାଣୀ ।
ସୁବର୍ଣ୍ଣର କଳସ ବସାଇବ ଆଣି ॥ ୧୯ ॥

---

୫. ଖ ପୋଥିରେ ନାହିଁ । ୮. ବୋଲିବେ—ଚୁଲିବେ । ୧୦–୧୩. ଖ ପୋଥିରେ ୧୦ପଦର ପ୍ରଥମ ପାଦ ପରେ ୧୩ପଦର ଶେଷ ପାଦ ରହିଛି, ମଧ୍ୟବର୍ତ୍ତୀ ପାଦ ଗୁଡ଼ିକ ନାହିଁ । ୧୩. ବାହି—ବହି । ୧୫. ଅର୍ଦ୍ଧ ଦଣ୍ଡ—ନିମିଷ (ଖ) । ୧୯. ବ୍ରତଇ—ବସଇ ।

ନେତର ପାତାଙ୍ଗ ଙ୍ଗରହରରେ ଉଡ଼ଇ ଯେବେ ।
ତେର ଲକ୍ଷ ମାତୃକୁ ସାଧବ ହୁଅଇ ତେବେ ॥ ୨୦ ॥
ଦେବ ସମ ନେ ଦିଶନ୍ତି ନରନାରୀ ।
ଅତି ଶୋଭିବନ୍ତ ବଟଇ ଦିବ୍ୟପୁରୀ ॥ ୨୧ ॥
ସାଧୁ ସଦନପୁର ଏକସର ଦୋସର ।
ପାଇ ଅମନାତ୍ୟଙ୍କର ସମ୍ପଦପୂର ॥ ୨୨ ॥
ନାଦ ଉଙ୍କାରଇ ସୁସଙ୍ଗ ଦିବ୍ୟଗୀତ ।
ଶୁଣି ଅଯୋଧ୍ୟାର ଲୋକେ ହରଷଭର ମତ ॥ ୨୩ ॥
ଗଣନାଥ ବନ୍ଦନା ସରସ୍ୱତୀଙ୍କି ସ୍ତୁତି ଭଣଇ ।
ଦୁର୍ଗାଙ୍କୁ ବନ୍ଦଇ ଲକ୍ଷ୍ମୀର ବଲ୍ଲଭ ନାରାୟେଣଇ ॥ ୨୪ ॥
ବ୍ରହ୍ମାଦି ନନ୍ଦମାଙ୍କ ସ୍ତୁତି କରି ନାଦ ଧରିଲେକ ସହୁଁ ।
ଅଯୋଧ୍ୟା ନରନାରୀ ଘରୁ ବାହାର ହୋଇଲେକ ତହୁଁ ॥
ଋଷିଶୃଙ୍ଗ ଯେସନେକେ ଜନ୍ମ ହୋଇଲା ।
ଅପଛରୀ ଯେବଣ ମତେ ଶାପ ପାଇଲା ॥ ୨୬ ॥
ଅଙ୍ଗଦେଶର ଲୋମପାଦ ରାଯେ ।
ବ୍ରାହ୍ମଣର ତହୁଁ ଯେସନେକ ଶାପ ପାଏ ॥ ୨୭ ॥
ଦଶରଥଙ୍କର ରୂଳେ ଯେବଣ ବିଧିମତ ।
ଗାବଇ ସୁସ୍ୱରେ ସୀତାୟାର ସୁତ ॥ ୨୮ ॥
ଶାନ୍ତା କନ୍ୟା ଯେସନେ ବିଧାନେ ଉତପତି ।
ଦଶରଥ ସମ୍ବନ୍ଧର କଲେ ଯେବଣ ପ୍ରତି ॥ ୨୯ ॥
ପ୍ରଶୁରାମ ଧନୁ ଭଞ୍ଜିଲେ ଯେବଣ ହି ମତେ ।
ଲବକୁମର ତାହା ଗାଉଅଛୁ ଗୀତେ ॥ ୩୦ ॥
ଶୁଣିଣ ଚକିତ ଯେ ଅଯୋଧ୍ୟା ନରନାରୀ ।
ଏକର ଆଗରେ ଆରେକ ବଚନ ପଚାରି ॥ ୩୧ ॥
କୁମର ଗୋଟି ପୂର୍ବ କାଳର କଥା ଜାଣିଲା କାହୁଁ ।
ଏ ରାଜ୍ୟର ନୋହଇ ଏହାକୁ ଦେଖିଲୁ ତ ନାହୁଁ ॥ ୩୨ ॥
କେ ହୋଇ ଏହା ତ ଏକ ଲକ୍ଷ୍ୟ କରି ଶୁଣ ।
ବଡ଼ ସୁସଙ୍ଗ ଶୁଭଇ ହୋ ଅମୃତ ବଖାଣ ॥ ୩୩ ॥
ଏବେ ଉତ୍ତର ସମାସ୍ୟା ନ ଦେବା ।
କେବଣ କେବଣ ମତ ଚରିତ୍ର ବୁଝିବା ॥ ୩୪ ॥

---

୨୨. ସଦନପୁର—ସଦାପର । ୨୬. ଅପଛରୀ—ଅପକ୍ଷର । ୨୭. ତହୁଁ—ତହୁଁ-ତହୁଁ । ୩୧-୩୪. ଖ ପୋଥିରେ ନାହିଁ । ୩୨. ରାଜ୍ୟ—ରାଯ ।

ପ୍ରଶୁରାମ କଥା କହଇ ଲବ କୁମର ।
ଦେଖି ଡରେ ପଳାଇଲେ ସକଳ ନୃପବର ।। ୩୫ ।।
ଏ ପ୍ରଶୁରାମକୁ ବଶିଷ୍ଟେ ପ୍ରବୋଧିଲେ ଯହୁଁ ।
ନିଜ ଆଶ୍ରମକୁ ପ୍ରଶୁଧରେ ଗଲେ ତହୁଁ ।। ୩୬ ।।
ଋଷିଶୃଙ୍ଗର ତହୁଁଙ୍କ ଦଶରଥ ପେଷଇ ଦୂତ ।
ବିପୁଳ ପର୍ବତେ ବ୍ରାହ୍ମଣେ ମିଳିଲେ ତୁରିତ ।। ୩୭ ।।
ଋଷିଶୃଙ୍ଗ ଠାବକରି ସନ୍ତୋଷ ଘେନିଣ ଅଇଲେ ।
ଅଯୋଧ୍ୟା ନୃପତିର ଆଗରେ କହିଲେ ।। ୩୮ ।।
ଶୁଣି ଦଶରଥ ବିରସେଣ ଭାଳଇ ।
କେବଣ ମତେ ଆଣଇ ବିଭାଣ୍ଡକର ବାଳଇ ।। ୩୯ ।।
ବିସ୍ତାର କରି ଗାବଇ ଲବକୁମର ।
ଶୁଣିଣ ହରଷ ନଗ୍ରୀ ଜନଙ୍କର ।। ୪୦ ।।
ଏସନେକ କେତେହେ କାଳ ଯେବେ ଗଲା ।
ଦଶରଥ ରାଜ୍ୟକୁ ଲୋମପାଦ ଅଇଲା ।। ୪୧ ।।
ଦୁଇ ମଇତ୍ରେ କୋଳ (କରି) ବଚନ ହୁଅନ୍ତି ।
ଯେ ଯାହାର ପୂର୍ବ କଥା ଭାଳି ପୁଛନ୍ତି ।। ୪୨ ।।
ଲୋମପାଦ କହଇ ଅପାଳେକ ମୋହର ପୁରୀ ।
ଦଶରଥ କହନ୍ତି ପୁତ୍ର ନାହିଁ ନା ମୋହରି ।। ୪୩ ।।
ଚାଲ ମଇତ୍ର ଆମ୍ଭେ ଦେଶାନ୍ତର କରିବା ।
ପୁତ୍ର ବିହୁନେଣ କିସ ରାଜ୍ୟରେ ଥିବା
[ ଲୋକ ଅପବାଦ କେସନେକ ସହିବା ] ।। ୪୪ ।।
ଦୁଇ ରାଜାଙ୍କର କଥା ଶୁଣି କହନ୍ତି ବଶିଷ୍ଠ ।
ଶୁଣ ହୋ ଲୋମପାଦ ନୃପତି ଗରିଷ୍ଠ ।। ୪୫ ।।
ବେଦ ପୁରାଣେ ଯାହା ସେ ବଖାଣି ।
ସେ କି ଅନାସ୍ତ ହୋଇବ ନୃପମଣି ।। ୪୬ ।।
ତୋହର ରାଜ୍ୟକୁ ଯେବେ ଋଷିଶୃଙ୍ଗ ଆସଇ ।
ତାହାର ଅଇଲେ ହେ ଦେଶେ ବରଷଇ ।। ୪୭ ।।
ଏ ଯେ ଦଶରଥର ଶାନ୍ତା ନନ୍ଦନୀ ।
ତୋହର ନବରକୁ ନେସି ଏ କାମେନି ।। ୪୮ ।।
ଏ କନ୍ୟାକୁ ଋଷିଶୃଙ୍ଗ ବିଭା ହୋଇବ ।
ଦୁଇ ମଇତ୍ରକୁ ସେ ପୁତ୍ର ଦାନ ଦେବ ।। ୪୯ ।।

୩୯. ଆଣଇ—ଭାଳଇ । ୪୧. କେତେହେ—ଯେତେହେ (କ) । ୪୬. ଅନାସ୍ତ—ଅନସ୍ତା (ଖ) ।

ତହୁଂ କନ୍ୟା ଘେନି ଲୋମପାଦ ଗଲା ।
ଅଙ୍ଗଦେଶେ ଯାଇ ପ୍ରବେଶ ହୋଇଲା ।। ୫୦ ।।

ଅନ୍ତଃପୁରେ ନେଇ କଲେକ ପ୍ରବେଶ ।
ଅନେକ ପରିଜନେ ଖଟନ୍ତି ତାର ପାଶ ।। ୫୧ ।।

ସୁସ୍ୱରେ ଗାବଇ ଗୀତ ସୀତସ୍ତ୍ରୀର ସୁତ ।
ଶୁଣି ପୁରଜନେ ଆନନ୍ଦମୟେ ଚିତ୍ତ ।। ୫୨ ।।

ମଦନେ ଭେବଲ ହୋଇ କେବଣ ନାରୀ ।
ସ୍ୱାମୀର ଜେଷ୍ଠଭ୍ରାତ(ର) ଅଛଇ ହାତ ଧରି ।। ୫୩ ।।

ପୁତ୍ର ପୁତ୍ରୀ ତେଜି ଗୋଡ଼ାବନ୍ତି ପଛେ ।
ଗୃହକର୍ମ ତେଜି ବୁଲନ୍ତି ରାଛେ ରାଛେ ।। ୫୪ ।।

ବୃଦ୍ଧା ନାରୀ କିଛି ହି ନ ବୋଲନ୍ତି ।
ସମସ୍ତ ଲୋକେ ଲବର ପଛେ ଗୋଡ଼ାବନ୍ତି ।। ୫୫ ।।

ଅନେକ ଜନ ଗହନ କୁମରର ପାଶ ।
ନବର ନିକଟେ ଲବ ହୋଇଲା ପ୍ରବେଶ ।। ୫୬ ।।

ଦଶରଥଙ୍କର ଉଛବ ଶ୍ରାଧ ସେ ଦିନ ।
ପିତୃକାର୍ଯ୍ୟ ସାରନ୍ତି ଶ୍ରୀରାମରାଜନ ।। ୫୭ ।।
ସୁବାହୁ ବନ୍ଧୁ ଭ୍ରାତାକୁ ଅଣାଇଲେ ।
ଦ୍ୱିଜ ଖାଇନ୍ତି ଘେନି ଶ୍ରାଧ ଦେଇ ତ ବସିଲେ ।। ୫୮ ।।
ବଶିଷ୍ଠେ ମୋକ୍ଷ କରି ବ୍ରାହ୍ମଣେ ଗୋତ୍ର ଉଚ୍ଚରନ୍ତି ।
ଅନେକ ଦ୍ୱିଜବରେ ବେଢିଣ ଅଛନ୍ତି ।। ୫୯ ।।
ପାତ୍ର ଅମାତ୍ୟେ ସୁହୃଦ ବନ୍ଧୁଜନ ।
କଉଶଲ୍ୟା ଦେବୀ ଅଛନ୍ତି ରାମର ସନ୍ନିଧାନ ।। ୬୦ ।।
କନକ ସୀତାକୁ ବସାବନ୍ତି ଆଣି ।
ମୁଖ ଚୁହାନ୍ତି ତାହର କୋଦଣ୍ଡରୂପପାଣି ।। ୬୧ ।।
ସୀତାର ରୂପ ଗୁଣ ବିଚାରି ରଘୁପତି ।
ଚିତ୍ତ ଛନଛନ ଅଛି ର ସେ ମତି ।। ୬୨ ।।
ଲକ୍ଷ୍ମଣ ସନ୍ନିଧେ ଅଛନ୍ତି ଉଭା ହୋଇ ।
ଶ୍ରାଧ ଯୋଗାଡ଼ ପ୍ରତିମାକୁ ଛୁଆଇଁ ରାମକରେ ଦେଇ ।। ୬୩
ଏସନେକ ସମୟେ ଲବ କୁମର ।
ଯାଇଣ ହୋଇଲେ ନବର ସିଂହଦ୍ୱାର ।। ୬୪ ।।

---

୫୨. ସୁସ୍ୱରେ—ସୁସରେ (କ) । ୬୦. ସୁହୃଦ—ସଦୟେ (କ) ।

ସୁଲଳିତ ନାଦ ସୁସ୍ୱରେ 'ପିକ) ଧ୍ୱନି ମତି ।
ଶ୍ରୀରାମର ହୃଦରେ ବସଇ ସରସ୍ୱତୀ ॥ ୬୫ ॥

ସୁଲଳିତ ଧ୍ୱନି ଶୁଭଇ ଅନୁପାମ ।
ଶୁଣିଣ ଶ୍ରବଣ ଯେ ଟେକନ୍ତି ଶ୍ରୀରାମ ॥ ୬୬ ॥

ବସନ୍ତ ସୁକୃତୀ ନାଦ ସୁସ୍ୱରେ ଧରଇ ।
ଶୁଣିଣ ମୋହିତ ହୋଇଲେ ଷିବର ସୁନ୍ଦରଇ ॥ ୬୭ ॥

ଶ୍ରାଧ କରନ୍ତେଣ ରାମ ଅଗ୍ୟାଂନ ଯହ୍ନୁଂ ।
କର ଯୋଡ଼ି ଲଇକ୍ଷଣ ସଗୃରଇ ତହ୍ନୁଂ ॥ ୬୮ ॥

ହେ ରଘୁନାଥ ଶୁଣ ମୋହର ବଚନ ।
କସ ନିମନ୍ତେ ତୁହ୍ମ ହୋଇଲ୍ ବିଚ୍ଛିନ ॥ ୬୯ ॥

ଶ୍ରୀରାମ କହନ୍ତି ଶୁଣ ଆରେ ଭ୍ରାତ ।
ସିଂହଦ୍ୱାରେ କେ ଝଙ୍କାରଇ ନାଦ ଗୀତ ॥ ୭୦ ॥

ତୁହ୍ମ ଏହିକ୍ଷଣି ତାହାର ତହ୍ନଂକ ପାସି ।
ଶ୍ରାଧ ସରିବା ଯାଏ ରୁହାଇଣ ଆସି ॥ ୭୧ ॥

ଶ୍ରୀରାମର ଆଜ୍ଞା ଘେନିଣ ଲକ୍ଷ୍ମଣ ।
ନବର ଦ୍ୱାରେ ଯାଇ ମିଳିଲ ତତକ୍ଷଣ ॥ ୭୨ ॥

ଅନେକ ଲୋକେ ଅଛନ୍ତି କତର ।
ନାଦ ଝଙ୍କାରଇ ଲବ କୁମାର ॥ ୬୩ ॥
ବଦନ ଦିଶଇ ଶରଦଇନ୍ଦୁ ଜ୍ୟୋତି ।
ଶ୍ୟାମଳ ସୁନ୍ଦର ବାଳୁତ ମଦନ ମୂରତି ॥ ୭୪ ॥
ହୃଦସ୍ଥ ବିସ୍ତାର ସିଂହର ମଝା ।
ରୂପେଣ ପଟାନ୍ତର ନାହିଂ ଆନ ଦୂଜା ॥ ୭୫ ॥
ଲକ୍ଷ୍ମଣ ବିଚୃରଇ କୁମର ମୁଖ ଦେଖି ।
ମକରକେତନ ଅଇଲା କି ବିଷ୍ଣୁ ଭୁବନ ଉପେଖି ॥ ୭୬ ॥
କିଅବା କେବଣ ଦିଗପାଳଙ୍କର ନନ୍ଦନ ।
କ୍ରୀଡ଼ା ବିନୋଦେ ଅଇଲା ଏ ଭୁବନ ॥ ୭୭ ॥
କୁମର ମୁଖ ଚାହିଂ ଲକ୍ଷଣ ପ୍ରକାଶି ।
କ୍ଷଣେକ ବିଶ୍ରାମ କର ଏଥି ଠାବେଣ ଆସି ॥ ୭୮ ॥
ଆମ୍ଭର ଘରେ ଆଜ ପିତୃଉଛବ ।
ଶ୍ରାଧ ସରିଲେ ତୁମ୍ଭେ ଗୀତ ଗାଇବ ॥ ୭୯ ॥

---

୬୯. ବିଚ୍ଛିନ—ବିକ୍ଷନ । ୭୬-୭୭. ଏ ଦୁଇପଦ ଖ ପୋଥିରେ ନାହିଁ ।

ପିଣ୍ଡଦାନ ପର୍ଯ୍ୟନ୍ତେ ଆନ କଥାରେ ନୋହୁ ସାବଧାନ ।
ନମସ୍କାର ବିବର୍ଜିତ ଦେବତାଙ୍କୁ ନ କରି ଦରଶନ ॥ ୮୦
ଦନ୍ତ ନ ଦଂଶିବ ତର୍ପଣ ହୁ ନାହିଁ ।
ନୃତ୍ୟଗୀତ ଶୁଣିଲେ ଶ୍ରାଧର ଫଳ ପାଇ କାହିଁ ॥ ୮୧ ॥
କଳହ ନ କର ଆନ କଥାରେ ନୋହିବ ହରଷ ।
ତେବେ ସେ ପିତୃଗଣେ ହୁଅନ୍ତି ସନ୍ତୋଷ ॥ ୮୨ ॥
ଲକ୍ଷ୍ମଣର ବଚନ ଶୁଣି ସୀତାସ୍ୱାର ନାନ ।
ନାଦ ହୁଂକାର ତେଜି ହୋଇଲା ମଉନ ॥ ୮୩ ॥
ପଦ୍ମଆସନେ ଲବ କୁମର ବସିଲା ।
ସେଠାରୁ ଲକ୍ଷ୍ମଣ ବାହୁଡ଼ି ଅଇଲା ॥ ୮୪ ॥
ଶ୍ରୀରାମ ଆଗରେ କହିଲାକ ଯାଇ ।
ଦେବ ଦେବ ଗାନ୍ଧେଶ ଚୌକି ଅଇଲି ବସାଇ ॥ ୮୫ ॥
ବଡ଼ ସୁନ୍ଦର ସେ ବାଳୁତ ବୟସ ।
ତାହାର ରୂପ ପଟାନ୍ତର ଏଥି ନାହିଁ ସାଦୃଶ ॥ ୮୬ ॥
ଶୁଣିଣ ଶ୍ରୀରାମ ମନେ ତୋଷ ହେନ୍ତି ।
ପିତୃଶ୍ରାଧମାନ ତୁରିତେ ସାରନ୍ତି ॥ ୮୭ ॥
ପ୍ରୋହିତ ବ୍ରାହ୍ମଣ ଯେତେ ତହିଁ ଥିଲେ ।
ଦାନ ଦକ୍ଷିଣା ଦେଇ ସବୁନ୍ତ ତୋଷ କଲେ ॥ ୮୮ ॥

## ରାମଙ୍କ ଆଗରେ ରାମାୟଣ ଗାନ

ଆସନକୁ ବିଜୟେ କରନ୍ତି ରଘୁବୀର ।
ବାମକରେ କୋଦଣ୍ଡ ଡାହାଣ କରେ ତୀକ୍ଷ ଶର ॥ ୧ ॥
ଆଗେଣ ଅଛନ୍ତି ବଶିଷ୍ଠ ମହାମୁନୀ ।
ସୁମନ୍ତ ଗୁଣନିଧି ଅନେକ ପାତ୍ର ଅଛନ୍ତି ସନ୍ନିଧାନ ॥ ୨ ॥
ଭରଥ ଲକ୍ଷ୍ମଣ ପଛରେ ଅଛନ୍ତି ।
ଆସ୍ଥାନକୁ ବିଜୟେ କରନ୍ତି ରଘୁପତି ॥ ୩ ॥
ସୁବର୍ଣ୍ଣର ସ୍ତମ୍ଭ ସ୍ଫଟିକର ପୀଢ଼ଇ ।
ନାନା ମଣିଗଣ ଖଞ୍ଜି ତ ବଜ୍ର ବଇଡୂର୍ଯ୍ୟଇ ॥ ୪ ॥
ତଥିରେ ରାମଚନ୍ଦ୍ର ବସିଲେକ ଯାଇ ।
ଲକ୍ଷ୍ମଣକୁ ଆଜ୍ଞା ଦେଲେ ଆଣ ତାକୁ ରାଇ ॥ ୫ ॥

---

୮୦-୮୨. ଏ ତିନିପଦ ଖ ପୋଥିରେ ନାହିଁ । ୮୬. ଏ ପଦଟି ଖ ପୋଥିରେ ନାହିଁ

ଶ୍ରୀରାମର ଆଗ୍ୟାଂରେ ଲକ୍ଷ୍ମଣ ଗଲା ।
ଲବକୁମର ସନ୍ନିଧେ ତକ୍ଷଣେ ମିଳିଲା ॥ ୬ ॥

ଲବର ମୁଖ ଚାହିଁ କହଇ ସୁମିତ୍ରାର ସୁତ ।
ଆସସି ଭିତରକୁ ବାବୁ ପୁଣ୍ୟବତୀର ପୁତ ॥ ୭ ॥

ତିନି ଭୁବନେ ଯାହାର ନାମ ଧରି ।
ତୋହର ଗୀତ ଶୁଣିମାକୁ ଶରଧା ସେ କରି ॥ ୮ ॥

ଲକ୍ଷ୍ମଣର ବଚନ ଶୁଣିଲା ସେ ଯହୁଁ ।
ଉଠିଣ କୁମର ଗମନ କଲକ ତହୁଁ ॥ ୯ ॥

ବିକ୍ରମ କେଶରୀ ଜାଣି ଅଟଇ ସାଦୃଶ ।
ସଭାର ଉପରେ କୁମର ହୋଇଲା ପ୍ରବେଶ ॥ ୧୦ ॥

ନିଶଙ୍କେ ଆସ୍ଥାନେ ବସିଲେକ ଯାଇ ।
ବଶିଷ୍ଠେ ବଗୃରନ୍ତି ବଡ଼ାଇପଣ ଚାହିଁ ॥ ୧୧ ॥

କି ଅବା ଜାତ ହୋଇଲନ୍ତ ମଦନ ।
ରୂପେଣ ପଟାନ୍ତର ନାହିଁ ତ୍ରିଭୁବନ ॥ ୧୨ ॥

ଯୋଗ ତତ୍ତ୍ୱେ ଜାଣିଲେ ମୁନିବର ।
ଏହି ସେ ଶ୍ରୀରାମର ଜ୍ୟେଷ୍ଠଇ କୁମର ॥ ୧୩ ॥

ଏବେ ସେ ସୀତାପତି ନିଜପୁରକୁ ଯିବ ।
ଅଯୋଧ୍ୟା ନଗ୍ରେ ଏ ନୃପତି ହୋଇବ ॥ ୧୪ ॥

ମୁହିଂ ଯେବେ କହିବ ତୋହର ଏ ପୁତ୍ର ।
ଆବର ଗ୍ରନ୍ଥ ଶୁଣଇ କି କଉଶଲ୍ୟାର ସୁତ ॥ ୧୫ ॥

ହରଷ ଆନନ୍ଦ ହୋଇ ଉଛବ କରିବ ।
ଏସନେକ ପାତେକ କେସନେକେ ହରିବ ॥ ୧୬ ॥

ବାଲ୍ମିକ ଯେବଣ ଗ୍ରନ୍ଥ ଉପାୟେ କରିଣ ଅଛି ।
ଶୁଣିଣ ପାତେକ ବିନାଶୁ ରଘୁବଂଶି ॥ ୧୭ ॥

ଏସନେକ ବିଗୃରି ତବଦ ହୋଇଲେ ମହାମୁନ୍ୟ ।
କୁମର ରୂପ ଉପଲେଖଇ ଦଶରଥ ନନ୍ଦନ ॥ ୧୮ ॥

କି ଏ ଦେବଗଣ କି ଦେବ କୁମର ଅଟଇ ।
ବଦନ ଦିଶଇ ଏହାର ଦୃଷ୍ଟି ପ୍ରଭାକରଇ ।
[ ମଦନ ଜ୍ୟୋତି ଜାଣି ଦିଶଇ ଶରୀରଇ ] ॥ ୧୯ ॥

---

୧୫-୧୭. ଏ ତିନି ପଦ ଖ ପୋଥିରେ ନାହିଁ ।

ଲଳିତ କର୍ଣ୍ଣପତ୍ର ନାହିଁ ଆନ ମାତ୍ର ଶଇ ।
ପଦ୍ମ ମଧୁକର ଜାଣି ବେନି ନୟନ ବିକାଶଇ ॥ ୨୦ ॥
ନାସିକା ଦିଶଇ ତଣ୍ଡୁଲ ଜାଣି ।
ବଧୂଳି କୁସୁମ ଯେସନେ ଓଷ୍ଠ ପରମାଣି ॥ ୨୧ ॥
ସିନ୍ଦୂର ମୋତି ସାରି ଦନ୍ତପନ୍ତି ।
ମଦନ ଧନୁ ଯେସନେ ଭ୍ରୂଲତା ଦିଶ୍ୟନ୍ତି ॥ ୨୨ ॥
ମୃଣାଳ ସାରିଖ୍ୟ ସୁମଞ୍ଜ ବେନି ଭୁଜଇ ।
ରମ୍ଭାକଟି ଜାଣି ଦିଶଇ ପାଣିକଇ ॥ ୨୩ ॥
ମତ୍ତଗଜ ମାରଣ ସିଂହ ପଟାନ୍ତର ଓଦର ।
ନାଭି କମଳ ହୃଦୟସ୍ଥାନ ବିସ୍ତାର ॥ ୨୪ ॥
କେବଣ ପୁଣ୍ୟବନ୍ତ ଏ କୁମରଙ୍କ ତାତ ।
ଧନ୍ୟ ସେ କାମେନୀ ଗର୍ଭଧାରୀ ମାତ ॥ ୨୫ ॥
ଏସନେକ ବଚନ ରଘୁକୁଳମଣି ।
ସନ୍ନିଧେ କୁମରଙ୍କୁ ବସାଇଲେ ଆଣି ॥ ୨୬ ॥
ମୋହେଣ ମୋହିତ ହୋଇଲେ ରଘୁପତି ।
ଲବର ମୁଖ ଚୁମ୍ବି ସନ୍ନିଧରେ ପଚାରନ୍ତି ॥ ୨୭ ॥
କେବଣ ଶାସ୍ତ୍ର ତୁ ବଖାଣ କରୁ ବାବା ।
ସ୍ୱରୂପ କରି ମୋର ଆଗରେ କହିବ ॥ ୨୮ ॥
ଲବ କୁମର କହଇ ଶୁଣସି ମହାତ୍ମା ।
ରାମାୟଣ ଗ୍ରନ୍ଥ ମୁହିଁ ବଖାଣ କରଇ ଉପମା ॥ ୨୯ ॥
ଯେବଣ ଗୁରୁ ମୋତେ ଶାସ୍ତ୍ର ପଢ଼ାଇଲା ।
ରାମାୟଣ ଚରିତ ସେ ଆମ୍ଭନ୍ତ କହିଲା ॥ ୩୦ ॥
ଏ ନଗ୍ରେ ବାକ୍ୟ ମୁହିଁ କଲଇ ପ୍ରକାଶ ।
ଲୋମପାଦର ନଗରେ ଦଶରଥର ଦୋହିତା ପ୍ରବେଶ ॥୩୧
ଶ୍ରୀରାମ କହନ୍ତି ମୁହିଂ ଗ୍ରନ୍ଥ ଶୁଣିମି ।
ଆଦି ଅନ୍ତ କରି ମୁଁ ସେ ପୁରାଣ ଶୁଣିମି ॥ ୩୨ ॥
ସକଳ ପାତକ ହୋଇବାକ ନାଶ ।
ପ୍ରଥମ ହୁଁ ରାମାୟେଣ କର ହେ ପ୍ରକାଶ ॥ ୩୩ ॥

---

୨୧. ତଣ୍ଡୁଲ—ତିଳଫୁଲ (କ), ତିଳ ଫୁଲ (ଖ) । ୨୨. ସିନ୍ଦୂର ମୋତି—ସିନ୍ଦୂରମୋତି (କ) ୨୯. ରାମାୟଣ—ରାବାୟଣ (ଖ) । ୩୦. ଏ ପଦଟି ଖ ପୋଥିରେ ନାହିଁ । ୩୨. ପୁରାଣ—ରାବାୟଣ (ଖ) । ୩୩. ପ୍ରଥମ ହୁଁ ରାମାୟେଣ—ରାବାୟଣ ଆଦିକାଣ୍ଡ (ଖ) ।

ଶ୍ରୀରାମ ପଚ୍ଚରନ୍ତି ଶୁଣସି ହେ ମୁନି ।
କେବଣ ବିଧାତା ଶୁଣାଇଲ ରାମାୟଣେ ଧ୍ୱନି ॥ ୩୪ ॥

ବଶିଷ୍ଠେ କହନ୍ତି ଶୁଣ ରଘୁପତି ।
ସଙ୍କଳ୍ପ କରି ଯେ ବାକ୍ୟ ପୁରାଣ ଶୁଣନ୍ତି ॥ ୩୫ ॥

ପୂର୍ଣ୍ଣକୁମ୍ଭ ଉପରେ ଶ୍ରୀଫଳ ଦେଇ ।
ବସ୍ତ୍ର କାଞ୍ଚନ ପୁଷ୍ପ ଚନ୍ଦନ ଥୋଇ ॥ ୩୬ ॥

ଦେଶକାଳ ବାକ୍ୟେ ଗୋତ୍ର ଉଚ୍ଚରି ।
ବାକ୍ୟ ଶୁଣିବ ଉକତାକୁ ବରଣ କରି ॥ ୩୭ ॥

ଆମିଷ ନ ଭୁଞ୍ଜିବ ନିୟମେଣ ଥିବ ।
ପୁରାଣ ପରସଙ୍ଗେ ଆନ କଥା ନ କହିବ ॥ ୩୮ ॥

ଯତଇନ୍ଦ୍ର ହୋଇବ ବଇରାଗ ନ ହୋଇବ ।
ଚିତ୍ତ ଉଲ୍ଲସେ କରି ଗ୍ରନ୍ଥ ଶୁଣୁଥିବ ॥ ୩୯ ॥

ବଶିଷ୍ଠଙ୍କର ବଚନ ଯହୁଁ ଶ୍ରୀରାମ ଶୁଣିଲେ ।
ଆସ୍ଥାନ ଉପରକୁ ପୂର୍ଣ୍ଣକୁମ୍ଭ ଅଣାଇଲେ ॥ ୪୦ ॥

ଲବକୁମର ଶିରେ ଚନ୍ଦନ ଲେପନ୍ତି ।
କପୋଳେ ସୁବର୍ଣ୍ଣର ଚିତା ଗଳାରେ ପୁଷ୍ପମାଳା ଲମ୍ବାବନ୍ତି ॥

ଝୀନବସ୍ତ୍ରେକ ପାଡ଼ିଲେ ରଘୁପତି ।
ତହିଁ ଉପରେ ପାଞ୍ଜି ଗୋଟି ଥୁଅନ୍ତି ॥ ୪୧ ॥

ଧୂପଦୀପ ନୈବେଦ୍ୟ ଶାସ୍ତ୍ର ଉକତ ବିଧି ।
ରାମାୟଣ ଶୁଣନ୍ତି ସୃଷ୍ଟିର ସୁବୁଦ୍ଧି ॥ ୪୩ ।

ବଶିଷ୍ଠ ମହାମୁନିଙ୍କ କଲେ ବ୍ରହ୍ମାବରଣ ।
ପାତ୍ର ଅମନାତ୍ୟ ସୁମନ୍ତ୍ର ଶୁଦ୍ଧ ବ୍ରାହ୍ମଣ ॥ ୪୪ ॥

ଭ୍ରଥ ଲକ୍ଷ୍ମଣ ଯେ ଦୁଇଭାଇ ଅଛନ୍ତି କତି ।
ନଗ୍ର ନରନାରୀ ବେଢ଼ିଣ ଅଛନ୍ତି ॥ ୪୫ ॥

ଲବକୁମର କହଇ ରାମାୟଣ ଚରିତ୍ର ।
ଋଷିଶୃଙ୍ଗର ଜନ୍ମକଥା ଆବର କରଇ ଉକତ ॥ ୪୬ ॥

ଶାନ୍ତମତି ଯେସନେକେ ଶାପ ପାଇଲା ।
ଯେବଣ ମୃଗୁଣୀର ଗର୍ଭେ ଜାତ ହୋଇଲା ॥ ୪୭ ॥

---

୪୨-୪୨. ଦୁଇପଦ ଖ ପୋଥିରେ ନାହିଁ । ୪୩. ଉକତ—କଉତୁକ (କ), ୪୬. ରାମାୟଣ—ରାବାୟଣ । ୪୭. ଶାନ୍ତମତି—ଶାନ୍ତମନ୍ତ୍ରୀ ।

ରୂପକେଶୀ ଯେସନେକେ ହୋଇଲା ଶବଗ୍ଧା ।
ରୂପଦେଖି ରେତ ଗ୍ରୁଡ଼ିଲେ ବିଭାଣ୍ଡକ ତପସ୍ବୀ ॥ ୪୮ ॥
ସେ ବୀର୍ଯ୍ୟ ମହର୍ଷି ଜଳେଣ ମେଲିଲା ।
ତୃଷ୍ଣାର ଆରତେ ତାହା ହରଣୀ ପିଇଲା ॥ ୪୯ ॥
ଆଠ ଯୁଗ ଯାହାର ନାହିଂ ମଇଥୁନ ।
ଶବସ୍ତାକ ଦେଖି ମୋହିତ ହେଲେ ତପୋଧନ ॥ ୫୦ ॥
ଅମୋଘ ବୀର୍ଯ୍ୟ ସେ ବିଭାଣ୍ଡେକର ରେତ ।
ତହୁଂ ଶୃଙ୍ଗମୁନ ହୋଇଲେକ ଜାତ ॥ ୫୧ ॥
ବିଶେଷି କହଇ ଏହା ସୀତସ୍ବାର ନନ୍ଦନ ।
ଶୁଣିଣ ହରଷ ହୁଅନ୍ତ ବଶିଷ୍ଠ ତପୋଧନ ॥ ୫୨ ॥
ଶ୍ରୀରାମ ଶୁଣି ଆନନ୍ଦମୟେ ଚିତ୍ତ ।
ଭରଥ ଲକ୍ଷ୍ମଣ ଆବର ମନ୍ତ୍ରୀ ଅମନାତ୍ୟ ॥ ୫୩ ॥
ସଭାର ତଳେରେ ନଗ୍ରର ଲୋକେ ବେଢ଼ିଛନ୍ତି ।
ସମସ୍ତେ ହେ ଶୁଣି ହୃଦୟେ ବିସଂସନ୍ତି ॥ ୫୪ ॥

## ଲୋମପାଦଙ୍କ ରାଜ୍ୟରେ ଅପାଳକ

ଅଙ୍ଗଦେଶର ରାଜା ଲୋମପାଦ ।
ପୁତ୍ର ନାହିଁ ତାହାର ମନରେ ବିଷାଦ ॥ ୧ ॥
ନିତ୍ୟେହେ ରାଜା ଧନ ବସନ ଅନ୍ନଦାନ ଦିଅଇ ।
ଦେବତା ବ୍ରାହ୍ମଣ ବୈଷ୍ଣବ ବିନୋଇ ॥ ୨ ॥
ବିପ୍ର ପୁତ୍ର ଯହୁଂ ଧେନୁ ଏକ ମାଗିଲା ।
ଯଦୁ ନାମ ବ୍ରାହ୍ମଣଙ୍କୁ ଉପହାସ୍ୟ ରାଗେ କଲା ॥ ୩ ॥
ମର୍ମ କଥା ଶୁଣି ସମସ୍ତ ବିପ୍ରେ କୋପ କଲେ ।
ତୋହର ରାଜ୍ୟେ ଅପାଳକ ହୋଉ ବୋଲି କୋପେଣ ଶାପ ଦେଲେ ॥ ୪
ତେବେ ସେ ଅଙ୍ଗଦେଶେ ବରଷଣ ନ କଲା ।
ପ୍ରଜା କଷ୍ଟେ ରାଜା ଅନେକ ବିକଳ ହୋଇଲା ॥ ୫ ॥
ଦଶରଥ ଲୋମପାଦ ହୋଇଲେ ଯେମନ୍ତ ମଇତ୍ର ।
ବିଶେଷି କହଇ ତାହା ସୀତସ୍ବାର ପୁତ୍ର ॥ ୬ ॥
ସୂର୍ଯ୍ୟବଂଶେ ବିଖ୍ୟାତ ଦଶରଥ ନୃପତ୍ତ ।
ତାହାର କୋଳେ ନାହିଁ ସନ୍ତତ ॥ ୭ ॥

---

୪୮. ରୂପକେଶୀ—ରୂପସେନା ୫୦. ପଦଟି ଖ ପୋଥିରେ ନାହିଁ । ୫୪. ପଦଟି ଖ ପୋଥିରେ ନାହିଁ । ୪. ମର୍ମ—ଜର୍ମ (କ) ।

ଡଗର ମୁଖେ ଲୋମପାଦ ବାରତା ପାଇଲା ।
ଦଶରଥ ପୁତ୍ର ନାହିଁ ବୋଲି ବିକଳ ହୋଇଲା ॥ ୮ ॥
ତେଣେ ସେ ଲୋମପାଦ ଅମାତ୍ୟ ପଠାଇ ।
ଦଶରଥର ତୁଲେ ମଇତ୍ରପଣ ହୋଇ ॥ ୯ ॥
ବିସ୍ତାରେ କହଇ ଲବ କୁମର ।
ଶୁଣିଣ ସକଳ ଲୋକେ ଉତସନ୍ତି ଶରୀର ॥ ୧୦ ॥
ଶ୍ରୀରାମ ପଚାରନ୍ତି ଶୁଣ ବାଳପୋଇ ।
କେମନ୍ତେ ଦଶରଥ ଅପୁତ୍ରିକ ହୋଇ ॥ ୧୧ ॥
ପୁଣି କେବଣ ମତେ ଉପୁଜିଲେ ପୁତ୍ର ।
ଏକଥା ଶୁଣିବା ଇଚ୍ଛା ମୋହର ଚିତ୍ତ ॥ ୧୨ ॥
ଲବ କୁମର କହଇ ଶୁଣ ସାବଧାନେ ।
ଇନ୍ଦ୍ରପୁରକୁ ଗମଇ ଦଶରଥ ରାଜନେ ॥ ୧୩ ॥
ସପତ ଦ୍ଵୀପେ ଏକାଙ୍ଗ ଚକ୍ରବର୍ତ୍ତୀ ।
ତିନି ପାଞ୍ଚ ମହାଦେଈ ଏକୋଇ(ଶ) ଶତ ଯୁବତୀ ॥ ୧୪
ସ୍ଵର୍ଗପୁରେ ଗୋମାତାକୁ ନମସ୍କାର ନ କଲ ।
ତୋହର ପୁତ୍ର ନ(ହୋ)ଉକୁ ବୋଲି ସୁରଭି ଶାପ ଦେଲ ॥
ବିସ୍ତାର କରି କହଇ ଲବ କୁମରଇ ।
ଶୁଣନ୍ତି ଶ୍ରୀରାମ ବଶିଷ୍ଠ ମୁନିବରଇ ॥ ୧୬ ॥
ଶାନ୍ତା ନାମେ କନ୍ୟା ଯେମନ୍ତେ ଜାତ ।
ସକଳ କଥା ଗୀତେ ଗାବଇ ସୀତାସ୍ବାର ସୁତ ॥ ୧୭ ॥
ସେ କନ୍ୟାକୁ ଦଶରଥ ସ୍ଵୟମ୍ବର କଲ ।
ବାରତୂର ଶୁଣି ଯେ ପ୍ରଶୁରାମ ଅଇଲ ॥ ୧୮ ॥
ସକଳ ରାଜାଏ ପଳାଇଲେ ପ୍ରଶୁରାମର ତେଜ ଦେଖି ।
ଦଶରଥକୁ କୋପ କଲେ ଗଉରବ ଉପେଖି ॥ ୧୯ ॥
ବଶିଷ୍ଠ ପ୍ରଶୁରାମକୁ ପ୍ରବୋଧିଲେ ଯେବଣ ମତେ ।
କହଇ ଲବକୁମର ଶ୍ରୀରାମ ଅଗ୍ରତେ ॥ ୨୦ ॥
ବଶିଷ୍ଠ ମହାମୁନି ଶୁଣି ଆନନ୍ଦମୟେ ଚିତ୍ତ ।
ଧନ୍ୟ ଧନ୍ୟ କରନ୍ତି ସଭାର ଲୋକେ ସମସ୍ତ ॥ ୨୧ ॥
ଭରଥ ଲକ୍ଷ୍ମଣ ଉତସନ୍ତି ମନେ ।
ଆସ୍ଥାନର ତଳେ ବେଢ଼ିଛନ୍ତି ନଗ୍ର ଜନେ ॥ ୨୨ ॥

---

୮–୧୦. ଏ ତିନିପଦ ଖ ପୋଥିରେ ନାହିଁ । ୧୨. ଏ ପଦଟି ଖ ପୋଥିରେ ନାହିଁ ୧୪. ଶତ—ସପ୍ତ । ୧୭. ଗାବଇ—ଗାଇବ (କ) । ୨୨. ନଗ୍ରଜନେ—ନୃପତି ଗଣ ମାନେ ।

ଲବ କୁମର କହଇ ଶାସ୍ତ୍ର ଉକତ ।
ଯହୁଂ ଅପାଳେକ ହୋଇଲା ଲୋମପାଦର କ୍ଷିତ ॥ ୨୩ ॥
ହୃଦରେ ଭାଳଇ ଅଙ୍ଗ ଦେଶର ରାଜନ ।
କେସନେକେ ବର୍ତ୍ତିବେ ମୋହର ପ୍ରଜାଇତ ଜନ ॥ ୨୪ ॥
ସକଳ ପ୍ରାଣୀ ମୋହର ଦୋଷେ ନାଶ ଗଲେ ।
ସବୁର ହତ୍ୟା ମୋହର ମଥାରେ ବସିଲେ ॥ ୨୫ ॥
ଦେଶାନ୍ତର କରି ନାନା ତୀର୍ଥ ବୁଲିବି ।
କାହିଁ ପେନ ଆବର ରାଜ୍ୟେଣ ମୁହିଂ ଥିବି ॥ ୨୬ ॥
ଦଶରଥ ରାଜା ଯେ ମୋହର ମଇତ୍ର ।
ଏ କଷ୍ଟ କହିବି ତାହାର ଅଗ୍ରତ ॥ ୨୭ ॥
ଏତେ ବୋଲି ଲୋମପାଦ ରାଜ୍ୟ ତେଜଇ ।
ଅଯୋଧ୍ୟା ନଗ୍ରକୁ ଆସଇ ମହାରାଜଇ ॥ ୨୮ ॥
ଦଶରଥ ପୁଣି ପାଗ୍ଭେଟିଣ ଗଲେ ।
ଲୋମପାଦ ପେନ ରାଜ୍ୟକୁ ଅଇଲେ ॥ ୨୯ ॥
ଦୁଇ ମଇତ୍ର କୋଳ ସମ୍ଭାଷଣ ହୁଅନ୍ତି ।
କନେକ ସିଂହାସନେ ବେନି ରାଜାଏ ବସନ୍ତି ॥ ୩୦ ॥
ଲୋମପାଦ କହଇ ରାଜ୍ୟରେ ଅପାଳେକ ମୋହର ।
ରାଜ୍ୟେ ଥାଇ କସ କରିବି ଯିବଇ ଦେଶାନ୍ତର ॥ ୩୧ ॥
ସେ କଥା ତୋହର ଅଗ୍ରତେଣ କହିବି ।
ରାଜ୍ୟ ନ କରିବି ଦେଶାନ୍ତର କରିଯିବି ॥ ୩୨ ॥
ଦଶରଥ କହଇ ମୋହର ନାହିଁ ନନ୍ଦନ ।
ଗୁଲ ମଇତେ ଦୁହେଁ ଯିବାକ ବହନ ॥ ୩୩ ॥
ଆବର ବିଶେଷେ ନୁବା କୁମାରୀ ମୋହର ଘରେ ଥାଇ ।
ପ୍ରଶୁରାମର ଡରେ ବର ଆସନ୍ତା କେହି ନାହିଁ ॥ ୩୪ ॥
ବଶିଷ୍ଟେ କହନ୍ତି ଶୁଣ ଲୋମପାଦ ।
ତୁହି ଏବେ ରାଜା ନୁହସି ବିଷାଦ ॥ ୩୫ ॥
ଶାନ୍ତା କନ୍ୟା ତୋହର ଘରକୁ ହି ନେସି ।
ଉପାୟେ କରି ଋଷ୍ୟଶୃଙ୍ଗକୁ ଅଣାବସି ॥ ୩୬ ॥

---

୨୯. ରାଜ୍ୟକୁ ଅଇଲା—ଆସ୍ଥାନେ ବଇଲେ କଲ (ଖ) । ୩୦-୪୦. ଏହି ୧୧ ପଦ ବଦଳେ ଖ ପୋଥିରେ ତିନି ପଦ ରହିଛି :— "ରାଜ୍ୟ ରାଷ୍ଟ୍ର ବାରତା ପଗ୍ଭରନ୍ତି ବେନି ରାସ୍ୱେ । ଦେଶ ଅପାଳକ ବୋଲି ଲୋମପାଦ କହେ ॥ ଲୋମପାଦେ ଦଶରଥ ପ୍ରବୋଧିଲେ ଯେମନ୍ତେ । କହଇ ଲବକୁମର ଶ୍ରୀରାମ ଅଗ୍ରତେ ॥ ଦଶରଥ ନନ୍ଦନୀ ଯେ ଶାନ୍ତା କୁମାରୀ । ତାହାକଇ ପେନ ଲୋମପାଦ ଅଙ୍ଗଦେଶ ପୁରୀ ॥

ତୋହର ରାଜ୍ୟକୁ ଆସିବ ବିଭାଣ୍ଡେକର ସୂନ ।
ଏସନେକ ଭବିଷ୍ୟ ଅଛଇ ଲୋଚନ ॥ ୩୭ ॥

ତୋତେ ପୁତ୍ର ହୋଇବ ଯେବଣ ବେଳେ ।
ଦଶରଥକୁ ପୁତ୍ର ଉପୁଜିବ ସେ କାଳେ ॥ ୩୮ ॥

ଶୁଣି ଦଶରଥ ହରଷ ହୋଇଲା ।
ଅନେକ ଯତ୍ନେ ଲୋମପାଦକୁ ଭୋଜନ ଦେଲା ॥ ୩୯ ॥

ଶାନ୍ତା କନ୍ୟାକୁ ଘେନ ତତ୍କ୍ଷଣଂ ଲୋମପାଦ ଆସଇ ।
ଅଙ୍ଗ ଦେଶେଶ ସେ ହୋଇଲା ପ୍ରବେଶଇ ॥ ୪୦ ॥

ଅନ୍ତଃପୁର ଭିତରେ ଥୋଇଲା ଦଶରଥ କୁମାରୀ ।
ଭୁଞ୍ଜେଣ ସମର୍ପିଲା ଅନେକ ପରିବାରୀ ॥ ୪୧ ॥

ଲୋମପାଦ ନବରେଣ ଥାନ୍ତେଣ ଶାନ୍ତା ।
ନିତ୍ୟେହେ ମହାପଡ କରୁଥାଇ ଚିନ୍ତା ॥ ୪୨ ॥

## ଋଷ୍ୟଶୃଙ୍ଗଙ୍କୁ ଆଣିବାକୁ ପ୍ରସ୍ତୁତି

ନଗ୍ରେଣ ସୁବର୍ଣ୍ଣର ଢେଣ୍ଟୋହା[୧] ବୁଲାଇଲେ ।
କେହୁ ଧରିବାକୁ ସାମର୍ଥ ନୋହିଲେ ॥ ୧ ॥
ନିତ୍ୟେହେ ଖାଲୁଥାଇ ଅଙ୍ଗଦେଶର ରାଜନ ।
କେସନେକେ ଆଣିବ ବିଭାଣ୍ଡେକ ନନ୍ଦନ ॥ ୨ ॥
ତାହାର ଅଇଲେହେ ହୋଇବ ଜଳବୃଷ୍ଟି ।
ଯାହା ସେ କହିଅଛନ୍ତି ବଶିଷ୍ଠ ତପନିଷ୍ଠି ॥ ୩ ॥
ବିମନେ ନଗ୍ରେ ବୁଲନ୍ତେ ମହୀପାଳଇ ।
ନିଶାରେ ହୋଇଲା ଯାଏ ବେଶାର ଆଳଇ ॥ ୪ ॥
କରତାକୋଷା ନାମେ ଗଣିକାର ଶ୍ରେଷ୍ଠ ।
ରୂପେଣ କାମେନୀ ସେ ନଗ୍ରର ଗରିଷ୍ଠ ॥ ୫ ॥
ନିଶାର ସମୟେ ସେ ବସିଣ କାମେନୀ ।
ଗର୍ବେଣ କହଇ ବାଲୀ ଦଶବାଂଶ ଘେନି ॥ ୬ ॥
ରାଜା ନ ଜାଣଇ ମନେଣ ଅଯୋଂନ ।
ମୋତେ କମ୍ପା ନ ପେଷଇ ଯହିଁ ଅଛଇ ବିଭାଣ୍ଡେକ ସୂନ ॥
[ନଗ୍ରେ ଘୋଷଣ ସେ ନିତ୍ୟେହେ ଦିଅଇ ।
କେହୁ ଧରି ନୁଆରନ୍ତି ସାମରଥ ହୋଇ ॥] ୮ ॥

୧. ଢେଣ୍ଟୋହା——ଢେଣ୍ଟେଆ (ଖ) ।

ବଚନ ମାତ୍ରକେ ମୋହ୍ନ ଆଣିବ ସେ ଯତି ।
ଏସନେକ କଥା ଶୁଣି ଲୋମପାଦ ନୃପତି ॥ ୯ ॥
କ୍ଷଣରେ ମୁକୁତାହାର ଭରଣ ଯେ ଥିଲା ।
ବେଶାର ମନ୍ଦର ଉପରେ ତାହା ପକାଇ ଅଇଲା ॥ ୧୦ ॥
ନବରେଣ ମହୀପତି ହୋଇଲା ପ୍ରବେଶ ।
ନିଶି ପ୍ରଭାତେ ତଗରକୁ ଦେଲେକ ଆଦେଶ ॥ ୧୧ ॥
ହେ ତଗର ତୁହି ଶୀଘ୍ର ହୋଇଣ ଯାସି ।
ବେଶ୍ୟାଙ୍କର ସାହିରେ ଯାଇ ପ୍ରବେଶ ହୁଅସି ॥ ୧୨ ॥
ମୋହର ମୁକୁତାର ହାର ଯାହାର ମନ୍ଦରେଣ ଦେଖିବୁ ।
ସେ କାମେନୀଙ୍କି ମୋହର ସନ୍ନିଧକୁ ଘେନଣ ଆସିବୁ ॥ ୧୩
ରାଜାର ଆଜ୍ଞା ପାଇ ତଗର ବେଗେ ଗଲା ।
ବେଶ୍ୟାର ଆଶ୍ରମ ଉପରେ ମୁକୁତାର ହାର ଦେଖିଲା ॥ ୧୪
କରତକୋଷାକଇ ରାଜାର ଛାମୁକୁ ଆଣନ୍ତି ।
ତରେ ଥରହର ଦେହ କମ୍ପଇ ଯୁବତୀ ॥ ୧୫ ॥
ବୋଲଇ କେବଣ ଦୋଷ ମୁହିଁ କଲଇ ଅପ୍ରାଧ ।
କିମ୍ପାଇଁ ନଅନ୍ତି ମୋତେ ରାଜାର ସନ୍ନିଧ ॥ ୧୬ ॥
ନୃପତିର ଆଗେ ଆଣି କଲେକ ଯହୁଂ ।
କରତକୋଷାକଇ କୋମଲ କଥା କହଇ ରାସ୍ତେ ତହୁଂ ॥
ଗନ୍ଧଚନ୍ଦନ ଦେଲା ଧନରତ୍ନବସନ ।
ଅନେକ ଟୁରୁଷାର୍ଥ କରାଇଲା ସନମାନ ॥ ୧୮ ॥
ପ୍ରଣମିତ ହୋଇ ପୁଚ୍ଛଇ ଯୁବତୀ ।
କେବଣ କାର୍ଯ୍ୟ ମୁହିଁ କରିବ ନୃପତି ॥ ୧୯ ॥
ତ୍ରି ଶ୍ରୀ ନଲକ୍ଷଣୀ ମୋତେ କିମ୍ପା କରୁ ସନମାନ ।
କରତାର ମୁଖ ଗୃହିଁ କହଇ ରାଜନ ॥ ୨୦ ॥
ଆଈ କାଲି ରାଜୈଣ କହୁଥିଲୁ ଯାହା ।
ମୁହିଁ ଦୁଇ ଶ୍ରବଣେ ଶୁଣିଲକ ତାହା ॥ ୨୧ ॥
ତୁହି ଯେ ବୋଇଲୁ ଋଷିଶୃଙ୍ଗ ପାରଇ ଆଣି ।
ସେ କଥା ତୋହର ସତଟିକି ତରୁଣୀ ॥ ୨୨ ॥
ଏ ମୋହର ରାଜ୍ୟେ ହୋଇଛି ଅନାବୃଷ୍ଟି ।
ଋଷିଶୃଙ୍ଗ ଅଇଲେ ସେ ପାଣି ବରଷିବ ବୃଷ୍ଟି ॥ ୨୩ ॥

---

୧୨. ପଦଟି ଖ ପୋଥିରେ ନାହିଁ । ୧୬. ପଦଟି ଖ ପୋଥିରେ ନାହିଁ । ନଅନ୍ତି —ନୟନ୍ତି ।

ତୁ ଯେବେ ଋଷିଶୃଙ୍ଗଙ୍କୁ ଆଣିପାରୁ ହର ।
ଏ ରାଜ୍ୟରେ ଆଛି ତୁହି ସେ ହିତକାଙ୍କ୍ଷୀ ॥ ୨୪ ॥
ସକଳ ପ୍ରଜାଙ୍କୁ କରସି ତୁହି ଚିନ୍ତା ।
ତୁ ଗୋ କାମେନୀ ମୋହର ହୋଇବୁ ନିଜ ମାତା ॥ ୨୫ ॥
ଜରତ କୋଷା କହଇ ଶୁଣସି ରାଜନ ।
ମୁହିଁ ଯାହା କହଇ ସ୍ୱରୂପ ବଚନ ॥ ୨୬ ॥
ଏ ତୋହର ଆଗେ କି କହିବ ମିଛଇ ।
ବାଟ ନ ଜାଣଇ କାହିଁ ମୁନି ଅଛଇ ॥ ୨୭ ॥
ଲୋମପାଦ କହଇ ଅଯୋଧ୍ୟା ବ୍ରାହ୍ମଣେ ପୂର୍ବେ ଗଲେ ।
ସେ ଋଷିଶୃଙ୍ଗଙ୍କୁ ଠାବ କରିଣ ଅଇଲେ ॥ ୨୮ ॥
ତୁହି ଯେବେ ଯିବାକୁ ସନମତ କରୁ ।
ସେ ବ୍ରାହ୍ମଣଙ୍କୁ ଅଣାଇବ ଅଯୋଧ୍ୟା ନଗରୁ ॥ ୨୯ ॥
ଜରତା କହଇ ଶୁଣ ନୃପବର ।
ବ୍ରାହ୍ମଣଙ୍କୁ ଅଣାଇ ବ(ଜେ କର) ତୋହର ପୁର ॥ ୩୦ ॥
ସେ ବ୍ରାହ୍ମଣଙ୍କର କଥା ମୁହିଁ ଶୁଣିମି ।
ତାହାଙ୍କ ଶୁଣିଣ ଋଷିର ତହିଁକି ମୁହିଁ ଯିବ ॥ ୩୧ ॥
ଯାଉଇ ତୋହର କରିବଇ କାର୍ଯ୍ୟ ।
ନଉଚେତେ ଋଷିର କୋପେ ହୋଇବ ଦହ୍ୟଯ୍ୟ ॥ ୩୨ ॥
ଶୁଣି ଲୋମପାଦ ହରଷ ହୋଇଲା ।
ଦଶରଥଙ୍କୁ ଲେଖ ଲିହି ଦୂତ ପଠିଆଇଲା ॥ ୩୩ ॥
ଯେବଣ ବ୍ରାହ୍ମଣେ ଋଷିଶୃଙ୍ଗ ଠାବ କରିଥିଲେ ଯାଇ ।
ଶୀଘ୍ର ମଇସ ତାହାଙ୍କୁ ବେଗେ ଦେସି ପଠାଇ ॥ ୩୪ ॥
ମୋହର ରାଜ୍ୟ ବେଶ୍ୟା ଜରଦ୍ଗାକୋଷା ନାମ୍ନୀ ।
ସେ ବେଶ୍ୟାଙ୍କ ଘେନି ଯିବ ଯହିଁ ଅଛଇ ତପସ୍ୱୀ ॥ ୩୫
ଏସନେକ ଲେଖଇ ଘେନି ଦୂତ ବେଗେ ଗଲା ।
ଦଶରଥ ରାଜାଙ୍କୁ ଲେଖ ନେଇ ଦେଲା ॥ ୩୬ ॥
ଶୁଣି ଦଶରଥ ମନେ ହରଷ ହୋଇ ।
ସେ ବ୍ରାହ୍ମଣ ଗୃରିକି ଦେଲା ପଠିଆଇ ॥ ୩୭ ॥

୨୪. ଖ ପୋଥି ପାଠ— ତୁ ଯେବେ ଋଷିଶୃଙ୍ଗ ଆଣିପାରୁ ରହି । ଏ ମୋହର ରାଇଜକୁ ଅଧିକାଙ୍କ୍ଷୀ ତୁହି ॥ ୨୫. ଦ୍ୱିତୀୟପାଦ ଖ ପୋଥିରେ—ତୁହି ସେ କାମେନୀ ଗୋ ଅଟୁ ଜଗଜ୍ଜତା ॥ ୨୯. ପଦଟି ଖ ପୋଥିରେ ନାହିଁ । ୩୨. ପଦଟି ଖ ପୋଥିରେ ନାହିଁ । ୩୪-୩୮. ଏ ପାଞ୍ଚ ପଦ ଖ ପୋଥିରେ ନାହିଁ ।

ଲୋମପାଦ ରାଜ୍ୟେ ବ୍ରାହ୍ମଣେ ପ୍ରବେଶ ହୋଇଲେ ।
ରାଜାର ସମ୍ମୁରେ ହୋଇ କଲ୍ୟାଣ କଲେ ॥ ୩୮ ॥
ସେ ବ୍ରାହ୍ମଣଙ୍କୁ ଲୋମପାଦ ଗଉରବ କଲା ।
ଅନେକ ଧନ ବସନ କର୍ପୂର ତାମ୍ବୋଳ ଦେଲା ॥ ୩୯ ॥
ଅମୃତ ଆଦି କରି ସେ ବିପ୍ର ଗୃହ ।
ସନ୍ନିଧେ ହଜାରଇ ଜରତାକୋଷା ନାରୀ ॥ ୪୦ ॥
ସେ ବିପ୍ର ବେଶ୍ୟାଏ ହୋଇଲେ ଏକ ଗୋଷ୍ଠୀ ।
ବ୍ରାହ୍ମଣେ କହନ୍ତି ପଥ ଦୁସହ ଅରଷ୍ଟି ॥ ୪୧ ॥
ତୁ ଯେବେ ଦଶ ଯୋଜନ ଖୋଲାଇ ।
ତେବେ ସେ କୃଷ୍ଣବେଣୀଙ୍କ ନାବବାଟ ହୋଇ ॥ ୪୨ ॥
ନାବେଣ ବସିଣ ସେ ସୁପନ୍ଥେଣ ଯିବା ।
ବିପୁଳ ପର୍ବତେ ପ୍ରବେଶ ହୋଇବା ॥ ୪୩ ॥
ବନସ୍ତର ବାଟେ ଗଲେ ଦୁସହ ଦୁଗତ ।
ଚଳି ନ ପାରିବୁ ଭୁଞ୍ଜି ସୁକୁମାର ଯୁବତ ॥ ୪୪ ॥
ବ୍ରାହ୍ମଣେ ଏସନେକ କହିଲେକ ଯହୁଁ ।
ରାଜାକୁ ଜରତାକୋଷା ଜଣାଇଲା ତହୁଁ ॥ ୪୫ ॥
ମୋ ଦେବ ବନସ୍ତର ବାଟ ଯାଇବ ଭୟେ କରି ।
ସେ ଅବା ମାଇ ବନସ୍ତର ଜାବେ ଖାନ୍ତି ଧରି ॥ ୪୬ ॥
ଖୋଲାଇ କୃଷ୍ଣବେଣୀଙ୍କି ନାବ ବାଟ କରାଇବୁ ।
ନାବରେ ବସି ମୁନିର ତହିଁକ ଆଗ୍ରେ ଯିବୁ ॥ ୪୭ ॥
ଶୁଣି ଲୋମପାଦ ହରଷ ହୋଇଲା ।
ପରଜାକୁ ଅଣାଇ ନଦୀକି ବାଟ ଦେଖାଇଲା ॥ ୪୮ ॥
ତିନ ବରଷେ ନଦୀଙ୍କ ବାଟ କଲେ ଖୋଲା ।
ଦେଖିଣ ରାଜନ ହରଷ ହୋଇଲା ॥ ୪୯ ॥
ଶତେକ ନାବ ସଜ କରଇ ଜରତାକୋଷା ନାରୀ ।
ସମସ୍ତ ଦ୍ରବ୍ୟନ୍ତ ନର୍ଭା ସେହୁ କରି ॥ ୫୦ ॥
ସୁରଭି ଆଦି କରି ଇକ୍ଷୁ ସର୍ବସାର ।
କଦଳୀ ନଟିକାଳ ଅନେକ ଉପହାର ॥ ୫୧ ॥

---

୪୪. ପଦଟି ଖ ପୋଥିରେ ନାହିଁ । ୪୬. ପଦଟି ଖ ପୋଥିରେ ନାହିଁ ।
୪୭. ତହିଁକ—ତହୁଁକ । ୫୦. ଶତେକ—ସହସ୍ରେକ (ଖ) । ୫୧–୫୨. ଏ ଦୁଇ ପଦ ଖ ପୋଥିରେ ନାହିଁ ।

ସହସ୍ରେ ଯୁବତୀ ଅନେକ କାମେମୀ ।
ନାବେ ବସଇ କରତାକୋଷା ବ୍ରାହ୍ମଣ ଘେନ ।। ୫୨ ।।
କଇବର୍ତ୍ତ ନାବ ଘେନଣ ତହୁଂ ଗଲା ।
ଉତ୍ତରିଅଙ୍କର ତଟେ ନାବକୁ ଛଟାଇଲା ।। ୫୩ ।।
ବହୂଳ ବନସ୍ତ ତହିଁକ ଦଶିଲେକ ସହୁଁ ।
କନ୍ୟାନ୍ତ ଘେନ ବ୍ରାହ୍ମଣେ ପର୍ବତକୁ ଗଲେ ତହୁଂ ।। ୫୪ ।।
ସୁସର ସ୍ୱରେଣ ଗାବଇ ଦିବ୍ୟଗୀତ ।
ଶୁଣିଣ ଶ୍ରୀରାମ ଆନନ୍ଦ ହୋଏ ମତ୍ତ ।। ୫୫ ।।

## ଋଷ୍ୟଶୃଙ୍ଗ ବେଶ୍ୟାବଶ ହେଲେ

କୁମର ମୁଖ ଚାହିଁ ରାମଚନ୍ଦ୍ର ପଚାରିଲେ ।
କେସନେକେ ଋଷିଶୃଙ୍ଗଙ୍କୁ ବେଶ୍ୟାଏ ବଶ କଲେ ।। ୧ ।।
ଜନମନୁଷ୍ୟ ନାହିଁ ଯାହାର ପୀରତ ।
ତାହାଙ୍କୁ କେମନ୍ତେ ଆଣିଲେ ଯୁବତୀ ।। ୨ ।।
କହସି ବାଳପୋଇ ବିଚିତ୍ର ଦିବ୍ୟବାଣୀ ।
ଦ୍ୱିରତ ବନାଟଇ ଋଷିଶୃଙ୍ଗର ଗବନ ଶୁଣି ।। ୩ ।।
ଶ୍ରୀରାମର ବଖାଣ ଶୁଣି ଲବ କୁମରଇ ।
ବସନ୍ତ ବରାଡ଼ି ରାଗ ହୁଂକାର କରଇ ।। ୪ ।।
ବସନ୍ତ ପିକନାଦ ଯେସନ ଶୁଭଇ ସୁସ୍ୱର ।
ଶୁଣିଣ ସଭା ଲୋକେ ଚଉ କଲେ ସ୍ଥି ର ।। ୫ ।।
ଏକୁ ଆରକେ ସମାଦନ୍ତ ନାହିଁ ।
ଏକ ତନ୍ମୟେ କରି ଲବକୁମର ମୁଖ ଚାହିଁ ।। ୬ ।।
ସଭାର ତଳେ ଅନେକ ଜନ ଗହନ ।
ଗୀତ ଚାହୁଁଅନ୍ତି ସୀତାୟା ନନ୍ଦନ ।। ୭ ।।
ବିପୁଳ ପର୍ବତେ ମିଳିଲେ ଦାଳୀ ଯାଇ ।
ଯହିଁ ବିଭାଣ୍ଡେକ ମୁନି ଆଶ୍ରମେ ଛନ୍ତି ରହି ।। ୮ ।।
ତହିଁର ଥୋକାଏ ଦୂର ଦକ୍ଷିଣ ଭାଗ କତ ।
ବିଚିତ୍ର ଶାଢ଼ୀପରେକ ଟେଚଲେ ଯୁବତୀ ।। ୯ ।।

---

୫୫. ସ୍ୱରେଣ—ସ୍ୱରେଲ । ୫. କ ପୋଥିରେ ଲେଖନକାର ୫ମ ପଦ ଓ ୬ ପଦ ମଧ୍ୟରେ ପରବର୍ତ୍ତୀ ୧୪ରୁ ୨୨ ଯାଏଁ ନଅଟି ପଦକୁ ଉଠାଇଛି । ୬-୭. ଏ ଦୁଇ ପଦ ଖ ପୋଥିରେ ନାହିଁ ।

ତହିଁର ଭିତରେ ବାଲୁକା ଲିଙ୍ଗ ସ୍ଥାପି ।
ସେବା କରନ୍ତି ତହିଁ ଚିତ୍ତ ନିରୋପି ॥ ୧୦ ॥
ବିଭାଣ୍ଡେକ ଋଷି ତପ କରି ଯାନ୍ତି ବେଗେ ।
ତାଳ ବେଣୀ ଧରି ଗୀତ ଗାଆନ୍ତି ସୁସଙ୍ଗେ ॥ ୧୧ ॥
ଶୁଣି ଋଷିଶୃଙ୍ଗ ମନ ଅସ୍ଥିର ହୋଇଲା ।
ଆଶ୍ରମ ଉପେଖି କନ୍ୟାଙ୍କର ସନ୍ନିଧିକି ଗଲା ॥ ୧୨ ॥
ଚେଷ୍ଟା ନିରୋପି ବୁଲଇ ଚଉପାଶ ।
ଗନ୍ଧ ଆମୋ(ଦ ପୁଷ୍ପ ଚନ୍ଦନର ବାସ) ॥ ୧୩ ॥
ଗନ୍ଧ ପୁଷ୍ପମାନ ଯେ ବେଢ଼ିଣି ଅଛନ୍ତି ।
ଶରଧାରେ ତୋଳି ତାହା ଯେନଇ ମହାଯତି ॥ ୧୪ ॥
ସେହୁ କାମେନୀ ଅପାଙ୍ଗେ ଗୃହାନ୍ତି ଯହୁଂ ।
ତରେ ଋଷିକୁମର ପଳାବନ୍ତି ତହୁଂ ॥ ୧୫ ॥
ଶଙ୍କା କରି ବାହୁଡ଼ି ମୁନି ଗଲା ।
ନିଜ ଆଶ୍ରମେ ବିମନେ ପ୍ରବେଶ ହୋଇଲା ॥ ୧୬ ।
ଅନଙ୍ଗବାଣେ ଋଷିଶୃଙ୍ଗ ଅସ୍ଥିର ଶରୀର ।
ଯହେ ଅଙ୍ଗ ମୁନିର ନ ପଡ଼ଇ ଭୂମିର ॥ ୧୭ ॥
ଅନାହୋଆ ସପନେ ମୁନି ଶାଢ଼ୀପରେ ଦେଖଇ ।
ଉଠଇ ବସଇ ପୁଣ ପୁଣ ନିରେଖଇ ॥ ୧୮ ॥
ସୁଗନ୍ଧ ପୁଷ୍ପକୁ ଭଜିଲା ଚିତ୍ତ ।
ମଦନ ବିରଙ୍ଗେ ଅସ୍ଥିର ପଞ୍ଚଭୂତ ॥ ୧୯ ॥
ଏସନେ ରଜନୀ ବିସରିଲା ଯେବେ ।
ପ୍ରାତ ସ୍ନାନ ନିମନ୍ତେ ବିଭାଣ୍ଡେକ ଗଲେ ତେବେ ॥ ୨୦ ॥
ଜରତକୋଷା କହଇ ଗଣିକାର ଆଗ ।
ଋଷିର ତହିଁକି ଗୃଲ ଯିବା ଆମ୍ଭେ ବେଗ ॥ ୨୧ ॥
ତାହାକୁ ଆମ୍ଭେ ଯେ ଭଣ୍ଡେ କରିଣ ଥିଲୁ ।
କାର୍ଯ୍ୟ ସୁଫଳ ହେବ ବୋଲି ମନେ ବିଗୃରିଲୁ ॥ ୨୨ ॥
ଆଶ୍ରମ ଉପେଖି ଯେବେ ହୋଇଲା ଆମ୍ଭ କଥ ।
ଆବର ଋଷିଶୃଙ୍ଗକୁ କେନ କରଇ ଘାତ ॥ ୨୩ ॥

---

୧୧. ତପ—ସ୍ନାହାନ କ) । ୧୪-୧୫. ଏ ଦୁଇ ପଦ ଖ ପୋଥିରେ ନାହିଁ । ୧୭. ଅଙ୍ଗ—ଅନଙ୍ଗ (କ) । ବାଣେ—ଦାରୁଣେ । ୧୮. ଏ ପଦଟି ଖ ପୋଥିରେ ନାହିଁ । ୨୦. ବିସରିଲା—ବିସର୍ଜନ (ଖ) ।

ଏସନେକ ବଚନ କାହେମା ସୁକେଶ ହୋଇଲେ ।
ସଖି ଅଛନ୍ତି ବାଳଯତି ତହିଂ ସମତ୍ରେ ମିଳିଲେ ॥ ୨୪ ॥
ନାଦ ହୁଂକାର ଗାଇଲେ ସୁସ୍ୱରେ ଗୀତ ।
ସନଧେ ମିଳି ବଚ୍ଚରଇ ବିଭାଣ୍ଡେକର ସୁତ ॥ ୨୫ ॥
କେବଣ ଦେଶୀ ତୁମ୍ଭେ କେବଣ ଦେଶେ ଥିଲ ।
ଆମ୍ଭର ଆଶ୍ରମକୁ କିପାଇଁ ଅଇଲ ॥ ୨୬ ॥
କନ୍ୟାଏ କହନ୍ତି ଶୁଣିମା ମହାଯତି ।
ଅନେକ ଘୋର (ବନ) କ୍ଷଣି ଅଇଲୁ ତୋର କତି ॥ ୨୭
ମହତ ମରହିତା ତୋହର ଶୁଣିଲୁ ।
ନାବେଣ ବସିଣ ନୀସ୍ତେଣ ଅଇଲୁ ॥ ୨୮ ॥
ତୁହ ତପୀକୁମାର ତୋହର ତୁଲେ ଥିବୁ ।
ତୋହର ମନ୍ତ୍ର ସୂତ୍ର ଶିଖିବୁ ତୋତେ ବୁଦ୍ଧି କହିବୁ ॥ ୨୯
ତେବେ ସେ ଅଇଲୁ ତୋହର ସନଧାନ ।
ଶୁଣି ହରଷେ କହନ୍ତି ବିଭାଣ୍ଡେକର ସୂନ ॥ ୩୦ ॥
ତୁମ୍ଭେ ଯତହେ ମୋହର ଅଶ୍ରମକୁ ଅଇଲ ଯେବେ ।
[ମୋହ ଘରେ ଯିସ ମିଳାଇ ଆହାର କର ତେବେ]
କନ୍ଦମୂଳ ଦେବଇ ଶରୀର ତୋଷ କର ଏବେ ॥ ୩୧ ॥
ମୃଗ ଚର୍ମ ଆଣି ଆସନ ଦେଲେ ।
ପୁଣି ବାଳ ଯତି ପର୍ଣ୍ଣ କୋଠୀରେ ପଶିଲେ ॥ ୩୨ ॥
ଛଡ଼ାମୁଗ ଗୁଣ୍ଡି ବାଳ ହରଡ଼ା ଫଳ ।
କମଣ୍ଡଳେ ଭରି ଦେଲ ଗିରିବର ଝର ଜଳ ॥ ୩୩ ॥
ଏହୁ ପଦାର୍ଥ ଭୋଜନ କରସି ।
ଦେଖି ଦ୍ରହାସ୍ୟ କରନ୍ତି ଶୁଭ୍ରକେଶୀ ॥ ୩୪ ॥
ପବତକୁ ଯେ ସବଦା ଆମ୍ଭର ଆଶ ।
ପୁଣି ସୁଦ୍ରବ୍ୟ ପଦାର୍ଥକୁ ଯେ କରଉ ଅମ୍ଭେ ଗ୍ରାସ ॥ ୩୫
ତୁମ୍ଭେ ଯେ ଋଷି କୁମାର ବିଚକ୍ଷଣ ତପୋଧନ ।
ଏସନେକ ଫଳସେ କରକ ଭୋଜନ ॥ ୩୬ ॥
ଆବର ବିଶେଷେ ତୁହ ତପୀ ଏକେଶ୍ୱର ।
ଆମ୍ଭେ ଆଗ କମା ତୋହର ଫଳ କରିବୁ ଆହାର ॥ ୩୭

---

୨୯. ଏ ପଦଟି ଖ ପୋଥିରେ ନାହିଁ । ୩୨. ଏ ପଦଟି ଖ ପୋଥିରେ ନାହିଁ ।
୩୩. ଛଡ଼ାମୁଗ—ହୁଡ଼ମ୍ଭେକ (କ) । ୩୫. ପବତକୁ—ପରଦ୍ରବ୍ୟକଇ (ଖ) ।

ଯାହା ପାଇ ତାହା ପାଲଟାଇ ଯେବେ ଦେଇ ।
ନଉଚେତ ପରସ୍ତକୁ ମାଥେ ବନ୍ଧିଥାଇ ॥ ୩୮ ॥
ତୋହର ଆମ୍ଭର ଏବେ ହୋଇବା ବିଶ୍ୱାସ ।
ଆମ୍ଭେ ଯାହା ଆଣିଲୁ ତୁ ଯେବେ କରିବୁ ଗ୍ରାସ ॥ ୩୯ ॥
ଋଷିଶୃଙ୍ଗ କହଇ ତୁମ୍ଭର ତୁଲେ ପ୍ରୀତ ହୋଇବ ।
ଯାହା ତୁମ୍ଭେ ଦେବ ତାହା ମୁଁ ଭକ୍ଷିବ ॥ ୪୦ ॥
ତୁମ୍ଭେ ଯତହେ ଅନେକ ତୀର୍ଥେ ଥିଲ ।
କର୍ମର ସୁଫଳେ ଆମ୍ଭର ଆଶ୍ରମକୁ ଅଇଲ ॥ ୪୧ ॥
ଶୁଣିଣ କାମେନୀ ହରଷ ହୋଇଲେ ।
ନାନା ପଦାର୍ଥ ନେଇ ମୁନିବର କଡରେ ଥୋଇଲେ ॥ ୪୨
ସୁରଭି ସର ଇକ୍ଷୁ ସର୍କ ଦ୍ରବ୍ୟଘୃତ ।
ନଡିକାଲ କଦଳୀ ନେଇ ମୁନିବର ସନ୍ନିଧେଣ ଦେନ୍ତି ॥
ସୁବାସ କସ୍ତୁରୀ କର୍ପୂରବାସ ପାଣି ।
ମୁକୁତାହାର ଗଳାରେ ଭରିଲେ କେବଣ ତରୁଣୀ ॥ ୪୪ ॥
କେ ହଳଦ ଲେପଇ କେ ପିନ୍ଧାନ୍ତି ଝୀନବାସ ।
ନାନା କୁସୁମ ଖୋସନ୍ତି ନେଇ କେଶ ॥ ୪୫ ॥
ଲଲାଟେ କେ କସ୍ତୁରୀ ଟିକା ନେଇ ଦେଲା ।
କେବଣ କାମେନୀ ମୁଖେ ଦ୍ରପଣ ଦେଖାଇଲା ॥ ୪୬ ॥
ଦେଖି ବାଳଯତି ହୋଇଲାକ ବଶ ।
ଆପଣାର ମୁଖ ଚାହିଁ ମନେମନେ ହରଷ ॥ ୪୭ ॥
ନିଜ ରୂପ ଯହିଁ ଋଷିଶୃଙ୍ଗ ଦେଖିଲ ।
ଜରତକୋଥାର ମୁଖ ଚାହିଁ ପଚାରିଲା ॥ ୦୮ ॥
କି ମନ୍ତ୍ର ତୁମ୍ଭେ ଜାଣ କେମନ୍ତେ ତପ କଲ ।
ଅପୂର୍ବ ପଦାର୍ଥ ତୁମ୍ଭେ କାହିଁ ପାଇଲ ॥ ୪୯ ॥
ଆପଣାର ରୂପ ତ ଏ ତୀର୍ଥର ଭିତରେ ଦିଶଇ ।
ଏଥିର କଥା କହ ଉପନେସଇ ॥ ୫୦ ॥
କନ୍ୟାଏ କହନ୍ତି ଆମ୍ଭର ନିଜ ସ୍ଥାନ ।
ଯହିଁ ଏ ପଦାର୍ଥ ହୋଇଛୁ ଉତପନ ॥ ୫୧ ॥
ଏବେ ଆମ୍ଭର ପଦାର୍ଥକୁ ଆଧାର କରସି ।
ଏହୁ ଭଲ ପଦାର୍ଥ ତୋତେ ଦିଆଇସି ॥ ୫୨ ॥

---

୪୦. ପ୍ରୀତ—ଶ୍ରୀପତ (କ) । ୪୬. ପଦଟି ଖ ପୋଥିରେ ନାହିଁ । ୪୮–୫୩. ଏ ଛଅପଦ ଖ ପୋଥିରେ ନାହିଁ ।

ଶୁଣି ଋଷିଶୃଙ୍ଗ ହୋଇଲା ହରଷ ।
ସେ ସୁରଭି କ୍ଷୀର କିଛୁ କରଇ ଗ୍ରାସ ॥ ୫୩ ॥
ଯାହା ସେ ବିଧାତା ଅଛି ନିର୍ମାଣ କରି ।
କାହାର ବୋଲେ ତାହା ହୁଅଇ ଆନ କରି ॥ ୫୪ ॥
ଋଷିକୁମର ମନ ହରି ସନ୍ନିଧେଣ ଧାଇଲେ ।
ବେଲ ଅସ୍ତ ନିକଟେ ଋଷିଶୃଙ୍ଗଙ୍କୁ କହିଲେ ॥ ୫୫ ॥
ପିତା ତୋହର ପ୍ରତାପୀ ତପୋଧନ ।
ପରଶିଷ୍ୟ କାତର ହିଂସାଧର ମନ ॥ ୫୬ ॥
ଆମ୍ଭମାନ୍ତ ଦେଖିଲେ ସେ କହିବେ ମନ୍ଦଛନ୍ଦ ।
ଆମ୍ଭେ ଏଥେ ପୁଣ କରିବୁ ଦ୍ୱନ୍ଦ ॥ ୫୭ ॥
ଏବେ ଆମ୍ଭେ ନିଜ ଆଶ୍ରମକୁ ଯିବୁ ।
ରଜନୀ ପ୍ରଭାତେ ତୋହର ଠାବଂକ ଆସିବୁ ॥ ୫୮ ॥
ଋଷିଶୃଙ୍ଗ କହଇ ଆସିବ କି ପ୍ରଭାତ କାଳେ ।
ମୋହର ପିତା ତପ କରିତ ଗଲେ ॥ ୫୯ ॥
ଆମ୍ଭେ ସମସ୍ତେ ଏକ ସଙ୍ଗତେ ଥିବା ।
ଜପ ମନ୍ତ୍ର ବିଦ୍ୟା ଜାଣି ମୋତେ କହିବା ॥ ୬୦ ॥
ଏସନେକ ଶୁଣି କନ୍ୟାଏ ବାହୁଡ଼ି ଗଇଲେ ।
ବେଳ ଶେଷେ ବିଭାଣ୍ଡେକ ଆଶ୍ରମେ ହୋଇଲେ ॥ ୬୧ ॥
ମୁନିର ନାସାରେଣ ଗନ୍ଧବାସ ପଶିଲା ।
ଗନ୍ଧାଘ୍ରାଣ କରି ବିଭାଣ୍ଡେକ ବଇରାଗ ହୋଇଲା ॥ ୬୨ ॥
ପୁତ୍ରକୁ ପଚାରଇ ସନ୍ନିଧେଣ ଯାଇ ।
ମଦନମାତୃ ଗନ୍ଧ ଆମୋଦଇ କାହିଁ ॥ ୬୩ ॥
କୁମାର କହଇ ଶୁଣସି ହେ ତାତ ।
ଭଲ ଭଲ ପୁରାତନ ଯତି ଆସିଥିଲେ ଏଥ ॥ ୬୪ ॥
ସୁବାସ ବିଭୂତି ସେ ହୋଇଥିଲେ ଲେପନ ।
ସେ ବିଭୂତିର ଲେପ କରଇ ଆମୋଦନ ॥ ୬୫ ॥
ଯୁଗ ଯୁଗାନ୍ତରେ ତୁମ୍ଭ ରହିଅଛୁ ଏଥି ।
ଧନ୍ୟ ସେ ତପଧାର୍ମିକ ମହାଯତି ॥ ୬୬ ॥
ଚନ୍ଦ୍ରେ ଜଟା ତାହାଙ୍କର ଲଲାଟପାଟୀ ।
ଶୋଭି ସୁଗନ୍ଧ ଦିଶଇ ଚନ୍ଦନ ଗୋଟି ॥ ୬୭ ॥

---

୫୩. ସୁରଭି—ସୁରଭିର । ୫୬. ପ୍ରତାପୀ—ପ୍ରଖର (ଖ) । ୫୭. ପଦଟି ଖ ପୋଥିରେ ନାହିଁ । ୫୯. ପ୍ରଭାତକାଳେ—ପାଇଟିରେ (କ) । ୬୦. ପଦଟି ଖ ପୋଥିରେ ନାହିଁ । ୬୭-୬୮. ଏ ଦୁଇପଦ ଖ ପୋଥିରେ ନାହିଁ ।

ତାହା ଦେଖି ମୁହିଂ ସ୍ଥିର ହୋଇଲ୍ ।
କନ୍ଦମୂଳ ଦେଲେ ଅମୃତ ପରାଏ ବୁଝିଲି ॥ ୬୮ ॥
ବିଭାଣ୍ଡକ କହଇ ଶୁଣସିରେ ନନ୍ଦନ ।
କାମରୂପୀ ଅସୁରେ ଥାନ୍ତି ଘୋରବନ ॥ ୬୯ ॥
ତପୀଙ୍କର ବଇରିଟି ସୁରରାଜ ପୁରନ୍ଦ(ର)ଇ ।
ଯୁବତୀ ପେଷି କେଶେ ତପ ନାଶ କରଇ ॥ ୭୦ ॥
ଶୁଣିଣ କୁମରେ କୋପେ ପ୍ରଜ୍ଜ୍ୱଳି ॥
ତୋହର ଦୃଷ୍ଟିପଣ ସେ କହିଲେ ତପସ୍ୟାଳୀ ॥ ୭୧ ॥
କିମ୍ପା ବନେ ଏକସ୍ୟରେ ଏକା ଥାଉ ।
ପରସ୍ତିରୀ ଦେଖିଲେ ଶରୀରେ ରାଗ ବହୁ ॥ ୭୨ ॥
ଶୁଣିଣ ବିଭାଣ୍ଡକ ତବଦ ହୋଇଲେ ।
ସଉନେ ପିତାପୁତ୍ରେ ରଜନୀ ପୁଆଇଲେ ॥ ୭୩ ॥
ପ୍ରଭାତେ ମହାଋଷି ତପେଣ ଗଲେ ଯହୁଁ ।
ଋଷିଶୃଙ୍ଗ ଆଶ୍ରମେ କନ୍ୟାଏ ମିଳିଲେକ ତହୁଁ ॥ ୭୪ ॥
ସେ କାମେନୀ ଦେଖି କହଇ ତପୋଧନ ।
ଶୁଣସି ଯତିଏ ହୋ ମୋହର ବଚନ ॥ ୭୫ ॥
ଯହୁଁ ଏଥି ଗନ୍ଧବାସ ଆମୋଦିଲା ।
ମୋତେ ଧିଙ୍ଗାସି ତାତ ହକାରଣେ କହିଲା ॥ ୭୬ ॥
ମୁହିଂ ତାହାକୁହି ସମାସ୍ୟା ନ ଦେଲ୍ ।
ଆନ ବେଳେ ପସୁର ମଞ୍ଚାଲଇ କାଲି କଡକ ନ ଗଲ୍ ॥୭୭
ଶୁଣିଣ କନ୍ୟାଏ ଶ୍ରବଣ ଛୁଅନ୍ତି ।
ଆମ୍ଭେ ଏଥେ ରହି ନ ପାରୁ ଭୋ ଯତି ॥ ୭୮ ॥
ମହା ବଇରାଗୀ ତୋହର ତାତ ।
ଆମ୍ଭଙ୍କୁ ଦେଖିଲେ ସେ ବୋଲିବେ ଦଇତ୍ୟ ॥ ୭୯ ॥
ତୋହର ଆଶ୍ରମେ ନ ପାରୁ ଆମ୍ଭେ ରହି ।
ଏସନେକ ବୋଲି ତହୁଁ ଆସନ୍ତି ସର୍ବ ସହି ॥ ୮୦ ॥
ସେ କାମେନୀଙ୍କର ଯିବାର ଯହୁଁ ଋଷିଶୃଙ୍ଗ ଦେଖିଲା ।
ଆଶ୍ରମ ଉପେଖି ତାହାଙ୍କ ପଛେ ଗୋଡ଼ାଇଲ୍ ॥ ୮୧ ॥
ଭୋ ଯତି ହେ ମୋତେ କ୍ଷମା କୋପକର ।
ପିତାର ବଚନ ଦୋଷ ମୋହରେ କ୍ଷମା ଧର ॥ ୮୨ ॥

---

୭୧. ଦୃଷ୍ଟିପଣ—ଦୃଷ୍ଟି ପଣ । ୭୨. ବନେ—ଆନେ (କ) । ୭୩. ରଜନୀ—ରଯ୍ୟଣୀ (ଖ) ; ପୁଆଇଲେ—ପୁରୋଇଲେ (କ) । ୭୭. ପଦଟି ଖ ପୋଥିରେ ନାହିଁ । କାଲି—ଆନ । ୮୨. ଦୋଷ—ବାକ୍ୟ (କ) ।

ତୁମ୍ଭର ତହୁଂ ମୁହୁଂ ଯେ ଶାସ୍ତ୍ର ଶିଖିବ ।
ତୁମ୍ଭେ ଯହୁଂକି ଯିବ ତୁମ୍ଭର ସଙ୍ଗତେ ଆସିବ ॥ ୮୩ ॥
ଶୁଣି ସୁନ୍ଦରୀ ବେଗେ ବାହୁଡ଼ିଲେ ।
ଋଷିଶୃଙ୍ଗଙ୍କୁ ମଧ୍ୟକରି ଶାଡ଼ୀଘରକୁ ନେଲେ ॥ ୮୪ ॥
ରତ୍ନଖଟ ଉପରେ ନେଇଣ ବସାବନ୍ତି ।
ପଦ୍ମର ପଖାଳି ଅଞ୍ଚଳେ ପୋଛନ୍ତି ॥ ୮୫ ॥
ଜରତକୋଷା କାମେମି ସନ୍ନିଧେଣ ବସି ।
ମୁନିବର ଶରୀର ଆଶ୍ୱାସଇ ଶୁଭ୍ରକେଶୀ ॥ ୮୬ ॥
ସେ ଯୁବତୀର ଲଗନ୍ତେଣ ଅଙ୍ଗ ।
ରସଗଳିତ ହୋଇଲା ମଦଭଙ୍ଗ ॥ ୮୭ ॥
କାମବାଣେ ବାଳ ଯତି ଲଜ୍ଜା ଛାଡ଼ିଲା ।
ଜରତକୋଷାକୁ ଗାଢ଼େ ଆଲିଙ୍ଗନ କଲା ॥ ୮୮ ॥
ବିବିଧ କୁତୁହଳେ ନାନା ପ୍ରେମରସ ।
କ୍ରୀଡ଼ା କୁତୂହଳ ହାସ୍ୟ ପରିହାସ୍ୟ ॥ ୮୯ ॥
ମଦନ ଝଳିତ ମୁନିର ଶ୍ରମଝାଳ ଗଳଇ ।
ସୁବାସ ଜଳ(ରେ) ମୁନିର ଅଙ୍ଗ ସେ ପଖାଳଇ ॥ ୯୦ ॥
ଆଲଟ ଯେବେ ଅନେକ କାମେମି ବାଞ୍ଛିଲେ ।
ପଇଡ଼ ପାଣି ଯେବେ ତାମ୍ବୋଳ ଭୁଞ୍ଜାଇଲେ ॥ ୯୧ ॥
ନାନା ଅଲଂକାର ଶରୀରେ ଭରନ୍ତି ।
ଋଷିର ଛାମୁରେ ଆଣି ଦର୍ପଣ ଦେଖାବନ୍ତି ॥ ୯୨ ॥
ଆପଣାର ରୂପ ଦେଖି ଖଳିଲା ମହାମୁନି ।
ମୋହେ ବଶକୃତ ହୋଇଲା ତପୋଧନ ॥ ୯୩ ॥
ଜରତକୋଷାକଇ ପଚାରଇ ମୁନିବର ।
ହେ ଯତି ହେ କାହୁଂ ତୁମ୍ଭର ଘର ॥ ୯୪ ॥
ସେ ଆଶ୍ରମକଇ ମୋତେ ତୁମ୍ଭେ ନିଅ ।
ଏ ରତିଶାସ୍ତ୍ର ବିଦ୍ୟା ମୋତେ ତୁମ୍ଭେ କହ ॥ ୯୫ ॥
ଜରତା କହଇ ଶୁଣ ମୁନିବର ।
ଏ ପର୍ବତ ଉପରେ ଉତ୍ତରାଙ୍କର ତୀର ॥ ୯୬ ॥
ସେ ପବନ୍ତ ସ୍ଥାନ ଆମ୍ଭର ନିଜ ବାସ ।
ଶୁଣି ଋଷିଶୃଙ୍ଗ ହୋଇଲା ହରଷ ॥ ୯୭ ॥

---

୮୩. ପଦଟି ଖ ପୋଥିରେ ନାହିଁ । ୯୩. ବଶକୃତ—ବେଶ୍ୟାବୃତ । ୯୫. ପଦଟି ଖ ପୋଥିରେ ନାହିଁ । ନିଅ—ନିୟ । ୯୭. ପବନ୍ତ—ପର୍ବତ (କ) ।

ବୋଲଇ ଭୃତ୍ୟର ନିଜ ଆଶ୍ରମକଇ ଯିବା ।
କେସନେକ ସ୍ଥାନ ଫଳ ପୁଷ୍ପ ଦେଖିବା ॥ ୯୮ ॥
ନରତା କହଇ ଶୁଣହେ ତପୋଧନ ।
ତୋହର ପିତାର ତେଜ ଯେସନେକ ହୁତାଶନ ॥ ୯୯ ॥
ତୋତେ ନ ଦେଖି କୋପ କରିବେ ଯେବେ ।
ସମସ୍ତେ ହେ ବିନାଶ ହୋଇବୁ ନା ଆମ୍ଭେ ଏବେ ॥ ୧୦୦ ॥
ମର ବୋଇଲେ ମରି ତର ବୋଇଲେ ତରି ।
ମହାତପୀ ବିଭାଣ୍ଡକ ସମସ୍ତେହେ ଡ଼ରି ॥ ୧୦୧ ॥
ତୁହି ଯେବେ ପିତାକୁ କହି କରାଇବୁ ସନମତ ।
ତେବେ ସେ ଆମ୍ଭର ଦେଶକୁ ନେଇ ପାରୁ ନା ଭ୍ରାନ୍ତ ॥ ୧୦୨ ॥
ଏବେ ତୋହର ପିତାଙ୍କର ଆଶ୍ରମକଇ ଯାସି ।
ପାରୁ ଯେବେ ପିତାକୁ କହି ସଜ ହୋଇଣ ଆସି ॥ ୧୦୩ ॥
ଆମ୍ଭେ ହେ ପ୍ରଭାତେ କାଲି ଯିବୁ ନିଜ ସ୍ଥାନ ।
ମାହାଗ ମାସକ ବୁଲିଲୁ ଏ ବିପୁଳ ବନସ୍ଥାନ ॥ ୧୦୪ ॥
ବରଷକେ ମାସେ ପୁଣ୍ୟ ଯେ ପବନ ।
ମାଘ ସ୍ନାହାନ ବରଷେକ କର ପାତେକ ହୋଇ ହତ ॥ ୧୦୫ ॥
ମାସେକେ ଏକ ଭୁଠେ ସ୍ନାହାନ କରି ।
ଯାବତ ଦ୍ୱାଦ୍ଶ ବରଷକର ହରି ॥ ୧୦୬ ॥
ଏକ ଭୁଠେ ସ୍ନାହାନ କରି ଦେଖଇ ଯେବେ ହରି ।
ଏକ ପରେ ଏକ ବରେ ତାହାର ଧନ ସରି ॥ ୧୦୭ ॥
ତୋହର ତହୁଂକ ଦେଖିତ ଅଇଲୁ ।
ମାଘ ମାସେକ ଏ ପୁଣ୍ୟ ସ୍ଥାନେ ବଢ଼ିଲୁ ॥ ୧୦୮ ॥
ଏବେ କାଲି ଆମ୍ଭେ ଯିବୁ ନିଜ ସ୍ଥାନ ।
ସ୍ୱରୂପ କରି ତୋତେ କହିଲୁ ମହାମୁନ୍ୟ ॥ ୧୦୯ ॥
ଏସନେକ କଥା ଶୁଣି ଋଷିଶୃଙ୍ଗ ସହୁଂ ଆସଇ ।
ବୁକୁ ଦମଦମ ଗୁଡ଼ଇ ନିଶ୍ୱାସଇ ॥ ୧୧୦ ॥
ଆଗ କରି ପସ୍ୟର ବଢ଼ାନ୍ତେ ନୁଆରଇ ମୁନି ।
ଯୋକାଏକ ଧିର ଗଲା ନରତକୋଷା କାମେନୀ ॥ ୧୧୧ ॥
ଶରୀର ଆଶ୍ୱାସଇ ବାହୁଡ଼ଇ ଧାଇ ।
ଲେଉଟି ଗୃହାଇଂ ତାକୁ ଚଣ୍ଡମୁନିର ନାତ ॥ ୧୧୨ ॥

---

୧୦୦-୧୦୧. ଏ ଦୁଇ ପଦ ଖ ପୋଥିରେ ନାହିଁ । ୧୦୩. ପଦଟି ଖ ପୋଥିରେ ନାହିଁ । ୧୦୬. ଏକ—ଏତେକ(କ) । ୧୦୭. ପଦଟି ଖ ପୋଥିରେ ନାହିଁ । ୧୧୧. ନୁଆରଇ—ଆସଇ(କ) । ଧିର—ଦୂରେ ।

ମଦନ ଶରେ ମୋହେ ଢଳି ପଡ଼ିଲି ଶୃଙ୍ଗମୁନ୍ୟ ।
ଶୁଣିଣ ହସିଲେ ଯେ ଶ୍ରୀରାମ ରାଜନ ॥ ୧୧୩ ॥
ବଶିଷ୍ଠ ଆଦି କରି ସଭାର ସର୍ବଜନେ ।
ଲବକୁମର ଗୀତ ଶୁଣି ହରଷ ସବୁ ମନେ ॥ ୧୧୪ ॥

## ଋଷିଶୃଙ୍ଗଙ୍କର ଅଙ୍ଗ ରାଜ୍ୟରେ ପ୍ରବେଶ

ଶ୍ରୀରାମ ପୁଛନ୍ତି ବଶିଷ୍ଠଙ୍କ ମୁଖ ଚାହିଁ ।
ଏସନେକ କଥା ଶୁଣିଲି ମୋର ନାହିଁ ॥ ୧ ॥
ବାଳୁତ ହୋଇ ଯେ କହଇ ଦୃଢ଼ କଥା ।
ଧନ୍ୟ ଏହାର ମାତା ଧନ୍ୟ ଏହାର ପିତା ॥ ୨ ॥
ବଶିଷ୍ଠେ କହନ୍ତି ଏ ବଡ଼ଜଣଙ୍କର ପୁତ୍ର ।
ପଛେ ପଚାରସି ଏହାଙ୍କର ପିଅର ମାତ ॥ ୩ ॥
ବଶିଷ୍ଠକଇ ଶ୍ରୀରାମ ସମାସ୍ୟା ଦିଅନ୍ତେ ।
ତୂନି ହୋଇ ବସିଲି ସୀତାଙ୍କର ସୁତେ ॥ ୪ ॥
ବଶିଷ୍ଠେ ପୁଛନ୍ତି ଶୁଣସି ବାଳପୋଇ ।
ବିଭାଣ୍ଡେ(କ)କଇ ଋଷିଶୃଙ୍ଗ କିସ ବୋଲିଣ କହି ॥ ୫ ॥
ବିସ୍ତାର କରି କହସି ଅମୃତମୟେ ବାଣୀ ।
ଆମ୍ଭେ ସମସ୍ତେ ହେ ମୁକତ ହୋଉ ତୋହର ମୁଖେ ଶୁଣି ॥ ୬ ॥
ବଶିଷ୍ଠଙ୍କର ବଚନ ଶୁଣି ଲବ କୁମାରଇ ।
ଦ୍ୱୋପାଳପ୍ରିୟ ନାଦ ସର୍ଧାରେ ହୁଂକାରଇ ॥ ୭ ॥
ବସନ୍ତ ମାସେ ପିକ ଯେସନେକେ ଭାଷଇ ।
ସୀତାଙ୍କର ତନୟ ବଚନ ତେସନେକ ଶୁଭଇ ॥ ୮ ॥
କନ୍ୟାକଇ ଉପେଖି ଆସନ୍ତେ ଶୃଙ୍ଗଋଷି ।
ମୁଖ ବିରସ ତାହାର ପଉରୋଷ ନ ଦିଶି ॥ ୯ ॥
ବେଳ ଶେଷ ଯହୁଂ ରଜନୀ ହୋଇଲା ।
ତପ ସାରି ବିଭାଣ୍ଡେକ ଆଶ୍ରମକୁ ଅଇଲା ॥ ୧୦ ॥
ଦେଖଇ ତ ଏ ପର୍ଣ୍ଣ କୁଟୀରେ କେହି ନାହିଁ ।
ତବଦ ମହାମୁନି ମନ୍ଦିରକଇ ଚାହିଁ ॥ ୧୧ ॥
ଉଭା ହୋଇ ଋଷି ଚାହାନ୍ତି ଚଉପାଶଇ ।
ଏସନେକ ସମୟେ ଋଷିଶୃଙ୍ଗ ଆଶ୍ରମକୁ ଆସଇ ॥ ୧୨ ॥

---

୧୧୩. ଶରେ—ଶରାରେ(କ) । ୧-୪. ଏ ଚାରି ପଦ ଖ ପୋଥିରେ ନାହିଁ ।
୭. ସର୍ଧାରେ—ସନ୍ଧରେ(କ) । ୮. ପଦଟି ଖ ପୋଥିରେ ନାହିଁ ।

ପୁତ୍ରକଇ ଦେଖି କୋପେ ବୋଲଇ ମହାମୁନ୍ୟ ।
ଏତେବେଳେ କାହିଁ ଥିଲୁରେ ନନ୍ଦନ ॥ ୧୩ ॥
ଜଳପୁଷ୍ପ ନ ଆଣିଲୁ ଅଗ୍ନି ଲବାଇଲୁ ।
ଧେନୁକୁ ବାନ୍ଧି ଅଛୁ ଫେଡ଼ି ନ ଚରାଇଲୁ ॥ ୧୪ ॥
ବସ୍ତୁ ଗୋଟିକଇ ଅଛଇ ଉପବାସ ।
ଚନ୍ଦ୍ରମସି ମୁଖ ତୋହର ନ ଦିଶଇ ପଉରୋଷ ॥ ୧୫ ॥
ପିତାର ବଚନ ଶୁଣି ଋଷିଶୃଙ୍ଗ ହସି ।
ତୁହ୍ମ ତାତ ଅନେକ କାଳ ତପ କରୁ ଏଥରେ ବସି ॥ ୧୬ ॥
ଧନ୍ୟ ସେହ୍ନ ତପୀ ଋଷି(ଗ)ଣ ବୃନ୍ଦ ।
ତାହାଙ୍କର ଆଶ୍ରମ ଦେଖି ମୁଁ ହୋଇଲି ଆନନ୍ଦ ॥ ୧୭ ॥
ପଦ୍ମବନ ଜାଣି ବଂଶ ବିବର୍ଦ୍ଧିତ ।
ପରର ହିତକାରୀ ସେ ସୁଖୀ ଯତ ॥ ୧୮ ॥
ଶୁଣ ତାତ ମୁହିଂ ସେ ଋଷିଙ୍କର ତୁଲେ ଯିବି ।
ବିଦ୍ୟା ଶିଖିବି ନାନା ଦେଶ ବୁଲିବି ॥ ୧୯ ॥
ଏ କଥାକଇ ଅନାସ୍ଥ ନ କର ମୋହର ।
ଏତେ କହି ବାଳ ଯତ ଶିରରେ ଦେଲି କର ॥ ୨୦ ॥
ଶୁଣି କୋପ କରି କହନ୍ତି ତପୋଧନ ।
ତୁହ୍ମ ଯେ ମନ୍ଦବେଳେ ହୋଇଲୁ ଉତପନ ॥ ୨୧ ॥
ମାତାର ସମ୍ଭୋଗେ ଯେବେ ପୁତ୍ର ଉତପତ୍ତି ।
ସେ ତ(ନ)ଯ୍ରେ ପିତାର କଥାରେଣ ଥାନ୍ତି ॥ ୨୨ ॥
ମୁହିଂ ଦୃଷ୍ଟି ଶବରୀ ଦେଖି ଗ୍ରୁଡ଼ିଲି ଯେ ରେତ ।
ମୃଗୁଣୀର ଗର୍ଭେ ହୋଇଲୁ ତୁହ୍ମ ଜାତ ॥ ୨୩ ॥
ମୋହର ଆଶ୍ରମ ଥାନେ କିମ୍ପାଇଂ ଥିବୁ ।
କର୍ମ ଗୁଣ ଯେନ୍ନ ଅନେକ ଦେଶ ବୁଲିବୁ ॥ ୨୪ ॥
ପିଅର ବଚନ ଶୁଣିଣ ଋଷିଶୃଙ୍ଗ ।
ଶରୀର ଦହଇ ତାର କୋଟଅନଳ ଅଙ୍ଗ ॥ ୨୫ ॥
କାନ୍ଦି ଋଷିକୁମର ପଡ଼ିଲିକ ଢଳି ।
ଦେଖିଣ ବିଭାଣ୍ଡେକ ଧଇଲେ କରେ ତୋଳି ॥ ୨୬ ॥

---

୧୪. ଲବାଇଲୁ—ନ ଲବାଇଲୁ(କ) । ୧୫. ପଦଟି ଖ ପୋଥିରେ ନାହିଁ । ଚନ୍ଦ୍ରମସି—ଚନ୍ଦ୍ରଖସି । ୧୮. ବିବର୍ଦ୍ଧିତ—ବିବର୍ଧିତ ; ଯତ—ଜବତ(କ) । ୨୨. ସମ୍ଭୋଗେ—ସମ୍ଭବେ ; ପିତାର—ସୀତାର(କ) । ୨୪. ଆଶ୍ରମ ଥାନେ କିମ୍ପାଇଂ—ଆଶ୍ରମେ କିମ୍ପାଇଂ ଥାନେ(କ) ।

ଖଳଇ ଜମ୍ମୁତକାର ଏ କେବଣ ଯୁଗତ ।
ତଲ୍ଲକ୍ଷ୍ୟେ କରି ବସିଲେ ବିଭାଣ୍ଡେକ ମହାଯତି ॥ ୨୭ ॥
ଧ୍ୟାନେଣ ଜାଣିଲେ ବଣ୍ଡମୁନିର ସୁତ ।
ଲୋମପାଦ ରାଇ ଯେ ଅନାବୃଷ୍ଟିର ଚରିତ ॥ ୨୮ ॥
ଅଙ୍ଗ ଦେଶର ରାଜା ବେଶ୍ୟାନ୍ତ ପେଷିଲା ।
ଜାଣି ବିଭାଣ୍ଡେକ ପୁତ୍ରକୁ କହିଲା ॥ ୨୯ ॥
ଯାହାକଇ ତୁ ଋଷିଗଣଏ ବୁଝିଲୁ ।
ବେଶ୍ୟାଙ୍କର ତୁଲେ ସେ ରେ ପୀରତି ହୋଇଲୁ ॥ ୩୦ ॥
ସେ ଯୁବତୀଙ୍କର ତୁଲେ ଯେ ହୁଅନ୍ତୁ ମେଳାପକ୍ଷ ।
ପୁତ୍ର ଭାରିଯା ବନ୍ଧୁ ଧନ ପ୍ରାଣ ଉପଲକ୍ଷ ॥ ୩୧ ॥
ବେଶ୍ୟାଙ୍କ ସଙ୍ଗରେ ତୁ କେମଣ ରଙ୍ଗ କଲୁ ।
ତାହା ସେ ପଦମଲ୍ଲ ପ୍ରାଣ୍ଟେକ ବୁଝିଲୁ ॥ ୩୨ ॥
ମୋତେ ଛାଡ଼ି ତାହାଙ୍କର ସଙ୍ଗତେ ଲୋଡ଼ୁ ଯାଇ ।
ମଧନ ବଚନେ ବଳା ହୋଇଲୁରେ ବାଇ ॥ ୩୩ ॥
ସେ କଇତବ ସ୍ତ୍ରିଙ୍କର ସଙ୍ଗତେ ନ ଯିବା ।
ମୋହର ଆଶ୍ରମ ବାକୁ ତୁଚ୍ଛା ନ କରିବା ॥ ୩୪ ॥
ଏସନେକ କଥା ଯହୁଂ ବିଭାଣ୍ଡେକ କହିଲା ।
ତତକ୍ଷଣେ ଶୂନ୍ୟେ ଶବଦେକ ଶୁଭିଲା ॥ ୩୫ ॥
ତୁ କପାଇଂ ପୁତ୍ରକୁ ରୁହାଉ ମହାଋଷି ।
ଶୃଙ୍ଗଋଷି ଗଲେ ସେ ପୃଥ୍ୱୀର ଭାର ଉପ୍ୱାସି ॥ ୩୬ ॥
ଲୋମପାଦ ରାଜ୍ୟେ ହୋଇଛୁ ଅନାବୃଷ୍ଟି ।
ଋଷିଶୃଙ୍ଗ ଗଲେ ସେ ମେଘେ କରିବେ ବୃଷ୍ଟି ॥ ୩୭ ॥
ଦଶରଥ ରାଜା ସୂର୍ଯ୍ୟବଂଶ ନୃପତି ।
ଋଷିଶୃଙ୍ଗ ଯାଗେସେ ତାହାର ଉପୁଜିବ ସନ୍ତତି ॥ ୩୮ ॥
ଦିଗପାଳନ୍ତ ତୋଷି ଯାଗ କରିବ ।
ଏହାର ହେତୁ ବିଷ୍ଣୁ ରାମ ରୂପେ ଉପୁଜିବ ॥ ୩୯ ॥
ସେ ରାମ ବିନାଶିବ ଦନୁଜ ଦଶଶିର ।
ତେବେ ସେ ପୃଥ୍ୱୀର ଭାର ହୋଇବାକ ସ୍ଥିର ॥ ୪୦ ॥
[ଆକାଶର ବଚନେ ଯେ ବିଭାଣ୍ଡେକ ଋଷି] ।
ପୁତ୍ରକୁ ତପୋଧନ କହନ୍ତୁ ଆଶ୍ୱାସି ॥ ୪୧ ॥

---

୩୦. ଯାହାକଇ—ଜାହାକହିଇ । ୩୧-୩୨. ଏ ଦୁଇ ପଦ ଖ ପୋଥିରେ ନାହିଁ । ୩୪. ଆଶ୍ରମ—ଆସନ(କ) । ୪୦. ପୃଥ୍ୱୀର—ପୃଥ୍ୱିରପୃଥ୍ୱିର ।

ଯାଅସିରେ ନନ୍ଦନ ଯୁବତୀଙ୍କର ସଙ୍ଗେ ।
ଆବର କଥାଏ କହଇ ତୋହର ଆଗେ ।। ୪୨ ।।
ମୋତେ ତେଜି ଯେବେ ରାଜାର ତହିଂକି ଯିବୁ ।
ସେ ଯାହା ଇଚ୍ଛଇ ତାହା ସିଦ୍ଧ୍ୟ କରିବୁ ।। ୪୩ ।।
ଏସନେକ ବୋଲି ମୁନି ପୁତ୍ରକୁ ତଆରିଲି ।
ରାତ୍ରି ପ୍ରଭାତେ ବିଭାଣ୍ଡେକ ତପସ୍ଥାନକୁ ଗଲି ।। ୪୪ ।।
ଋଷିଶୃଙ୍ଗ ଚଳଇ ତହୁଂ ଯୁବତୀଙ୍କର ପାଶ ।
ଦେଖିଣ ବେଶ୍ୟାଏ ହୋଇଲେ ହରଷ ।। ୪୫ ।।
ଋଷିଶୃଙ୍ଗଙ୍କୁ ମଧ୍ୟ କରି ବେଶ୍ୟାଏ ଗଲେ ।
ଉତ୍ତରିଅଙ୍କ ତୀରେ ଦୁଇ ଦନେ ହୋଇଲେ ।। ୪୬ ।।
ନାବେଣ ମୁନିଙ୍କି ସେ ବସାଇଲେ ନେଇ ।
ପବନ ପୟାତେ ଗଲେ ନାବ ବାହି ।। ୪୭ ।।
ମଦନ ଶରେ ଭୋଳ ହୋଇଛନ୍ତି ତପୋଧନ ।
ବୀଣା ଧରି ଗୀତ ଗାବନ୍ତି କାମେନୀ ।। ୪୮ ।।
ବେଣୀ ନଦୀ ତଟରେ ହୋଇଲେ ପ୍ରବେଶ ।
ତଗର ଜଣାଇଲି ଲୋମପାଦର ପାଶ ।। ୪୯ ।।
ହେ ଦେବ ତୋହର ଆଗ୍ୟାଂରେ ଜରତକୋଷା ବେଶ୍ୟା ଯେନିଗଲି ।
ଋଷିଶୃଙ୍ଗ ମୁନିଙ୍କି ଘେନିଣ ଅଇଲି ।। ୫୦ ।।
ଶୁଣିଣ ହରଷ ସେ ଲୋମପାଦ ରାଜନ ।
ଦୂତକଇ ବଧାଇ ଦେଲେ କଣସ୍ତ କୋଷ ରତ୍ନ ।। ୫୧ ।।
ପାଦେ ଗୁଲି ରାଜା ପାଶ୍ରେଟି ଆସଇ ।
ଋଷିଶୃଙ୍ଗର ପୟର ଧରି କହଇ ସମ୍ଭାଷଇ ।। ୫୨ ।।
ଜରତକୋଷାକଇ ପଗୃରନ୍ତି ଯତ୍ନ ।
କିମ୍ପାଇ ମହାତ୍ମା ମୋତେ କରଇ ଭଗତ ।। ୫୩ ।।
କିସ କାର୍ଯ୍ୟ ଏହାର କିସ ନିମିତ୍ୟ ।
କହସିରେ କାମେନୀ ଏହାର ଚରିତ ।। ୫୪ ।।
ଜରତକୋଷା କହଇ ଶୁଣସି ମହାମୁନ୍ୟ ।
ଏହି ସେ ଲୋମପାଦ ଅଙ୍ଗଦେଶର ରାଜନ ।। ୫୫ ।।
ଏହାର ବଚନେ ତୋହର ତହିଂକି ଗଲି ।
ଅନେକ ମାୟାରେ ତୋତେ ମୋହି ଆଣିଲି ।। ୫୬ ।।
ପିତାକୁ କହି ଅଇଲୁ ତୁହି ଏଥ ।
ଏ ରାଜାକଇ ଅନୁଗ୍ରହ କରସି ପ୍ରମାର୍ଥ ।। ୫୭ ।।

---

୪୨. ଆଗେ—ଆଗ । ୪୬. ଗଲେ—କଲେ(କ) । ୪୯. ବେଣୀ—କୃଷ୍ଣବେଣୀ(ଖ)

ଶୁଣି ହରଷ ହୋଇଲେ ମହାଋଷି ।
ଲୋମପାଦଙ୍କଇ କଲ୍ୟାଣ କରନ୍ତ ଶିର ଆଘ୍ରାଂସି ॥ ୬୮ ॥
ଋଷ୍ୟଶୃଙ୍ଗ ଘେନିଣ ନୃପତି ଗଲେ ଚଳି ।
ଅନ୍ତଃପୁର ଭିତରେ ନେଇ ରଖିଲେ ବାସ ଦେଲି ॥ ୬୯ ॥

ଶୁଭେ ବାଦ୍ୟ ତୁରୀ ତାଳ ଶୁଭାଇଲେ ଅପାର ।
ଫଳମୂଳ କଦଳୀ ଇକ୍ଷୁ ସାନ୍ଧ ଦେଲ ॥ ୭୦ ॥
ପଶ୍ୱୃତ ପଣା ଘେ କର୍ପୂର ତାମ୍ବୋଳ ।
ଭୁଞ୍ଜିଣ ତୋଷ ହୋଇଲେ ବିଭାଣ୍ଡକ ବାଳ ॥ ୭୧ ॥
ଅନ୍ତଃପୁରେ ଆନ୍ତେ ଶରୀର ଜାଳା କରି ।
ଲୋମପାଦଙ୍କଇ ହକାରି ପୁଛନ୍ତି ତପଋଷି ॥ ୭୨ ॥
ଦେହ ତାତଇ ମୋହର ପାଣି ଅନ୍ନଇ କାହିଁ ।
ଲୋମପାଦ କହଇ ମୁନି ମୋହର ରାଜ୍ୟରେ ବରଷଣ ନାହିଁ ॥ ୭୩ ॥
ବାର ବରଷ ହୋଇଛୁ ଅନାବୃଷ୍ଟି ।
ଜଳକଷ୍ଟ ପାର କର ହେ ତପନିଷ୍ଠି ॥ ୭୪ ।
ଲୋମପାଦର ବଚନ ଶୁଣିଲେ ମୁନି ଯହୁଁ ।
ଇନ୍ଦ୍ର କଇ ତପୋଧନ ସ୍ତୁତି କଲ ତହୁଁ ॥ ୭୫ ॥
ହେ ସୁରରାଜନ ଶଚୀ ଦେବୀର ରମଣ ।
ଏହିକ୍ଷଣି ଅଙ୍ଗଦେଶେ କରିବୁ ବରଷଣ ॥ ୭୬ ॥
ଋଷିଶୃଙ୍ଗ ସ୍ତୁତି ଯହୁଁ ସହସ୍ରାକ୍ଷ ଶୁଣିଲ ।
ଗୁରି ମେଘନ୍ତ ତତକ୍ଷଣେ ହକାରି ଆଜ୍ଞାଂ ଦେଲ ॥ ୭୭ ॥
ଋଷିଶୃଙ୍ଗ ଅଙ୍ଗଦେଶେ ହୋଇଲ ପରବେଶ ।
ଏହିକ୍ଷଣି ଲୋମପାଦର ରାଜ୍ୟରେ ବରଷ ॥ ୭୮ ॥
ସୁରପତି ବାକ୍ୟ ଯହୁଁ ମେଘେ ଶୁଣିଲେ ।
ଘଡ଼ଘଡ଼ି ଶବଦ କରି ବିଜୁଳି ଝଟକିଲେ ॥ ୭୯ ॥
ଗର୍ଜନ ଘନଘନ କଲକ ବରଷଣଇ ।
ଦେଖି ହରଷ ହୋଇଲେ ଲୋମପାଦ ରାଜନଇ ॥ ୮୦ ॥
ପ୍ରଜାଜନେ ଆନନ୍ଦ ଉତସଳ୍ୟ ମତି ।
ପାଣି ପାଇ ଧରଣେ ପଲ୍ଲବନ୍ତି ॥ ୮୧ ॥
ବେଶାନ୍ତ ହକାରି ଲୋମପାଦ ରାଜନ ।
ପୁରୁଷାର୍ଥକଇ ଦେଲ ଧନବସନ ଦାନ ॥ ୮୨ ॥
ହରଷେ କାମେନୀ ଜନେ ନିଜ ପୁର ଗଲେ ।
ଏସନେକେ ଋଷିଶୃଙ୍ଗ ଅଙ୍ଗଦେଶେ ବିଶ୍ରାମିଲେ ॥ ୮୩ ॥

---

୭୦. ସାନ୍ଧ—ସନ୍ଧ । ୭୯. ପଦଟି ଖ ପୋଥିରେ ନାହିଁ । ୮୧. ଉତସଳ୍ୟ—ଉସତଲ୍ୟ(କ) ।

ଶୁଣିଣ ଶ୍ରୀରାମ ଉତସଳ୍ପ ମନ ।
ଅମୃତମୟେ ଶୁଭଇ ଲବକୁମର ବଚନ ॥ ୭୪ ॥

## ଲବର ବଦେହ ବାହୁଡ଼ା

ଘଣ୍ଟ ବଖାଣନ୍ତେ ଅଢ଼ାଇ ପ୍ରହର ହୋଇଲା ।
ଶ୍ରୀରାମର ସନଧେ ଆସି ଲକ୍ଷ୍ମଣ କଇଲା ॥ ୧ ॥
ମୋହର କଥା ଶୁଣସି ରଘୁରାଜ ।
ମକଳ ଧର୍ମ ଶ୍ରେଷ୍ଠ ଅଟଇ ପିତୃକାର୍ଯ୍ୟ ॥ ୨ ॥
ଅ୍ଚତ ଅର୍ଣ୍ଣ ମେଷ୍ଟନ ପିତୃଲୋକନ୍ତ ଦେବା ।
ବନ୍ଧୁ ବର୍ଗ ସମସ୍ତଙ୍କୁ ଭୋଜନ ବସାଇବା ॥ ୩ ॥
ଏବେ ଗାୟେଣ ଗୋଟି ବଶ୍ରାମିଣ ଥାଉ ।
ତୁମ୍ଭର ମଣୋହ ଉତ୍ସରେ ପୁଣି ହ ଗୀତ ଗାଉ ॥ ୪ ॥
ବଶିଷ୍ଟେ କହନ୍ତ ଏ ଯୁଗତ ବସ୍ଥାଣ ।
ଯାହା ସେ କହଲା ତୋହର ଭାଇ ଲକ୍ଷ୍ମଣ ॥ ୫ ॥
ବଶିଷ୍ଟଙ୍କର ବଚନ ଯହୁଂ ଶ୍ରୀରାମ ଶୁଣିଲେ ।
ଲବକୁମର ମୁଖ ଗୃହୁଂ ସଧୀର କଶ କହଲେ ॥ ୬ ॥
ମୋହର ବଚନ ଶୁଣ ବାଳ ପୋଇ ।
ଗୀତ ବଶ୍ରାମି ବାବୁ ଆସି ଏଥି ରହ ॥ ୭ ॥
ଆମ୍ଭର ସଙ୍ଗତେ ତୁହ ଭୋଜନ କଶବୁ ।
ମଣୋହ ଉତ୍ସରେ ରାମାୟେଣ କହବୁ ॥ ୮ ॥
ଲବକୁମର କହଇ ମୁହଂ ଏଥେ ନୁଆରଇ ରହ ।
ନ ଦେଖିଲେ ବକଳ ହୋଇବେ ଆମ୍ଭର ଆଈ ॥ ୯ ॥
ଦୁଇ ଭାଇ ଆମ୍ଭେ ଗୀତ ଗାଇତ ଅଇଲୁ ।
ନଗ ବାହାରେ ଆମ୍ଭେ ବୋଲବୋଲ ହୋଇଲୁ ॥ ୧୦ ।
ସେ ମୋତେ ଗୁଣ୍ଡି ଏକା ଗଲା ଯହୁଂ ।
ତେବେସେ ଏଥକଇ ଅଇଲ ମୁହଂ ତହୁଂ ॥ ୧୧ ॥
ସେ ତଣ୍ଡୁଳ ଧେନ ଆଗ ହୋଇ ଯିବ ଯେବେ ।
ମୋତେ ଗୁରୁହେ ମାଶବେ ନା ତେବେ ॥ ୧୨ ॥
ତୁମ୍ଭେ ଯେ ବୋଇଲ ଆମ୍ଭର ତୁଲେ ଭୋଜନ କର ।
ମୁହଂ କମ୍ପା ଅର୍ଣ୍ଣ ଭୁଞ୍ଜିବ ତୁମ୍ଭର ଘର ॥ ୧୩ ॥

---

୭୪. ଉତସଳ୍ପ—ଉସ୍ଥତସଳ୍ପ । ୫. ଭାଇ—ଭାଇଇ(କ) । ୯. ନୁଆରଇ—ନପାରଇ(କ) । ୧୦–୧୨. ଏତନ ପଦ ଖ ପୋଥିରେ ନାହିଁ ।

କୁଳମୂଳ ରୂପର ନ ଜାଣଇ ଜାତ ଅଂଶ ।
ଅର୍ଦ୍ଧ ଭୁକ୍ତିବାର କିସ ପଉରଷ ॥ ୧୪ ॥
ମୁହିଂ କମ୍ପା ଏଥି ବିଶ୍ରାମ କରିବି ।
ରହ୍ନ ନୁଆରଇ ମୁହିଂ ଶୀଘ୍ର ହୋଇ ଯିବି ॥ ୧୫ ॥
କୁମର ବଚନ ଯହୁଂ ଶ୍ରୀରାମ ଶୁଣିଲେ ।
ବଶିଷ୍ଠ ମହରିଷିଙ୍କି ଶ୍ରୀରାମ କହିଲେ ॥ ୧୬ ॥
ଶୁଣିଲଟିକି ମୁନି ହେ ବାଳୁତର ବଚନ ॥
ଆନ୍ୟର ଘରେ ହାନେ ନ କରନ୍ତି ଭୋଜନ ॥ ୧୭ ॥
କିସ ଜାତ ଏ କେବଣ କୁଳ ବଂଶ ।
ପଗୃର କିନା ଏହାର ହୋଇ କିସ ॥ ୧୮ ॥
ବଶିଷ୍ଟେ କହନ୍ତି ଶୁଣସି ରଘୁପତ ।
ମହତ କୁଳେ ଯେ ଉତପନ ହୁଅନ୍ତି ॥ ୧୯ ॥
ଦୁଃଖ ପାଇଲେ ସେ ନ ଛୁଉନ୍ତି ଆଗୃର ।
ସେ କ ପରଅର୍ଣ୍ଣ କରନ୍ତି ଆହାର ॥ ୨୦ ॥
ଭଲ ଜଣଙ୍କର କୁଳରେ ଏହୁ ଜାତ ।
ଗ୍ରନ୍ଥ ବଖାଣ ଶୁଣିଲେ ପୁଚ୍ଛସି ଏହାର ତାତ ॥ ୨୧ ॥
ଏବେ କୁମାରକୁ ଗୃଉଳ ଦିଆବସି ।
ଏହାକଇ ପଠିଆଇ ପିତୃକାର୍ଯ୍ୟ କରସି ॥ ୨୨ ॥
ମୁନିବର ବଚନେ ରାମ ଲକ୍ଷ୍ମଣକୁ ହକାର ।
ଗୃଉଳ ପରିବା ଦିଅ ବୋଲି ଆଗ୍ୟାଂ ଅବଧାରି ॥ ୨୩ ॥
ଶ୍ରୀରାମର ବଚନେ ଲକ୍ଷ୍ମଣ ନବରେ ପଶିଲ ।
ତଣ୍ଡୁଳ ଆଣି ରାମର ସନମ୍ଧେ ମିଳାଲି ॥ ୨୪ ॥
ଭଲ ଭଲ ପଦାର୍ଥ ରାଜଦ୍ରବ୍ୟ ଉପହାର ।
ହରଷେ ଆଣିଲ ସୁମିତ୍ରା କୁମର ॥ ୨୫ ॥
ଦ୍ରବ୍ୟ ମଣ୍ଡଆଲେଣ ତଣ୍ଡୁଳ ଭରି ।
ନାନା ପଦାର୍ଥନ୍ତି ଏକଯୋଗ କରି ॥ ୨୬ ॥
ଲବକୁମର ହାଥେ ଦେଲେ ସୀତାପତ ।
କୁମର ମୁଖ ଗୃହିଂ କହନ୍ତି ଦାଶରଥି ॥ ୩୭ ॥
ମୋହର ବଚନ ଶୁଣ ପୁଣ୍ୟତ୍ରଣୀର ସୁତ ।
ରଜନୀ ପ୍ରଭାତେ ବାବୁ ଆସିବୁଟି ତୁରିତ ॥ ୨୮ ॥

---

୧୫. ପଦଟି ଖ ପୋଥିରେ ନାହିଁ । ୧୮. ପଦଟି ଖ ପୋଥିରେ ନାହିଁ । ୨୧. ପଦଟି ଖ ପୋଥିରେ ନାହିଁ । ୨୨. ଦିଆବସି—ଦିଅବସୀ । ୨୫-୨୬. ଏ ଦୁଇପଦ ଖ ପୋଥିରେ ନାହିଁ । ୨୭. ସୀତାପତ—ସୀତାପୀ(କ) ।

ରାମାୟେଣ ଚରିତ ମୁହିଂ ବିଶେଷି ଶୁଣିବି ।
ମନର ବଇରାଗ ଦୁଃଖପାତ ତେଜିବି ॥ ୨୯ ॥
ଭାରଯା ବନ୍ଧୁନେ ବାବୁ ଅଛି ର ମୋହର ମନ ।
ଅମୃତମୟେ ଶୁଣିଲି ତୋହର ବଚନ ॥ ୩୦ ॥
ଲବକୁମର କହଇ ନ ଆସିବି କାହୁଂ ।
ବରଣ କରି ଶାସ୍ତ୍ର ଶୁଣିଲ ତୁମ୍ଭେ ଯହୁଂ ॥ ୩୧ ॥
ନ ଅଇଲେଣ ଦୋଷ ହୋଇବ ନା ମୋତେ ।
ଅବଶ୍ୟ ଆସିବି କାଲିର ରଜନୀ ପ୍ରଭାତେ ॥ ୩୨ ॥
ଏସନେକ କହି ତହୁଂ ଗମଇ ଲବକୁମର ।
ଅଇଲା ବାଟକୁ ହୋଇଲା ଆଗୁସାର ॥ ୩୩ ॥
କୁମର ପଠିଆଇ ସୀତାଙ୍କର ପଦ ।
ବନ୍ଦି ବାନ୍ଧେବନ୍ତି ଭୋଜନ ଦଆବନ୍ତି ॥ ୩୪ ॥
ମଣୋହି ଉତ୍ସାରେ କରନ୍ତି ଶୟନ ।
ଯେତେ କହିଲା ଲବ ଗୁଣନ୍ତି ମନେମନ ॥ ୩୫ ॥

## କୁଶ ନ ବାହୁଡ଼ିବାରୁ ସୀତାଙ୍କ କ୍ରୋଧ

ଏଥୁ ଅନନ୍ତରେ ଶୁଣ ପଣ୍ଡୁ ସୁତ ।
ଅତି ଅପୂରୁବ ଶ୍ରୀରାମ ଚରିତ ॥ ୧ ॥
ବନମାର୍ଗେ ପଶି ଲବକୁମର ଗଲା ।
ଅନ୍ତରୀକ୍ଷେ ପବନ ତାକୁ ଉଡ଼ାଇଣ ନେଲା ॥ ୨ ॥
କେତେ ଦୂର ଗଲା କିଛି ହେଁ ନ ଜାଣଇଂ ।
ଜନେକ ଭୁବନେ ମିଳିଲା ତକ୍ଷଣଇ ॥ ୩ ॥
ଦ୍ୱାରେ ବସି ସୀତାୟୀ ବାଟ ଗୃହୁଂଅଛୁ ।
ଖାଲଇ ଏତେ ବେଳ ହୋଇଲା ନୋଇଲା ମୋର ବତ୍ସ ॥ ୪ ॥
ହୃଦସ୍ଥ ବିକଳିତ ମନ ଛନଛନ ।
ଏସନେକ ସମୟେ ଲବ ହୋଇଲା ମାତାର ସନ୍ନିଧାନ ॥ ୫ ॥
ଅନ୍ଧରେ ଚକ୍ଷୁଦାନ କି ନିର୍ଧନେ କନେକ ବୃଷ୍ଟି ।
ଦେଖି ମହାସତୀର ମନ ହୋଇଲାକ ତୁଷ୍ଟି ॥ ୬ ॥

---

୨୯. ରାମାୟେଣ—ରାବାୟେଣ(ଖ) । ୩୧—୩୨. ଦୁଇ ପଦ ବଦଳେ ଖ ପୋଥିରେ ଏକପଦ :—ଶୁଣିଣ କୁମର ଯେ କରଇ ସନମତ । ଅବଶ୍ୟ ଆସିବି ମୁହିଁ ତୁମ୍ଭର ଅଗ୍ରତ ॥ ୩୪. ଦଆବନ୍ତି—ଦୟାବନ୍ତି । ୩୫. ଗୁଣନ୍ତି—ସୁଣନ୍ତି । ୧. ପଦଟି ଖ ପୋଥିରେ ନାହିଁ । ୩. ତକ୍ଷଣଇ—ତକ୍ଷଣାଇ ।

ଉଠିଣ ଲବକୁମର ମୁଖେ ଚୁମ୍ବନ ଦେଲେ ।
କୁଶ ତ ନଇଲ ବୋଲି ପଚ୍ଚରନ୍ତି ॥ ୭ ॥
ଲବକୁମର କହଇ ମୋତେ ଛାଡ଼ି ଏକା ହୋଇଗଲା ।
ଅନେକ କାଂଗାସି ବଡ଼ାଇପଣ କହିଲା ॥ ୮ ॥
ବୋଇଲା ମୁହିଂସେ ସୁସ୍ୱରେ ଗାବଇ ଗୀତ ।
ଏକା ଗାଇ ଗୃଉଳ ଆଣିବ ବହୁତ ॥ ୯ ॥
ତୋହର ସଙ୍ଗତେ ମୁଂ ନ ଯାଇ ଗୀତ ଗାଇ ।
ଜାଣିମା ନା କେ କେତେ ଗୃଉଳ ଆଣଇ ॥ ୧୦ ॥
ମୁହିଁ ବୋଇଲି ମୋତେ ମାତାଏ ଗାଳି ଦେବେ ।
ବାଲମୀକ ମହରୃଷି ଅନେକ କୋପ କରବେ ॥ ୧୧ ॥
ନନେକ ମହର୍ଷିଙ୍କି କରଇ ମୁହିଂ ଭୟେ ।
ଅବଗ୍ୟାଂ କରି ମୋତେ ଆନ ବାଟକୁ ଯାଏ ॥ ୧୨ ॥
ଶୁଣିଣ ମହାସତୀର ଆତ୍ମା ଉଛର୍ଗିଲି ।
କ୍ଷଣେକେ ଚେତନା ପାଇ ଲବକୁମରଙ୍କୁ ପଚ୍ଚରିଲି ॥ ୧୩ ॥
ଯିବାର ବେଳେ ତାହାକୁ ଏଥି ଘେନ ଗଲୁ ।
ଅଳ୍ପ ପୁତ୍ରଙ୍କୁ ମୋର କେଉଁ ଛାଡ଼ି ଅଇଲୁ ॥ ୧୪ ॥
ଆବର ପୁତ୍ର ପାଇବି ମୁହିଂ କାହିଂ ।
ତୁହ୍ମେ ଅଇଲୁ ପୁତ୍ର ମୋର ନାହିଂ ॥ ୧୫ ॥
ଲବକୁମର କହଇ ଶୁଣ ମୋହର ବଚନ ।
ମୋତେ ଛାଡ଼ି ଗଲା ଯହୁଂ ତୋହର ନନ୍ଦନ ॥ ୧୬ ॥
ମୁହିଂ ବନସ୍ତ ଲଂଘି ଗୋ ଅଯୁତ ବାଟେ ଗଲି ।
ବଚନ ନବରେ ଖୋଜିଣ ଦେଖିଲି ॥ ୧୭ ॥
ସେହୁ ନଗ୍ରେ ମୁହିଂ ଗୀତ ଗାଇ ଗଲି ।
କ୍ଷଣେ ଘରେକଟି ତାହାର ଦ୍ୱାରେଣ ହୋଇଲି ॥ ୧୮ ॥
ପିତୃଶ୍ରାଧ ସେ ମହାତ୍ମା କରୁଥିଲା ।
ଗୀତ ଶୁଣି ସେ ମୋତେ ଚୁହାଇଲା ॥ ୧୯ ॥
ପିତୃଶ୍ରାଧ କର୍ମ ତାହାର ସରିଲାକ ଯହୁଂ ।
ମୋତେ ହକାରି ଗୀତ ଶୁଣିଲାକ ତହୁଂ ॥ ୨୦ ॥

---

୯. ଗାଇ—ଗାବଇ(କ) । ୧୨. ଯାଏ—ଗଲା । ୧୩-୧୭. ଏ ଗୁଡ଼ିପଦ ଖ ପୋଥିରେ ନାହିଂ । ୧୮. ଘରେକଟି—ଘରେକୋଟୀ । ୧୮-୨୦. ଏ ତିନ ପଦ ବଦଳେ ଖ ପୋଥିରେ ଏକପଦ :— ପିତୃକାର୍ଯ୍ୟ କରଇ ଏକ କ୍ଷତ୍ରି ବର । ଗୀତ ଗାଇଲି ମୁଁ ତାହାଙ୍କ ସିଂହଦ୍ୱାର ॥

ଅନେକ ଗଉରେବ ପୁରୁଷାର୍ଥ ମୋତେ କଲ ।
ଶ୍ରମାପୂଣ ଶୁଣିମାକୁ ବ୍ରାହ୍ମଣେକ ବରଲ ॥ ୨୧ ॥
ଶ୍ରାଧକର୍ମ ଭୋଜନ ନିମନ୍ତେ ।
ତାହାର ଘରେ ଭୁଞ୍ଜିବାକୁ ବୋଇଲକ ମୋତେ ॥ ୨୨ ॥
ମୁହିଂ ତାହାର ଘରେ ନ ଭୁଞ୍ଜିଲି ଯହୁଁ
ଗୁଉଳ ପଇବା ସେ ମୋତେ ଦେଲା ତହୁଁ ॥ ୨୩ ॥
ଶୀଘ୍ରେଣ ତହୁଁ ମୁଂ ବାହୁଡ଼ି ଅଇଲି ।
କୁଶ ଆଗ ଆସିବା ପ୍ରାପ୍ତେ ବୁଝିଲି ॥ ୨୪ ॥
ଏସନେକ ବଚନ ସତୀ ଶୁଣିଲେକ ଯହୁଁ ।
ଲବକୁମର ମୁଖ ଗୁହିଁ ବକଲେ କହଇ ତହୁଁ ।
ଦୁଇଭାଇ ଯେ ଗମନ୍ତା ଏକସ୍ଥଳେ ।
ଆଜ ବିଛେଦ ରେ ହୋଇଲ କାହାର ବୋଲେ ॥ ୨୬ ॥
ଦୁଃସହ କନ୍ଦର ଅରଣ୍ୟ ଘୋର ବନେ ।
ବେନି ଭାଇ ଛଡ଼ାଛଡ଼ି ହୋଇଲ କେସନେ ॥ ୨୭ ॥
ତୁହି କମ୍ପା ଲବ ରେ ବଇରାଗ ହୋଇଲୁ ।
ସାନ ଭାଇର କଥାକୁ କେମନ୍ତେ ଲୋପକଲୁ ॥ ୨୮ ॥
ତୋହର ତୁଲେ ପଠିଆଇଲି ମୁହିଂ ।
ମନ ମୁରୁଛୁଣ ଥିଲି ଥିର ନୋହି ॥ ୨୯ ॥
ଚଣ୍ଡାଲ ଆତ୍ମା କେମନ୍ତେଣ ଧଇଲୁ ।
ବାଳୁତ କୁମାରକୁ ମୋର ଗ୍ରୁଡ଼ିଣ ଅଇଲୁ ॥ ୩୦ ॥
ଶରୀରେ ବିକଳ ଜନେକ ଦୁଲ୍ଲାଳୀ ।
ବେନି ନୟନରୁ ସତୀର ଅଶ୍ରୁଜଳ ଗଳି ॥ ୩୧ ॥
ମାତାର କାନ୍ଦନ୍ତେଣ(କାନ୍ଦଇ) ଲବକୁମାର ।
ତାହାର ନୟନରୁ ବହଇ ଲୋତକ ଧାର ॥ ୩୨ ॥
ଲବକୁମର କହଇ ଗୋ ନ ରୋଦ ଗର୍ଭଧାରୀ ।
ମୁହିଁ କୁଶ ଗଲା ବାଟେ ଖୋଜିବି ଅନୁସରି ॥ ୩୩ ॥
ଯେବେ ଧୂରେ ମୁହିଁ କୁଶକୁ ପାଇବି ଦେଖି ।
ତାହାର ଗଲା କଣ୍ଠକ ଯିବ ମୁଁ ନିରେଖି ॥ ୩୪ ॥
ସୀତାୟୀ ବୋଇଲେ ପୁତ୍ରେକ ଅଛଇ ହରାଇ ।
ତୋତେ କେସନେକେ ଗ୍ରୁଡ଼ିବଇ ମୁହିଁ ॥ ୩୫ ॥

---

୨୭. ଦୁଃସହ—ଦୁସଃହ(କ) । ୩୦. ବାଳୁତ—ଅଲୋଳ(ଖ) ।

ମନର ବଚ୍ଛେଦେ ଲେଉଡ଼ି ଗୁହ୍ଯ ଯିବୁ ।
ଗହନ ବନେ ଯାଇ ବଣା ହୋଇବୁ ॥ ୩୬ ॥
ମାତା ପୁତ୍ର ଗୃଲ ଦୁହେଁ ଲେଉଡ଼ି ଝିବା ।
ଯେବେ ଦୂରେ ପାଇ କୁଶକୁ ଦେଖିବା ॥ ୩୭ ॥
କୁଶକୁ ଦେଖି ଅଜ ନୋଇବ ତେବେ ।
ଅଗ୍ନି ସଜାଳି ବନେ ମରିବ ତେବେ ॥ ୩୮ ॥
ଏସନେକ କହି ଲବ କୁମର ଭୁଜ ଧରି ।
କୁଶକୁ ଲେଉଡ଼ି ଗଲେ ଜନେକ କୁମାରୀ ॥ ୩୯ ॥
ପଥ ନରେଖି ମାତା ପୁତ୍ର ଯାନ୍ତି ।
କେଣେ ଗଲୁ କୁଶ ବୋଲି ଦୁହେଁ ଡାକ ଦେନ୍ତି ॥ ୪୦ ॥
ଯେବଣ ଠାବେ କୁଶ ଲବକୁ ଛାଡ଼ିଲା ।
ସେ ଠାବରେ ମାତାକୁ ଘେନି ଲବ କୁମର ମିଳିଲା ॥ ୪୧ ॥
ଲବକୁମର କହଇ ଶୁଣସି ଗୋ ମାତ ।
ଏ ପୂର୍ବ ଦିଗକୁ ଗଲା ତୋହର ପୁତ୍ର ॥ ୪୨ ॥
ଦୀର୍ଘ ବଟ ଯେ ଅଟଇ ବିଶାଳ ।
ବସିଲା ସୀତାଯ୍ଯା ସେ ବଟବୃକ୍ଷ ତଳ ॥ ୪୩ ॥
ବୃକ୍ଷର ଶିଖକୁ ଲବକୁମାର ଚଢ଼ିଗଲା ।
କେଣେ ଗଲୁରେ କୁଶ ବୋଲି ଉଚେ ଡାକ ଦେଲା ॥ ୦୪ ॥
ଧୂରେ ଲବ ତୁଣ୍ଡ ଶୁଣିଲା କୁରୁଣାଇ ।
ବ୍ୟଗ୍ରରେ ଧାଇଂ ବଟ ସନଧିକୁ ଆସଇ ॥ ୪୫ ॥
ଦେଖିଲା ତରୁତଳେ ବସିଅଛୁ ମାତା ।
କୁଶକୁ ଦେଖି କରି ହରଷ ଜନେକ ଦୁହିତା ॥ ୪୬ ॥
ମାତାର ପୟର ଧରି ଓଲଗଇ କୁଶ ।
ଲବକୁମର ହି ବୃକ୍ଷରୁ ଓହ୍ଲାଇଣ ଆସ ॥ ୪୭ ॥
ତୋଳି କୁଶକୁ ଦେବୀ କାଖରେ ବସାଇଲେ ।
ଚରଣ ନଉଗୁଇ ଧୂରକୁ ପକାଇଲେ ॥ ୪୮ ॥
ମଥା ଆଉଂଶି ଶିରେ ଦେଲେ ବୋକ ।
କମ୍ପାଇ ରେ କୁଶ ମୋତେ ଏତେ କରାଉ ଶୋକ ॥ ୪୯ ॥
ଦୁଃଖକୁ ସଂଗାତ ମୋର ଗର୍ଭେ ଉପୁଜିଲ ।
କମ୍ପାଇ ରେ ଦୁଇଭାଇ ଆଜ ଛଡ଼ାଛଡ଼ି ହୋଇଲ ॥ ୫୦ ॥
ତୋହର ନଉଛୁଣା ପଡ଼ୁ ମୋର ମାଥ ।
ଦୁଃଖର ସାଖା ମୋର ପ୍ରାଣର ସଂଗାତ ॥ ୫୧ ॥

---

୩୬-୫୧. ଏ ଷୋଳ ପଦ ଖ ପୋଥିରେ ନାହିଁ । ୪୮. ଦେବୀ—ଦେଖିବ ।

ତୁମ୍ଭେ ଯେ କହଇ ଏକ ସଙ୍କେତେଣ ଥିବ ।
ଅଗମ୍ୟ ବନେ ଭିନ୍ନ ଭିନ୍ନ ନୋହିବ ॥ ୫୨ ॥
ମୋହର ବଚନ ତୁମ୍ଭେ କେବେହେ ନ କର ।
କେବଣ ଗର୍ବେ ରେ ଦୁଷ୍ଟପଣ ତୁମ୍ଭର ॥ ୫୩ ॥
ପିତା ରେ ତୁମ୍ଭର ଯେସନ ଦୁଃଖ ଦେଲା ମୋତେ ।
ତହୁଂ ଅଧିକ ରେ ହୋଇଲ ବେନି ସୁତେ ॥ ୫୪ ॥
ଖଣ୍ଡର ପୁତ୍ର ହୋଇ ଅଣଆସ୍ମୃତ ।
କମ୍ପାଇ ଏତେ ଦୁଃଖ ମୋତେ ଦେଉଛୁ ବିଧାତ ॥ ୫୫ ॥
ଏମନେକ ଜାଣି ସେ ଜନେକ କୁମାରୀ ।
ଉଚ୍ଚେ ରୋଦନ କରଇ ପୁତ୍ରଙ୍କ ହସ୍ତ ଧରି ॥ ୫୬ ॥
ମାତାର ଶୋକ ଶୁଣି କାନ୍ଦନ୍ତି ବେନି ସୁତ ।
ଘୁରନ୍ତ ପେନ ବସିଲ ତହିଁ ଜନେକ ଦୁହିତ ॥ ୫୭ ॥

## ଲବକୁଶ ମିଶିକର ଗୀତ ଗାଇବା ନିଷ୍ପତ୍ତି

ଏଥୁ ଅନନ୍ତରେ ଶୁଣ ହୋ ପଣ୍ଡୁରକୁମାର ।
ସୀତାଙ୍କୁ ନିରେଖି ଜନେକ ମୁନିବର ॥ ୧ ॥
ପରିଜନନ୍ତ ହକାର ପୁଚ୍ଛନ୍ତ ତପଗୃହୀ ।
ଦ୍ୱାରେ ବସିଥିଲ ଯେ ମୋହର କୁମାରୀ ॥ ୨ ॥
କେହୁ ଜାଣ କେଉଁ ଗଲେ ସେ କାହିଁ ।
ଆବର ତ ଲବକୁଶ ଦୁଇ ଭାଇ ନାହିଁ ॥ ୩ ॥
ପରିଜନେ କହନ୍ତି ଶୁଣସି ତପୋଧନ ।
ଗୀତ ଗାଇ ଗଲେ ସୀତାର ବେନି ନନ୍ଦନ ॥ ୪ ॥
ଏକାରେ ଏଥକୁ ଲବକୁମର ଅଇଲା ।
କୁଶକୁମର ଏତେ ବେଳ ଯାଏ ନ ଅଇଲ ॥ ୫ ॥
କୁଶକୁ ନ ଦେଖି ଲବକୁ ଗାଳି ଦେଲେ ।
ତହୁଂ ମାତା ପୋଏ କୁଶକୁ ଖୋଜି ଗଲେ ॥ ୬ ॥
ଶୁଣି ବିକଳ ହୋଇଲେ ଜନେକ ମୁନିବର
ତତକ୍ଷଣେ କହିଲେ ବାଲମିକଙ୍କ ଆଗର ॥ ୭ ॥
ହେ ମୁନେ୍ୟ ଶୁଣିଲକି ବିପରୀତ କଥା ।
କୁଶ ନ ଆସିବାର ଦେଖି ଲୋଡ଼ିଗଲେ ସୀତା ॥ ୮ ॥

---

୫୩. କେବେହେ ନ—ବିଅର୍ଥ(ଙ) । ଗର୍ବେ…ତୁମ୍ଭର—କାରଣେ ରେ ଦୁଷ୍ଟ ଧୀ ଧର । ୫୪. ପିତାରେ—ପିତାର । ୫୪-୫୭. ଏ ଗୃରପଦ ଖ ପୋଥିରେ ନାହିଁ । ୧-୧୩. ଏ ତେରପଦ ଖ ପୋଥିରେ ନାହିଁ ।

ଜନେକର ବଚନ ସହୁଂ ଶୁଣିଲେ ମହାମୁନ୍ୟ ।
ବେଢେକ ଦେନ୍ନ ସେ ଉଠିଲେ ବହନ ॥ ୯ ॥
ବାଲ୍ମିକଙ୍କର ପଛେ ଜନେକ ରାଜଋଷି ।
ଅନେକ ଉପଗୃହି ଅଛନ୍ତି ବିଶେଷି ॥ ୧୦ ॥
ଋଷିଙ୍କର ପତ୍ନୀ ଦାସୀଗଣ ଧାତ୍ରୀ ସହିତେ ।
ସୀତସ୍ଥାକୁ ଲୋଡ଼ିଣ ଯାନ୍ତି ସଂମସ୍ତେ ॥ ୧୧ ॥
ବଟବୃକ୍ଷ ତଳେ ହୋଇଲେକ ଯାଇ ।
ପୁସନ୍ତି ଦେନ୍ନ ସୀତସ୍ଥା ବସିଅଛୁ ତହିଂ ॥ ୧୨ ॥
ଜନେକ ରାଜଋଷି ସହୁଂ ସୀତାକୁ ଦେଖିଲେ ।
ହୃଦର ବ୍ୟଥା ଗୁଣ୍ଡି ହରଷ ହୋଇଲେ ॥ ୧୩ ॥
ସୀତସ୍ଥାର ମୁଖଃ ଗୃହିଂ କହନ୍ତି ତପୋଧନ ।
କାପାଇଂ ଏ ବନକୁ ଅଇଲୁ କନ୍ୟସେନୀ ॥ ୧୪ ॥
ତୋହର ବୋଲେ କି ଲୋଡ଼ି ନ ଆସଇ ଆନ ।
ତୁହି କେସନେକେ ଆସୁ ଦୁସହ ଘୋରବନ ॥ ୧୫ ॥
ସୀତସ୍ଥା କହଇ ଶୁଣସି ଶୋ ତାତ ।
ଅଗ୍ୟାଂନ ବୁଦ୍ଧି ସିନା ମୋହର ବେନ ସୁତ ॥ ୧୬ ॥
ନିତ ଏକ ସଙ୍ଗେ ଥାନ୍ତି ବେନ ଭାଇ ।
ଆଜ ଏକ ଏକ ହୋଇଣ ଗଲେ ଗୀତ ଗାଇ ॥ ୧୭ ॥
ଲବକୁମର ଆଜ ଏକା ଅଇଲା ।
ଅଗମ୍ୟ ବନେ କୁଶ ପଛେ ଅଇଲା ॥ ୧୮ ॥
ଲବର କଥା ଶୁଣି ମୁହିଂ ବିକଳ ହୋଇଲି ।
ତେଣୁସେ ଉଦବେଗ ଲୋଡ଼ିଣ ଅଇଲି ॥ ୧୯ ॥
ଶୁଣି ଜନେକ ମୁନି ହରଷ ହୋଇଲେ ।
କୁଶକୁମରକୁ କାଖେଣ ବସାଇଲେ ॥ ୨୦ ॥
ଲବକୁମର ନଡ଼ି ବାଲମିକ ମୁନି ଧରି ।
ଆସନ୍ତି ବାହୁଡ଼ି ଜନେକ ନିଜ ପୁରୀ ॥ ୨୧ ॥
ସ୍ତି ଖିଗଣ ସମେତେ ମହାସତୀ ସୀତା ।
ନବରେ ପ୍ରବେଶ ହୋଇଲେ ଲବକୁମରଙ୍କ ମାତା ॥ ୨୨ ॥
ଅମୃତ ପାକ ଆବର ଅଣ୍ଣ ଯେ ମେଞ୍ଜନ ।
ଦୁଇ କୁମରେ ସେ କରନ୍ତି ଭୋଜନ ॥ ୨୩ ॥
ମୁନିଙ୍କର କ୍ଷୁଧା ସରିଲାକ ଯେବେ ।
ଆପଣେ ମହାସତୀ ସ୍ନାହାନ କଲେ ତେବେ ॥ ୨୪ ॥

---

୨୧. ନଡ଼ି—ହସ୍ତ(କ) ; ବାଲମିକ—ବାଲ୍ମିକ(କ) ।

ରଜନୀ ଦୁଇ ଘଡ଼ି ହୋଇଲା ପ୍ରବେଶଇ ।
ତେବେ ସେ ସୀତାଯ୍ୟା ମଣୋହିରେ ବସଇ ।। ୨୫ ।।
ସୀତାଯ୍ୟା ଭୋଜନେ ବସିଲାକ ଯହୁଁ ।
ଅନେକ ଋଷି କନ୍ଦମୂଳ ଫଳ ଗ୍ରାସ କଲେ ତହୁଁ ।। ୨୬ ।।
ଭୋଜନ ଉତ୍ତ୍ରାରେ ସତୀ ଆଗ୍ରେବନ ପାଶ ।
ବେଢ଼ି ଅନେକ ଧାର୍ମୀ ଅଛନ୍ତି ପରବାଶ ।। ୨୭ ।।
ପ୍ରହରେକ ପ୍ରବେଶ ହୋଇଲା ରଜନୀ ।
ପଲ୍ୟଙ୍କେ ନମଇ ଦେବୀ ପୁତ୍ରନ୍ତ କୋଳେ ଘେନି ।। ୨୮ ।।
ମାଣିକ୍ୟର ଦୀପ ଜଳଇ ଚଉପାଶ ।
ଲବକୁମର କହଇ ଶୁଣସି ହୋ କୁଶ ।। ୨୯ ।।
ତୁହି ଯେ ଏକା ମୋତେ ଛାଡ଼ିଣ ଯେ ଗଲୁ ।
ମୋହର ବଚନ କେବେହେ ନ କଲୁ ।। ୩୦ ।।
ତୋହର ଦୋଷ ମାତାଏ ନ ଜାଣିଲେ ।
କୋପେଣ ମୋତେ ଅନେକ ଗଞ୍ଜଣା ବୋଇଲେ ।। ୩୧ ।।
ଆମ୍ଭେ ଗୀତ ଗାଇ ଆସିଲେଣ ଯେବେ ।
ଆନ୍ତର ଭୁକ୍ତି ଦେଲ ସେ ମାତାଏ ମଣୋହି କରନ୍ତି ତେବେ ।। ୩୨ ।।
ମାତାଏ ଭୋଜନ କଲେ ସେ ଅନେକ ଋଷି ଭୁଞ୍ଜନ୍ତି ।
ତେବେ ସେ ସମସ୍ତ ସ୍ତ୍ରୀ ଭୋଜନ କରନ୍ତି ।। ୩୩ ।।
ମୋହର ସଙ୍ଗତେ କଳହ ଯେ କଲୁ ।
ବିଶେଷ ଚାଉଳ ଆଣିମି ବୋଲି ଗୀତ ଗାଇ ଗଲୁ ।। ୩୪ ।।
କେତେ ଚାଉଳ ଆଣିଲୁ ତୋହର ଦେଖିବା ।
ମାତାଙ୍କର ଛାମୁରେ ପଡ଼ିରୋଧ ପାଇବା ।। ୩୫ ।।
ପଛେ ଏ କଥା ତୁହେ ବିଚାରନ୍ତୁ ।
ଆବର ଜନନୀଙ୍କର ପିତା ଋଷିଗଣେ ଜାଣନ୍ତୁ ।। ୩୬ ।।
ଲବକୁମର କଥା ଯହୁଁ କୁଶକୁମର ଶୁଣିଲା ।
ମାତାର ଛାମୁରେ ଆଣି ଚାଉଳ ପୁଡ଼ା ଫେଡ଼ିଲା ।। ୩୭ ।।
କଣ ଭିକ୍ଷା ତଣ୍ଡୁଳ ସେ ଦିଶଇ ଭିନ୍ନ ଭିନ୍ନ ।
ମାପନ୍ତେ ତିନି ମାଣ ହୋଇଲା ସମ୍ପୂର୍ଣ୍ଣ ।। ୩୮ ।।
ଦେଖିଣ ଲବକୁମର କହଇ ଦ୍ରହାସ୍ୟ ।
ମିଛେ ହେ ଯେ ତୁଯେ କହୁଛୁ ପଉରୋଷ ।। ୩୯ ।।

---

୨୭. ପଦଟି ଖ ପୋଥିରେ ନାହିଁ । ୨୮. ପୁତ୍ରନ୍ତ—ପୁତ୍ରଙ୍କୁ । ୩୨-୩୩. ଏ ଦୁଇ ପଦ ଖ ପୋଥିରେ ନାହିଁ । ୩୪. କଳହ—ହଳହ (କ) । ୩୬. ପଦଟି ଖ ପୋଥିରେ ନାହିଁ । ଜାଣନ୍ତୁ—ଥାନ୍ତୁ । ୩୯. ଦ୍ୱିତୀୟ ପାଦଟି ଖ ପୋଥିରେ ନାହିଁ ।

ମୋହର ତଣ୍ଡୁଳ ହରଇ ଗୋଷ୍ଠୀର ମଲ୍ଲୀପୁଷ୍ପ ଯେସନ ।
କୃଷ୍ଣକୁମର କହଇ ମିଥ୍ୟା ତୋହର ବଚନ ।। ୪୦ ।।
ମୁହିଂ ଏ କଥା କହଇ ସପ୍ରତେ ।
ସତେ ଯେବେ ଆଣି ତୁ ମାତାଙ୍କର ଅଗ୍ରତେ ।। ୪୧ ।।
କୃଷ୍ଣର କଥା ଲବ ଶୁଣିଲାକ ସହୁଂ ।
ଜନନୀର ଆଗେ ତଣ୍ଡୁଳ କଲାକ ବେଗେ ଆଣି ବହୁଂ ।। ୪୨ ।।
ସରୁ ତଣ୍ଡୁଳ ହରଇ ଦ୍ରବ୍ୟ ଜ୍ୟୋଢ ।
ଦେଖି ହରଷ ସୀତସ୍ମା ମହାସତୀ ।। ୪୩ ।।
ମାପନ୍ତେ ଦ୍ୱାଦଶ ମାଣ ଯେ ହୋଇଲା ।
ଲବର ମୁଖ ଗୃହିଁ କୃଷ୍ଣକୁମର ପଚାରିଲା ।। ୪୪ ।।
ଏସନେକ ତଣ୍ଡୁଳ ଦେଖିଲୁ ମୋର ନାହିଂ ।
ଆବର ପଦାର୍ଥନ୍ତ ପାଇଲୁ ତୁ କାହିଁ ।। ୪୫ ।।
କାହାର ଘରେ ଅବା ନ କହ ପଶିଲୁ ।
ଗୃଉଳ ପଶବା ଯେ ଦୋନଣ ଅଛିଲୁ ।। ୪୬ ।।
ଗୀତ ଗାଇଲେ କେ ଏ ପଦାର୍ଥନ୍ତ ଦେବ ।
ଏ କଥା ଅତି ଅଶକ୍ୟ ଅସମ୍ଭବ ।। ୪୭ ।।
ଲବ କୁମର କହଇ ମୋତେ ତୃଦ୍ଧ ଗ୍ଳାନ୍ତି ଗଲୁ ସହୁଂ ।
ଦକ୍ଷିଣ ଦିଗ ମାର୍ଗେ ମୁଂ ପଶିଗଲି ତହୁଂ ।। ୪୮ ।।
ଏକ ଭଲ ନଗ୍ରଠାରେ ହୋଇଲି ପ୍ରବେଶ ।
ସବୁରି ମନ୍ଦରେ ବସିଛୁ ସୁବର୍ଣ୍ଣ କଳଶ ।। ୪୯ ।।
ଅତି ଉପାମ ଦିସଇ ସେ ପୁରୀ ।
ସେ ନଗ୍ରେ ଆନନ୍ଦ ଭାବେ ସକଳ ନରନାରୀ ।। ୫୦ ।।
ସେ ନଗ୍ରର ମଧ୍ୟେ ଶ୍ରେଷ୍ଠ ଏକ ଘର ।
ମହାଧାର୍ମିକ ସେ ହେନ୍ତି ପବନ ଘର ।। ୫୧ ।।
ସେ ଗ୍ରନ୍ଥ ବରଣ କରି ଶୁଣିଲା ।
ସେ ମହାତ୍ମା ମୋତେ ତଣ୍ଡୁଳ ପଦାର୍ଥନ୍ତ ଦେଲା ।। ୫୨ ।।
ମୁହିଂ ପୁଣି କାଲି ତାହାର ରାଜ୍ୟକୁ ଯିବ ।
ବରଣ ହୋଇଅଛୁ ତାହାର ଆଗରେ ରାମାୟଣ କହିବ ।। ୫୩ ।।
ଶୁଣି କୁମର ହରଷ ହୋଇଲା ।
ଲବର ମୁଖ ଗୃହୁଂ କୋମଳ କରି କହିଲା ।। ୫୪ ।।

---

୪୦. ଯେସନ—ସାଦୃଶ(ଖ) ; ଖ ପୋଥିରେ ଏହାର ଦ୍ୱିତୀୟ ପାଦ ସହ ପର ପଦର ପ୍ରଥମ ପାଦ ମିଶି ଗୋଟିଏ ପାଦ ହୋଇଛି । ୪୩. ଜ୍ୟୋଢ—ଯୋଢ । ୪୭. ପଦଟି ଖ ପୋଥିରେ ନାହିଁ । ଅଶାକ୍ୟ—ଅସକ୍ଷ ।

ଦୁହେଁ ଭାଇ କାଲି ଏକ ସଙ୍ଗେ ଯିବା ।
ଚିନମନ୍ତ୍ର ନଗ୍ର ତାହା ମେଳେ ଦେଖାଇବା ॥ ୫୫ ॥
ଲବକୁମର କହଇ ନେମି ତୋତେ କଲେ ।
ସେ ଟୁରୁ ମନ୍ଦର ଦେଖାଇବ ବୋଲେ ଭଲେ ॥ ୫୬ ॥
ହରଷ ସୀତସ୍ୟା ପୁତ୍ରଙ୍କର ବଚନ ଶୁଣି ।
ପୁଅଙ୍କୁ ଆଶ୍ୱାସି କହଇ ଜନେକ ନନ୍ଦିଣୀ ॥ ୫୭ ॥
ତ୍ରିଲୋକରେ ତନୟେ ମୋହର ଅନାସୁଣୀର ପୁଅ ।
ବନସ୍ତେ ଯାଇ ତୁମ୍ଭେ ଭିନ୍ନ ଭିନ୍ନ ନ ହୁଅ ॥ ୫୮ ॥
ଦୁଷ୍ଟ ସିଂହ ସେ ଯେ ଭୟଂକାର ଜୀବେ ଥାନ୍ତି ।
ଏକା ଦେଖିଲେ ଯେ ଜୀବମାନେ ଆକ୍ରମନ୍ତି ॥ ୫୯ ॥
କାଲି ତୁମ୍ଭେ ଗୀତ ଗାଇତ ନ ଯାଅ ।
ପିତାର ଘରୁ ମୋହର କଣ୍ଠୁଲି ତେଜିଥାଅ ॥ ୬୦ ॥
ଲବକୁମର କହଇ ତୁମ୍ଭେ ଏମନେକ ବୋଲ ।
ଗୀତ ନ ଗାଇଲେ ଋଷି ନ ବୋଲନ୍ତି ଭଲ ॥ ୬୧ ॥
ଜନନୀ ବୋଲନ୍ତି ଯେବେ ଗୀତ ଗାଇତ ଯିବ ।
ଏକ ସଙ୍ଗେ ହୋଇ ତୁମ୍ଭେ ବାବୁ ଦୁଇଭାଇ ଥିବ ॥ ୬୨ ॥
ତନୟଙ୍କୁ କହନ୍ତି ତୁମ୍ଭର ବଚନ(ନ) ଲଙ୍ଘିବୁ ।
ଦୁଇ ଭାଇ ଏକଠାବରେ ଗୀତ ଗାଉଣ ଥିବୁ ॥ ୬୩ ॥
ପୁତ୍ରଙ୍କର କଥା ଶୁଣି ସୀତସ୍ୟା ହୋଇଲେ ହରଷ ।
ଧାଇଁ ପରବାସୀ ବେଢ଼ିଣ ଅଛନ୍ତି ଚଉପାଶ ॥ ୬୪ ॥
ସକଳ ସ୍ତ୍ରୀ ସାଗଧୋ ଲବକୁଶଙ୍କୁ ଉଥାରନ୍ତି ।
ପୁତ୍ର ଦୁଇ କଡରେ ଶୁଆଇ ମଧ୍ୟରେ ଶୁଅଇ ମହାସତୀ ॥ ୬୫ ॥
ପଥଶ୍ରାନ୍ତେ କ୍ରମରେ ନିଦ୍ରାରେ ଅଚେତ ।
ଉତ୍କଣ୍ଠେ ସତୀର ନିଦ୍ରା ନ ମାଡ଼ଇ ନେତ୍ର ॥ ୬୬ ॥
କସ୍ତୁ ତୁ ନାରାୟଣ ଲକ୍ଷ୍ମୀଦେବୀର ପତି ।
ଲକ୍ଷ୍ମୀ ନାରାୟଣ ଯେ ସୁମରଇ ନିତି ॥ ୬୭ ॥
ଚଞ୍ଚଳ ମନଷା ଯେ ନୁଆରଇ ଥିର କରି ।
ତେଣୁ ସେ ନାରାୟଣ ନାମ ନୋଆରଇ ସୁମରି ॥ ୬୮ ॥
ଇନ୍ଦ୍ର ଯମ ଅଗ୍ନି ନୈରୁତ୍ୟ ଆବର କୁବେରେ ।
ନାରାୟଣ ସୁମରନ୍ତି ବହ୍ମାଦି ମୁନିବରେ ॥ ୬୯ ॥

---

୬୦. ଘରୁ—ଘରକୁ । ୬୬-୬୭. ଖ ପୋଥିରେ ଏହି ପ୍ରଦଟି ଏଠାରେ ନ ଥାଇ ପରବର୍ତ୍ତୀ ଅନୁଚ୍ଛେଦ ମଧ୍ୟରେ ରହିଛି । ୬୮. ମନଷା ଯେ—ମନୁଷ୍ୟ ଯେ(କ), ମନ ମୋହର (ଙ) ।

ନାରାୟଣେ ନାମ ଯେ ମୁଖରେ ଉଚ୍ଚରଇ ।
ଯେତେ ଯୁଗେ ଗତ ସେ ଅମୃତ ଆହାର କରଇ ॥ ୭୦ ॥
ନାରାୟଣ ନାମ ଯେ ପରମ ମହୌଷଧି ।
ନାରାୟଣ ନାମ ସୁମରନ୍ତେ ତୁଟଇ ସକଳ ବ୍ୟାଧି ॥ ୭୧ ॥
ନାରାୟଣ ରୂପକୁ ଯେ ନିତ୍ୟେ କରଇ ଧ୍ୟାନ ।
ନାରାୟଣ ନାମଇ ସେ ପରଂବ୍ରହ୍ମଗ୍ୟାନ ॥ ୭୨ ॥
ନାରାୟଣ ସୁମରନ୍ତେ ଭୁକତି ମୁକତି ।
ଭକତଙ୍କୁ ଦିଅଇ ଲକ୍ଷ୍ମୀଦେବୀର ପତି ॥ ୭୩ ॥
ନାରାୟଣ ସୁମରି କହଇ ନାରାୟଣ ।
ଜନ ପ୍ରବୋଧ ବାକ୍ୟ କରଇ ବଖାଣ ॥ ୭୪ ॥
ଜନ୍ମେଣ ଶୃଷ୍ଟି ଚଞ୍ଚଳ ମୋହର ମତି ।
ମୂର୍ଖେଣି ଦେଖି ନାରାୟଣ ଅନନ୍ତ ମୂରତି ॥ ୭୫ ॥
ନାରାୟଣ ପଦ୍ମରେ ମୁହିଂ ଜନ୍ମେ ଜନ୍ମେ ଦାସ ।
ସିଦ୍ଧେଶ୍ୱର ଧାମ ନାରାୟଣ କରଇ ପ୍ରକାଶ ॥ ୭୬ ॥

## ଲବକୁଶଙ୍କ ଅଯୋଧ୍ୟା ଯାତ୍ରା

ଏଥୁ ଅନନ୍ତରେ ଯେ ଯୁଧିଷ୍ଠିର ନରେନ୍ଦ୍ର ।
ମାର୍କଣ୍ଡଋଷିଙ୍କି ପୁଚ୍ଛନ୍ତି ସୋମବଂଶଚନ୍ଦ୍ର ॥ ୧ ॥
ହେ ମୁନି ତୋହରେ ମୁଂ ନାରାୟଣ ଶୁଣିଲି ।
ଦୁର୍ଗମ୍ୟ ଭୂମିରେ ସକଳ ଦୁଃଖ ଉପେଖିଲି ॥ ୨ ॥
ଲବକୁଶ ଜନ୍ମ ଯେ କହିଲୁ ବିଚିତ୍ରକଥା ।
ତାହାରୁ ଉପେଖିଲୁ ବିବିଧ ଚିନ୍ତା ବ୍ୟଥା ॥ ୩ ॥
ପୁଚ୍ଛନ୍ତି ଯେଉଁଣ ସୁତଙ୍କୁ ମହାସତୀ ।
ଏଥୁ ଉତ୍ତାରୁ କଥା କହସି ମହାଯତି ॥ ୪ ॥
ନାରାୟଣ ଶୁଣି ହୋଇଲି ପବିତ୍ର ।
କହନ୍ତି ମାର୍କଣ୍ଡ ଶୁଣସି କୁନ୍ତୀସୁତ ॥ ୫ ॥
ଶୁଭେଣ ରଜନୀ ଯେ ପ୍ରଭାତ ହୋଇଲା ।
ଆଦିତ୍ୟ ଜ୍ୟୋତି ଉଦୟେ [ଗିରିରେ] ବିକାସିଲା ॥ ୬ ॥
ଭ୍ରମର କୋଳାହଳ ପଦ୍ମବନେ ପଶନ୍ତି ।
ତାମ୍ରଚୂଡ଼ ପକ୍ଷୀ ଘନଘନ ରବ ଦେନ୍ତି ॥ ୭ ॥

---

୭୦. ଗତ—ପତ(କ) । ୭୧. ପରମ—ଅମର(ଖ) । ୭୪. କରଇ—କହଇ(କ)
୭୫. ଶୃଷ୍ଟି ଚଞ୍ଚଳ ମୋହର—ମୂର୍ଖ ମୁ ଅଟଇ ମୂର୍ଖ (ଖ) । ୧–୫. ଖ ପୋଥିରେ
ଏ ପାଞ୍ଚ ପଦ ଏଠାରେ ନାହିଁ, ପ୍ରଥମ ତିନି ପଦ ଅନ୍ୟତ୍ର ଅଛି ।

ବାସ୍ତୁଖା ଉଠେ ଗନଜନ ଶବଦ କରେ ।
ବ୍ରାହ୍ମଣେ ମୁନି ଜନେ ସ୍ନାହାନ କରି ଗଲେ ॥ ॥
ଦୈଶଯ୍ୟା ତେଜି ବସନ୍ତ ଜନନୀ ସୁମିତ୍ରା ।
ଦୁଇ ପୁତ୍ରକୁ ଦେଖି ତୋଷଇ ନାମ ଧରି ॥ ୯ ॥
ନିଦ୍ରା ତେଜି ଦୁଇ କ୍ରମରେ ଉଠନ୍ତି ।
ସୁବାସ ଜଳ ଦେଇ ମୁଖ ପଖାଳନ୍ତି ॥ ୧୦ ॥
[ପରିବାସୀ ଜନ ମିଳି କୁଙ୍କୁମ ଘଷନ୍ତି ।
ଲଲାଟେ କସ୍ତୁରୀ ଚିତା ଚନ୍ଦନ ଘଷନ୍ତି ] ॥ ୧୧ ॥
ଝୀନବସନ ପାଟଶାଳି ବସାଇ ମଣ୍ଡିଆଳ ।
ପରିହରଣ ହୁଅନ୍ତି ସନ୍ତର ବେନି ବାଳ ॥ ୧୨ ॥
କେଶ ମଜାଇ ପାଡ଼ିଲେ ଦ୍ରବ୍ୟ କଣ୍ଠା ବେଣୀ ।
ଲୋଚନେ ଅଞ୍ଜନ ରଞ୍ଜି ଲେ ଜନନୀ ॥ ୧୩ ॥
କଣ୍ଠେ କଣ୍ଠିମାଳ ପଦକ ଲମ୍ବାବନ୍ତି ।
ଲଲାଟ ଶିଖରେ ଯେ ଚନ୍ଦନ ଟୋପି ଦେନ୍ତି ॥ ୧୪ ॥
ପୂର୍ଣ୍ଣିମୀ ଇନ୍ଦୁ ଜାଣି ଦିଶଇ ବଦନ ।
କୋଳେ ବସାଇ ମଣ୍ଡି ବେନି ନନ୍ଦନ ॥ ୧୫ ॥
ପୁତ୍ରଙ୍କର ମୁଖ ଚୁମ୍ବି ବୋଲନ୍ତି ବଚନ ।
ଶୀଘ୍ର ହୋଇ ତୁମ୍ଭେ ଆସିବ ବହନ ॥ ୧୬ ॥
ଶ୍ରୀରାମର ଘରଣୀ ବସ୍ତ୍ର ଭୁଲଇ ମନ ।
ପୁତ୍ରକୁ ନ ଦେଖିଲ କଉଶଲ୍ୟା ନନ୍ଦନ ॥ ୧୭ ॥
ପିତା ଅଛୁ ବୋଲି ମୋର ପୁତ୍ରେ ନ ଜାଣନ୍ତି ।
ବଇରାଗେ ରାଢ଼େଣୀ ମୁହିଂ ନ କହି[ଲି] ଦୁଷ୍ଟମତି ॥ ୧୮ ॥
ଋଷିଙ୍କର ସଙ୍ଗତେ ଥିଲେ ଏ ହୋଇବେ କିସ ।
ଅଯୋଧ୍ୟା ନଗରେ ସେ ନୃପତି ପଉତ୍ରେଷ ॥ ୧୯ ॥
ଶ୍ରୀରାମ ନଜାଣଇ ଦୁଇ ପୁତ୍ରଙ୍କର ଜାତ ।
ଜାଣି ସେ କମ୍ପାଇ ଥୋଇବାକ ଏଥ ॥ ୨୦ ॥
କେ ମୋହର ସ୍ୱାମୀକି କହିବାକ ଯାଇ ।
ମୁହିଂ ବ୍ରତଅଛୁ ବୋଲି ଷଟି ବରର ଗ୍ୟାଂନ ନାହିଂ ॥ ୨୧ ॥
ଅଗମ୍ୟ ବନେ ମୋତେ ଲକ୍ଷ୍ମଣ ଛାଡ଼ିଗଲା ।
ଶ୍ରୀରାମର ଶ୍ରୀମୁଖରେ କି କହିଲା କି ନ କହିଲା ॥ ୨୨ ॥

---

୧୧. କୁଙ୍କୁମ—କୁସୁମ । ୧୪. ପଦଟି ଖ ପୋଥିରେ ନାହିଁ । ୧୬. ପଦଟି ଖ ପୋଥିରେ ନାହିଁ । ୨୧. ଷଟି ବର—ଯତିବର ।

ଏହନେକ ଖେଳନ୍ତି ସେ ଜନେକ କୁମରୀ ।
କମଳନୟନରୁ ସଞ୍ଚାର ଅଶ୍ରୁଜଳ ଗଳ ॥ ୧୩ ॥
ଅଞ୍ଚଳେ ପୋଛଇ ଦେବୀର ବେନି ନୟନ ।
ଦେଖିଣ ପଚାରନ୍ତି ବେନି ନନ୍ଦନ ॥ ୧୪ ॥
କିପାଇଂ ଗୋ ମାତା ମୁଖ ବିରସ କଲୁ ।
ଅଶ୍ରୁନ୍ତ କୋଳେ ଧରି ତ ବଇକୁଳି ହୋଇଲୁ ॥ ୧୫ ॥
ମହାବ୍ୟଥା ପାଇଲୁ ତୋହର ବିରସ ମୁଖ ଦେଖି ।
ଶରୀରୁ ପ୍ରାଣ ଗଲାକ ଉପେଖି ॥ ୧୬ ॥
କେବଣ କାରଣେ ଗୋ କରୁଅଛୁ ରୋଦନ ।
କହସି ଗୋ ଗର୍ଭଧାରୀ ସ୍ୱରୂପ ବଚନ ॥ ୧୭ ॥
ଜାନକୀ କହନ୍ତି ଶୁଣସି ରେ ଦୁଲାଳେ ।
କାଲି ଯାହା କହିଲି ଶୟନର ବେଳେ ॥ ୧୮ ॥
ବୃଦ୍ଧ ଭିକ୍ଷା ମାଗି ଯେ ଗୀତ ଗାଇତ ଯାଅ ।
ବନସ୍ତରେ ଯାଇ ତ ହୋଡ଼ାହୁଡ଼ି ହୁଅ ॥ ୧୯ ॥
ତହୁଂକ ସେ ମୁହିଂ ଏକଲେ ଖାଇଲି ।
ଶୋକ ଭରିତ ହୋଇ ରୋଦନ ମୁହିଂ କଲି ॥ ୩୦ ॥
ତୁହରେ କାଦ କୁଶକୁ ନ ଛାଡ଼ିବୁ ।
ତୋତେ ମନ୍ଦ ବୋଇଲେ ମୋତେ ବାହୁଡ଼ି କହିବୁ ॥ ୩୧ ॥
ତୋହର କଥା ଶୁଣଇ ମୁହିଂ ଯେବେ ।
ଛୁଟେ ପିଟି ଏହାର ଦେହ ପିନ୍ଧାଇବି ତେବେ ॥ ୩୨ ॥
ତୁହି ବାବୁ ମନ୍ଦ ସଙ୍ଗ ନ କରିବୁ କୁଶକୁ ।
ମୁହିଂ ଯାଇ କହିବି ତୋହର ବାଲ୍ମୀକି ଗୁରୁଙ୍କୁ ॥ ୩୩ ॥
ଶୁଣି ଲବ କହଇ ଭୟେ କରି ଚଉ ।
ଭଲ କରି ଚଉରି ଥାଅ ଗୋ ତୋହର ନିଜ ପୁତ୍ର ॥ ୩୪ ॥
ଏହୁ ସେ ମୋତେ ଗୋ ଆର ହିଂସା କରଇ ।
ମୋହର ସଙ୍ଗରେ ଗୋ କେବେହେ ନ ରହଇ ॥ ୩୫ ॥
କୁଶ କହଇ ଏବେ ମୁହିଂ କିଛିହି ନ କରିବି ।
ତୋହର ସଙ୍ଗତେ ଖାଇ ଗୋଡ଼ାଇଣ ଥିବି ॥ ୩୬ ॥
ସୀତମ୍ବା କହଇ ତୁମ୍ଭେ ଛୁଇଁବ ମୋହର ଦେହ ।
ତେବେ ସେ ତେଜଇ ମୋହର ମନରୁ ସନ୍ଦେହ ॥ ୩୭ ॥
ଦୁଇ କୁମରେ ଛୁଇଁଲେ ଜନନୀର ପାଦ ।
ତହୁଂ ସେ ଜାନକୀ ଛାଡ଼ିଲେ ହୃଦର ବିଷାଦ ॥ ୩୮ ॥

୧୭. କରୁଅଛୁ—କରସି(କ) । ୩୭. ସନ୍ଦେହ—ବିଚ୍ଛେଦ (କ) ।

ହରଷେ ମହାସତୀ କୁମରନ୍ତ ବସାଇ ।
◌ଧ ଦଧି ସାକର କଦଳୀ ପରସଇ ॥ ୩୯ ॥
ଭୁଞ୍ଜନ୍ତ ଅର୍ଣ୍ଣ ପୁତ୍ରେ ମନର ହରଷେ ।
ଆଚେମନ ଯାଇ ମିଳିଲେ ତାହାଙ୍କର ପାଶେ ॥ ୪୦ ॥
◌ାରେ ପୁତ୍ରନ୍ତ ସତୀ ତାମ୍ବୋଳ କରେ ଦେଲା ।
ଲବକୁମର ମୁଖ ଅଶ୍ୱାସି ସୀତସ୍ତ୍ରୀ କହିଲା ॥ ୪୧ ॥
ଦୂର ଦେଶକୁ ବା◌ବୁ ଗୀତ ଗାଇତ ନ ଯିବ ।
ନିକଟେ ଗୀତ ଗାଇ ମୋହର କଥକୁ ଆସିବ ॥ ୪୨ ॥
ଶୁଣି କୁମା◌.ର ସନମତ କରନ୍ତି ।
ମାତାଙ୍କର ◌ରଣ ଧରି ଓଳାଗିଣ ସୁତନ୍ତ ॥ ୪୩ ॥
ପୁତ୍ରଙ୍କର ଅଧର ଧରି ମାତା ଶିରେ ଚୁମ୍ବନ ଦେଇ ।
କାଖେ ପାତ୍ରୀ ଗୃପି ଯାନ୍ତି ଦୁଇ ଭାଇ ॥ ୪୪ ॥
ଯାନ୍ତେଣ ସୀତସ୍ତ୍ରୀ ନିରେଖଇ ପଥ ।
ଦେଉଁ ମାତା ମୁଖ ଚୃହାନ୍ତି ବେନି ସୁତ ॥ ୪୫ ॥
ଅଦୃଶ ହୋଇଲେ ଯହୁଁ କୁମର ଲବକୁଶ ।
ଅ◌ସିଣ ସୀତସ୍ତ୍ରୀ ଦେବୀ ଦ୍ୱାରେଣ ପ୍ରବେଶ ॥ ୪୬ ॥
ଏ କଥା ଶୁଣି ପୁ◌ଇ ଦ୍ରୌପଦ ଦୁଲାଳୀ ।
ପୁତ୍ର କର୍ମା ଗୀତ ଗାଇ ପଠିଆନ୍ତି ଏ ବଡ଼ ଗହଳି ॥ ୪୭ ॥
ସ୍ୱାମୀର ବିଛେଦେ ସେ ଅଛଇ ମହାସତୀ ।
ପୁତ୍ରନ୍ତ ଦେଖି ତେଜିବ ନା ବିରସ ମତି ॥ ୪୮ ॥
ଯୁଗତେ ବାଳୁତ ଅଟନ୍ତି କୁମାର ।
ବିଶେଷେ ଅରଣ୍ୟବନ ମହାଘୋର ॥ ୪୯ ॥
କିପାଇଁ ନ ରୁହାନ୍ତି ଜନେକ ତପୋଧନ ।
ଏଥିର ଚରିତ ମୋତେ କହସି ମହାମୁନି ॥ ୫୦ ॥
କହନ୍ତି ମାରକଣ୍ଡେ ଦ୍ରୋପଦୀର ବଚନ ଶୁଣି ।
ଯାହା ସେ ପୁଚ୍ଛା କଲୁ ଦ୍ରୋପଦ ଦୁଲ୍ଲଣୀ ॥ ୫୧ ॥
ନି ଦଶେ ଦେବ ନିର୍ବାଣ କରିଛନ୍ତି ଯାହା ।
ମନୁଷ୍ୟ ଦେହେ କେ ଆନ କରିବ ତାହା ॥ ୫୨ ॥
ତେବେ ସେ ସବୁରି ନିପ୍ରସରଇ ମତି ।
ସକଳ ଶରୀରେ ଯେ ବସଇ ସରସ୍ୱତୀ ॥ ୫୩ ॥

---

୪୬. ଏହି ପଦ ପରେ ଖ ପୋଥିରେ ପୂର୍ବ ଅନୁଚ୍ଛେଦର ୬୭ ଠାରୁ ୭୧ ପଦ, ତାହା ପରେ ୭୩ ଠାରୁ ୭୬ ପଦ ଓ ତତ୍‌ପରେ ଏହି ଅନୁଚ୍ଛେଦ ଆରମ୍ଭର ୧ ଠାରୁ ୩ ପଦ ରହିଛି । ୪୯. ଅଟନ୍ତି—ଆବର (କ) । ୫୩. ନିପ୍ରସରଇ—ନିଗସରଇ ।

ସପଦ ବିପଦ ହୋଇବାକ ଯେଣେ ।
ବିଧାତା ବିହରଇ ନିଜ କର୍ମଗୁଣେ ॥ ୫୪ ॥

କୁମରନ୍ତ ଯେବେ ଦେଖଇ ଛନ୍ଦି ବର ସୁନ୍ଦରଇ ।
ତେତେବେଳେ ସୀତାଙ୍କୁ ଅନୁଆନ କରଇ ॥ ୫୫ ॥
ଦୁଇ ପୁତ୍ରନ୍ତ ସଙ୍ଗେ ଦେନି ଶ୍ରୀରାମଦେବ ।
ସୀତାଙ୍କୁ ଲେଉଡ଼ି ଜନେକ ରାଜ୍ୟକଇ ଯିବ ॥ ୫୬ ॥
ଶ୍ରୀରାମର ମୁଖ ଦେଖିବାକ ସତ୍ତା ଯେବେ ।
କୋପେ ସୀତା ଅବନିରେ ପଶିବାକ ତେବେ ॥ ୫୭ ॥

ଏସନେକ କାରଣେ ସେ ନିର୍ମିତ ବିଧାତ ।
ଆନ କରିବ ଗୋ ଦଇବର ପରାକୃତ ॥ ୫୮ ॥
ଶୁଣିଣ କୃଷ୍ଣା ଯେ ବିଧାତା ସୁମରି ।
ବିଶେଷି କରି ରାମାୟଣ କହସି ତପସ୍ୱୀ ॥ ୫୯ ॥
ମାରକଣ୍ଡେ କହନ୍ତି ଶୁଣସି ପଞ୍ଚାଳୀ ।
ହୁଅସି କୃତାର୍ଥ ଗୋ ଦ୍ରୋପଦର ଦୁଲାଳୀ ॥ ୬୦ ॥

ପଞ୍ଚୁ ପାଣ୍ଡବେ ସାବଧାନେ ଶୁଣ ।
ଦୁସହ ଶତ୍ରୁ ତୁମ୍ଭର ସମରେଣ କ୍ଷିଣ ॥ ୬୧ ॥
ସୀତାର ସନିଧୁ ଯେ ଲବକୁଶେ ଗଲେ ।
ଅଗମ୍ୟ ଗହନ ବନ ଭିତରେ ପଶିଲେ ॥ ୬୨ ॥
ଲବକୁମର କହଇ ଶୁଣି କୁରୁଣାଙ୍ଗ ।
କେବଣ କଟକ ଯିବା ଗୀତ ଗାଇ ॥ ୬୩ ॥
କୁଶକୁମର କହଇ ଆଜ କାମ୍ପା ପାସୋରିଲ ।
କାଲି ଯହୁଂ ବରୁଣ ହୋଇ ଗୀତ ଶୁଣାଇଲ ॥ ୬୪ ॥
ଆଜ ଦୁଇ ଭାଇ ତାହାଂକ ଯିବା ।
ରାମାୟଣ ଚରିତ ତାହାର ସମ୍ମୁଖରେ କହିବା ॥ ୬୫ ॥
ତୁମ୍ଭର କଥା ଶୁଣି ଉଦବେଗ ମୋହର ମନ ।
କେତେବେଳେ ଦେଖିବୁ ମହାତ୍ମାର ବଦନ ॥ ୬୬ ॥

କୁଶର କଥା ଶୁଣି ଲବ ହରଷ ହୋଇଲ ।
ଦକ୍ଷିଣ ବାଟକୁ ଆଗ ହୋଇ କଢ଼ାଇଲ ॥ ୬୭ ॥
ପବନ ହୁଂ ଦୁଇଭାଇ ବେଗମିଣ ଗଲେ ।
ଅଯୋଧ୍ୟା ନଗ୍ରେ ଯାଇ ପ୍ରବେଶ ହୋଇଲେ ॥ ୬୮ ॥

---

୫୫. ସୁନ୍ଦରଇ—ସୁନ୍ଦର(କ) ; ଅନୁଆନ କରଇ—ଅନୁମାନ କର(କ) ।
୫୭. ଅବନି—ଅଗ୍ନି (କ) । ୬୩-୬୭. ଏ ପାଞ୍ଚ ପଦ ଖ ପୋଥିରେ ନାହିଁ ।

ଦ୍ୱାରେ ପଶନ୍ତେ ଦ୍ରବ୍ୟ ରୂପ ଶୋହନ୍ତି ।
ଅତି ସୁଲକ୍ଷଣ କୁମାରେ ତିନି ଭୁବନ ମୋହନ୍ତି ॥ ୬୯ ॥
ଅଯୋଧ୍ୟା ସ୍ତ୍ରିଗଣେ କୁମାର(ନ୍ତ) ଦେଖିଲେ ଯହୁଁ ।
ଏକ ଘରେ ଆରେକ ପଶି କହନ୍ତି ତହୁଁ ॥ ୭୦ ॥
କେତେ ଠୋଇ ଖୁଡ଼ଇ ମାଉଂସୀ ପିଉସୀ ।
ସଖୀ ସଙ୍ଗାତୁଣୀ ବାଳକାଳର ବୟସୀ ॥ ୭୧ ॥
କେବେ ମିତଣୀ ଧୋଉକନା ବାହାର ।
କାଲି ଗୀତ ଗାଇଲ ଯେବଣ କୁମର ॥ ୭୨ ॥
ତାହାର ସଙ୍ଗାତ ସାଦ୍ରିଶ ଦିଶନ୍ତି ।
ଦୁଇ କୁମରେ ରାଜରେ ଯାଉଛନ୍ତି ॥ ୭୩ ।
ସଖୀମାନେ କହନ୍ତେ ନିଜ ବ୍ୟାପାର ଗ୍ରୁଡ଼ିଲେ ।
ଦୁଇପାଖେ କୁମରଙ୍କର ଧୁଳେ ଗୋଡ଼ାଇଲେ ॥ ୭୪ ॥
କୁଧ ସ୍ତ୍ରିଗଣ ଯେ ବଗଳାତ କେଶଇ ।
ଦୂରଭର ହୋଇ ଦେଖିତ ଆସଇ ॥ ୭୫ ॥
ବାଳୁତ ପୋଏ ଯେ ରାଜେ ଖେଳୁଥିଲେ ।
ଲବକୁମରଙ୍କର ପଛେ କୁଡ଼ା ଗ୍ରୁଡ଼ି ଗୋଡ଼ାଇଲେ ॥ ୭୬ ॥
ଜନଗହଳେ ଗଗନେ ଧୂଳି ଉଡ଼ୁଣ ଅଛଇ ।
କୁମରଙ୍କୁ ମଧ୍ୟକରି ସ୍ତ୍ରିଗିପୁରୁଷେ ଯାଉଛନ୍ତି ଆଗପଛ ହୋଇ ॥୭୭॥
ଯୋକେ କହନ୍ତି ବାବୁ ଏଥେ କ୍ଷଣେ ରହ ।
ଶଗ୍ଧର ତୋଷ କରି ରାମାୟେଣ କହ ॥ ୭୮ ॥
ଲବକୁମର କହଇ ଏଥେ ରହିବୁ କେସନେ ।
କାଲି ବଖାଣିଲୁ ଯାହାର ଭୁବନେ ॥ ୭୯ ॥
ବରଅଛୁ ଗୀତ ଶୁଣିବ ସେ କ୍ଷଣି ।
ତେଣୁ ସେ ଭାଇ ଗୋଟିକି ପେନି ଅଇଲୁ ମୁହୁଁ ଏଥି ॥ ୮୦ ॥
ଶୁଣିଣ ହରଷ ହୋଇ କହନ୍ତି ସର୍ବଜନ ।
ଗ୍ରୁଲ ହୋ ରାମାୟେଣ ଶୁଣିମା ଶ୍ରୀରାମ ସନ୍ନିଧାନ ॥ ୮୧ ॥
ଏସନେକ କହି ଗୋଡ଼ାବନ୍ତି ଚଉପାଶଇ ।
ହୁଡ଼ି ପଡ଼ନ୍ତେ କେ କୁମରଙ୍କର ଗୃହାନ୍ତି ମୁଖକଇ ॥ ୮୨ ॥

---

୬୯. ଶୋହନ୍ତି—ସୋଭନ୍ତି (କ) । ବୟସୀ—କୁଳବଂଶୀ(ଖ), ବଇଂସୀ (କ) ।
୭୪. ବ୍ୟାପାର—ବ୍ୟପାର । ୭୫. ବଗଳାତ—ବଳଗୁଳାତ (କ) ; ହୋଇ ଦେଖିତ—ଦେଖି ହୋଇତ । ୭୮. ରାମାୟେଣ—ରାବାୟଣ (ଖ) ।
୮୧. ରାମାୟେଣ—ରାବାୟଣ(ଖ) ।

## ଲବକୁଶଙ୍କର ରାମାୟଣ ଗାୟନ

ଏଥୁ ଅନନ୍ତରେ ଶୁଣ ହୋ ପଣ୍ଡୁର ନନ୍ଦନ ।
ପ୍ରାତସ୍ନାହାନ ରାମ ସାରିଲେ ବହନ ॥ ୧ ॥
ଦେବ ଦେବାର୍ଚ୍ଚନ ନିତ୍ୟକର୍ମଣି ଏ ନୀତ ।
ଚିନ୍ତୁଂଣ ଶ୍ରୀରାମ ବଶିଷ୍ଠଙ୍କୁ ହକାରନ୍ତ ॥ ୨ ॥
ସୁମନ୍ତ ସାମନ୍ତଙ୍କୁ ତତକ୍ଷଣେ ରୁହାଇ ।
ଶ୍ରୀରାମର ସମ୍ମୁଖରେ ଅଛନ୍ତ ଦୃଇଭାଇ ॥ ୩ ॥
ତପୀ ବିପ୍ରଜନ ବୈଷ୍ଣବ ଭଗବନ୍ତ ।
ଆହ୍ଵାନକୁ ବିଜେ କଲେ ରଘୁବଂଶ ରାଜନ ॥ ୪ ॥
ବଶିଷ୍ଠଙ୍କର ମୁଖ ଗୃହଂ ପଗୃରନ୍ତ ରାମରାଣ ।
ଶ୍ୱେ ମୁନି ଶୁଣସି ମୋହର ବଚନ ॥ ୫ ॥
କାଲ୍ ଯେ ବାଳୁତ ଗୋଟି ଗୀତ ଗାଇଲା ।
ଏତେବେଳ ହୋଇଲା କିମ୍ପାଇ ନଇଲା ॥ ୬ ॥
ମୋହର ଆଗେ କହିଲା ପୂଣ୍ୟବତୂଣୀର ପୁତ୍ର ।
ଆସିବ ଅବଶ୍ୟ ଏଥ ରଜନୀ ପ୍ରଭାତ ॥ ୭ ॥
ବଶିଷ୍ଠେ କହନ୍ତ ଶୁଣ କ୍ଷତ୍ରିବର ସୁନ୍ଦର ।
କିମ୍ପାଇ ନ ଆସିବ ସେ ଧାର୍ମିକ କୁମର ॥ ୮ ॥
ଶାସ୍ତ୍ର କହିବାକୁ ହୋଇଅଛୁ ବରଣ ।
ବେଗ ନୋହଇ ଆସିବ ଏହିକ୍ଷଣ ॥ ୯ ॥
ଶ୍ରୀରାମ କହନ୍ତ ଶୁଣସି ତପୋଧନ ।
ସେ କୁମରକୁ ନ ଦେଖି ଅସ୍ଥିର ମୋର ମନ ॥ ୧୦ ॥
ବଶିଷ୍ଠେ କହନ୍ତ ପୂର୍ବେ ଅଭ୍ୟାସ ଯାହାରଇ ।
ସେ ସେ ରାମାୟେଣ କହିତ ପାରଇ ॥ ୧୧ ॥
ଶତେକୋଟି ଜନ୍ମର ପାତେକ ହୁଅଇ ନାଶ ।
ଶ୍ରୋତାବକତା ବିଷ୍ଣୁପୁରେ ବାସ ॥ ୧୨ ॥
ଲକ୍ଷ୍ମଣ ହକାରି କହନ୍ତ ରଘୁପତ ।
ବାଟକୁ ଯାଅ ତୁ ସେ ଆସଇ କେହୁ କତ ॥ ୧୩ ॥

---

୪. ଭଗବନ୍ତ—ଭଗବାନ (କ) । ୭. ଅବଶ୍ୟ—ଅବଶ ; ରଜନୀ—ରୟୁଣୀ(ଖ) । ୮–୯. ଏ ଦୃଇ ପଦ ବଦଳେ ଖ ପୋଥିରେ ଅଛୁ :— ବଶିଷ୍ଠେ ବୋଲନ୍ତ ଶୁଣସି ନୃପତ । କାହାର କୁମର ସେ କାହାର ସନ୍ତତ ॥ ବିଶେଷେ ଭିକ୍ଷାସି ବାଳୁତ ଚଞ୍ଚଳବୁଦ୍ଧି । ଯହିଂ ସେ ପୌରୋଷ ମାଆନ୍ତ ସୁଗ୍ୟଂ ନିଧି ॥ ଆବର ବିଶେଷେ ବେଳ ହୁଅଇ ନଆଇଂ ଉତ୍ତର । ଆସଇ କି ନୁଆସଇ ପ୍ରଦେଶୀ କୁମର ॥ ୧୧. ରାମାୟେଣ—ରାବାୟଣ(ଖ) ।

ଶ୍ରୀରାମର ଆଜ୍ଞାଂ ସେ ପାଇଲେକ ଯହୁଂ ।
ସଭାରୁ ଉଠି ଲକ୍ଷ୍ମଣ ଗଲେକ ସେ ତହୁଂ ॥ ୧୪ ॥
ପୁର ନରନାରୀ ବେଢ଼ି ଗୋଡ଼ାଇ ଅଛନ୍ତି ।
ତାହାଂର ମଧ୍ୟରେ ଦୁଇଭାଇ ଆସନ୍ତି ॥ ୧୫ ॥
[ଜନଗହଳ ଦେଖିଣ ମହାବୀର ।
ବେଗେଣ ଆସି ମିଳଇ କୁମାରଙ୍କ କଡର ॥ ୧୬ ॥
ନିରେଖଇ ବେନିକୁମାର ମଧ୍ୟେଣ ଅଛନ୍ତି ।
କାକୁସ୍ଥ ନନ୍ଦନ ଏକରୂପ ଦିଶନ୍ତି] ॥ ୧୭ ॥
ଲବକୁ କୋଳ କରଇ ସୁମିତ୍ରା ନନ୍ଦନ ।
ଶରୀର ଆଶ୍ଵାସି ଶିରେ ଦେଲେକ ଚୁମ୍ବନ ॥ ୧୮ ॥
ଆସିବାର ତୋହର ବିଳମ୍ବ ହି କଲୁ ।
କାହାର ପୁନକୁ ଭୁଲେଣ ଆଣିଲୁ ॥ ୧୯ ॥
ଲବକୁମର କହଇ ଏ ମୋର ସାନ ଭାଇ ।
ଏକ ଗର୍ଭରୁ ଆମ୍ଭେ ଉତପତ୍ତି ହୋଇ ॥ ୨୦ ॥
ଶୁଣି ଲକ୍ଷ୍ମଣ ଯେ ହୋଇଲେ ହରଷଇ ।
ତହୁଂ ଦୁଇ ଭାଇନ୍ତ ଘେନି ଆସ୍ଥାନକୁ ଆସଇ ॥ ୨୧ ॥
ଦୁଇ କୁମାରଙ୍କର ଭୁଜ ଭୁଜେ ଧଇଲେ ।
ଶ୍ରୀରାମର ସନ୍ନିଧ୍ୟେ ଆଣି ତାହାଙ୍କି ଉଭା କଲେ ॥ ୨୨ ॥
ଲବକୁମର ମୁଖ ଗୁହାଂଣ ଶ୍ରୀରାମ ।
କୋମଳ ବଚନେ ସେ ବୋଲନ୍ତି ବଚନ ॥ ୨୩ ॥
ଏକ ରୂପ ଏକ ବୟସ ଦିଶନ୍ତି ।
ସଭାଲୋକ ଦେଖି ମୋହେ ବଶ ହୋନ୍ତି ॥ ୨୪ ॥
ଶିରେଣ ଲମ୍ବାବେଣୀ ଅନୁପାମ ଦିଶଇ ।
କପୋଳେ ଚନ୍ଦନଫୋଟି ନକ୍ଷତ୍ର ଜାଣି ଝକାଶଇ ॥ ୨୫ ॥
ପୂର୍ଣ୍ଣିମୀର ଚନ୍ଦ୍ର ଜାଣି ବଦନମଣ୍ଡଳ ।
ବେନି ନୟନ ଦିଶଇ ଯେସନ ସମୁଦ୍ର ଉଚ୍ଛଳ ॥ ୨୬ ॥
ନାସିକା ଦିଶଇ ଗରୁଡ଼ ଚଞ୍ଚୁ ଜାଣି ।
କ୍ଷୁଦ୍ରମୋତି ଦନ୍ତପନ୍ତି ପରମାଣି ॥ ୨୭ ॥
କର୍ଣ୍ଣ ଦୁଇ ହାନ୍ଦୋଳ ସ୍କନ୍ଧେଣ ଲାଗଇ ।
ହାବଡ଼ ସୁସଞ୍ଚ ଦିଶଇ ହୃଦୟ ଭାଗଇ ॥ ୨୮ ॥

---

୨୨. ଭୁଜଭୁଜେ—ଭୁଜେ ଭୁଜ(କ) । ୨୫. ଅନୁପାମ—ଅନୁପାସ । ୨୭. ଗରୁଡ଼ ଚଞ୍ଚୁ—ସୁବର୍ଣ୍ଣରସାଣ(କ) ।

ସୁଷମ ବାଲୁତକେଶଙ୍କ ଯେସନେକ ମଣ୍ଟା ।
ଆନ ପଟାନ୍ତର ନାହିଁ ଆନ ଦୂଜା ॥ ୨୯ ॥
ପ୍ରଲମ୍ବ ସୁସଗ୍ଧ ଦୁହିଙ୍କର ଭୁଜଇ ।
ଚମ୍ପାକଢ଼ି ସାଦୃଶ ଦଶଇ ପାଣିଜଇ ॥ ୩୦ ॥
ଦୁଇ ଭାଇଙ୍କର ଜାନୁ ଜଳଟ ରମ୍ଭାଇ ।
ତରୁଣ ସୁନ୍ଦର ଦୁହିଙ୍କର ପଦ୍ମର ପଲ୍ଲବଇ ॥ ୩୧ ॥
ଏକ ଭାଇର ସେ ମୁହଁକୁ ଗୁହିଁ ।
ସେ ସାନ କେ ବଡ଼ ଦୁହିଙ୍କି ନୋହଇ କହି ॥ ୩୨ ॥
[ଏକ ରୂପ ଏକ କୁମର ଏକ ବେନି ବୟସ ।
ସଭାଜନେ ଗୁହିଁଣ ଚଉ ପରମ ତୋଷ] ॥ ୩୩ ॥
ଲବକୁମର ହସ୍ତ ଧରେଣ ଅଣିଲେ ।
ସନ୍ନିଧେ ବସାଇ ଶ୍ରୀରାମ ପଚାରିଲେ ॥ ୩୪ ॥
ଏ ତନୟ କୋଉଠି ତୋହର ହୋଏ କହ ।
ତୁହ୍ମେ ଦୃଶ ତ ଏକଇ ସାଦୃଶ ॥ ୩୫ ॥
ଲବକୁମର କହଇ ଆମ୍ଭର ଏକ ଜନନୀ ।
ଯାମଳ ହୋଇ ଜନ୍ମିଲୁ ଭାଇ ବେନି ॥ ୩୬ ॥
ମୁହିଁ ଜ୍ୟେଷ୍ଠ ଏ ମୋହର କନିଷ୍ଠ ।
ଶାସ୍ତ୍ର ଜକତ କରଇ ଏ ମୋହର ତହୁଁ ଗରିଷ୍ଠ ॥ ୩୭ ॥
ଶାସ୍ତ୍ର କହିବାକୁ ବରୁଣ ହୋଇଲ ।
ତେବେ ସେ ଏକା ହୋଇ ମୁଁ ଦେନଣ ଅଇଲ ॥ ୩୮ ॥
ଶୁଣିଣ ହରଷ ହୋଇ କହନ୍ତ ରୂପହସ୍ତା ।
ଧନ୍ୟ ତୁମ୍ଭର ଜନନୀ ଧନ୍ୟ ତୁମ୍ଭର ପିତା ॥ ୩୯ ॥
କୁଶକୁମରକୁ ସନ୍ନିଧିକୁ ଆଣି ।
ଊରୁମୂଳେ ବସାଇଲେ କୋଦଣ୍ଡରୂପପାଣି ॥ ୪୦ ॥
ତହୁଁ ଦୁଇ ଭାଇ ତୁରିତେ ଉଠନ୍ତି ।
ବଶିଷ୍ଠଙ୍କର ପଦ୍ମର ଧରି ପ୍ରଣମ୍ୟ କରନ୍ତି ॥ ୪୧ ॥
କଲ୍ୟାଣ କରନ୍ତି ପିତାମହର ସୁତ ।
ରାଜ୍ୟଧର ତୁମ୍ଭେ ହୁଅ ବେନି ଭ୍ରାତ ॥ ୪୨ ॥
ଅବଶ୍ୟ ଇଷ୍ଟ ପୂରୁ ଦୁହେଁ ଲଭ ଶୁଭକାର୍ଯ୍ୟ ।
ମହୀମଧ୍ୟେ ଚକ୍ରବର୍ତ୍ତୀ (ହୋଇ) ବିପୁଳ ଭୋଗ ଭୁଞ୍ଜ ॥ ୪୩ ॥

---

୩୦. ଚମ୍ପାକଢ଼ି—କନେକଚମ୍ପା(ଖ) । ୩୭-୩୮. ଏ ଦୁଇପଦ ଖ ପୋଥିରେ ନାହିଁ । ୪୦. ପଦଟି ଖ ପୋଥିରେ ନାହିଁ । ୪୩. ଅବଶ୍ୟ ଇଷ୍ଟ ପୂରୁ ଦୁହେଁ ଲଭ—ଅବଶ୍ୟ ଷ୍ଟପୂରଦୁଲ୍ଲଭ(କ) ।

କୁମରଙ୍କୁ କହନ୍ତି ବଶିଷ୍ଠ ମୁନିବର ।
ବାବୁ ହେ ବ୍ରାହ୍ମଣ ବୋଲି ଯେ ମୋତେ ହୋଇଲେ ନମସ୍କାର ॥ ୪୪ ॥
ଏ ନଗରେ ତ ହୋଇବ ନୃପତି ।
ଏହାଙ୍କୁ ନମସ୍କାର କରିବାର ହୁଅଇ ଯୁଗତି ॥ ୪୫ ॥
ବସ୍ତୁର ତେବେ ସେ ହୋଇଲ ରାଜା ।
ନୃପତିଙ୍କି ସକଳ ଲୋକେ କରନ୍ତି ପୂଜା ॥ ୪୬ ॥
ବାଳୁତ ହୋଇ ତୁମ୍ଭେ ଶାସ୍ତ୍ର ଉଚ୍ଚାର କର ।
ତୁମ୍ଭର ଆଗରେ କିସ କହିବି ବିସ୍ତର ॥ ୪୭ ॥
ମୋହରେ ପ୍ରଣମ୍ୟ ହୋଇ ବନ୍ଦ ଯେବେ ।
ରାଜାଙ୍କୁ ନମସ୍କାର ହୋଇବ ନା ଏବେ ॥ ୪୮ ॥
ବଶିଷ୍ଠଙ୍କର ବଚନ ଯହୁଁ ସେ ଶୁଣିଲେ ।
ଶ୍ରୀରାମର ସନ୍ନିଧେ ଯାଇ ଶିରେ ହସ୍ତ ଦେଲେ ॥ ୪୯ ॥
ମଥା ଆଉଁସି କଲ୍ୟାଣ କରନ୍ତି ରଘୁପତି ।
ମନବାଞ୍ଛା ଲଭ ଅଇଶ୍ୱର୍ଯ୍ୟ (ହୋଉ) ବର୍ଦ୍ଧିତ ॥ ୫୦ ॥
ହାତ ଧରି କୁମରଙ୍କୁ ସନ୍ନିଧେ ବସାବନ୍ତି ।
ରାମାୟେଣ କହ ବୋଲି ଲବକୁମରଙ୍କୁ ପୁଚ୍ଛନ୍ତି ॥ ୫୧ ॥
କାଲି ଯେଉଁ କଥା କଲୁ ତୁ ପ୍ରକାଶ ।
ଲୋମପାଦ ନଗରେ ଋଷିଶୃଙ୍ଗ ପ୍ରବେଶ ॥ ୫୨ ॥
ରାଜ୍ୟରେ ଇନ୍ଦ୍ର ଯାହାର ବରଷିଲେ ଯହୁଁ ।
ଋଷିଶୃଙ୍ଗ ମହାଋଷି କିସ କଲେ ତହୁଁ ॥ ୫୩ ॥

## ଶାନ୍ତା ବିବାହ

ଶ୍ରୀରାମ ବଚନ ଯହୁଁ ଲବକୁମର ଶୁଣିଲା ।
ସୁଧୀର ସୁଧୀର କରି ନାଦ ହୁଂକାରିଲା ॥ ୧ ॥
କୁଶକୁମର ନାଦ ଧରି ଦୋହା ନାଦ ଧନାଶ୍ରୀ ।
ନାଦ ମିଳନ୍ତେ କଣ୍ଠେ ସରସ୍ୱତୀ ବସି ॥ ୨ ॥
ଶରଦ କୋକିଳ ଯେସନ ଶୁଭଇ ଦିବ୍ୟ ବାଣୀ ।
ତବଦ ହୋଇଲେ ଯେ ସଭ୍ୟଲୋକେ ଶୁଣି ॥ ୩ ॥
[ନଗର ସକଳ ଲୋକ ଗୋଡ଼ାଇ ଯାଇଥିଲେ ।
ସଭାର ତଳେଣି ସେହୁ ବେଢ଼ିଣ ରହିଲେ] ॥ ୪ ॥

---

୪୬-୪୮. ଏ ତିନି ପଦ ଖ ପୋଥିରେ ନାହିଁ । ୪୮. ବନ୍ଦ—ବିନ ।
୫୧. ରାମାୟେଣ—ରାବାୟଣ । ୫୩. କିସ କଲେ ତହୁଁ—କିମ୍ପା କଲେ କହୁଁ(କ) । ୨. ଧନାଶ୍ରୀ—ନାଶି (କ) ।

ତୈଳରେ ଯେସନେ ପଙ୍କଜ ନ ଛୁଣ୍ଟ ।
ଏକୁ ଆରେକ ନ କହନ୍ତି କାହୁଁ ॥ ୫ ॥
ଯେ ଅବା ତାହାଂ ସମାସ୍ୟା ଦେଉଥିଲା ।
ତାହାର ମୁଖରେ ନେଇ ଆର ଶ୍ଳୋକ ଦେଲା ॥ ୬ ॥
ଦେବଙ୍କୁ ବନ୍ଦନା ଲବକୁମର କଲା ।
ଦୁର୍ଗା ଗଣପତିଙ୍କ ସରସ୍ୱତୀଙ୍କ ବନ୍ଦିଲା ॥ ୭ ॥
ହରି ହର [ବିରଞ୍ଚି—] ନାରାୟଣଙ୍କୁ କରଇ ସ୍ତୁତି ।
ଦଶ ଦିଗପାଳଙ୍କୁ ବନସ୍ତେ ଭଗତି ॥ ୮ ॥
ବଚନ ରାମାୟଣେ ଲବକୁମର କହଇ ।
କୁଶକୁମର ତାହା ଅର୍ଥ କରଣ ବଖାଣଇ ॥ ୯ ॥
ଲୋମପାଦ ନୃପେ ଥାନ୍ତେ ଋଷିଶୃଙ୍ଗ ମୁନ୍ୟ ।
ଅନେକ ଭଗତି ହୋଇ ସେବା କରଇ ରାଜନ ॥ ୧୦ ॥
ଏସନେକେ କେତେହେ ଦିବସ ଗଲା ।
ସମସ୍ତ ଭାର୍ଯ୍ୟାଙ୍କୁ ରାଜା ସନଧିକୁ ହକାରିଲା ॥ ୧୧ ॥
ଶାନ୍ତନ୍ତା କନ୍ୟା ଯେ ନନରେ ତାହାର ଅଛି ।
ତାହାଙ୍କୁ ସନ୍ନିଧେ ରାଇ ଲୋମପାଦ ପୁଛି ॥ ୧୨ ॥
ଯାହାଂର ଅର୍ଥେ ଏଥକୁ ଆଣିଲାଇ ତୋତେ ।
ମୋହର ସନ୍ନଧକୁ ପଠାଇଲେ ତୋହର ତାତେ ॥ ୧୩ ॥
ଉପାୟେ କରି ଋଷିଶୃଙ୍ଗଙ୍କୁ ଅଣାଇଲି ଯେବେ ।
ମୋହର ରାଜ୍ୟ ବୃଷ୍ଟି ହୋଇଲାନ ଏବେ ॥ ୧୪ ॥
ତୁହି ଯାଇ ଋଷିଙ୍କ ଦରଶନ କରସି ।
ଜପ ବଗ୍ରଇ ସେ ବିଭାଣ୍ଡେକର ଶିଷି ॥ ୧୫ ॥
ଏ ମୋହର ରାଣୀଙ୍କର ସଙ୍ଗତେଣ ଯିବୁ ।
ବନସ୍ତେ ଉପଗତେ ଋଷିଙ୍କି ପ୍ରଣମ୍ୟ କରିବୁ ॥ ୧୬ ॥
ଶୁଣି ଶାନ୍ତନ୍ତା କନ୍ୟା ହରଷ ହୋଇଲା ।
ରାଣୀଙ୍କର ସଙ୍ଗତେ ଋଷିଙ୍କର ସନଧ୍ୟକୁ ଗଲା ॥ ୧୭ ॥
ଯାହାଂ ସେ ଅଛନ୍ତି ବାଳୁତ ତପୋଧନ ।
ପଣତ ପାଡ଼ି ଓଳଗନ୍ତି ସକଳ କାମେଣୀ ॥ ୧୮ ॥
ଶ୍ରୀଫଳ ପୁଷ୍ପ ଥୋଇ ଶାନ୍ତନ୍ତା ଋଷିର ପାଦେ ନମଇଂ ।
ଦେଖି ତପୋଧନ ମନମତ ଭ୍ରମଇଂ ॥ ୧୯ ॥

୭. ପଦଟି ଖ ପୋଥିରେ ନାହିଁ । ୯. ପଦଟି ଖ ପୋଥିରେ ନାହିଁ ; ଲବକୁମର— ଲବକୁସ(=ଲବକୁମ୍ର ?) । ୧୪. ପଦଟି ଖ ପୋଥିରେ ନାହିଁ ।

ହରଷେଣ ଋଷି କଲ୍ୟାଣ କରନ୍ତୁ ।
ସୁଲକ୍ଷଣୀ ହୁଅ ତୁମ୍ଭେ ସକଳ ଗୁଣବତୀ ।। ୨୦ ।।
ଶାନ୍ତା କନ୍ୟାର ମୁଖ ଚାହାଂଣ ମହାମୁନ୍ୟ ।
ମଦନ ରଙ୍ଗେ ଆତ୍ମା ହୋଇଲା ଛନ ଛନ ।। ୨୧ ।।
କିଛି ଦୂରେ ଥିଲେ ଯେ ଲୋମପାଦ ରାୟେ ।
ଅନ୍ନଧକୁ ହକାରି ପୁଛଇ ବିଭାଣ୍ଡେକର ତନୟେ ।। ୨୨ ।।
ଏ କନ୍ୟା କେବଣ ଯୁବତୀର ଦୋହିତା ।
କହସି ହୋ ରାଜନ ସ୍ୱରୂପ ବ୍ୟବସ୍ଥା ।। ୨୩ ।।
ଲୋମପାଦ କହଇ ଶୁଣସି ମୁନିବର ।
ଦଶରଥ ଅପୁତ୍ରିକ ସେ କନ୍ୟା ପିଅର ।। ୨୪ ।।
ଋଷିଶୃଙ୍ଗ କହନ୍ତି ଶୁଣସି ନୃପତି ।
କିସ ବିଚାରୁ ତୋହର କେବଣ ଯୁଗତି ।। ୨୫ ।।
ପର ଦୋହିତା ହୋଉ କି ଆତ୍ମା ଜାତ ହୋଉ ଏ କୁମାରୀ ।
ଯୁବା କନ୍ୟା ଘରେଣ ଥୋଇ ତ ନ ପାରି ।। ୨୬ ।।
ଯଦ୍ୟପି ସେ ଧର୍ମ ଆଗ୍ରହେଣ ଥାଇ ।
ବହୁତ ମୁଖେ ସେ ଅପମାନ ପାଇ ।। ୨୭ ।।
ତୁହି ବିଚକ୍ଷଣ ବିଧଂସ ରାଜନ ।
କହସି ମୋହର ଆଗେ ସ୍ୱରୂପ ବଚନ ।। ୨୮ ।।
ବେନି କର ଯୋଡ଼ି କହଇ ନୃପବର ।
ହେ ମୁନି ଦଶରଥ ନୃପତି ମଇତ୍ର ମୋହର ।। ୨୯ ।।
ତାହାର କୋଳେ ପୁତ୍ର ଜାତ ନାହିଁ ।
ମୁହିଁ ଅପୁତ୍ରିକ ହୋଇଲି ଗୋସାଇଁ ।। ୩୦ ।।
ଦୁହେଁ ଅପୁତ୍ରିକ ଶୁଣସି ହେ ମୁନି ।
[ଦୁଇ] ମଇତ୍ରଙ୍କର ଘରେ ଏକା ଏହି ନନ୍ଦନୀ ।। ୩୧ ।।
ତେମନ୍ତେ ସେ କନ୍ୟାକୁ ମୁହାଂସ କରୁ ।
ଏହା ମୁଖ ଦେଖି ଦୁନ ଅପହରୁ ।। ୩୨ ।।
ଶୁଣି ହରଷ ହୋଇ ପୁଛଇ ଶୃଙ୍ଗଋଷି ।
କାହାଂର ରାଜା ଦଶରଥ କେବଣ କୁଳବଂଶୀ ।। ୩୩ ।।
ଲୋମପାଦ କହଇ ଶୁଣସି ତପୋଧନ ।
ସୂର୍ଯ୍ୟବଂଶେ ବିଖ୍ୟାତ ବିଦ୍ୟମାନ ।। ୩୪ ।।

---

୨୧. ମଦନରଙ୍ଗେ—ବଦନବରଙ୍ଗ(କ) । ୨୭. ପଦଟି ଖ ପୋଥିରେ ନାହିଁ ।
୩୨. ଏହା—ଏକା ।

ଧାର୍ମିକ ଶୂରବନ୍ତ ବୀରବରପଣ ।
ତୁରେ ସେବା କରନ୍ତି ସକଳ ନୃପଗଣ ॥ ୩୫ ॥
କର୍ମର ଗୁଣେ ଯେ ପୁତ୍ର ଜାତ ନୋହିଲ ।
କୂଳମଣ୍ଡନକୁ ଏକା ଦୁହିତା ଉପୁଜିଲା ॥ ୩୬ ॥
ପୃଥୀର ରାଜାଏ କେହୁ ନୋହନ୍ତି ତାକୁ ସର ।
ତେଣୁ ଅବଘ୍ଲଇ ତ ଏହୁ କୁମାରୀ ॥ ୩୭ ॥
ଲୋମପାଦର ବଚନ ଶୁଣି ମୁନିବର ତୋଷ ।
ବୋଇଲେ ପବିତ୍ର ବଂଶ ଯେବେ ହୋଇଲା ସୂର୍ଯ୍ୟବଂଶ ॥ ୩୮ ॥
କନ୍ୟାକୁହି ମୁହିଂ ବଶ୍ୟ ହୋଇବି ।
ଦଶରଥକୁ ଏଥକୁ ଅଣାଇମୁ ଦୂତ ବରଗିବ ॥ ୩୯ ॥
ଶୁଣି ଲୋମପାଦ ତୋଷେ ହରଷ ହୋଇଲା ।
ପାତ୍ରମନ୍ତ୍ରୀକି ତତକ୍ଷଣେ ହକାରିଲ ॥ ୪୦ ॥
ବିଶ୍ୱାସପାତ୍ର ମୋହର ତୁମ୍ଭେ ଯେଇଯିବ ।
ଅଯୋଧ୍ୟା ନଗ୍ରେଣ ଶୀଘ୍ରେଣ ମିଳିବ ॥ ୪୧ ॥
ମଇସଙ୍କୁ କହିବ ଋଷିଙ୍କର ଅଇଲା ଏଥି ।
ତୁମ୍ଭଙ୍କୁ ଏଥକୁ ମୁନି ଆଣ ହୋ ବୋଲନ୍ତି ॥ ୪୨ ॥
କଉଶିକ ଭଗଦତ୍ତ ଦୁଇ ପାତ୍ରମନ୍ତ୍ରୀ ।
ରହିବର ଆରୋହି ତତକ୍ଷଣେ ଯାନ୍ତି ॥ ୪୩ ॥
ବଂଶ ଦ୍ରବସେଣ ପଥ ବାହି ଗଲେ ।
ଅଯୋଧ୍ୟା ନଗ୍ରେଣ ଯେ ପ୍ରବେଶ ହୋଇଲେ ॥ ୪୪ ॥
ସିଂହଦ୍ୱାରେଣ ବିଶ୍ରାମିଲେ ଯାଇ ।
ଡଗର ତତକ୍ଷଣେ ନୃପତିଙ୍କି ଜଣାଇ ॥ ୪୫ ॥
ଅଙ୍ଗଦେଶର ଅମନାତ୍ୟ ଦ୍ୱାରେଣ ଅଛୁ ରହି ।
ସ୍ୱରୂପ ବଚନ ଭୋ ଦେବ ଜଣାଇଲି ମୁହିଂ ॥ ୪୬ ॥
ଶୁଣି ଦଶରଥ ଅନେକ ହରଷ ହୋଇଲା ।
ସିଂହାସନେ ନୃପତି ତତକ୍ଷଣେ ବିଜେ କଲା ॥ ୪୭ ॥
ବଶିଷ୍ଠ ମହାଋଷିକି ସନଧେ ହକାରି(ଲା) ।
ସୁମନ୍ତ୍ର ସହିତେଣ ଗ୍ରୁମୁରେ ମିଳିଲା ॥ ୪୮ ॥
ପାତ୍ର ମନ୍ତ୍ରୀ ଅମନାତ୍ୟ ଆଇଲେ ପାଶଇ ।
ସମ୍ଭବେଣ ନୃପତି ଦଶରଥ ଆସ୍ଥାନେଣ ବସଇ ॥ ୪୯ ॥
ଦ୍ୱାରପାଳକୁ ଆଜ୍ଞାଂ ଦେଲକ ମହୀପତି ।
ହକାରି ଘେନ ଆସ ଅଙ୍ଗଦେଶର ପାତ୍ରମନ୍ତ୍ରୀ ॥ ୫୦ ॥

୩୭. ଅବଘ୍ଲଇ—ସେବଘ୍ଲଇ ।

ରାଜାର ଅଗ୍ୟାଂରେ ଦ୍ୱାରପାଳ ଗଲା ।
ଅଙ୍ଗଦେଶର ପାତ୍ରମନ୍ତ୍ରୀ ନେଇ ଅସ୍ଥାନେଣ କଲା ॥ ୫୧ ॥
ବଶିଷ୍ଠ ମହାମୁନଙ୍କି ପ୍ରଣମ୍ୟ କରନ୍ତୁ ।
ଦଶରଥ ନୃପତଙ୍କି ନମସ୍କାର ହୋନ୍ତୁ ॥ ୫୨ ॥
ଲୋମପାଦର ଲେଖନ ଦଶରଥର ସ୍ରମୁରେ ଦେଲେ ।
କର ଯୋଡ଼ ଦୁହେଁ ଉଷ୍ଣ ହୋଇଲେ ॥ ୫୩ ॥
ଲୋମପାଦର ଲେଖନ ଦଶରଥ ହସ୍ତରେ ଘେନାଲା ।
ପଢ଼ ବୋଲି ସୁମନ୍ତ୍ର ହସ୍ତେ ନେଇ ଦେଲା ॥ ୫୪ ॥
ମୁଦ ଭାଙ୍ଗି ପଢ଼ି କହଇ ସୁମନ୍ତ୍ର ।
ଲେଖର କଥା ଶୁଣ ନୃପନାଥ ॥ ୫୫ ॥
ଅଙ୍ଗଦେଶକୁ ଋଷିଶୃଙ୍ଗ ଅଇଲା ।
ତାହାର ବଚନ ମାତ୍ରକେ ଜଳବୃଷ୍ଟି ହୋଇଲା ॥ ୫୬ ॥
ଶାନ୍ତା କନ୍ୟାକୁ ଦେଖିଲେକ ଯହୁଂ ।
ବଶ ହୋଇତ ମୁନ ବଗୃର କରଇ ତହୁଂ ॥ ୫୭ ॥
ବେଗେ ଆସସି ମଇତ୍ର ମୋହର ଭୂବନ ।
ଏସନେକ ଚଶସ ଦେବ ଲେଖର ଲେଖନ ॥ ୫୮ ॥
ଶୁଣି ଦଶରଥ ପାତ୍ରମନ୍ତ୍ରୀ ମୁଖ ଗୃହୁଂ ।
ଭଗଦତ୍ତ କହଇ ଦେବ ସ୍ୱରୂପ ବଚନ ଏହୁ ॥ ୫୯ ॥
ଶୀଘ୍ରେଣ ଆସ ଆମ୍ଭର ରାଜ୍ୟକୁ ଯିବା ।
ତୋହର ଦୋହିତା ମୁନଙ୍କି ବଭ କରାଇବା ॥ ୬୦ ॥
ଏସନେକ କଥା ଯହୁଂ ବଶିଷ୍ଠେ ଶୁଣିଲେ ।
ଦଶରଥକୁ ମୁନ ହରଷ ହୋଇ କହୁଲେ ॥ ୬୧ ॥
ଏବେ ସେ ତୋହର ଦୁଷ୍କୃତ ପାର ଗଲା ।
ବଭାଣ୍ଡେକର ପୁତ୍ର ଯେବେ ଅଙ୍ଗ ଦେଶକୁ ଅଇଲା ॥ ୬୨ ॥
ଏହୁକ୍ଷଣି ନୃପତ୍ତ ଶୀଘ୍ର ହୋଇ ଯାସି ।
ସେ ତପୋଧନକୁ ତୋହର କନ୍ୟା ବଭାଏଣ ଦେସି ॥୬୩॥
ତତକ୍ଷଣେ ସଜ ହୋଇଲେ ଦଶରଥ ନୃପମଣି ।
ବଭାକୁ ଯେସନ ବେଭାରମାନ ଘେନ ॥ ୬୪ ॥
ଅନେକ ଧନରତ୍ନ ଆଭରଣ ବସନ ।
ମନର ହରଷେ ଘେନାଲେକ ରାଜନ ॥ ୬୫ ॥
ଉତ୍ତମ ରଥ ବାଜି ମସ୍ତେମତ୍ତ ଗଜ ।

---

୫୪. ଦଶରଥ—ଦସରଥର । ୬୫. ଏ ପଦଟି ଖ ପୋଥିରେ ନାହିଁ ।

ଅଙ୍ଗଦେଶକୁ ପ୍ରସ୍ଥାଣ କରଇ ମହାରାଜ ॥ ୬୬ ॥
ରାତ୍ର ଦିବସେ ଆଉ ଚଳାଇଲ ।
ଦଶ ଦିବସେ ଅଙ୍ଗଦେଶେ ପ୍ରବେଶ ହୋଇଲ ॥ ୬୭ ॥
ନଗରେ ନୃପତି ହୋଇଲେ ପ୍ରବେଶ ।
କୋଳାଲିଙ୍ଗି କରି ଲୋମପାଦ ପ୍ରକାଶ ॥ ୬୮ ॥
ଭୋ ମଇତ୍ର ମୋହର କଷ୍ଟ ପାରି ଗଲା ।
ଋଷିଶୃଙ୍ଗ ପ୍ରବେଶେ ମୋହର ରାଜ୍ୟରେ ବରଷଣ ହେଲ ॥ ୬୯
ସୁସ୍ଥ ହୋଇଲେ ମୋହର ପ୍ରଜାଇତ ଜନ ।
ଏବେ ବାଳୁତ ଯତିକି ଆସ କରିବା ଦର୍ଶନ ॥ ୭୦ ॥
ଶୁଣିଣ ଦଶରଥ ହରଷ ହୋଇଲ ।
ହସ୍ତ ଧରି ଲୋମପାଦ ମୈତ୍ରକୁ ଘେନଗଲ ॥ ୭୧ ॥
ଯହିଁ ସେ ଋଷିଶୃଙ୍ଗ ବସିଣ ଅଛନ୍ତି ।
ପ୍ରଣମ୍ୟ କରି ସ୍ତୁତିଲ ଦଶରଥ ନୃପତି ॥ ୭୨ ॥
ଋଷିଶୃଙ୍ଗ ପଚାରନ୍ତି ଲୋମପାଦର ମୁଖ ଚାହିଁ ।
କିସ କାର୍ଯ୍ୟେ ଏ ପୁରାତନ ଅଇଲା ଏ କାହିଁ ॥ ୭୩ ॥
ଲୋମପାଦ କହଇ ଶୁଣସି ମହାମୁନ୍ୟ ।
ଏହି ପିନା ସୂର୍ଯ୍ୟବଂଶ ଦଶରଥ ରାଜନ ॥ ୭୪ ॥
ଶୁଣିଣ ବାଳଯତି ହଂସିଣ କହନ୍ତି ।
ଉଠିଣ ବସ ହେ ଦଶରଥ ନୃପତି ॥ ୭୫ ॥
ସନମାନ ପାଇ ବସିଲାକ ରାଜନ ।
ଦଶରଥ ମୁଖ ଚାହିଁ କହନ୍ତି ମହାମୁନ୍ୟ ॥ ୭୬ ॥
ଶାନ୍ତନା ଅବଶ୍ୟଇ ଏ ତୋହର ନନ୍ଦନୀ ।
ସେ କନ୍ୟା ମୋତେ ବିଭାଏଣ ଦେସି ନୃପମଣି ॥ ୭୭ ॥
ଶୁଣି ଦଶରଥ ଆନନ୍ଦ ହୋଇଲା ।
କୁଳ ଉଦ୍ଧତ ମୋହର ଏବେ ସେ ହୋଇଲା ॥ ୭୮ ॥
[ତେଣୁ ସେ କନ୍ୟା ମାଗିଲ ମୁନି ମୋତେ ।
ଦାନ ପ୍ରତିଗ୍ରହ କରି ସମର୍ପିବି ତୋତେ] ॥ ୭୯ ॥
ଏ ମୋହର ଦୋହିତା ଉପୁଜିଲ ଧର୍ମି ।
ଉଭୟେ କୁଳ ରଖି ଖୋଜ ମହାମୁନି ॥ ୮୦ ॥
ଋଷିଶିଙ୍ଗ କହନ୍ତି ଭାର୍ଗବ ଗୋତ୍ର ଆମ୍ଭର ।
ଇକ୍ଷ୍ୱାକୁ ବଂଶ ବୋଲି କହଇ ନୃପବର ॥ ୮୧ ॥

୭୩. ପୁରାତନ—ପୁରାନ୍ତନ । ୭୮. ଦଶରଥ—ଦସ(କ) ।

ଋଷିଶୃଙ୍ଗର ରେବତୀ ମୀନରାଶି ।
ଶାନ୍ତନା(ର) ମୃଗଶିର ବୃଷ ପ୍ରକାଶି ।। ୮୨ ।।

ତଥି ବାର ଯୋଜନ ଅନକୂଳ ଯେନକ୍ତ ।
ଯେସନେକେ ଦୁଇ କୁଳ ପ୍ରୀତ ଉପୁଜନ୍ତ ।। ୮୩ ।।

ଗୁରୁକୁଳେ ଜାତ ଋଷିଶୃଙ୍ଗ ମୁନ ।
ସର୍ପିକଣେ ଉତପତ ଶାନ୍ତନା କାମେନୀ ।। ୮୪ ।।
ମାହେନ୍ଦ୍ର ଅନକୂଳ ତଥି ବଗୃଙ୍କ୍ତ ଶୁଭେ ।
ବୈଶାଖ କୃଷ୍ଣପକ୍ଷ ଦେନଲେ ଶୁଭ ଯୋଗେ ।। ୮୫ ।।
ସୋମ ଶ୍ରବଣା ନକ୍ଷତ୍ର ମକର ଲଗ୍ନ ।
ଏମନ ବେଳେ କରନ୍ତି ହସ୍ତ ବନ୍ଧନ ।। ୮୬ ।।
ସୁଙ୍କ ବ୍ରାହ୍ମଣେ ଅନେକ ମିଳନ୍ତି ।
ଉଭୟ କୁଳ ଗୋତ୍ର ନାମ ଧରି ବେଦ ଉଚ୍ଚରନ୍ତି ।। ୮୭ ।।
କୁଶ ବନ୍ଧନ କରି ଝାଙ୍କେ ଭରିଲେ ପାଣି ।
ଯଉତୁକ ଦେଲେ ଦଶରଥ କଣସୁ କୋଟି ମଣି ।। ୮୮ ।।
ବଚନ ପାଟୋଳ ଦେବାଙ୍ଗ ଝୀନ୍ନବାସ ।
ନବରତ୍ନ ଝରା ଆବର ମାଣିକ୍ୟର କୋଷ ।। ୮୯ ।।
ଅନେକ ସୁରଭି ବତ୍ସା ଯୁକ୍ତ କରି ।
ସବୁ ଗାଈଙ୍କର ଶୃଙ୍ଗେ ରତ୍ନ ଖୋଲି ଭରି ।। ୯୦ ।।

ଯୁବା ଅନଙ୍ଗ ଜାଣି ସାଦ୍ଧଶ ଶୃଙ୍ଗଋଷି ।
ଶାନ୍ତନା କନ୍ୟା ରୂପର ସଙ୍କାନ୍ତର ଦଶି ।। ୯୧ ।।

ଲୋମପାଦ ଶତେ ସୁବର୍ଣ୍ଣ ଯଉତୁକ ଦେଲା ।
ତହୁଂ ଦଶରଥ କର ଯୋଡ଼ଣ କହିଲା ।। ୯୨ ।।
ସମସ୍ତେ ବସିଲ ତୁମ୍ଭେ ବୈଷ୍ଣବ ବଦ୍ୟୁଜନ ।
ବାଳୁତ ଯଉ ଏ ବଶିଷ୍ଠେକର ନନ୍ଦନ ।। ୯୩ ।।
ଏ ମୋହର କୁମାରୀ ଏହାକୁ ଦେଲି ।
ଉପର ପୁରୁଷଙ୍କର ମୁଂ ପାତେକ ବନାଶିଲି ।। ୯୪ ।।
ପୁନ ପଉନ ମୋହର ବାବୁହେ କେହୁ ନାହୁଂ ।
ଏ କନ୍ୟା ଥିବ ମୁନ ତୁମ୍ଭର ପାଦ ଗୃହୁଂ ।। ୯୫ ।।
କାଶ୍ଚିତ ଦୋଷେ କୋପ ନ କରିବୁ ହେ ମୁନ ।
ସ୍ୱଭାବେ ଚଞ୍ଚଳମତି ହୁଅନ୍ତି କାମେନୀ ।। ୯୬ ।।

---

୮୪. ସର୍ପିକଣେ—ଶୁକକୋଳେ(କ) ।  ୮୫. ଯୋଗେ—ଯୋଗ ।
୯୫. ପଉନ—ପବାନ ।

ସକଳ ଦୋଷ ଏହାର ମୋତେ ଦେବୁ ।
ସର୍ବଦା ଚରଣେ ଯେ ଦୟା କରିଥିବୁ ॥ ୯୭ ॥

## ସଗର ଉପାଖ୍ୟାନ

ସପ୍ତପୁରୁଷ ଅନ୍ତରେ ସଗର ମହୀପତି ।
ପୃଥ୍ୱୀରେ ବିଖ୍ୟାତ ତାହାର ବେନି ଯୁବତୀ ॥ ୧ ॥
ସବ୍ୟା ନାମେଣ ଯେବଣ ପାଟରାଣୀ ।
ଲାଉକା ଆକାରେ ମହାପିଣ୍ଡେ ଜାତ କଲା ସେ ତରୁଣୀ ॥୨॥
ଘୃତ କୁମ୍ଭରେ ତାହା ତିଳ ପ୍ରମାଣେ ଭରିଲେ ।
ଷାଠିଏ ସହସ୍ର କୁମର ତହୁଁ ଜାତ କଲେ ॥ ୩ ॥
ସୁନ୍ଦର ବିଚକ୍ଷଣ ଯେତେ ବର୍ଦ୍ଧମାନ ।
ପୁତ୍ରଙ୍କୁ ଦେଖି ହରଷ ରାଜନ ॥ ୪ ॥
ନୃପତିର ସାନ ଭାରିଯା ବଇର୍ଧବୀ ନାମେ ରାଣୀ ।
ପୁତ୍ର ଜନମିଲା ସମେ ଅନଙ୍ଗ ନାହିଁ ପୁଣି ॥ ୫ ॥
ମାତାର ଜନମିକ ପୂର୍ବେ ଅସୁର ରମିଲା ।
ବିଦ୍ୟୁ ନାମେ ଦନୁଜ ମଦନକାକୁ ବଳେ ନେଲା ॥ ୬ ॥
ସ୍ୱର୍ଗର ଅପସରୀକ ରମଣ କଲା ଯହୁଁ ।
ମଦନକାର ଗର୍ଭେ ବଇର୍ଧବୀ ଜାତ ତହୁଁ ॥ ୭ ॥
ସାରଙ୍ଗ ପକ୍ଷୀ ବିନତାର ନାତି ।
ତାହାକୁ ମାଇଲା ବିଦ୍ୟୁ ଦୁଷ୍ଟମତି ॥ ୮ ॥
କଙ୍କପକ୍ଷୀ ବୋଲି ସାରଙ୍ଗର ଜ୍ୟେଷ୍ଠ ଭାଇ ।
ତା ତହୁଁ ବଳବନ୍ତ ସେ ନ ଦେଖିଲା କାହିଁ ॥ ୯ ॥
ସାରଙ୍ଗ ମରଣ ଯହୁଁ କଙ୍କପକ୍ଷୀ ଦେଖିଲା ।
ବିଦ୍ୟୁ ଦଇତକୁ ସେ ପ୍ରାଣେ ନାଶ କଲା ॥ ୧୦ ॥
ମଦନକାକୁ ଆଣିଲା ନିଜ ପୁରୀ ।
ଗର୍ଭେଣ ଦୁଇମାସ ହୋଇଅଛି ଅପଛରୀ ॥ ୧୧ ॥
ପୂର୍ବେ ମଦନକା ନୃତ୍ୟ କରନ୍ତେ ।
ଶାପ ଦେଲା ଇନ୍ଦ୍ର ପଦ୍ମର ଟଳନ୍ତେ ॥ ୧୨ ॥
ଯାଅଲେ ଅପସରୀ ତୋହର ଗର୍ବ ସରୁ ।
ବିଦ୍ୟୁ ନାମେ ଦଇତ୍ୟ ତୋତେ ରମଣ କରୁ ॥ ୧୩ ॥

---

୫. ସମେ—ବନେ ।    ୬. ବିଦ୍ୟୁ—ବିଦ୍ୟୁଗ ।    ୮. ବିଦ୍ୟୁ—ବିଦ୍ୟୁକ୍ଷ ।
୧୨. ଟଳନ୍ତେ—ଜଳନ୍ତେ ।

ଇନ୍ଦ୍ର ର ତହୁଁ ଯହୁଁ ଶାପ ପାଇଲା ।
ପଯ୍ନରେ ଲେଟି ମଦନକା ବନୋଇ କହିଲା ।। ୧୪ ।।
ଅସୁରର ଭାରଯା କେତେକାଳ ହୋଇବ ।
ସ୍ୱର୍ଗପୁରକୁ ବାହୁଡ଼ି କେତେକାଳେ ଆସିବ ।। ୧୫ ।।
ଅନୁରାଗ କରି କହି ପାକଶାସନ ।
ତୋହର ଗର୍ଭେ କନ୍ୟା ଏକ ହୋଉ ଉତପନ ।। ୧୬ ।।
ତେବେ ସେ ଶ୍ୟାପରୁ ମୁକତ ହୋଇବୁ ।
ବାହୁଡ଼ି ଅମର ଭୁବନକୁ ଆସିବୁ ।। ୧୭ ।।
ପୂର୍ବର ଶ୍ୟାପେ ଅସୁର ଭୋଗ କଲା ।
ଦୈତ୍ୟକୁ ମାରି କଙ୍କପକ୍ଷୀ ଆଣିଲା ।। ୧୮ ।।

କାଳେ କନ୍ୟାଏକ ଉପୁଜିଲା ଯହୁଁ ।
ସ୍ୱର୍ଗକୁ ଅପଛରୀ ଗଲାକ ତହୁଁ ।। ୧୯ ।।

ସେ କୁମାରୀଙ୍କି କଙ୍କପକ୍ଷୀ ପାଇଲା ।
ବଇର୍ଧବୀ ନାମ ସେ ତନୟୀକି ଦେଲା ।। ୨୦ ।।

ସଗର ମୃଗୟା ଯାଇ ଆଣିଲେ ସେ କଙ୍କପକ୍ଷୀକି ମାଗି ।
ସାନ ଭାରଯା ନୃପତିର ହୋଇଲା ସଉଭାଗୀ ।। ୨୧ ।।

ବଇର୍ଧବୀର ଗର୍ଭେ ପୁତ୍ରେକ ହୋଇଲା ।
ଅସୁର ପ୍ରାୟେକ ସେ କୁମର ରୋଦନ କଲା ।। ୨୨ ।।
ଋଷିଗଣଙ୍କୁ ହି ପୁଛଇ ରାଜନ ।
ବିକରାଳ ରାବ ଧରିଲା ମୋହର ନାନ ।। ୨୩ ।।

ଭାର୍ଗବ ମହାଋଷି ସଗରକୁ କହନ୍ତି ।
ସୁନ୍ଦର ଦେଖି ଯେ ଆଣିଲୁ ଯୁବତୀ ।। ୨୪ ।।

ସ୍ୱର୍ଗର ଅପଛରୀକି ଅସୁର ରମଣ କଲା ।
ଆବର ବିଶେଷେ ପକ୍ଷୀ ପୋଷିଲା ।। ୨୫ ।।
ମାତୃକୂଳ ପିତୃକୂଳ ଯାହାର ସଙ୍ଗେ ବଢ଼ଇ ।
ସେ ପ୍ରକୃତ କେବେହେ ନ ଛାଡ଼ଇ ।। ୨୬ ।।
ତେଣୁ ସେ ଅସୁର ପ୍ରାୟେ କଲା ରୋଦନ ।
ପୁଣି ବଳବନ୍ତ ହୋଇବ ତୋହର ନନ୍ଦନ ।। ୨୭ ।।
ଅସୁର ପ୍ରାୟେକ ଶବଦ କଲାକ ଯେବେ ।
ଅଶ୍ୱଜା ନାମ ତୁହି ଏହାକୁ ଦେସି ଏବେ ।। ୨୮ ।।
ମୁନିର ବାକ୍ୟ ଯହୁଁ ସଗର ଶୁଣିଲା ।
ଜ୍ୟେଷ୍ଠ କୁମରକୁ ଅଶ୍ୱଜା ନାମ ଦେଲା ।। ୨୯ ।।

ଅନେକ ଧାର୍ମୀ ପରିପାଳନ କରନ୍ତି ।
ନୃପେଣ କୁମର କାମଦେବର ମୂରତି ॥ ୩୦ ॥
ଏସନେକେ ଅଶ୍ୱଜା ଅଠରବରଷ ହୋଇଲାକ ଯହୁଂ ।
ନଂଗରେଣ କୁମର ଭ୍ରମଣ କରଇ ତହୁଂ ॥ ୩୧ ॥
ସାମନ୍ତାଣୀଙ୍କର ଯେତେକ କୁମାରଇ ।
ଗଳାରେ ଡୋର ଦେଇ କୂପରେ ନେଇ ଭରଇ ॥ ୩୨ ॥
କାହାକୁ ମୁଷ୍ଟି ପିଟଇ କାହାର ଚୂଳ ବାନ୍ଧଇ ।
କାହାକୁ ଖଡ଼ଗ ପ୍ରହାରେ ଶିର ଛେଦଇ ॥ ୩୩ ॥
ଏସନେକ ଚରିତ ଯହୁଂ ସଗର ଦେଖିଲା ।
ପବନେ ପବତେ ତେଇଂ ଦେଶ ଛଡ଼ାଇ ଥୋଇଲା ॥୩୪॥
ସହସ୍ରେକ ମାଲ ହକାରି ନୃପତି ପାଶ ।
ଅହୋନଶି ଥୋଇ ଅଶ୍ୱଜାର ପାଶ ॥ ୩୫ ॥
ଏହାକୁ ମୋହର ରାଜ୍ୟକୁ ଆସି ନ ଦେବ ।
ଅହୋନଶି ଏ ଦୁଷ୍ଟକୁ ଧରି ତୁମ୍ଭେ ଥିବ ॥ ୩୬ ॥
ଭିତରୁ ସହିତେ ନବରୁ ବାହାର କଲା ।
ପବତେ ପବତେ ଅଶ୍ୱଜାକୁ ରକ୍ଷା କରାଇଲା ॥ ୩୭ ॥
ଏମନ୍ତ ଦ୍ୱାଦଶ ବରଷ ହୋଇଲାକ ଯହୁଂ ।
ଦୃଢ଼ ବାହା ଆକୋଶି ମାଲ ଧଇଲେକ ତହୁଂ ॥ ୩୮ ॥
ଅଶ୍ୱଜା ପଚ୍ଚରଇ କମ୍ପା ମୋତେ ଧରନ୍ତି ।
ମାଲେ କହନ୍ତି ଆଜ୍ଞାଂ ଦେଇଛନ୍ତି ନୃପତି ॥ ୩୯ ॥
ବଲେ ତୁହ୍ମେ ଯେବେ ନଗରକୁ ଯିବୁ ।
ତେମନ୍ତେ ଆମ୍ଭେ ଧରି ତୋତେ ରୁହାଇବୁ ॥ ୪୦ ॥
ଶୁଣିଣ ଅଶ୍ୱଜା ଭୁଜ ପିଞ୍ଜାଡ଼ିଣ ଦେଲା ।
ଦଶବଂଶ ଯୋଜନେ ଯାଇ ସହସ୍ର ମାଲ ପଡ଼ିଲା ॥ ୪୧ ॥
ଅଶ୍ୱଜା କହଇ ନଗରକୁ ଯାଇ ।
ପିତାର ବଚନ ନ ଲଂଘଇ ମୁହିଂ ॥ ୪୨ ॥
ପିଅର ବାକ୍ୟ ମେଣ୍ଟିଲେଣ ନରକରେ ବାସ ।
ପିତାର କାର୍ଯ୍ୟେ ଥିଲେ ଯଶ ପଉରୋଷ ॥ ୪୩ ॥

---

୩୦. ଏହି ପଦ ପରେ କ ପୋଥିରେ ଏହି ପଦଟି ରହିଛି :—ହରସସେନ ରାଜାର ହରସସେନ ନନ୍ଦଣା । ସେ କନ୍ୟାକୁ ଅଶ୍ୱଜାକୁ ବିଭାରେ ଦେଲା ଆଣି ॥
୩୪. ତେଇଂ—ନେଇ । ୩୫. ଥୋଇ—ଥାଇ । ୩୭. ସହିତେ—ରହିତେ ।
୩୮. ମାଲ—ମାରି ।

ଏସନେକ କଥା ଶୁଣିଣ ଉଗର ।
ଆସିଣ ଜଣାଇଂଲ ରାଜାର ଆଗର ॥ ୪୪ ॥
ଏସନେକ କଥା ଯହୁଂ ସଗର ଶୁଣିଲ ।
ମନେ ମନେ ଆନନ୍ଦ ଅମୃତ ପାନ କଲ ॥ ୪୫ ॥
ପୁତ୍ରର ମହିମା ଶୁଣିଣ ମହୀପତି ।
ହରଷସେନ ନଗ୍ରକଇ ଦୂତ ପେଷଇ ଧାତି ॥ ୪୬ ॥
ତୋହର ଦୋହିତା ମୋହର ଅଶ୍ୱଜାକୁ ଦେବା ।
କନ୍ୟା ସମର୍ପିଣ ନିଷ୍ଟି କ୍ଷେଣ ଥିବା ॥ ୪୭ ॥
ସଗର ବଚନେ ଉଗର ଚଳିଗଲ ।
ହରିତେଣ ରାଜାକୁ ଯାଇ ଜଣାଇଲ ॥ ୪୮ ॥
ହରଷମତି ବୋଲିଣ ଯେବଣ ଦୋହିତ ।
ବିଭାଏଣ ଦେବୁ ତୁ ସଗର ଜ୍ୟେଷ୍ଠସୁତ ॥ ୪୯ ॥
ଶୁଣିଣ ସନମତ ହରଷସେନ କାଏ ।
କନ୍ୟା ଦେଲ ସେ ସଗରର ଭଯ୍ୟେ ॥ ୫୦ ॥
ଅଶ୍ୱଜାଜଙ୍କ ତାହାର ଦୋହିତା କଲ ବିଭା ।
ଚନ୍ଦ୍ରକୁ ରୋହିଣୀ ଯେସନ ଶୋଭା ॥ ୫୧ ॥
ରତ୍ନ ଅଲଙ୍କାର ପୁତ୍ରକୁ ଦେଲ ପଠିଆଇ ।
ଭାରଯା ସଙ୍ଗତେ କୁମର ସୁଖତେ ଥାଇ ରହି ॥ ୫୨ ॥
ହରଷମତିର ଗର୍ଭେ ତନୟେକ ଜାତ ।
ମୀନକେତନ ଜାଣି ସ୍ୱରୂପ ବିକ୍ରୁତ ॥ ୫୩ ॥
ଉଗର କହିଲ ସଗର ନୃପତିର ଆଗେ ।
ଅଶ୍ୱଜା ପୁତ୍ରେ ଉପୁଜିଲ ଶୁଭ ଯୋଗେ ॥ ୫୪ ॥
ଶୁଣିଣ ରାଜନ ହରଷ ହୋଇଲ ।
ଆପଣାର ଭୁବନକୁ ନାତିକ ଅଣାଇଲ ॥ ୫୫ ॥
ନାତିକ ଦେଖିଣ ଅନେକ ଆନନ୍ଦ ହୋଇ ।
ଅଶ୍ୱବନ୍ତ ନାମ ସେ କୁମରକୁ ଦେଇ ॥ ୫୬ ॥
ଏଥୁ ଅନନ୍ତରେ ସଗର ନୃପତି ।
ଅନେକ ତପୋଧନ ଦେଖିତ ଆସନ୍ତି ॥ ୫୭ ॥
ସଗର କହଇ ଏ ଅଶ୍ୱଜାର ପୁତ୍ର ।
ଋଷି କହନ୍ତି ତୁ ଯେ ମହତ ଗୁଣବନ୍ତ ॥ ୫୮ ॥

୪୪. ଉଗର—ସଗର(କ) । ୫୨. ପଦଟି ଖ ପୋଥିରେ ନାହିଁ । ୫୬-୬୨. ଏ ସତର ପଦ ଖ ପୋଥିରେ ନାହିଁ ।

ପୁତ୍ରତନୟେକ ହୋଇଲାକ ଯେବେ ।
ତୀର୍ଥକୁ ଗମନ ବୃଦ୍ଧ କରସି ହୋ ଏବେ ॥ ୫୯ ॥
ସଗର କହଇ ଯାଗ କରିବ ଉପାୟେ ।
ଶ୍ୱେତ ଅଶ୍ୱ ଏକ ରଖାଇ ଅଛନ୍ତ ମୋର ପୋଏ ॥ ୬୦ ॥
ଯାଗ କରିବା ଦକ୍ଷିଣା ଦାନ ଦେବ ।
ସକଳ ପାତେକ ମୋହର ବିନାଶ କରିବ ॥ ୬୧ ॥
ଋଷି କହନ୍ତ କମ୍ପା କରିବୁ ବୃଦ୍ଧ ଯାଗ ।
ନାତର ସେ ହୋଇବ ସକଳ ପୁଣ୍ୟଭାଗ ॥ ୬୨ ॥
କହାବନ୍ତ ରାଜା ସେ ବଚନ ନ କଲ ।
ଯାଗ ଆରୋପଣ କରି ବ୍ରାହ୍ମଣନ୍ତ ବରିଲ ॥ ୬୩ ॥
ଲବକୁଶ କହନ୍ତ ରାମଚନ୍ଦ୍ରଙ୍କର ଆଗର ।
ଅଯୋଧ୍ୟାର ଲୋକେ ଶୁଣନ୍ତ ବଶିଷ୍ଠ ମୁନବର ॥ ୬୪ ॥
ପୂର୍ବ ସମୁଦ୍ର ତଟେ କପିଲ ମହର୍ଷି ।
ବ୍ରହ୍ମା ହୋଇବ ବୋଲି ତପଧ୍ୟାୟେ କରଇ ବସି ॥ ୬୫ ॥
ନାରଦ ମହର୍ଷି ସେ କଥା ଜାଣିଲ ।
ସଗର ଶ୍ୱେତଅଶ୍ୱ ବାନ୍ଧ ନେଇ ତାହାର ପଛକଚ୍ଛ ବାନ୍ଧିଲ ॥୬୬॥
ସଗର ପୁତ୍ରେ ଯେ ଅଶ୍ୱ ରଖିଥିଲେ ।
ଶ୍ୱେତ ଅଶ୍ୱ ନ ଦେଖି ସମସ୍ତେ ଲୋଡ଼ିଗଲେ ॥ ୬୭ ॥
ଅଶ୍ୱ ନ ଦେଖି ଷାଠିଏ ସହସ୍ର ପୁତ୍ର ଭାଳନ୍ତ ।
ପାତାଳେ ଅଛୁ ବୋଲି ପୃଥିବୀ ଖୋଳନ୍ତ ॥ ୬୮ ॥
ନାରଦ ମହର୍ଷି କୁମରନ୍ତ କହିଲ ।
ତୁମ୍ଭର ଅଶ୍ୱ କପିଲ ମହର୍ଷି ହରିନେଲ ॥ ୬୯ ॥
ପିତାକୁ କହି ସକଳ ପୁତ୍ରେ ଗଲେ ।
କପିଲ ମହର୍ଷି ସନ୍ନିଧେ ଶ୍ୱେତଅଶ୍ୱ ଦେଖିଲେ ॥ ୭୦ ॥
ଭର୍ତ୍ସନା କରନ୍ତ କୁରୂଳ ପାଡ଼ନ୍ତ ।
ଧୂଳି ପକାଇ ଜଟା ଉଚ୍ଛୁଡ଼ନ୍ତ ॥ ୭୧ ॥
ଧ୍ୟାୟେ ଭଗ୍ନ ହୋଇ ଯହୁଁ କପିଲ ମୁନି ଗୃହୁଁଲେ ।
ଷାଠିଏ ସହସ୍ର ପୁତ୍ର ସଗରର ଦହନ ହୋଇଲେ ॥ ୭୨ ॥
[କପିଲ ଶାପ୍ୟରେ ସେ ଷାଠିଏ ସହସେ ତନୟେ ।
ଅଗ୍ନି ଦହନ ହୋଇଲା ସେ ସବୁଙ୍କର କାୟେ] ॥ ୭୩ ॥
ନାରଦ ଆସି ସଗରକୁ କହିଲେ ।
ତୋହର ପୁତ୍ରମାନେ ଦହ୍ୟ ହୋଇଲେ ॥ ୭୪ ॥

---

୭୪–୮୪. ଏ ଏଗାର ପଦ ଖ ପୋଥିରେ ନାହିଁ ।

ଶୁଣିଣ ନୃପତ ଅନେକ ଶୋକ କଲା ।
ଅଜାର ବିକଳ ଯହୁଂ ସେ ଦେଖିଲା ॥ ୭୫ ॥
ସଗର ଆଗେ ଅଶ୍ୱବନ୍ତ କହଇ ତହୁଂ ।
ତୋହର ଆଗ୍ୟାଂ ମୋତେ ପ୍ରାପତ ହୋଇଥାଉ ॥ ୭୬ ॥
ହେ ତାତ କପିଳ ମହରଷିର ତହିଂକି ମୁଂ ଯିବ ।
ଶ୍ୱେତଅଶ୍ୱ ତାହାର ତହୁଂ ମାଗିଣ ଆଣିମି ॥ ୭୭ ॥
ଶୁଣିଣ ହରଷ ସଗର ହୋଇଲା ।
ଯାଯା ବୋଲି ଅଶ୍ୱବନ୍ତକୁ ଡାଆଲେ ॥ ୭୮ ॥
ଅନେକ ନବେଶି ମୁନିଙ୍କି କର ।
ସେସନେକ ମୁକତ ହୁଅନ୍ତୁ ମୋହର କୁମାର ॥ ୭୯ ॥
ସୂର୍ଯ୍ୟବଂଶେ ବ୍ରହ୍ମ ଦ୍ରୋହ କଥା ନ ରହୁ ।
ଯାବତ କାଳକୁ କଥା ବ୍ରତଥାଉ ॥ ୮୦ ॥
ଅଜାର ବଚନେ ସେ ଅଶ୍ୱବନ୍ତ ଗଲା ।
କପିଳ ମହାମୁନିଙ୍କି ପ୍ରଣମିତ ହୋଇ କହିଲା ॥ ୮୧ ॥
ହେ ମହରଷି ତୁ ମହତ ବଧଂସ ।
ମୋହର ଖୁଡ଼୍ତାଙ୍କର କିଛୁ ନାହିଁ ଦୋଷ ॥ ୮୨ ॥
ବହ୍ମ ପଦକୁ ହ ଇଚ୍ଛା କଲୁ ଯହୁଂ ।
ନାରଦ ମହରଷି ତୋତେ କପଟ କଲେ ତହୁଂ ॥ ୮୩ ॥
ତୁହ ତପିଷ୍ଟ ସକଳ କଥା ଜାଣୁ ।
ଗୁଣ ଅବଗୁଣ କପାଇଂ ନ ପଉମାଣୁ ॥ ୮୪ ॥
[ଅଶ୍ୱବନ୍ତ ସେ କପିଳ ମୁନିଙ୍କି ବୋଧି ।
ଖୁଡ଼ୁତାକଇ ନମନ୍ତେ ସେ ପଶୁରଇ X X ବୁଦ୍ଧି] ॥୮୫॥
ଅଶ୍ୱବନ୍ତ କଥା ଯହୁଂ କପିଳ ମୁନ ଶୁଣିଲେ ।
ଧାସ୍ୟେ କଶ ନାରଦ-କପଟ ବୋଲି ଜାଣିଲେ ॥ ୮୬ ॥
ଅଶ୍ୱବନ୍ତର ମୁଖ ଗୃହଂ କହଇ ମହରୃଷି ।
ଧନ୍ୟରେ କୁମର ଶରଣକୁ ସାହାସୀ ॥ ୮୭ ॥
ପାଞ୍ଚ ବରଷର ତୁ ବାଳୁତ ତନୟେ ।
ଆମ୍ଭ ନଆସି ଅଇଲୁ ନ କଲୁ ମୋତେ ଭୟେ ॥ ୮୮ ॥
ମୋହର ହୃଦରେ ତୋତେ ହୋଇଲା ଅନୁରାଗ ।
ସତ୍ୟ ଉତ୍ତର ତୁ ମୁଂ ଦେବଇ ବର ମାଗ ॥ ୮୯ ॥

---

୭୮. ଯାଯା—ରାଜା । ୭୯. କର—କରଇ ; କୁମାର—କୁମାରଇ । ୮୦. ନ ରହୁ—ନନରହୁ । ୮୬-୯୧. ଏ ଛଅ ପଦ ଖ ପୋଥିରେ ନାହିଂ । ୮୬. ଅଶ୍ୱବନ୍ତ—ଅବସନ୍ତ ।

ଶୁଣି କରଯୋଡ଼ି କହଇ ଅଶ୍ୱବନ୍ତେ ।
ହେ ମୁନି ଦୟା ଯେବେ ଶୁଦ୍ଧ କଲୁ ନା ମୋତେ ॥ ୯୦ ॥
ମୋହର ଖୁଡ଼ୁତାଏ କେସନେକେ ସଦଗତି ପାନ୍ତି ।
ଅଗ୍ନି ଦହନୁ ପାର ହୋଇ ଯାନ୍ତି ॥ ୯୧ ॥
ମୁନି କହନ୍ତି ତୋହର ପୁତ୍ରର ନନ୍ଦନ ।
ସେ ଏହାଙ୍କୁ ଦେବ ଗଙ୍ଗାଜଳ ଦାନ ॥ ୯୨ ॥
ତହୁଂ ଅଶ୍ୱବନ୍ତ ବାହୁଡ଼ି ଆସଇ ।
ସଗର ଆଗେ ମୁନି ବଚନ ପ୍ରକାଶଇ ॥ ୯୩ ॥
ଶୁଣି ନୃପତି ଅଶ୍ୱବନ୍ତଙ୍କୁ ରାଜ୍ୟେ ଅଭିଷେକ କଲା ।
ଶୋକଭର ହୋଇ ବନସ୍ତେ ପ୍ରାଣ ଛାଡ଼ିଲା ॥ ୯୪ ॥
ଅଶ୍ୱବନ୍ତର ତନୟେ ଦିଲିପି ନାମ ହୋଏ ।
ଦିଲିପିର କୋଳେ ଭଗୀରଥି ଜାତ ହୋଏ ॥ ୯୫ ॥
ସେ ଭଗୀରଥି ଆକାଶୁ ଗଙ୍ଗା ଆଣିଲା ।
ସଗର ପୁତ୍ରନ୍ତ ସେ ମୁକତ କଲା ॥ ୯୬ ॥
ଭଗୀରଥିର ତନୟେ ରଘୁ ନୃପତି ।
ଅଜ ଏ ବୋଲି ରଘୁର ପୁତ୍ର ବିକ୍ଷାତ ॥ ୯୭ ॥
ଅଜ ନୃପତିର ପୁତ୍ର ମୁହିଂ ଦଶରଥ ମହୀପାଳ ।
ପୂର୍ବ କର୍ମଫଳେ ମୋହର ନ ହୋଇଲା ଦୁଲାଳ ॥ ୯୮ ॥
ବଂଶ ରକ୍ଷଣକୁ ମୋହର ଉପର ପୁରୁଷେ ।
ଏକ ଏକ ଏ ପୁତ୍ର ଉପୁଜିଲେ ଗତ ଦୋଷେ ॥ ୯୯ ॥
ମୋହର କୋଳେ ଉପୁଜିଲା ଏହି ନନ୍ଦନୀ ।
ତୋତେ ବିଭାଏ ଦେଲି ଏହୁ କାମେନୀ ॥ ୧୦୦ ॥
ଶୁଣି ହରଷ ହୋଇ କହନ୍ତି ତପୋଧନ ।
ତୁହି ମନେ ଶୋକ ଚିନ୍ତା ଛାଡ଼ସି ରାଜନ ॥ ୧୦୧ ॥
ତୋହର ଦୋହିତାର ଯେବେ ଧଇଲି ମୁହିଂ ହସ୍ତ ।
ଯାଗ ଆରୋପି ତୋହରେ କରିବ ପୁତ୍ର ଜାତ ॥ ୧୦୨ ॥
ଆନନ୍ଦ ହୋଇଲେ ଶୁଣି ଦଶରଥ ନୃପମଣି ।
ନିର୍ଧନେ ଧନ ପ୍ରାପତ ଅନ୍ଧରେ ଚକ୍ଷୁ ଜାଣି ॥ ୧୦୩ ॥
ବଶିର ବିଧାନ ତୁରିତେଣ ସାରି ।
ଲକ୍ଷାହୋମ ଦାନ ପ୍ରଦକ୍ଷିଣ କରି ॥ ୧୦୪ ॥
ହରଷ ଉତସଲି ଦଶରଥ ରାଜନ ।
ବର କନ୍ୟାଏ ଅମୃତପାକ କରନ୍ତି ଭୋଜନ ॥ ୧୦୫ ॥

୯୦. କଲୁନା—କଲୁନ । ୧୦୪. ପ୍ରଦକ୍ଷିଣ—ପ୍ରଦକ୍ଷେଣ(କ) ।

ମଧୁଟଶେଯ୍ୟାଏ ବରକନ୍ୟା ଶୟନ କରନ୍ତି ।
ରୂପେ ପଞ୍ଚପକ୍ଷୀ ତ୍ରିଭୁବନ ମୋହନ୍ତି ॥ ୧୦୬ ॥
ଯୁବା ଅନଙ୍ଗ ଜାଣି ଋଷିଶୃଙ୍ଗ ମହର୍ଷି ।
ରତି ସମାନ ଶାନ୍ତନା ରୂପ ଦର୍ଶି ॥ ୧୦୭ ॥
ମନର ଭାବନା ପ୍ରୀତି କାମରସ ।
ପୁରୁଷ ମନୋହର ବିଭାଣ୍ଡେକର ଶିଷ ॥ ୧୦୮ ॥
ଶାନ୍ତନା ବିଳାସଣୀ ମଦନେଣ ପ୍ରୀତି ।
ପଡଯକ୍ଷୀ ତୃଷ୍ଟି । ସାଉ ହୋଇଲେ ଧିରତି ॥ ୧୦୯ ॥

## ବିଭାଣ୍ଡେକଙ୍କ ସନ୍ତୋଷ

ରଜନୀ ପ୍ରଭାତେ ଉଦୟେ କମଳକୋଷ ।
ଦଶରଥ କହଇ ଯାଇ ଋଷିଶୃଙ୍ଗର ପାଶ ॥ ୧ ॥
ହେ ମୁନି ଶୁଣ ମୋହର ବଚନ ।
ଅତି ବିଧଂସ ତୁ ବାଳୁତ ତପୋଧନ ॥ ୨ ॥
ଦିବ୍ୟ କଣ୍ୟକୋଷ ଯେ ଯଉତୁକ ଦେଲି ।
ଲକ୍ଷେକ ସୁରଭି ଦେଇ କି ପୂତ ହୋଇଲି ॥ ୩ ॥
ଆବର ପାଟୋଳ ବିଚିତ୍ର ଝୀନବାସ ।
ଏ ଅର୍ଥ ସମ୍ପଦ ତୋହର କରବୁ କିସ ॥ ୪ ॥
ଆନ କେହ୍ନ ତୋହର ତୁଲ୍ୟେଣ ନାହିଂ ।
ଦାନ ଦେଲି ପଦାର୍ଥ ଥୋଇ ତ ନ ଯୋଗାଇ ॥ ୫ ॥
ଋଷିଶୃଙ୍ଗ କହନ୍ତି ଶୁଣସି ରାଜନ ।
ପିତାର ଆଶ୍ରମକୁ ଚଳାଅ ଗୋଧନ ରତ୍ନ ॥ ୬ ॥
ମୋହର ଯିବାକୁ ତାତ ଅଛନ୍ତି ବାଟ ଚାହିଂ ।
ପିତାକୁ ତେଜି ଅଇଲଇ ମୁହିଂ ॥ ୭ ॥
ଗୋଧନ ଯେବେ ମୋହର ପିତା ଦେଖିବ ।
ସକଳ ବଇରାଗ ସେ ଉପେକ୍ଷା କରିବ ॥ ୮ ॥
ମହର୍ଷି ବଚନ ସହୁଂ ଦଶରଥ ଶୁଣିଲି ।
ଅନେକ ଗୋପାଳନ୍ତ ସେ ସନ୍ନିଧେ ହକାରିଲି ॥ ୯ ॥
ଧନରତ୍ନ ବସ୍ତ୍ର ଦେଇ ଅନେକ ପୁରୁଷାର୍ଥ କରଇ ।
ସକଳ ଗୋପାଳନ୍ତ କହଇ ନୃପବରଇ ॥ ୧୦ ॥

---

୧୦୭. ଶାନ୍ତନା—ଶାନନ୍ତନା(କ) । ୧୦୮. ପୁରୁଷମନୋହର—ପୁରୁ-ମନୋରଥ(କ) । ୫. ଥୋଇତ ନ ଯୋଗାଇ—ଦେଇତ ନ ପାଇ (କ) । ୭. ମୁହିଂ—କାହିଂ(କ) । ୯-୧୯. ଏ ଏଗାର ପଦ ଖ ପୋଥିରେ ନାହିଂ ।

ଏ ଗୋରୂନ୍ତ ଯେନ ବିପୁଳା ପର୍ବତକୁ ଯିବ ।
ବିଷ୍ଣୁଭକ୍ତଙ୍କର ସନ୍ନିଧେ ଦେଇଣ ଆସିବ ॥ ୧୧ ॥
ଏତେକ ଧନ ସେ ସଉରୂକ ଦେଲା ।
ଗାନ୍ତ୍ର, ଗାଗୁର୍ତ୍ତି ଜାର ଗୋବତ୍ସଙ୍କୁ ମଣ୍ଡିଲା ॥ ୧୨ ॥
ସ୍ନେହେ ଯେବଣ କଇବ୍ରତେ ନାବ ବାହିଣ ଗଲେ ।
ଗୋବତ୍ସମାନ ସେ ନାବେ ବସାଇଣ ଅଇଲେ ॥ ୧୩ ॥
ସଉତ୍ରୂକ ଧନବସନ ଯେତେକ ଦେଇଥିଲା ।
ସକଳ ପଦାର୍ଥମାନ ନାବରେ ବସାଇଲା ॥ ୧୪ ॥
ନଦୀର ଭିତରେ ଗଲେ ନାବ ବାହି ।
ଉତ୍ତରଙ୍କ ତଟରେ ନାବ ଲଗାଇଲେ ନେଇ ॥ ୧୫ ॥
ସ୍ୱଚ୍ଛେ ବସ୍ତୁନ୍ତ ଯେନ ଗୋପାଳେ ଗଲେ ।
ବିପୁଳ ପର୍ବତେ ଯେ ପ୍ରବେଶ ହୋଇଲେ ॥ ୧୬ ॥
ଅନେକ ତରଣ ପକ୍ଷିବି ଅଛଇ ସେ ବନେ ।
ସୁକ୍ଷେ ଚରନ୍ତି ସାହ୍ନା ଗୋଧନମାନେ ॥ ୧୭ ॥
ପର୍ବତର ପାଣି ଗୋବତ୍ସେ ପିଅନ୍ତି ।
ଗୋପାଳେ ବିବିଧ୍ୟ ଫଳ ଯେ ଭୁଞ୍ଜନ୍ତି ॥ ୧୮ ॥
ବୃକ୍ଷଙ୍କର ତଳେ ଗୋପାଳେ ବସିଲେ ।
ସୁସର ରାଗେ ଯେ ବଇଂଶୀ ନାଦ କଲେ ॥ ୧୯ ॥

ଆଶ୍ରମେ ବସିଥିଲେ ବିଭାଣ୍ଡେକ ମହାଋଷି ।
ବେଣୁ ଶବଦ ଶୁଣି ହୋଇଲେ ବିରସି ॥ ୨୦ ॥
ମନେ ବିଚାରନ୍ତି ଚଣ୍ଡମୁନିର ସୁନ ।
କାହା ଶବଦ ଶୁଭିଲା ମୋହର ବନ ॥ ୨୧ ॥
କୋପେଣ ମହାଋଷି ବାହାର ହୋଇଲେ ।
ନୃତ୍ୟଗୀତ କରୁଛନ୍ତି ଗୋପାଳେ ତାହାନ୍ତ ଦେଖିଲେ ॥୨୨॥
ଧବଳ କୋମଳ ସୁରଭି ବତ୍ସଏ ଦିବ୍ୟଗାତ୍ର ।
ରମଭରତ ଦେଖି ହୋଇଲେ ମହାଯତ୍ନ ॥ ୨୩ ॥
[ଦେଖିଣ (ଯତ୍ନ ବୋଲନ୍ତି) ମନ ଗରୁ କର ।
ଅଗମ୍ୟ ବନ ଭଗ୍ନ କଲରେ ମୋହର] ॥ ୨୪ ॥

ଧାଇଂଲେ ତପୋଧନ ଏ ଦଣ୍ଡ ଉଷର ।
ଗୋପାଳଙ୍କର ଉପରେ ଶୀଘ୍ରେଣ ପ୍ରହାର ॥ ୨୫ ॥

---

୧୩. କଇବ୍ରତେ—ଦଇବତେ । ୧୬. ବସ୍ତୁନ୍ତ—ବକ୍ଷାନ୍ତ । ୧୭. ଚରନ୍ତି—ଚରନ୍ତି । ୧୮. ଗୋବତ୍ସେ—ଗୋବତ୍ସେ ।

ଦେଖିଣ ଗୋପାଳ ବିଚାରି ଗାଢ଼ କଲା ।
ଲଉଡ଼ରେ ବାଡ଼ାଇଲା ସେ ଦଣ୍ଡ ଦେହରେ ନ ବାଜିଲା ॥୨୬॥
ଆରେକ ଗୋପାଳେକ ଅଇଲେକ ଧାଇଁ ।
ବେକରେ ହସ୍ତ ଦେଇ ମୁନିଙ୍କ ନେଲା ପେଲିଇ ॥ ୨୭ ॥
କ୍ରୂର ପାଞ୍ଚଣ ଦିଅନ୍ତି ଗାଳିତ୍ରର ।
ପୁଣି ହୁ ପିଟନ୍ତେ ଋଷି ପଡ଼ିଲେକ ଢୁଣ୍ଡି ॥ ୨୮ ॥
ଗୋପାଳେ ବୋଲନ୍ତି ମୁନି ହୋଇଲ କି ବାଇ ।
ଅକାରଣେ ଆମ୍ଭନ୍ତ ମାର କିସ ପାଇଁ ॥ ୨୯ ।
[ବଇରାଗୀ ତପସ୍ୱୀ ତୁମ୍ଭେ ଛଦ୍ମ ତପସ୍ୱୀ ।
ଅନର୍ଥ କର୍ମ୍ମ କର ତୁମ୍ଭେ ନ ବିଚାର ॥ ୩୦ ॥
କିମର୍ଥ କାରଣେ ତୁ ଲଉଡ଼ି ପିଟିଲୁ ।
ଆପଣା କଥାକଇ ଶଙ୍କା କିପାଇଁ ନ କଲୁ ॥ ୩୧ ॥
ଆମ୍ଭନ୍ତ ମାରଣ ଯିବ ତୁମ୍ଭେ କାହିଁ ।
ହସନ୍ତି ଗୋପାଳେ କରତାଳି ଦେଇ ॥ ୩୨ ॥
ଶୁଣିଣ ମହଋଷି କୋପେଣ ଗରୁଡ଼ୀପୀ ।
ନିଶ୍ଚତେ ବ୍ରାହ୍ମଣ ଅଟନ୍ତି କ୍ଷଣକୋପୀ ॥ ୩୩ ॥
ବିଭାଣ୍ଡେକ ବୋଇଲେ ଗୋପାଳଙ୍କୁ ଚାଇ ।
କାହାର ଧେନୁ ଏ ଥିଲ ପୁଣ କାହିଁ] ॥ ୩୪ ॥
ବିଭାଣ୍ଡେକ କହନ୍ତି କର୍ମ୍ମାରେ ଏଥି ଗୋରୁ ଭରିଲ ।
ଅଗମ୍ୟ ବନ ମୋହର କର୍ମ୍ମା ଖର୍ଚ୍ଚି ଉଜାଡ଼ିଲ ॥ ୩୫ ॥
ଆବର କଣେକେ ମୋତେ ମାଡ଼ ମାର ।
କାହାର ଗୋଧନ ଏ ତାହାର ଆଗେ କରିବୁ ଗୁହାର ॥୩୬॥
ସେହୁ ତୁମ୍ଭଙ୍କୁ(କ) ଓପ୍ରଧ ବିହିବ ।
ଏଥିର ଶାସ୍ତି ସେ ବିଚାରଣ ଦେବ ॥ ୩୭ ॥
ଗୋପାଳେ କହନ୍ତି ଯାହାର ଗୋବଛଇ ।
ସେ ତପୋଧନ ତ ବହୁତ ଦୂରେ ଅଛଇ ॥ ୩୮ ॥
ତୁମ୍ଭେ ତାହାକୁ ଜାଣିମ ମୁନିବର ।
ଆମ୍ଭେ ଲୋଡ଼ୁ ଅଛୁ ଋଷିଶୃଙ୍ଗର ପିଅର ॥ ୩୯ ॥
[ଗୋପାଳେ ବୋଲନ୍ତି ଶୁଣ ତୁମ୍ଭେ ମହାମୁନ୍ୟ ।
ଋଷିଶୃଙ୍ଗ ମହର୍ଷିର ଏ ଅଟଇ ଗୋଧନ] ॥ ୪୦ ॥
କନ୍ୟାର ସଙ୍ଗତେ ଯେ ଏଥୁ ମୁନି ଗଲା ।
ଦଶରଥର ଦୋହିତାକୁ ବିଭା ହୋଇଲା ॥ ୪୧ ॥

୨୭. ପଦଟି ଖ ପୋଥିରେ ନାହିଁ । ୩୬-୩୯. ଏ ଗୃହପଦ ଖ ପୋଥିରେ ନାହିଁ ।

ଯଉତୁକ ପାଇଲା ଅନେକ ଗୋଧନ ।
ଆବର ଧନରତ୍ନ ବହୁତ ବସନ ॥ ୪୨ ॥
ସୁବର୍ଣ୍ଣର ପଇଲମ ଆବର ରତ୍ନଝଙ୍ଗା ।
ସବୁ ପଦାର୍ଥନ୍ତ ଦେଇ ଲୋମପାଦ ପଠାଇଲା ଯତ୍ନକରି ॥୪୩॥
ଋଷିଶୃଙ୍ଗର ପିତା ତାହାଂକ ଗୋରୁ ଦେଇତ ଅଇଲୁ ।
ଅନ୍ତେ ତୋହର ତାହଂ ମାଡ଼ଇ ଖାଇଲୁ ॥ ୪୪ ॥
ଶୁଣିଣ ହରଷ ବିଷ୍ଣ୍ଡେକ ତପୋଧନ ।
ଆନନ୍ଦେ ଅଶୃଜଳ ନୟନୁ ଗଳଇ ଘନଘନ ॥ ୪୫ ॥
ତତକ୍ଷଣେ ଗୋପାଳନ୍ତ କୋଳାଗତ କଲା ।
ଶଙ୍ଖାର ଆଶ୍ୱାସି ଶିରେ ଚୁମ୍ବନ ଦେଲା ॥ ୪୬ ॥
ମୁହଂ ସେ ବାବୁ ହେ ଋଷିଶୃଙ୍ଗର ତାତ ।
ଦୁଇ ମାସ ନକ ଗ୍ରୁଣ୍ଡି ଗଲା ମୋହର ସୁତ ॥ ୪୭ ॥
ତାହାଂକୁ ନ ଦେଖି ଅନ୍ଧଗତ ହୋଇଥିଲି ।
ତୁମ୍ଭର ବଚନ ଶୁଣି ଅମୃତ ପାନ କଲି ॥ ୪୮ ॥
ବାଇବାଉଡ଼ ଥିଲେ ଓଳମ୍ବ ମୋହର ସୁତ ।
ଏସନେକ କଥା ଶୁଣି ହଂସିଲେ ରଘୁନାଥ ॥ ୪୯ ॥
ବଶିଷ୍ଟ ସହତେ ସଭରେ ଯେତେ ଜନ ।
ଛତ୍ତି ଆମୋଦେ କଲେ ସୁଧାରସ ପାନ ॥ ୫୦ ॥
ଶ୍ରୀରାମ କହନ୍ତି ବଶିଷ୍ଟଙ୍କର ମୁଖ ଗୃହଂ ।
ଏସନେକ ଚରିତ କହଲା ଆନ ନାହିଂ ॥ ୫୧ ॥
କେବଣ ପୁଣ୍ୟତ୍ରୁଣୀ ଏହାନ୍ତ ଗର୍ଭେ ଧଇଲା ।
ତାହାର ସେ ଧନ୍ୟ ପୃଥ୍ୱୀରେ ଜପୁଜିଲା ॥ ୫୨ ॥
ଯେବଣ ମହାତ୍ମା ଏହାର ତାତ ।
ତାହାକୁ ଦେଖିଲେ ପାତକ ହୋଏ ହତ ॥ ୫୩ ॥
ବଶିଷ୍ଟେ କହନ୍ତି ଏବେ ଥିର ହୋଇଣ ଆସି ।
ଗ୍ରନ୍ଥ କହୁସାରଲେ ମାତାପିତା ପରିଚୟ ॥ ୫୪ ॥
ବଶିଷ୍ଟଙ୍କର ବଚନେ ରାମ ହୋଇଲେ ମଉନ ।
ତାହଂ ନାଦ ହୁଂକାରଲେ ବେନ ସୂନ ॥ ୫୫ ॥

---

୪୬. ପଦଟି ଖ ପୋଥିରେ ନାହିଁ ; ଶିରେ—ମିରେ । ୪୭-୪୯. ଖ ପୋଥିରେ ୪୭ ପଦର ପ୍ରଥମ ପାଦ ପରେ ୪୯ ପଦର ଦ୍ୱିତୀୟ ପାଦ ରହିଛି । ୫୦. ଛତ୍ତି ଆମୋଦେ—ହତ ଆନନ୍ଦେ । ୫୧-୫୫ ଏ ପାଞ୍ଚ ପଦ ଖ ପୋଥିରେ ନାହିଁ । ୫୧. କହଲା—କହନା ।

ଲବକୁମର କହଇ ସୁସର ଧୂନ୍ନ କରି ।
କୃଶକୁମର ଅର୍ଥ ବୁଝାଇ ବିବିଧ କରି ।। ୫୬ ।।
ଗୋପାଳଙ୍କୁ କୋଳ କରି ମୁନି ନେଲା ।
ନିଜ ଆଶ୍ରମେ ନେଇ କନ୍ଦମୂଳ ଦେଲା ।। ୫୭ ।।
ଗୋପାଳଙ୍କ ମୁନିବର ଯତ୍ନ କରି ବୁହାଇଲେ ।
ନାବେ ଯେତେ ଧନ ଥିଲା ଆଶ୍ରମକୁ ଅଣାଇଲେ ।। ୫୮ ।।
ବିଭାଣ୍ଡକ ମହର୍ଷି ସକଳ ଗୋପାଳଙ୍କୁ ହକାରି ।
ଅନେକ ଆଶିଷ କହନ୍ତି ତପସ୍ୱୀ ।। ୫୯ ।।
ତୁମ୍ଭେ ବାବୁ ହେ ବନସ୍ତେ ରହିଥିବ ।
ମୋହର ଆସିବା ଯାଏ ଗୋଧନ ସମ୍ଭାଳିବ ।। ୬୦ ।।
ଏହିକ୍ଷଣି ନାବେ ବସିଣ ମୁହିଂ ଯିବି ।
ପୁତ୍ର ଗୋଟିକ ମୋର ତପ୍ୟାଶ୍ରଣ ଆସିବି ।। ୬୧ ।।
ଏସନେକ କହି ମୁନି ନାବେଣ ବସିଲେ ।
ପବନୁ ଆପାତେ କଇବର୍ତ୍ତେ ନାବ ବାହିଣ ନେଲେ ।।୬୨।।
ଅଙ୍ଗଦେଶରେ ନାବ ଦଶ ଦିନରେ ଲାଗିଲା ।
ତତକ୍ଷଣେ ବିଭାଣ୍ଡକ ନାବରୁ ଓହ୍ଲାଇଲା ।। ୬୩ ।।
ଯହିଂ ସେ ଅଛଇ ଋଷିଶୃଙ୍ଗ ତପୋଧନ ।
ସେହିର ସନ୍ନିଧିକୁ ଗଲେ ମହାମୁନି ।। ୬୪ ।।
ଦେଖିଣ ବାଳଯତି ଆସନୁ ଉଠିଲା ।
ପିତାର ପଦ୍ମର ଧରି ପ୍ରଣମିତ ହୋଇଲା ।। ୬୫ ।।
ଚରଣ ଧୂଳି ଲେପିଲାକ ଶିର ।
କରପଦ୍ମ ଯୋଡ଼ି ପଚାରଇ ମୁନିବର ।। ୬୬ ।।
କିସ ନିମନ୍ତେ ତାତ ଏଥକୁ ଅଇଲ ।
ଆଶ୍ରମ ତେଜି ଶରୀରକୁ ଦୁଃଖ ଦେଲ ।। ୬୭ ।।
ବିଭାଣ୍ଡକ କହନ୍ତି ଶୁଣରେ ତନୟେ ।
ତୋତେ ନ ଦେଖି ମୋତେ ଦିଗ ଅନ୍ଧାର ହୋଏ ।।୬୮।।
ଦଶରଥର ଦୋହିତାକୁ ଯେ ବନ୍ଧ ହୋଇଲୁ ।
ଯେତେକ ଧନ ଆଶ୍ରମକୁ ଚଳାଇଲୁ ।। ୬୯ ।।
ଏ ତୋହର କଥା କହିଲେ ସେ ମୋତେ ।
ତେଣେ ସେ ଦେଖିତ ଅଇଲି ମୁହିଂ ତୋତେ ।। ୭୦ ।।
ନବଯୁବା କନ୍ୟା ସେ ଦାନ ଦେଲୁ ।
ମହାଭାର୍ଯ୍ୟା ଏକ ମଥାରେ ବସାଇଲୁ ।। ୭୧ ।।

---

୬୩. ପଦଟି ଖ ପୋଥିରେ ନାହିଁ । ୬୬. ଲେପିଲାକ—ଲେଚ୍ଛିଲାକ ।

ତହୁଂକ ପ୍ରତାପ୍ରଭ୍ରେ କରସି ବାଳମୁନ୍ୟ ।
ଦଶରଥ ଅପୁତି କ ଦେସି ପୁତ୍ରଦାନ ।। ୭୨ ।।
ଏ ଯେ ଲୋମପାଦ କନ୍ୟାକୁ ହେତୁକୃତା ।
ଧାର୍ମିକ ମହାପତ ଏ ମହତ ମର୍ଯ୍ୟି ତା ।। ୭୩ ।।
ଏହାକଇ ଯେସନେକ ସନ୍ତ ଉପୁଜଇ ।
ଏହାର ନବରେ ଯାଗ୍ୟ କରସି ତନୁକଇ ।। ୭୪ ।।
ମୋହର ବଚନ ନ କର ଅନ୍ୟଥା ।
ଜନମୁଖେ ଷିତରେ ରହୁ ତୋହର କଥା ।। ୭୫ ।।
ଏ ଦୁଇ ରାଜାକୁ ଯେ ପୁତ୍ର ଦାନ ଦେବୁ ।
ଶୀଘ୍ର ହୋଇ ମୋହର ଆଶ୍ରମକୁ ଯିବୁ ।। ୭୬ ।।
ପୁତ୍ରକୁ ତଥାରଣ ବାହୁଡ଼ି ମୁନି ଅଇଲେ ।
ସେ ନାବେ ବସି ବିପୁଳ ପର୍ବତେ ହୋଇଲେ ।। ୭୭ ।।
ସକଳ ସୁରଭୀକ ମୁନି ରକ୍ଷା କରିବନ୍ତୁ ।
ଗୋପାଳଙ୍କୁ ହକାର ବିଭାଣ୍ଡେକ କହନ୍ତୁ ।। ୭୮ ।।
ମୋହର ପୁତ ଯେବେ ଏଥକଇ ଆସଇ ।
ତେବେ ସେ ଯିବ ତୁମ୍ଭେ ତୁମ୍ଭର ନଜ ବାସଇ ।। ୭୯ ।।
ଶୁଣିଣ ଗୋପାଳେ ହରଷ ହୋଇଲେ ।
ବିପୁଳ ପର୍ବତରେ ବିଭାଣ୍ଡେକର ସନଧେ ରହିଲେ ।। ୮୦ ।।

## ଲୋମପାଦଙ୍କ ପୁତ୍ରଲାଭ

ଏଥି ଅନନ୍ତରେ ଶୁଣ କୃଷ୍ଣାର ପତ ।
ଶ୍ରୀରାମର ଆଗେ ଲବ କୁଶ କହନ୍ତୁ ।। ୧।।
ବିଭାଣ୍ଡେକ ମହାଋଷି ଯେ ଅଙ୍ଗ ଦେଶକଇ ଗଲେ ।
ଦଶରଥ ଲୋମପାଦ ଦୁଇ ରାଜାଏ ନ ଜାଣିଲେ ।। ୨ ।।
ନଜ ଆଶ୍ରମକୁ ଅଇଲା ମୁନି ଯହୁଂ ।
ଲୋମପାଦ ହକାର ଋଷିଶୃଙ୍ଗ କହନ୍ତୁ(ତହୁଂ) ।। ୩ ।।
ତୋହର କୋଳେ ପୁତ ଯେବେ ନାହିଂ ।
ଯାଗ କର ପୁତ ତୋତେ ଦେବଇ ଏବେ ମୁହିଂ ।। ୪ ।।
ଚରୁ ଭୁଞ୍ଜନ୍ତେ ପୁତ ହୋଇବ ଉତପତ ।
ତପର ମହିମା ଦେଖ ତୁହାଇବ ସଣକାର୍ତ୍ତି ।। ୫ ।।

---

୭୫–୭୬. ଏ ଦୁଇ ପଦ ଖ ପୋଥିରେ ନାହିଁ । ୭୮–୮୦. ଏ ତିନ ପଦ ଖ ପୋଥିରେ ନାହିଁ । ୧. ପଦଟି ଖ ପୋଥିରେ ନାହିଁ ।

ଶୁଣି ଲୋମପାଦ ହରଷ ହୋଇଲା ।
ନିଜ ନଗର ଭିତରେ ଯାଗ ଆରୋପଣ କଲା ॥ ୭ ॥
ମନ୍ତ୍ର ବଳେ ଆହୁତି ଦଅଇ ମୁନି ଘୃତ ।
ନବଗ୍ରହ ତୋଷି ଜପଇ ଅନଳ ମନ୍ତ୍ର ॥ ୭ ॥
ଅଗ୍ନିରେ ସିଦ୍ଧଚରୁ ଉପୁଜିଲାକ ଯଜ୍ଞ ।
ଲୋମପାଦ ହକାରି କହନ୍ତି ମୁନି ତଜ୍ଞ ॥ ୮ ॥
ଏ ଚରୁ ଏବେ ଭୁଞ୍ଜନ୍ତୁ ତୋହର ରାଣୀ ।
ଶୁଣି ପାଟ ମହାଦେଈ ହକାର ନୃପମଣି ॥ ୯ ॥
ମିଳିଲେ କାମେନୀ ସ୍ୱାମୀଙ୍କର ପାଶ ।
ମୁନିର ପଛରେ କରନ୍ତି ସବେଶ ॥ ୧୦ ॥
ଚରୁ କରେ ଦେଇ କହନ୍ତି ମୁନିବର ।
ନାରାୟଣ ସୁମରି ଚରୁ ପାନ କର ॥ ୧୧ ॥
ମୁନିବର ବଚନେ ହରଷ ଗୁଣରାଣୀ ।
ଚରୁ ଭୁଞ୍ଜନ୍ତି ସେ ନୃପତିର ଘରଣୀ ॥ ୧୨ ॥
ଶ୍ରୀମ୍ୟା ପଞ୍ଚାଳୀ ମୃଦା ରତ୍ନାବଳୀ ।
ରାଜାର ଲକ୍ଷ୍ମୀ ନୃପତିଙ୍କର ଦୁଲ୍ଲାଳୀ ॥ ୧୩ ॥
ସେ ସିଦ୍ଧ୍ୟ ଚରୁ ଯଜ୍ଞାଂଶ ଭୁଞ୍ଜିଲେ ।
ଲୋମପାଦର କୋଶଳିନୀ ଗର୍ଭବାସ ହୋଇଲେ ॥ ୧୪ ॥
[ସେଏନ୍ତୁ ତନୟେ ହୋଇଲେ ଚନ୍ଦ୍ର ଜାତ ।
ନନ୍ଦ୍ରତମ୍ୟ ଯେନ ସମ୍ଭୂତ ପଞ୍ଚସୁତ] ॥ ୧୫ ॥
ରତ୍ନାବଳୀ ନାମେଣ ଯୌବଣ କାମେନୀ ।
ଦ୍ୱଇ ବେଳ ଚରୁ ଭୁଞ୍ଜିଲ ଏ କାମେନୀ ॥ ୧୬ ॥
ତତକ୍ଷଣେ ତନୟେ ଜାତ ହୋଇଲେ ।
ଅଗ୍ନିର ତେଜ ପ୍ରାୟେ ପାଞ୍ଚପୁତ୍ର ଦଶିଲେ ॥ ୧୭ ॥
ରତ୍ନାବଳୀର ଗର୍ଭେ ଦ୍ୱଇପୁତ୍ର ଉତପନ ।
ଏସନେକେ ଲୋମପାଦର ପାଞ୍ଚ ନନ୍ଦନ ॥ ୧୮ ॥
ପ୍ରୋହିତ ମନ୍ତ୍ରୀକ ତନୟେ ଉପୁଜିଲ ।
ଲୋମପାଦ ରାଜ୍ୟେ ଉଛବ ଆନନ୍ଦ ହୋଇଲା ॥ ୧୯ ॥

## ଋଷିଶୃଙ୍ଗଙ୍କ ଅଯୋଧ୍ୟା ଗମନ

ଲୋମପାଦର ଯଜ୍ଞ ପୁତ୍ର ଉପୁଜିଲା ।
ଦେଖିଣ ଦଶରଥ ନୃପତି ସାନନ୍ଦ ହୋଇଲା ॥ ୧ ॥

୭. ପଦଟି ଖ ପୋଥିରେ ନାହିଁ । ୯. ଭୁଞ୍ଜନ୍ତୁ—ଭୁଞ୍ଜନ୍ତ । ୧୦. ସବେଶ—ସବାଇସ । ୧୩. ରାଜାର—କାହାର ।

ଋଷିଶୃଙ୍ଗର ଆଗେ ପୁଛଇ ଦଶରଥ ।
ହେ ମହାଋଷି କେସନେକେ ମୋତେ ହୋଉ ପୁତ୍ର ॥ ୨ ॥
ଯାବତ କାଳକୁ ଯେ କଥା ଥାଉ ରହି ।
ତୋହର ପ୍ରସାଦେ ପୁତ୍ରବନ୍ତ ହୋଇଲଇ ମୁହିଂ ॥ ୩ ॥
ଋଷିଶୃଙ୍ଗ ବୋଲନ୍ତି ଶୁଣ ହେ ନୃପତି ଏବେ ବୃଦ୍ଧ ବୟସ ।
ବ୍ରତ ଆଗର କରବୁ ଏକ ବରଷ ॥ ୪ ॥
ଅନ୍ତଃପୁରେ ତୋହର ଅଛନ୍ତି ଯେତେ ନାରୀ ।
ସମସ୍ତେ ଥିବେ ବ୍ରତ ନିୟମ କରି ଆଚରି ॥ ୫ ॥
ତହିଁ ଅନ୍ତରେ ଯାଗରେ ଆହୁତି ମୁହିଂ ଦେବି ।
ଦିଗପାଳନ୍ତ ମନାଇଂ ଗ୍ରହନ୍ତ ତୋଷିବି ॥ ୬ ॥
ଯେତେକ ଯୁବତୀ ତୋହର ବ୍ରତବନ୍ଧରେ ଥିବେ ।
ଚରୁ ଭକ୍ଷଣେ ସେହୁ ପୁତ୍ର ପାଇବେ ॥ ୭ ॥
ସଂସାର ଦେଖିବ ଯେସନେକ ଆଗର ।
ଦଶମାସେ ଉପୁଜିବ ଏକ ଏକ କୁମର ॥ ୮ ॥
ଶୁଣି ଦଶରଥ ଯେ ହୋଇଲେ ହରଷ ।
କରପଦ୍ମ ଯୋଡ଼ି କହଇ ମୁନିବର ପାଶ ॥ ୯ ॥
ହେ ତପୋଧନ ମୋହର ରାଜ୍ୟକଇ ଯିବା ।
ବ୍ରତବିଧାନ କଥା ସମସ୍ତ ରାଣୀମାନଙ୍କୁ କହିବା ॥ ୧୦ ॥
ଆବର ବିଶେଷେ ସେ ତୋହର ମୁଖ ଦେଖନ୍ତୁ ।
ଯେତେକ ପାତକ ତାହାର ବିନାଶ କରନ୍ତୁ ॥ ୧୧ ॥
ଦୋହିତାକୁ ପାଳିଲେ ଯେ ମୋହର ସକଳ ଯୁବତୀ ।
ଯାବନ୍ତ ଦେଖି ହୋଇବେ ତୋଷମତି ॥ ୧୨ ॥
ଶୁଣିଣ ମହାଋଷି ସନମତ କଲେ ।
ଦଶରଥଙ୍କର ତୁଲେ ଯେ ଅଯୋଧ୍ୟାକୁ ଗଲେ ॥ ୧୩ ॥
ନଗରେ ପ୍ରବେଶ ହୋଇଲେ ମହାମୁନି ।
ଝିଅ ଜୁଆଁଇଙ୍କ ବନ୍ଦାବନ୍ତି ଦଶରଥ କାମିନୀ ॥ ୧୪ ॥
ଅନ୍ତଃପୁରେ ମୁନି ବିଜୟେ କରନ୍ତି ।
ନଗର କାମିନୀ ଦେଖିତ ଆସନ୍ତି ॥ ୧୫ ॥
ଦୁବା ଅଙ୍କୁର ମୁନିର ଶିରେ ଦେଲେ ।
କନ୍ୟାକୁ ଏ ବର ସାଦ୍ରିଣ ବୋଲି ସକଳେ ବୋଇଲେ ॥ ୧୬ ॥

---

୭. ଚରୁ—ଚଉ(କ) । ୯-୧୩. ଏ ପାଞ୍ଚ ପଦ ସ୍ଥଳେ ଖ ପୋଥିରେ ପଦେ ରହିଛି :—ଶୁଣି ଦଶରଥ ହୋଇଲା ହରଷଇ । ମୁନିଙ୍କି ଘେନିଗଲେ ଅଯୋଧ୍ୟା ପୁର ଦେଶଇ ॥ ୧୬-୨୩. ଏ ଆଠ ପଦ ଖ ପୋଥିରେ ନାହିଁ ।

ଲବକୁଶେ କହନ୍ତି ଶ୍ରୀରାମ ଆଗର ।
ଶୁଣନ୍ତି ସକାତ କଥା ବଶିଷ୍ଠ ମୁନିବର ॥ ୧୦ ॥
ଅଯୋଧ୍ୟା ନଗର ନାମ ଯହୁଁ ସ୍ୱରୂପ ଶୁଣିଲେ ।
ଏକର ଆଗରେ ସେ ଧୀର କରି କହିଲେ ॥ ୧୮ ॥

ଏ କଥାମାନ ଏ ଜାଣିଲ କାହିଁଥାଇ ।
ଆମ୍ଭର କଷ୍ଟକର ଦେଖିଲ ଆମ୍ଭର ନାହିଁ ॥ ୧୯ ॥

ଯୋକେ କହନ୍ତି ଏ କେବଣ ଦେଶର କୁମାରଇ ।
ଆନର ବାକ୍ୟ ଶୁଭଇ କି ଏସନେକ ସୁସର ଧ୍ୱନିହି ॥୨୦॥

ସଭାରେ ଚହଳ ହୋଇଲାକ ଯହୁଁ ।
ମଉନ ହୋଇ ଲବକୁଶ ବସିଲେକ ତହୁଁ ॥ ୨୧ ॥
ତକ୍ଷଣେ ସବୁଙ୍କୁହି ନିଶବଦ କଲ ।
ଯେବେ ସେ ଲବକୁମର ନାଦ ହୁଂକାରିଲ ॥ ୨୨ ॥
କୁଶକୁମର ଧରଇ ନାଦ ଟାଣି ।
ସଭା ନିଶବଦ ହୋଇଲ ତେଲରେ ମାଛି ଜାଣି ॥ ୨୩ ॥

## ଦଶରଥଙ୍କ ପୁତ୍ରେଷ୍ଟି ଯାଗ

ଲବକୁମର ଗାବଇ ଗୁଣ୍ଡରକେଶ ଗୀତ ।
ଯହୁଁ ଆସନେ ରାଜସ୍ୱେ ବଶିଷ୍ଠେକର ସୁତ ॥ ୧ ॥
ତହୁଁ ଦଶରଥଙ୍କୁ ଯେ ହକାର ସନ୍ନିଧାନ ।
ବ୍ରତର ବିଧାନ କହନ୍ତି ମହାମୁନ୍ୟ ॥ ୨ ॥
ଋଷିର ବାକ୍ୟ ରାଜା ଯହୁଁ ଶୁଣିଲ ।
ଅନ୍ତଃପୁରେ ତତକ୍ଷଣେ ପ୍ରବେଶ ହୋଇଲ ॥ ୩ ॥
ଏକଇଶ ଶତ ଦଶରଥର ମହାଦେଈ ।
ମୁନିଙ୍କର ବାକ୍ୟ ବସ୍ତାରି ତାହାଙ୍କର ଆଗରେ କହି ॥ ୪ ॥
ଯତଇନ୍ଦ୍ର ହୋଇ ବରଷେକ ଥିବ ।
ତଇଲ ପୁଷ୍ପ ଆମିଷ ତେଜିବ ବଇରାଗ ନୋହିବ ॥ ୫ ॥
ପ୍ରାତ ସ୍ନାହାନ କରିବଇ ନିତ ।
ଉଦୟେ ଅସ୍ତେ ଆଦିତ୍ୟଙ୍କୁ ହୋଇବ ଭଗତ ॥ ୬ ॥

---

୧୯. ଦେଖିଲ—ଦେଖିଲ ନୋହନ୍ତି । ୨୨. ସବୁଙ୍କୁହି—ବସୁଙ୍କୁହି । ୧. ପଦଟି ଖ ପୋଥିରେ ନାହିଁ ; ଯହୁଁ—ଜଗୁ ; ବଶିଷ୍ଠେକର ସୁତ—ବଶିଷ୍ଠେକରୃଷିତ । ୨. କହନ୍ତି—କରନ୍ତି । ୬. ଉଦୟେ ଅସ୍ତେ—ରଜନିଅନ୍ତେ(କ) ।

ସମସ୍ତେ ପାକ ପାଞ୍ଚନ କରିବ ।
ସାୟଂ ବେଳ ମଣ୍ଡନ ହବିଷ୍ୟ ଭୁଞ୍ଜିବ ॥ ୭ ॥
ଯେ ଏତେ କରିପାରଇ ସେ ହୋଇବ ପୁତ୍ରବନ୍ତ ।
ଏସନେକ ଆଗ୍ରେ ମୋତେ କହିଲେ ମହାସନ୍ତ ॥ ୮ ॥
ରାଜାର ବଚନ ଶୁଣି ସକଳ ଯୁବତୀ ।
ପୁତ୍ର ପାଇବା ନିମନ୍ତେ ସମସ୍ତେ ସନମତ କରନ୍ତି ॥ ୯ ॥
ନୃପତି ରାଜ୍ୟରେ କରିବନ୍ତି ଉଚ୍ଛବ ।
ସବୁରି ଦ୍ୱାରେ ବସାବନ୍ତି ପୂର୍ଣ୍ଣକୁମ୍ଭ ॥ ୧୦ ॥
ଅଯୋଧ୍ୟା ଦେବତାର ନାମ ଲୋକେଶ୍ୱରୀ ।
ଗ୍ରୁଗଲ ମହିଷି ଦେଇ ତାହାକୁ ତୋଷ କରି ॥ ୧୧ ॥
ନବର ଚଉକତିକ ବେଢ଼ି କରନ୍ତି ନୃତ୍ୟଗୀତ ।
ବୀର ତୂର ଶବଦ ଶୁଭିଲା ଗଗନ ପଥ ॥ ୧୨ ॥
ଜମଦଗ୍ନିର ପୁତ୍ର ଯେ କପିଳ ତୀର୍ଥେ ଥିଲା ।
ବୀର ତୂର ଶୁଣି ସେ କୋପେଣ ଅଇଲା ॥ ୧୩ ॥
ଅଯୋଧ୍ୟା ନଗ୍ରରେ ସେ ହୋଇଲେ ପ୍ରବେଶଇ ।
ଦେଖି ଦଶରଥ ଯେ ପୟର ଧରି ସମ୍ଭାଷଇ ॥ ୧୪ ॥
ପ୍ରଶୁରାମ ପୁଚ୍ଛଇ କିମ ଉଚ୍ଛବ କରୁ ।
ବୀରତୂର ଶବଦ ଶୁଣି ମୁହିଂ ଅଇଲି ବହୁତ ଦୂରୁ ॥ ୧୫ ॥
ଦଶରଥ କହଇ ଶୁଣ ପ୍ରଶୁଧର ।
ଋଷ୍ୟଶୃଙ୍ଗ ମହଋଷିକି ଆଣିଲି ମୋହର ପୁର ॥ ୧୬ ॥
ଶାନ୍ତନା ନାମେ କନ୍ୟା ବିଭାଏଣ ଦେଲି ଯହୁଂ ।
ମୋତେ ପୁତ୍ର ଉପୁଜାଇବ ବୋଲି ଦୟା କଲା ତହୁଂ ॥୧୭॥
ଯାଗ ଆରମ୍ଭ କରି ମୁନିବର ।
ତେଣୁ ସେ ଉଚ୍ଛବ ହୋଉଛି ମୋହର ପୁର ॥ ୧୮ ॥
ଶୁଣିଣ ହରଷ ହୋଇଲେ ଭୃଗୁପତି ।
ଦଶରଥ ରାଜାକୁହି ବିଶ୍ୱାସ କଥା କହନ୍ତି ॥ ୧୯ ॥
ତୋହର ନଗରେ ତୁହି ନ କରସି ଯାଗ ।
ଋଷିଶୃଙ୍ଗ ଘେନି ତୁହି କୃଷ୍ଣବେଣୀକି ଯାସି ବେଗ ॥ ୨୦ ॥

---

୭. ସାୟଂ—ସଏ । ୧୯. ଏହି ପଦଟି ବଦଳେ ଖ ପୋଥିରେ ଦୁଇ ପଦ :—
ଦଶରଥ ବୋଲନ୍ତି କାର୍ପଣ ବଚନ । ତାହା ଶୁଣି ପ୍ରସୁରାମ ହୋଏ ହରଷ ମନ ॥
ଶୁଣିଣ ପ୍ରଶୁରାମ ହୋଏ ହରଷ । ଦଶରଥ ରାଜାକହି କହଇ ବିଶ୍ୱାସ ॥
୨୦. ନଗରେ—ଯାଗରେ ।

ସେ ପୁଣ୍ୟସ୍ଥାନ ଜଗତେ ବିଦ୍ୟମାନ ସାର ।
ଅନନ୍ତଶେଯ୍ୟାରେ ଶୟନ ତହିଁନା କରନ୍ତି ଚକ୍ରଧର ॥୨୧॥
ସେ ପୁଣ୍ୟସ୍ଥାନେ ଯାଗ କଲେ ପୁତ୍ର ପାଇବୁ ।
ମୋହର ନାମ ଜ୍ୟେଷ୍ଠ ତନୟକୁ ଦେବୁ ॥ ୨୨ ॥
ଏ ନଗ୍ରେ ଅଛନ୍ତି ଯେ ଚଉବାଂଶ ଡାକେଣୀ ।
ଗର୍ଭବାସ ପୁତ୍ରଙ୍କୁ ଯେ ଭକ୍ଷନ୍ତି ରାତ୍ରେଣୀ ॥ ୨୩ ॥
ପୂର୍ବେ ଇନ୍ଦ୍ର ତହୁଁ ଶାପ ପାଇଲେ ।
ସେହି ମୁକତ ହୋଇବେ କୃଷ୍ଣବେଣୀଙ୍କ ଗଲେ ॥ ୨୪ ॥
ଏସନେକ କହି ପ୍ରଶୁରାମ ତହୁଁ ଚଳେ ।
ନିଜ ଆଶ୍ରମେ ସେ ପ୍ରବେଶ ହୋଇଲେ ॥ ୨୫ ॥
ଯେତେ କହିଲେ ଚେଣୁକାର ନନ୍ଦନ ।
ଋଷିଶୃଙ୍ଗ ଅଗ୍ରତେ ତାହା କହିଲେ ରାଜନ ॥ ୨୬ ॥
ଋଷିଶୃଙ୍ଗ କହନ୍ତି ଶୁଣସି ମହାରାଜେ ।
ପ୍ରତକ୍ଷେ ବିଷ୍ଣୁ ଯେ ଜମଦଗ୍ନିର ତନୟେ ॥ ୨୭ ॥
ତାହାର ବାକ୍ୟ ଲଂଘିବ କାହାର ବୋଲେ ।
କୋପ କରିବେ ନା ସେ ବଚନ ନଂଘିଲେ ॥ ୨୮ ॥
ଆବର କଥାଏକ ଶୁଣସି ନୃପତି ।
ବ୍ରତ ଆଚରିଲେ ଝିକ ତୋହର ଯୁବତୀ ॥ ୨୯ ॥
ତାହାଙ୍କଇ ହକାରି ପୁଛସି ହୋ ଏବେ ।
ବ୍ରତ ପରମାଣି ଅଛନ୍ତି ସେ ଯେବେ ॥ ୩୦
ସେ ଯୁବତୀଙ୍କ ଘେନ କୃଷ୍ଣବେଣୀକି ଯିବା ।
ଶୁଭ ଅନକଲେ ଯାଇ ତହୁଁ ଯାଗ କରିବା ॥ ୩୧ ॥
ଯେବଣ କାମେନୀ ବ୍ରତ ଭ୍ରଷ୍ଟ କଲେ ।
ଜସ କାର୍ଯ୍ୟ ହୋଇବ ସେ ଯୁବତୀକି ନେଲେ ॥ ୩୨ ॥
ଶୁଣି ଦଶରଥ ଅନ୍ତଃପୁରେ ପଶଇ ।
ସକଳ ଭାରିଯାକୁ ସେ ହକାରଣ ପୁଛଇ ॥ ୩୩ ॥
ଯେବଣ ବ୍ରତ କଥା ସଂକଳ୍ପ କଲ ।
ପରିପାଳି ଅଛ ନା ମୁନିଙ୍କର ବୋଲ ॥ ୩୪ ॥
ମୋହର ଆଗରେ ସ୍ୱରୂପ କରି କହିବ ।
ମିଥ୍ୟା କହିଲେ ଋଷିଙ୍କର ତହୁଁ ଶାପ ପାଇବ ॥ ୩୫ ॥

---

୨୧. ପଦଟି ଖ ପୋଥିରେ ନାହିଁ ; ତହିଁନା—ତହିଁନ । ୨୩-୨୪. ଏ ଦୁଇ ପଦ ଖ ପୋଥିରେ ନାହିଁ । ୨୯. ଆଚରିଲେଝିକ—ଆଚରିଲେଯେ(କ), ଅଛନ୍ତିଝିକ(ଖ) । ୩୦. ପଦଟି ଖ ପୋଥିରେ ନାହିଁ । ୩୪. ପରିପାଳି—ନାରିପାଳି(କ) ।

ସ୍ୱାମୀର ବଚନ ଯହୁଂ ନୃପ ର ଶୁଣିଲେ ।
ସମସ୍ତ ଯୁବତୀ ମଥାପୋତି ସମାସ୍ୟା ନ ଦେଲେ ॥ ୩୬ ॥
ବ୍ରତ ଆଚରି ନ ପାରିଲେ ସକଳ କାମିନୀ ।
କରଯୋଡ଼ି କହନ୍ତି ପାଟ ମହାଦେଈ ତିନି ॥ ୩୭ ॥
[କୈକେୟୀ କୌଶଲ୍ୟା ଆବର ସୁମିତ୍ରା ।
ଏହୁ ବୁଝାବନ୍ତି ଶୁଣ ପ୍ରାଣନାଥ] ॥ ୩୮ ॥
ଆମ୍ଭେ ଅଚ୍ଛୁ ସ୍ୱାମୀର ବଚନେ ।
ଶୁଣି ହରଷ ହୋଇଲେ ଦଶରଥ ରାଜନେ ॥ ୩୯ ॥
ତହୁଂ ଆସି କହଇ ନୃପତି ଋଷିଶୃଙ୍ଗର ଆଗେ ।
ପାଟ ମହାଦେଈ ଅଛନ୍ତି ତିନହେଁ ବ୍ରତଯୋଗେ ॥ ୪୦ ॥
ମୁନି କହନ୍ତି ଯେସନେ ବିଧାତା ନିର୍ମାଣ ।
ସେ କିସ ଅନ୍ୟଥା ହୋଇବ ମହାରାଣ ॥ ୪୧ ॥
ଚଳ ଏବେ ଯିବା ସନ୍ୟ ସଜକର ।
ଅନ୍ତଃପୁର ରାଣୀ ସହିତେ କନେକ ଭଣ୍ଡାର ॥ ୪୨ ॥
ଋଷିଶୃଙ୍ଗ ସହିତେ ଦଶରଥ ତିନି ମହାଦେଈଙ୍କ ନେଇଗଲା ।
ତରିଣି ଦିବସେ କୃଷ୍ଣବେଣୀରେ ପ୍ରବେଶ ହୋଇଲା ॥ ୪୩ ॥
ବଶିଷ୍ଠ ମହାଯତି ଅଯୋଧ୍ୟାରେ ରହିଥିଲେ ।
ଆବର ପାତ୍ରମନ୍ତ୍ରୀ ସଙ୍ଗତେଣ ଥିଲେ ॥ ୪୪ ॥
[ଯାଗ୍ୟଂ ଆରୋପ ତହିଂ କରନ୍ତେ ମହୀପାଳ ।
ଶୁଭ ତିଥି ବିଗ୍ରହଣ ଦେଖିଲେ ଅନୁକୂଳ] ॥ ୪୫ ॥
ନିଷାଦ ନାମେଣ ସେ ଭୂମିର କାରେଣୀ ।
ତାହାର କୂଳେ ମଇଳ ହୋଇଲେ ଦଶରଥ ନୃପମଣି ॥ ୪୬ ॥
ସେ ଋଷିଶୃଙ୍ଗଙ୍କୁ କହଇ ଭଗତି ।
ହେ ମୁନି କେସନେକେ ମୋତେ ହୋଇବ ସନ୍ତତି ॥ ୪୭ ॥
ଋଷିଶୃଙ୍ଗ ବୋଲଇ ତୁହି ରଖସି ଯାଗଦ୍ୱାର ।
ତୋହର ଘରଯା ଧୂମ କରଉ ଆହାର ॥ ୪୮ ॥
ତଦ ଅନ୍ତରେ ଯାଗ ଆରୋପଣ କରନ୍ତି ।
ଗ୍ରହନ୍ତି ତୋଷ ନିମନ୍ତେ ରଙ୍ଗଧାନ ଆହୁତିରେ ଦିଅନ୍ତି ॥ ୪୯ ॥

---

୪୦-୪୨. ଏ ତିନି ପଦ ଖ ପୋଥିରେ ନାହିଁ । ୪୪. ପଦଟି ଖ ପୋଥିରେ ନାହିଁ । ୪୬-୪୭. ଖ ପୋଥିର ପାଠ :—ଦାସ ଶବର ବୋଲି ସେ ଭୂମିର ଆଧିପତି । ଋଷିଶୃଙ୍ଗ ପଛରେ ସେ ବିନୟ ଭଗତି ॥ ମୁହିଂ ଅପୁତ୍ରି କ ଶୁଣସି ମହାମୁନ୍ୟ । ତୋହର ପ୍ରସନ୍ନେ ସେ ମୋତେ ହେବା ପୁତ୍ରଦାନ । ୪୮. କରଉ—କରନ୍ତୁ(ଖ) । ୪୯. ଦିଅନ୍ତି—ଦିସ୍ୟନ୍ତି ।

ସମିଧ କାଠ କୁଶ ହବ ରଙ୍ଗପୁଷ୍ପ ।
ଘୃତ ଯବ ଦେଇ ଦିଗପାଳନ୍ତ କରନ୍ତି ତୋଷ ॥ ୫୦ ॥
ନିଷାଦ ଶବର ଯାଗଦ୍ୱାର ରଖଇ ।
ଲୁଚିକାକଇ ଦେନଇ ସେ ଧୂମ ପିବଇ ସେ କାର୍ତ୍ତସେନଇ ॥ ୫୧ ॥
ତେଣେ ସେ ଶବରୀ ଗର୍ଭବାସ ହୋଇଲା ।
ଶବରୀ ନାରାୟଣ ନିଷାଦ ଗର୍ଭେ ଉପୁଜିଲା ॥ ୫୨ ॥
ଅଯୋଧ୍ୟାରେ ଚଉବଂଶ ଡାକେଣୀ ଯେ ଥିଲେ ।
ରାଜାର ସନ୍ୟର ସଙ୍ଗତେ କୃଷ୍ଣବେଣୀକି ଗଲେ ॥ ୫୩ ॥
ଅଯୋଧ୍ୟା ନଗ୍ର ସେ ତେଜିଲେକ ଯହୁଁ ।
ତେଜ ଡାକେଣୀଙ୍କର କ୍ଷୀଣ ହୋଇଲାକ ତହୁଁ ॥ ୫୪ ॥
ନିଷାଦକଇ ଦେଖି ଡରେ ପଶିତ ନ ପାରିଲେ ।
ହୋମଘର ଉପରେ ସେ ବେଢ଼ିଣ ବସିଲେ ॥ ୫୫ ॥
ଧୂମପାନେଣ ସେ ଗର୍ଭବାସ ହୁଅନ୍ତି ।
ଚଉବଂଶ ଡାକେଣୀ ବାନର ଉପୁଜାନ୍ତି ॥ ୫୬ ॥
ବିମ୍ବ ନାମେଣ ସେ ଯେବଣ ଅପଛରୀ ।
ଦୁଇ ପୁତ୍ର ଗର୍ଭେ ସେ ଧଇଲାକ ସେ ନାରୀ ॥ ୫୭ ॥
ପଞ୍ଚବଂଶ ବାନର ଉପୁଜାଇଲେ ଯହୁଁ ।
ମୁକତି ହୋଇ ସ୍ୱର୍ଗକଇ ଗଲେ ତହୁଁ ॥ ୫୮ ॥
[ପୁତ୍ର ଜାତ କରି ସେ ଗଲେ ସ୍ୱର୍ଗପୁରୀ ।
ଅନ୍ତେଣ ସେ ଶ୍ରୀରାମଙ୍କୁ ପୀରତି ସର୍ବେ କରି] ॥ ୫୯ ॥
ସେ ପଞ୍ଚବଂଶ ମର୍କଟ ପର୍ବତେ ରହିଲେ ।
ଯୁଦ୍ଧର ବେଳେ ସେ ଯୂଥପତି ହୋଇଲେ ॥ ୬୦ ॥
ତାହାନ୍ତ ଯେନ ରାମ ସମର ଘୋର କଲା ।
ବିସର୍ବାର ତନୟେ ଦଶକନ୍ଧ ଛେଦିଲା ॥ ୬୧ ॥
[ରିକ୍ଷ ବାନର ସେ ଯେତେ ବନସ୍ତରେ ଥିବେ ।
ଧୂମ ପିବନ୍ତେ ସେ କାମେନୀ ଗର୍ଭ ହୋଇଲେ ॥ ୬୨ ॥
ସର୍ବେ ରିକ୍ଷ ପ୍ରସବଲେ ରିକ୍ଷପୁତ୍ର ।
ସେ ସେ ରାମଚନ୍ଦ୍ରଙ୍କର ହୋଇଲେ ଭଗତ] ॥ ୬୩ ॥
ଶ୍ରୀରାମ ଶୁଣି ବଶିଷ୍ଠଙ୍କ ମୁଖ ରହୁଁ ।
ସେ ମୁନି ସ୍ୱରୂପ କଥା ଏ ତ ପ୍ରକାଶନ୍ତି ଦୁଇଭାଇ ॥ ୬୪ ॥

---

୫୭–୫୮. ଏ ଦୁଇ ପଦ ଖ ପୋଥିରେ ନାହିଁ । ୬୦–୬୧. ଏ ଦୁଇ ପଦ ଚ ପୋଥିରେ ନାହିଁ ।

ମୋହର ଜନ୍ମକାଳେ ଆଗେ ମର୍କଟ ଜନ୍ମ ହୋଇଲେ ।
ତେବେ ସେ ସଂଗ୍ରାମେ ମୋହର ତହୁଁ ଆଗ ଝୁଞ୍ଜ କଲେ ॥ ୬୫ ॥
ବଶିଷ୍ଠ କହନ୍ତି ଏବେ ସ୍ଥିର ହୋଇଣ ଆସି ।
ଗ୍ରନ୍ଥ ଉକତ ବେଳେ ଆନ କଥା ନ ପ୍ରକାଶସି ॥ ୬୬ ॥
ଲବକୁମର କହଇ ବଚନ ରାମାୟେଣ ।
ସାବଧାନ ହୋଇ ତୁମ୍ଭେ ସମସ୍ତେ ହେ ଶୁଣ ॥ ୬୭ ॥
ଆଷାଢ଼ ଶୁକ୍ଳ ତ୍ରୟୋଦଶୀ ଚନ୍ଦ୍ରବାର ।
ସେହିଦିନ ଶ୍ରବଣା ନକ୍ଷତ୍ର ପ୍ରଚୁର ।
[ ଶୁଭ ଲଗ୍ନ ବଚରିଲ ରିଷିଶୃଙ୍ଗ ମୁନିବର ] ॥ ୬୮ ॥
ବେଦ ବିଧାନେ ସେ ଋଷି ଯାଗ କଲା ।
ଅନନ୍ତ ଶେଯ୍ୟା ଉପେଖି ବୈକୁଣ୍ଠନାଥ ଯାଗରେ ପ୍ରବେଶ ହୋଇଲା ॥୬୯॥
ଗରୁଡ଼ ଚଢ଼ି ନାରାୟଣ ଉଭା ହୋଇଲା ଯହୁଁ ।
ଦଣ୍ଡପ୍ରଣାମ କରି ମୁନି ସ୍ତୁତିଲାକ ତହୁଁ ॥ ୭୦ ॥
ଉଠ ବୋଲି ଆଜ୍ଞା ଦେଲେକ ଶ୍ରୀହରି ।
ତହୁଁ କରପତ୍ର ଯୋଡ଼ି କହନ୍ତି ତପସ୍ବୀ ॥ ୭୧ ॥
ହେ ଦେବ ଏଥକୁ କର୍ମ୍ମ ବଳସ୍ତେ କଲୁ ।
ମୁହିଁ ପଶୁ ଯୋନିରେ ଜାତ ମୋତେ ଶଙ୍କା କରାଇଲୁ ॥ ୭୨ ॥
ଶ୍ରୀହରି କହନ୍ତି ତୁହି ଭୟେ ନ କର ।
ତୋହର ହୋମେ ସେ ମୁହିଁ ହୋଇବି ଅବତାର ॥ ୭୩ ॥
ଏ ଦଶରଥ ଅନେକ ତପ କଲା ।
ମୋତେ ପୁତ୍ର ଇଚ୍ଛାରେ ବର ପ୍ରସାଦ ମାଗିଲା ॥ ୭୪ ॥
ଯେତେକ କଥା ଶ୍ରୀହରି ଋଷିଶୃଙ୍ଗଙ୍କୁ କହିଲେ ।
ଶ୍ରୀରାମର ଆଗେ ଲବକୁଶେ ଚୌତେଣ ଗାଇଲେ ॥ ୭୫ ॥
ଋଷିଶୃଙ୍ଗ କହଇ ଶୁଣସି ଗଦାଧାରୀ ।
ତୁହି ଗର୍ଭବାସ କେସନେକେ ହୋଇବୁ ଚକ୍ରଧାରୀ ॥ ୭୬ ॥
ଶ୍ରୀକୃଷ୍ଣ କହନ୍ତି ମୁହିଁ ଦୁଃଖ ନ ପାଇଲେ ।
ରାବଣ ମରଇ କି ଆନର ବୋଲେ ॥ ୭୭ ॥

---

୬୪-୬୫. ଏ ଦୁଇ ପଦ ବଦଳେ ଖ ପୋଥିରେ ରହିଛି :—ଶୁଣିଣ ଶ୍ରୀରାମ ଉପରକଇ ଗୁହିଁ । ଏତେ କବାଣ ଯେବେ କଣଅଛି ବହି ॥ ମୋହର ଜନ୍ମ କାଳେ ଧର୍ମ୍ମ ଆରୋପିଲେ । ତେଣେ ସେ ସଂଗ୍ରାମେ କେହି ବଥା ନ ପାଇଲେ ॥ ୬୭. ରାମାୟେଣ—ରାବାୟଣ(ଖ) । ୬୯-୮୮. ଏହି କୋଡ଼ିଏ ପଦ ବଦଳେ ଖ ପୋଥିରେ ପଦେ : ସେ ଦିନେ ଯାଗ୍ୟଂ ଆରୋପଣ କଲେ । ଅଶିଣ ଶୁକ୍ଳ ପୌର୍ଣ୍ଣମୀରେ ପୂର୍ଣ୍ଣଆହୁତ ଦେଲେ ॥ ୭୪. ପ୍ରସାଦ ମାଗିଲା—ପ୍ରସାଦଲା ।

ତେତିଶି କୋଟି ଦେବତାଙ୍କୁ କଲେକ ବଶୀଭୂତ ।
ଏସନେକେ ବର ଦେଲେ ଉମାଦେବୀର କାନ୍ତ ॥ ୭୮ ॥
ରାବଣର ବଧ୍ୟ ଅର୍ଥେ ଏ ମୋହର ଭାବେନା ।
ଜନେକର ଘରେ ଉପୁଜି ଅଛୁ ସୀତା ନାମେ ଲକ୍ଷ୍ମୀସେନା ॥ ୭୯ ॥
ମୁଇ ଉପୁଜି ସୀତାକଇ ବିଭା ହୋଇବ ।
ଜାନକଙ୍କ ସେନ ମୁହିଂ ବନବାସ ଯିବ ॥ ୮୦ ॥
ବନସ୍ତୁ ଜାନେକଙ୍କ ହରନେମ ଦଶମାଥ ।
ତେବେ ସେ ରାବଣର ବଂଶ କରିବ ନପାତ ॥ ୮୧ ॥
ଋଷିଶୃଙ୍ଗ କହଇ ଯେବଣ ତ ହୋଇବୁ ।
ଦୁଇ ଭୂଜେ ସେ ଧନୁଶର ବହିବୁ ॥ ୮୨ ॥
କେହୁ ହି ନ ଜାଣିମୁ ଗତଆଗତ ।
ମନୁଷ୍ୟ ଆକାର ସେ ପ୍ରଚରିବ ତୋହର ଚଣ୍ଡ ॥ ୮୩ ॥
ଚତୁର୍ଭୁଜେ ଦେଖିଲେ ସମସ୍ତେ ହୋଇବେ ମୁକତ ।
ଦେବଗଣମାନେ ମୋତେ ଦେବେ ଅପକ୍ଷାତ ॥ ୮୪ ॥
ତୁଇ ବିଷ୍ଣୁ ନାଥ ସତ୍ୟ ଉଗ୍ରରୁ ଯେବେ ।
ତେବେ ସେ ବ୍ରତେ ମୁହିଂ କରଇ ନା ତେବେ ॥ ୮୫ ॥
ଋଷିଶୃଙ୍ଗ ବଚନ ଶୁଣି ହୃଷୀକେଶ ।
ସତ୍ୟ ଉଗ୍ରର ଅଗ୍ନିରେ ଦେଲେ ଝାସ ॥ ୮୬ ॥
ବେଦମନ୍ତ୍ରେ ଆହୁତ ଦଅଇ ବିଭାଣ୍ଡେକ ସୂନ ।
ଅଶ୍ଵିନ ଶୁକଳ ଦଶମୀ ଯାଗ ହୋଇଲା ସମ୍ପୂର୍ଣ୍ଣ ॥ ୮୭ ॥
ଯଉଇନ୍ଦ୍ର ହୋଇ ଋଷିଶୃଙ୍ଗ ଥିଲା ।
ବିଷ୍ଣୁନାଥ ସୂମର ପୂର୍ଣ୍ଣଆହୁତ ଦେଲା ॥ ୮୮ ॥

## ତାନରାଣୀଙ୍କ ଗର୍ଭବାସ

ପଣ୍ଡିତବାର ଅନୁରାଧା ନକ୍ଷତ୍ର ।
ଚରୁ ଅନଳୁ କାଢନ୍ତେ ତପୋବନ୍ତ ॥ ୧ ॥
ମୃତବନ୍ତ ହୋଇ କହଇ ବହୁତ ।
ଶୁଣ ଋଷିଶୃଙ୍ଗ ବାଳୁତ ମହାଯଜ୍ଞ ॥ ୨ ॥
ଏ ଚରୁ ତପୋଧନ ବିନାଶ(ନ) କରିବୁ ।
ଏହି କ୍ଷଣି ଜାତ ହୋଇବ ଶୁଦ୍ଧ ଯେବେ ପୁନ ଲୋଡ଼ିବୁ ॥୩॥

---

୮୫. ଉଗ୍ରରୁ—ଉଗ୍ରଂରୁ । ୮୬. ଅଗ୍ନିରେ—ଆଗ୍ୟାଂରେ । ୮୭. ଯାଗ—ଜାଗୁ ।
୧. ଅନଳୁ—ଅନ୍ନଲୁ(କ) ।

ମୁନିବର କହନ୍ତି ତୁହ୍ମ ନ କର ଏସନ ବାଣୀ ।
ଅନେକ କଷ୍ଟେ ଅଛନ୍ତି ଦଶରଥର ତିନିରାଣୀ ॥ ୪ ॥

ଏ ଚରୁ ସେ ତିନି ଭଗ୍ନୀ ଭୁଞ୍ଜିବେ ।
ସସାର ଅଗ୍ରେରେଣ ଶୃଙ୍ଗାର କଥା ଆଗୃଶବେ ॥ ୫ ॥

ତେମନ୍ତେ ସେ ପୁଅ ହୋଇବେ ଉତପତ ।
ଶୁଣି ସନମତ କଲେ ତୁରିତ ହେତ ॥ ୬ ॥
ଅନଳ୍କୁ ମହରୃଷି ଚରୁ କାଢ଼ଇ ।
ଦଶରଥକୁ ହକାରି ବିଶ୍ୱାସ କରି କହଇ ॥ ୭ ॥
ଏ ଚରୁ ଘେନ ତୁହ୍ମ ଭିତରକୁ ଯାସି ।
ତିନି ମହାଦେଇଙ୍କି ସେ ଚରୁ ନେଇ ଦେସି ॥ ୮ ॥
ଏ ଚରୁ ସେ ଭୋଜନ କରିବେ ।
ତିନି ଭବାନୀ ତୋହର ପୁତ୍ରବନ୍ତେ ହୋଇବେ ॥ ୯ ॥
ନୃପତି[କ]ରେ ଚରୁ ଦେଲେ ତପୋଧନ ।
ଅନ୍ତଃପୁରକୁ ଗଲେ ରାଜା ହସ୍ତରେ ଚରୁ ଘେନ ॥ ୧୦ ॥
ତିନି ଭାରିଯାନ୍ତ ସନିଧେ ହକାରଇ ।
ମନ ଉଗ୍ରହାରେ ଭୋଳ ହୋଇଲେ ନୃପବରଇ ॥ ୧୧ ॥
ପଛେ କେକୟୀ ଆଗେ କଉଶଲ୍ୟା ।
ଦୁଇ ଭାରଯାଙ୍କର ହସ୍ତରେ ନୃପତି ନେଇ ଦେଲ ॥ ୧୨ ॥
ପଛେଣ ଅଇଲ ସୁମିତ୍ରା ଦେଈ ।
ରାଜାର ମୁଖ ଚୃହିଂ କୌଶଲ୍ୟା ଦେବୀ କହି ॥ ୧୩ ॥
ହେ ଦେବ କିପାଇଂ ତୁହ୍ମ ଅବିଗୃର କଲୁ ।
ଆମ୍ଭକଇ କମା ତୁହ୍ମ ଚରୁଅର୍ଦ୍ଧ ଦେଲୁ ॥ ୧୪ ॥
ସୁମିତ୍ରାହ୍ମ ଯେ ବ୍ରତ ଆଚରଣ ଥିଲ ।
ଏହାକଇ କମା ତୋହର ଦୟା ନୋହିଲ ॥ ୧୫ ॥
[ସୁମିତ୍ରା ବ୍ରତ ଆଚରି ଅଛଇ ମହାଦୁଃଖୀ ।
ଧାର୍ମିକ ବିବେକ ସେ ଅଟଇ ଚନ୍ଦ୍ରମୁଖୀ] ॥ ୧୬ ॥

ଦଶରଥ କହଇ ମୁହିଂ ବୁଝି ତ ନ ପାରିଲ ।
ହରଷେ ତୁମ୍ଭେ ଦୁଇ ଭଗ୍ନୀକି ଚରୁ ଦେଲ ॥ ୧୭ ॥

ତିନି ବଇଦେହୀଙ୍କର ତୁମ୍ଭର ଏକପିତା ।
ଗର୍ଭେ ତିନିଙ୍କି ଧଇଲ ଏକ ମାତା ॥ ୧୮ ॥

୫. ଭଗ୍ନୀ—ଭଗି(କ), ସସାର—ସସାଂର । ୭. ଅନଳ୍କୁ—ଅନ୍ନଲୁ(କ) ।
୧୧. ହକାରଇ—ହକାରି(କ) ; ମନ ଉଗ୍ରହାରେ—ମଦନଇଗ୍ରରେ(କ) ।

ଧର୍ମର ଯୋଗେ ଏକ ଭୃଥା ପାଇଲ ।
ତିନିହେଁ ମହାକଷ୍ଟେ ବ୍ରତ ଆଚରିଲ ॥ ୧୯ ॥
ତିନି ଭାଗ କରି ତିନିହେ ଚରୁ ପାନ କର ।
ମୋହର କଥାକୁହ ଅଭିମାନ ନ କର ॥ ୨୦ ॥
ସ୍ୱାମୀର ବଚନ ଶୁଣିଲେକ ଯହୁଂ ।
କଉଶୁଲ୍ୟା କକେୟୀ ଚରୁ ତିନି ଭାଗ କଲେ ତହୁଂ ॥ ୨୧ ॥

ସୁମିତ୍ରାର ମୁଖ ଗୃହୁଂ କଉଶୁଲ୍ୟାଏ କହନ୍ତି ।
ଏ ଚରୁ ଭୁଞ୍ଜ ହରଷ ହୋଇ ମତି ॥ ୨୨ ॥
ଚରୁ ତିନିଭାଗ ଯହୁଂ ସୁମିତ୍ରା ଦେଖିଲା ।
କର ପଦ ଯୋଡ଼ି ସୁମିତ୍ରା ଭଗ୍ନୀଙ୍କି କହିଲା ॥ ୨୩ ॥
କିପାଇଂ ଗୋ ଚରୁ ତିନିଭାଗ କଲ ।
ମୋତେ ଭଗ୍ନୀହେ ଅକଲ୍ୟାଣ ଚିନ୍ତିଲ ॥ ୨୪ ॥

ସାନ ଭଗ୍ନି ମୁହିଂ କନେଷ୍ଟ ସପତଣୀ ।
ଦାସୀଙ୍କର ସଙ୍ଗତେ ଏହାକଇ ଗଣି ॥ ୨୫ ॥
ବଡ଼ ସପତଣୀଙ୍କ ଯେ କରଇ ଅମରଷ ।
ସକଳ ଧର୍ମ ତାର ହୁଅଇ ବିନାଶ ॥ ୨୬ ॥
ସ୍ୱାମୀ ଯେବେ ତୁମ୍ଭ ଦୁହିଂଙ୍କ ଚରୁ ଦେଲେ ।
ଧର୍ମ ହୋଇବ ନା ମୋହର ସରି ଭାଗ ଭୁଞ୍ଜିଲେ ॥ ୨୭ ॥

ତୁମ୍ଭେ ଦୁଇ ଭଗ୍ନି ଚରୁ ଭୁଞ୍ଜହ ।
ତୁମ୍ଭର ଉଚ୍ଛିଷ୍ଟ ପଛେ ମୋତେ କୋଣେ କୋଣେ ଦିଅ ॥ ୨୮ ॥
ଏସନେକ କହି ସୁମିତ୍ରା ଚରୁ ଏକଭାଗ କଲା ।
ଦୁଇ ଭଗ୍ନୀଙ୍କର ହସ୍ତେ ଚରୁ ଦୁଇ ଭାଗ କରି ଦେଲା ॥ ୨୯ ॥
ଡାହାଣ ହସ୍ତର ଚରୁ କଉଶୁଲ୍ୟାକୁ ଦେଇ ।
ବାମ ହସ୍ତର ଚରୁ ଘେନଲ୍ କକଇ ॥ ୩୦ ॥
ହରଷ ଚିତ୍ତେ ଦେବୀ କଉଶୁଲ୍ୟା ।
ବିଷ୍ଣୁ ନାଥକଇ ସୁମରି ଚରୁ ଭୁଞ୍ଜିଲ୍ ॥ ୩୧ ॥
ତଦଅନ୍ତରେ କୟେକୟୀ ମହାଦେଈ ।
ସୁରପତିଙ୍କ ସୁମରି ସେ ଚରୁ ଭୁଞ୍ଜଇ ॥ ୩୨ ॥
କଉଶୁଲ୍ୟା ଦେବୀ ଆଗେ ମନ ସାରିଲା ।
ସୁମିତ୍ରାକୁ ନେଇ ଚରୁ କୋଣେକ ଦେଲା ॥ ୩୩ ॥

---

୨୩. ଚରୁ—ଚର(କ) । ୨୭-୨୮. ଏ ଦୁଇ ପଦ ଖ ପୋଥିରେ ନାହିଁ ।
୩୨. ସୁରପତି—ଶ୍ରୀହରି(ଖ) । ୩୩. ଚରୁ—ଗୈରୁ(କ) ।

ଜ୍ୟେଷ୍ଠକନ୍ୟା ଦେଖଇ କଉଶଲ୍ୟାର ହାଅନ୍ତେ ।
ସେ ହି ଚରୁ ଦେଲେ ନେଇ ସୁମିତ୍ରାଙ୍କର ହସ୍ତେ ।। ୩୪ ।।
ତେବେ ସେ ସୁମିତ୍ରା ହରଷ ହୋଇଲା ।
ଧର୍ମ ନାରାୟଣଙ୍କୁ ସ୍ମରି ଚରୁ ଭୁଞ୍ଜିଲା ।। ୩୫ ।।

ତହୁଂଣ ବାହୁଡ଼ିଲେ ଦଶରଥ ନୃପତି ।
ଋଷିଶୃଙ୍ଗ ମହାଋଷି ଯାଗରେ ଅଛନ୍ତି ।। ୩୬ ।।
ଦଶରଥଙ୍କୁ ସେ କହନ୍ତି ମହାମୁନ୍ୟ ।
ଦାନ ଦକ୍ଷିଣା ଦେଇ ତୋଷ କରହ ବିପ୍ରଜନ ।। ୩୭ ।।
ବୈଷ୍ଣବ ତପୋଧନ ଯେତେ ଅଛନ୍ତି ମାଗତା ।
ଯେ ଯାହାର ଅନରୂପେ କରସି ତୁହି ଚନ୍ତା ।। ୩୮ ।।

ମୁନିବଣ୍ଟି ବଚନ ଶୁଣି ଦଶରଥ ମହୀପତି ।
ଦାନ ଦକ୍ଷିଣା ଦେଇ ରଞ୍ଜଇ ସକଳ ମତି ।। ୩୯ ।।
ରାଣୀଙ୍କ ଘେନି ତହିଂ ଦଶରଥ ଆଇଲା ।
ଅଯୋଧ୍ୟା ନଗ୍ରେ ସେ ପ୍ରବେଶ ହୋଇଲା ।। ୪୦ ।।
କଟକେ ଉଛବ କରାଇଲା ନୃପତି ।
ଅନ୍ତପୁରେ ବିଶ୍ରାମ କରନ୍ତି ତିନି ଯୁବତୀ ।। ୪୧ ।।

ବୃଥା ସ୍ତ୍ରିଖ ଯେ ରଜବୀର୍ଯ୍ୟ ନ ଥିଲା ।
ଚରୁ ଭୁଞ୍ଜନ୍ତେ ଶରୀର ଉନ୍ମତ ହୋଇଲା ।। ୪୨ ।।
ଦଶରଥ ନୃପତି ଶୃଙ୍ଗାରକୁ ଇଛଇ ।
ତିନି ମହାଦେଇ ତୁଲେ ମେଳ ଗଛଇ ।। ୪୩ ।।
କାର୍ତ୍ତିକ ଶୁକଳ ତ୍ରୟୋଦଶୀ ଦିନ ।
ଶୁଭ ତିଥି ବାର ନକ୍ଷତ୍ର ବିଦ୍ୟମାନ ।
[ବିଛ ସଂକରାନ୍ତି କ ଭୋଗ୍ୟ ସେ ଦିନେଣ] ।। ୪୪ ।।
ସେ ଦିନ କଉଶଲ୍ୟାଙ୍କର ତୁଲେ ନୃପତି ମେଳ ହୋଇ ।
ମାହେନ୍ଦ୍ର ଅନକୂଳେ ଗର୍ଭରେ ବୀର୍ଯ୍ୟ ରହି ।। ୪୫ ।।
ମାର୍ଗଶିର କୃଷ୍ଣ ଦ୍ୱାଦଶୀର ରାତି ।
କକୟାଙ୍କର ସଙ୍ଗତେ ରମଣ ମହୀପତି ।। ୪୬ ।।
ତୃତୀୟା ଗୁରୁବାର ପୁଷ୍ୟା ନକ୍ଷତ୍ର ।
ସୁମିତ୍ରା ତୁଲେ ରମଣ ସେ ରାତ୍ର ।। ୪୭ ।।

---

୩୪. ହାଅନ୍ତେ—ହସ୍ତେ । ୩୫. ଧର୍ମ ନାରାୟଣଙ୍କୁ—ନାରାୟେଣଙ୍କୁ(କ) ।
୩୭. କରହ—କରଇ(କ) । ୪୨. ଶରୀର—ଶରରେ । ୪୬. ଦ୍ୱାଦଶୀ—ତୃତୀଆ(ଖ) ।

ତିନ ଯୁବତୀ ଗର୍ଭବାସ ହୋଇଲେ ।
ଦିନେ ଦିନେ ଶରୀରେ ଆଳସ ବୃଦ୍ଧିଲେ ॥ ୪୮ ॥
ଅନ୍ତଃପୁରେ ରାଣୀ ମୃଦୁସ୍ମିତା ପରିବାସୀ ।
ସମସ୍ତେ ତିନ ମହାଦେଈଙ୍କି ଥାନ୍ତି ମନ ହରି ॥ ୪୯ ॥
ସନ୍ନିଧ୍ୟ କ୍ଷଣେ ନ ଛାଡ଼ଇ ରାଜନ ।
ମଧୁର କୋମଳ କହଇ ପ୍ରିୟ ବଚନ ॥ ୫୦ ॥
ଶୀତଳ ଆହାର ପୁଷ୍ପ ଶୀନ୍ନବାସ ।
ଅନେକ ପରବାସୀ ଗ୍ରମର ଢାଳନ୍ତି ତତ୍‌ପାଶ ॥ ୫୧ ॥

## ରାମାଦି ଚାରିଭାଇଙ୍କ ଜନ୍ମ

ଏମନେକେ ଦଶ ମାସ ସମ୍ପୂର୍ଣ୍ଣ ହୋଇଲା ।
ଶୁଭଲଗ୍ନେ କଉଶଲ୍ୟାଙ୍କର ପେଟ ବଥାଇଲା ॥ ୧ ॥
ଭାଦ୍ରବ ଶୁକ୍ଳ ଏକାଦଶୀ ଅର୍ଦ୍ଧରାତ୍ର ସକାଳ ।
ସେ ନିଶି କୌଶଲ୍ୟାଙ୍କର ଗର୍ଭେଣ ପୁତ୍ର ଜାତ ॥ ୨ ॥
ଅନେକ ଯୁବତୀ ସନ୍ନିଧେଣ ଥିଲେ ।
ସ୍ୱରରେ କାମେଙ୍ଗା ହୁଳହୁଳି ଦେଲେ ॥ ୩ ॥
ସ୍ୱର୍ଗକଇ ଶବଦ ଶୁଭିଲାକ ସତ୍ତ୍ୱ ।
ବୃହସ୍ପତିକି ହକାରି ଇନ୍ଦ୍ର ପୁଚ୍ଛଇ ତତ୍ତ୍ୱ ॥ ୪ ॥
ଅଯୋଧ୍ୟା ନଗ୍ରେ ତ ମଙ୍ଗଳ ଶୁଭିଲା ।
ବୃହସ୍ପତି କହନ୍ତି ଆଜ ବିଷ୍ଣୁ ଜନମ ହୋଇଲା ॥ ୫ ॥
ଏବେ ସେ ସବୁଙ୍କର ସରିଲା ଅରିଷ୍ଟି ।
ଇନ୍ଦ୍ର ଆଗ୍ୟାଂ ଦେଲା କରି କୁସୁମ ବୃଷ୍ଟି ॥ ୬ ॥
ଇନ୍ଦ୍ର ଆଗ୍ୟାଂ ଦେଲା ସେ କୁସୁମସେନ ।
ଅଯୋଧ୍ୟାରେ କୁସୁମ ବୃଷ୍ଟି ସେ କରଇ ଘନ ଘନ ॥ ୭ ॥
ହରଷ ହୋଇଲେ ଅଯୋଧ୍ୟା (ନ)ରନାରୀ ।
ଅନେକ ଯୁବତୀ ସେ ଅନ୍ତପୁରେ ପୂରି ॥ ୮ ॥
ସୁବର୍ଣ୍ଣର କାତି ଘେନି କୁମରଙ୍କର ନାଭି କାଟନ୍ତି ।
ସୁବାସ ନୀର ଜଳେ ଶରୀର ପଖାଳନ୍ତି ॥ ୯ ॥
ଗଜଦନ୍ତ ପଲଙ୍କେ ପାଟ ନେତ ସୁପାତି ପାଡ଼ିଲେ ।
ସ୍ଥଳ ସୁସଜ୍ଜ କରି ଓଳିଡ଼ ଓଗ୍ଭଇଲେ ॥ ୧୦ ॥

---

୪୯–୫୧. ଏ ତିନ ପଦ ଖ ପୋଥିରେ ନାହିଁ । ୪–୮. ଏ ପାଞ୍ଚ ପଦ ଖ ପୋଥିରେ ନାହିଁ ।

[ସିଂହ ଶୁକ୍ଳ ପୌର୍ଣ୍ଣମୀ ସମ୍ପୂର୍ଣ୍ଣ ।
ରାତ୍ର ବେନ ଘଡ଼ିରେ କକୟୀ ପୁତ୍ର ଜନ୍ମ ॥ ୧୧ ॥
ସେହି ରଜନୀ ତିନ ପହରେ ।
ସୁମିତ୍ରା ପ୍ରସବିଲେ ବେନ କୁମରେ ॥ ୧୨ ॥
ତିନି କୁମାରଙ୍କୁ ନେଇ ଶୁଆଇଲେ ଜେଷ୍ଟକୁମାର ପାଶ ।
ଓନ୍ତଡ଼ି ଓଗ୍ଲାଇଲେ ବିବିଧ ଝୀନବାସ] ॥ ୧୩ ॥
ଉପରେ ଗୃନ୍ଦୁଆ ଚଉକତ ପଡ଼ିଛି ଟେରା ।
ଚନ୍ଦନ ଅଗର କାଠେ ଜାଳନ୍ତି ଅନ୍ତରା ॥ ୧୪ ॥
ଦଶରଥଙ୍କଇ ପୁତ୍ର ଦ୍ରଶନ କରାବନ୍ତି ।
ବଶିଷ୍ଟ ମହାମୁନି ଗୃର କୁମରନ୍ତି ଦେନନ୍ତି ॥ ୧୫ ॥
ବିଶ୍ୱାସ ଅମନାତ୍ୟ ସୁମନ୍ତ୍ର ମଧୁକେଶୀ ।
ରାଜାର ପୁତ୍ରନ୍ତି ସମସ୍ତେ ଦେଖନ୍ତି ଆସି ॥ ୧୬ ॥
ବଶିଷ୍ଠ କହନ୍ତି ଶୁଣ ଦଶରଥ ।
ଗୃହମେଧ ତହିଁକି ସେ ପ୍ରମନ୍ତ୍ର ଦୂତ ॥ ୧୭ ॥
ସେ ତୋହର ତିନ ଭାରିଯାଙ୍କର ଭାଇ ।
ଏହା ଦେଖି ସେ ମୋକ୍ଷ କରୁ ଦେହି ॥ ୧୮ ॥
ଶୁଣି ଦଶରଥ ହରଷ ହୋଇଲା ।
ଗୃହମେଧ ତହିଂ ଦୂତ ବରଗିଲା ॥ ୧୯ ॥
ରାଜାର ଆଗ୍ୟାଂରେ ଡଗରେ ଗଲେ ।
ଗୃହମେଧ ନୃପତିକି ଦଶଦିନେ ଯାଇ ଜଣାଇଲେ ॥ ୨୦
ଦଶରଥ ନୃପତିର ଉପୁଜିଲା ନନ୍ଦନ ।
ତୋହର ଭଗ୍ନୀଙ୍କର ଗର୍ଭେ ଉତପନ ॥ ୨୧ ॥
ଶୁଣି ଗୃହମେଧ ହରଷ ହୋଇଲା ।
ଦ୍ରବ୍ୟ ରତ୍ନ ଝୀନବାସ ବଧାଇ ସେ ଦେଲା ॥ ୨୨ ॥
ସାତ ପୁତ୍ର ଘେନି ଗୃହମେଧ ଆସଇ ।
ଅଯୋଧ୍ୟା ନଗ୍ରେ ସେ ତିନ ଦିନେ ପ୍ରବେଶଇ ॥ ୨୩ ॥
ଆସ୍ଥାନେ ବିଜୟେ ଦଶରଥ ରାଜନ ।
ଗୃହମେଧ ନୃପତି ଯାଇ କରଇ ଦ୍ରଶନ ॥ ୨୪ ॥
ବଶିଷ୍ଠଙ୍କର ଚରଣ ଧରି ପ୍ରଣମିତ ହୋଇଲା ।
ତଦଅନ୍ତରେ ଅନ୍ତଃପୁରକଇ ଗଲା ॥ ୨୫ ॥

---

୧୪. ଅଗର—ଓଗୋର (କ) । ୧୬. ବିଶ୍ୱାସ—ବଶିଷ୍ଟ(କ) । ୧୭. ପ୍ରମନ୍ତ୍ର—ପ୍ରମନ୍ତ୍ରନ୍ତ୍ର(କ) ।

ଘେନି ବଢ଼େଇଣୀଙ୍କି ନମସ୍କାର ହୋଇଲା ।
ଉଠି ଉଭା ହୋଇ ସଧୀରେ ଗୃହଂଲ ।। ୨୬ ।।
ଚାରି କୁମାରଙ୍କ ସନ୍ନିଧକଇ ଯାଇ ।
ଲକ୍ଷେକ ମଣି ସନ୍ନଧେଣ ଥୋଇ ।। ୨୭ ।।
ଚାରି ଭଗ୍ନିଜଙ୍କୁ ସେ କୋଡ଼ରେ ଧଇଲା ।
ସମ୍ମୁଖେ ବିଷ୍ଣୁର ନିଜ ରୂପ ଦେଖିଲା ।। ୨୮ ।।
ବିଧଂସ ନୃପତି ସେ ମନେ ଉପଲେଖଇ ।
ପୃଥ୍ୱୀର ଭାର ଏ କରିବ ଉଦ୍ଧାରଣେଇ ।। ୨୯ ।।
ପ୍ରତକ୍ଷେ ଜାତ ହୋଇଲା ଶ୍ରୀଧର ନାରାୟଣ ।
ନାନା ତୀର୍ଥରେ ଯେ ଥିଲେ ଋଷିଗଣ ।। ୩୦ ।।
ବିଷ୍ଣୁଙ୍କୁ ଦେଖିବାକୁ ଅଯୋଧ୍ୟାକୁ ଆଇଲେ ।
ଚାରି କୁମରଙ୍କୁ ଦେଖି ସନ୍ତୋଷ ହୋଇଲେ ।। ୩୧ ।।
ବେଦ ଧ୍ୱନି କରନ୍ତି ସକଳ ତପୋଧନ ।
କରଯୋଡ଼ି ପୁଚ୍ଛଇ ସେ ଦଶରଥ ରାଜନ ।। ୩୨ ।।
ଭୋ ତପସ୍ୱେ ମୁହିଂ ତୁମ୍ଭଙ୍କଇ ଦେଖି ।
ନିର୍ମଳ ହୋଇଲା ମୋହର ବେନି ଆଖି ।। ୩୩ ।।
ଛସ୍ୱାଣୋଇ ପୁରୁଷ ଯେ ହୋଇଲେ ମୁକତ ।
ସକଳ ତପୋଧନେ ଯହୁଁ ବିଜୟେ କଲେ ଏଥ ।। ୩୪ ।।
ମୁନିଜନେ କହନ୍ତି ଶୁଣସି ରାଜନ ।
ତୋହର କୋଳେ ଉପୁଜିଲା ଏ ଚାରି ନନ୍ଦନ ।। ୩୫ ।।
ସୂର୍ଯ୍ୟବଂଶେ ରାଜା ତୁହି ବୀରବର ଗରୁହଂସି ।
ଦେବତା ବ୍ରାହ୍ମଣେ ତହିଂ ଭଗତି ଅହନିଶି ।। ୩୬ ।।
ତେଣୁ ସେ ତୋହର ପୁତ୍ରକଇ ଅଇଲ ।
କୁମରନ୍ତି (ହେବା) ଶୁଣି ହରଷ ହୋଇଲୁ ।। ୩୭ ।।
ତୋହର ପୁତ୍ରନ୍ତ ଦେଖି ତୃଷ୍ଣା ସାରିବୁ ।
ଏ ଆମ୍ଭର ପାତକ ସକଳ ନାଶିବୁ ।। ୩୮ ।।
ଶୁଣି ଦଶରଥ ଯେ ହରଷ ହୋଇଲା ।
ଧାତ୍ରୀଗଣନ୍ତ ହକାରି ତତକ୍ଷଣେ ଆଗ୍ୟାଂ ଦେଲା ।। ୩୯ ।।

---

୨୮. ଭଗ୍ନିଜଙ୍କୁ—ଭଗ୍ନିଜାକ(କ) ; ସମ୍ମୁଖେ—ସରୂପେ(ଖ) । ୨୯. ପଦଟି ଖ ପୋଥିରେ ନାହିଁ ; ଭାର ଏ—ଭାରସ୍ୱେକ । ୩୦. ତୀର୍ଥରେ—ତର୍ଥରେ(କ) । ୩୩. ମୋହର—ତୁମ୍ଭର(କ) । ୩୬. ଭଗତି—ଉପଗତ(କ) । ୩୮. ପଦଟି ଖ ପୋଥିରେ ନାହିଁ । ୩୯. ଯେ ହରଷ—କେହରଥକେହରଷ(କ) ।

ମୁନିର ସନ୍ଧିକୁ କୁମରକୁ ଘେନି ଆସ ତଡ଼ିତ ।
ଧାଳୀର ବଚନେ ବେଗ ଗଲେ ଗୃହ ଧାତ୍ରୀ ॥ ୪୦ ॥
ଶ୍ରୀରାମର ଧାତ୍ରୀର ନାମ ଯେ ମୋଚନା
ଭରଥ ଧାତ୍ରୀର ନାମ ଚଞ୍ଚଳା କନ୍ୟା ॥ ୪୧ ॥
ଲକ୍ଷ୍ମଣର ଧାତ୍ରୀ ଯେ ଚନ୍ଦ୍ରା ନାମେ ନାରୀ ।
ଶତ୍ରୁଘନଙ୍କ ଧାତ୍ରୀ ଉର୍ବସି ସୁନ୍ଦେଶ୍ୱରୀ ॥ ୪୨ ॥
ଏ ଗୃହ ଧାତ୍ରୀ ତନୟେ କୋଳେ ଧରି ।
ଅଇଲେ କାମେମା ଯହିଁ ଅଛନ୍ତି ତପସ୍ୱୀ ॥ ୪୩ ॥
ସନ୍ନିଧେଣ ଆଣି ଯହୁଁ କୁମରନ୍ତ କଲେ ।
ଆସନ ଉପେଖି ମୁନି ଉଭା ହୋଇଲେ ॥ ୪୪ ॥
ଏକଇ ଆରେକ କହଇ ଧୀରଧୀର ।
ଏ ସେ ନବାଶବ ପୃଥିବୀର ଭାର ॥ ୪୫ ॥
ଦେବଙ୍କର ବଇରି ଅସୁର ଦଶକନ୍ଧ ।
ଏହାର ଭାଜଯା ଯେ ହରିବ ଦୁଷ୍ଟ ମନ୍ଦ ॥ ୪୬ ॥
କ୍ଷତ୍ରି ବର ସୁନ୍ଦର ଏ ବୀର ଚକ୍ରବର୍ତ୍ତୀ ।
ଦନୁଜ ବିଧ୍ୱଂସିବ ଏ ଲଙ୍କାର ନୃପତି ॥ ୪୭ ॥
ଏହାରେ ସେ ନିଶ୍ଚେ ନ୍ତ୍ରେଣ ବନସ୍ତରେ ଥିବା ।
ନାନା ତୀର୍ଥ ବୁଲି ଧର୍ମ ଅରଜିବା ॥ ୪୮ ॥
ଦଶରଥଙ୍କୁ କହନ୍ତି ମୁନିଗଣମାନ ।
ଆମ୍ଭର କଥାଏ ଶୁଣ ତୁ ରାଜନ ॥ ୪୯ ॥
ତୋହର ପୁରେ ଆମ୍ଭେ ବିଶ୍ରାମ କରିବୁ ।
ବଂଶ ରାଜ କୁମରକୁ ଦୋଳରେ ଶୁଆଇବୁ ॥ ୫୦ ॥
ସୁଚନ୍ଦ୍ରେ ଯେବଣ ନାମ ଦେବୁ ବିଚାରି ।
ତେବେ ସେ ଯିବୁ ଆମ୍ଭେ ଯେ ଯାହାର ପୁରୀ ॥ ୫୧ ॥
ଶୁଣି ଦଶରଥ ଯେ ହରଷ ହୋଇଲେ ।
ବିଚିତ୍ର ନବରେ ଋଷିଙ୍କି ବସା ଦେଲେ ॥ ୫୨ ॥
ଇକ୍ଷୁରସ ବିବିଧ କଦଳୀ ଫଳ ।
ମହର୍ଷିଙ୍କି ଆହାର ଦେଲ ମହୀପାଳ ॥ ୫୩ ॥

---

୪୧. ଚଞ୍ଚଳା—କମଚନା(କ) । ୪୨. ଯେ ଚନ୍ଦ୍ରା ନାମେ ନାରୀ—ର ନାମ ବାଲୀ(କ) ; ଉର୍ବସି ସୁନ୍ଦେଶ୍ୱରୀ—ପଳାସିବେଲହଳ । ୪୮. ଏହାରେ—ଏହାର(କ) । ୫୦. ଦୋଳରେ—ଦଳରେ(କ) । ୫୩. ରସ—ରସୁ ; ଦେଲ—ଦେଲ ।

ହରଷେ ମୁନିବର ରହିଲେ ସେ ପୁରୀ ।
ଶୁଭେ ବିଂଶ ଦିବସ ହୋଇଲା ସମସରି ।। ୫୪ ।।

ବିଂଶ ଦିବସ ରଜନୀ ପ୍ରଥମ ପ୍ରହର ।
ଅନେକ ଆନନ୍ଦ ସେ ନୃପତିର ପୁର ।। ୫୫ ।।

ପାଟର ଜଗଦୋଳି ବିବିଧ ରତ୍ନ ମଣ୍ଡି ।
ନାନା କୁସୁମ ମାଳ କର୍ପୂର ଗୁଣ୍ଡି ।। ୫୬ ।।

କାମିନୀମାନେ ଯେ ହୁଳହୁଳି ଦେନ୍ତି ।
ଋଷିଗଣ ମିଳି ଯେ ବେଦ ହୁଂକାରନ୍ତି ।। ୫୭ ।।

ବଶିଷ୍ଠ ମହର୍ଷି ଭାରଦ୍ୱାଦଶ ମୁନି
ପୁଲହ ପୌଲସ୍ତି ଜବଅଙ୍କୁର ତପୋଧନ ।। ୫୮ ।।

ଜୈମୁନି ପାରେଶ୍ୱର କପିଳ ଚେବନ ।
ବେଦବ୍ରତ ଗ୍ୟାଧି ଅଷ୍ଟାବକ୍ର ମୁନ୍ୟ ।। ୫୯ ।।

ଏହାନ୍ତେ ମୋକ୍ଷ କରି ଅନେକ ତପସ୍ୱୀ ।
ଚଉବେଦ ଘୋଷ କରନ୍ତି ସୁସର ନାଦ ଧରି ।। ୬୦ ।।

କିସ ନାମ ଦେବା ବୋଲି ବିଚାର କରନ୍ତି ।
ଦଶରଥ କହଇ ଶୁଣ ଦେବ ସର୍ବ ଯତି ।। ୬୧ ।।

ପୂର୍ବେ ପ୍ରଶୁରାମେ କହିଅଛନ୍ତି ମୋତେ ।
ମୋହର ନାମ ଦେବ ତୋହର ଜ୍ୟେଷ୍ଠ ସୁତେ ।। ୬୨ ।।

ଶୁଣିଣ ଋଷିଗଣେ ହରଷ ହୁଅନ୍ତି ।
କଉଶଲ୍ୟାର ପୁତ୍ରକଇ ଶ୍ରୀରାମ ନାମ ଦେନ୍ତି ।। ୬୩ ।।

ତହୁଁ କେକୟୀର ପୁତ୍ରକଇ ଦିଅନ୍ତି ନାମ ।
ଭରଥ ବୋଲି ନାମ ପ୍ରତକ୍ଷେ ପୂରିବା କାମ ।। ୬୪ ।।

ସୁମିତ୍ରା ଦେବୀର ବେନି ତନୟେ ।
ଲକ୍ଷେ ଲକ୍ଷଣ ସମ୍ପୂର୍ଣ୍ଣ ଲକ୍ଷ୍ମଣ ନାମ ହୋଏ ।। ୬୫ ।।

ସୁମିତ୍ରାଦେବୀଙ୍କର କନେଷ୍ଠ ନନ୍ଦନ ।
ସକଳ ସମ୍ପୂର୍ଣ୍ଣେ ନାମ ଥୋଇଲେ ଶତ୍ରୁଘନ ।। ୬୬ ।।

ସମସ୍ତେ ହେ ବିଚାରି ଚାରି କୁମରଙ୍କୁ ନାମ ଦେଲେ ।
ତହୁଁ ନିଜ ଆଶ୍ରମକଇ ମୁନିଗଣ ଗଲେ ।। ୬୭ ।।

---

୫୭. ଜଗଦୋଳି—ଦୋଳି(ଖ) । ୫୮. ଭାରଦ୍ୱାଦଶ—ଭାରଦ୍ୱାଜ(ଖ), ଆବର ଦ୍ୱାଦଶ(କ) ; ଜବଅଙ୍କୁର—କନ୍ଦର୍ପ(କ) ; ୫୯. କପିଳ—କରୁଣିକ(କ) । ଦ୍ୱିତୀୟ ପାଦଟି ଖ ପୋଥିର ପାଠ, ଏହା ସ୍ଥଳେ କ ପୋଥିରେ ଅଛି : ଦେବ ପାନମାଳାଧିଅମାବସୂସ୍ୱନ । ୬୦. ତପସ୍ୱୀ—ତପସ୍ୱୀର(କ) । ୬୧–୬୨. ଏ ଦୁଇ ପଦ ଖ ପୋଥିରେ ନାହିଁ । ୬୩. ଖ ପୋଥିରେ ପ୍ରଥମ ପାଦର ପାଠ :—ଶୁଭ ଲଗ୍ନେ ନାମ ବିଚାର କରନ୍ତି ।

ବୃହ୍ମେଧ ରାଜା ତାହାର ରାଜ୍ୟକଇ ଗଲା ।
ଲୋମପାଦ ନୃପତି ଅଙ୍ଗଦେଶେ ପ୍ରବେଶ ହୋଇଲା ॥ ୬୮ ॥
ଦଶରଥ ହକାରି ଋଷିଶୃଙ୍ଗ କହନ୍ତି ।
ପୁତ୍ରିକନ୍ତ ଯେନ ପ୍ରତିପାଳି ଏବେ ଆସି ନୃପତି ॥ ୬୯ ॥
ଏବେ ମୁହିଂ ବିପୁଲ ପର୍ବତକଇ ଯିବି ।
ପିତାକଇ ମୋହର ଦ୍ରଶନ କରିବି ॥ ୭୦ ॥
ଶୁଣି ଦଶରଥ କନେକ ହାନ୍ଦୋଳା ଅଣାଇଲା ।
ଝିଅ ଜୁଆଁଇଙ୍କି ଲୋମପାଦ ରାଜ୍ୟକୁ ଚଳାଇଲା ॥ ୭୧ ॥
ତହୁଂ ଲୋମପାଦ (ରାଜ୍ୟ)କଇ ମୁନି ଗଲେ ।
ନାବରେ ବସି ବିପୁଳ ପର୍ବତେ ମିଳିଲେ ॥ ୭୨ ॥
ବିଭାଣ୍ଡେ(କ)ଙ୍କର ପଦ୍ମରେ ହରଇ ଭଗତି ।
ପୁତ୍ର ବଧୂ ଦେଖି ହରଷ ମହୀପତି ॥ ୭୩ ॥
କଲ୍ୟାଣ କରଇ ଚଣ୍ଡମୁନିର ପୁତ୍ର ।
ସୁଲକ୍ଷଣୀ ହୁଅଟେ ଦଶରଥର ଦୋହିତ ॥ ୭୪ ॥
ସପତ ପୁତ୍ରର ତୁ ହୁଅସି ଗର୍ଭଧାରୀ ।
ଏସନେକ କଲ୍ୟାଣ କଲେ ତପସ୍ବୀ ॥ ୭୫ ॥
ସେ ଋଷିର ବାକ୍ୟ ହୋଇବ କି ଆନ ।
ଋଷିଶୃଙ୍ଗଙ୍କୁ ଉପୁଜିଲା ସପତ ନନ୍ଦନ ॥ ୭୬ ॥
ତୁହି ଯେ ଯୁଧିଷ୍ଠିର ପୁଚ୍ଛା କଲୁ ଯାହା ।
ବାଲମୀକ ରାମାୟେଣ ଶୁଣନ୍ତି ସୀତାୟାର ନାହା ॥ ୭୭ ॥
ଆନନ୍ଦ ଅଶ୍ରୁଜଳ ରାମର ଗଳାଇ ଘନ ଘନ ।
ଆପଣାର ଜନନ ଶୁଣିଲେ ରଘୁନାନ ॥ ୭୮ ॥
ବଶିଷ୍ଠ ସୁମନ୍ତ୍ର ଅନେକ ଆନନ୍ଦ ହୁଅନ୍ତି ।
ଭରଥ ଲକ୍ଷ୍ମଣ ଶୁଣି ହୃଦୟେ ବିଘଂସନ୍ତି ॥ ୭୯ ॥
ବଇଷ୍ଣବ ତପୋଧନ ନଗ୍ରର ଅନେକ ଜନ ।
ଶୁଣନ୍ତେ ଶରୀର କି ଅମୃତମୟେ ପାନ ॥ ୮୦ ॥
ମନେ ମନେ ବିଚାରନ୍ତି ବିଧାତାର ଶିକ୍ଷ ।
ଧନ୍ୟ ମହିମାରେ କୁମର ଲବକୁଶ ॥ ୮୧ ॥
ବାଲମୀକ ମହାମୁନି ଉପାୟେ କଲେ ଯାହା ।
ଆନର ଶକ୍ୟେ କି କହି ହୋଏ ତାହା ॥ ୮୨ ॥

---

୭୧-୭୨. ଏ ଦୁଇ ପଦ ବଦଳେ ଖ ପୋଥିରେ ପଦେ :—ଚଳଇ ଋଷିଶୃଙ୍ଗ ସପଦ ସହିତେ । ବିପୁଳ ପର୍ବତେ ଯାଇ ମିଳିଲେ ତୁରିତେ । ୭୪. ଦଶରଥର—ଚଣ୍ଡମୁନିର(କ) ।

ଏମନେକ ବିଚିତ୍ର ମୁନି ନ ଜାଣନ୍ତି କ୍ଳେଶ ।
ଶୁଣସି ପଞ୍ଚାଳୀ ଗୋ ଦ୍ରୌପଦୀର ବଂଶ ॥ ୮୩ ॥
ପିତା ଯେ ଶ୍ରୋତା ପୁତ୍ର ଯେ ବକତା ।
ଏମନେକ ନିର୍ମାଣ କରିଅଛୁ ବିଧାତା ॥ ୮୪ ॥
ଏ ଅଧ୍ୟାନ ଶୁଣଇ ଯେବଣ ଜନ ।
ସକଳ ପାତକ ତାର ହୋଇବ ବିନାଶନ ॥ ୮୫ ॥
ଜପିବୁ ଶ୍ରୀହରି ସଂସାରର ସାଇଁ ।
ଶ୍ରୀହରି ସୁମରନ୍ତେ ଭବଜଳୁ ପାରି ହୋଇ ॥ ୮୬ ॥
ହରିନାମ ନିତ୍ୟେ କରଇ ଉକତ ।
ହରି ହରଇ ତାର ସକଳ ଦୁଷ୍କୃତ ॥ ୮୭ ॥
ହରିହର ନାମ ଗୋଟି ପ୍ରତକ୍ଷେ ପରମପଦ ।
ହରି ନାମ ସୁମରନ୍ତେ ବଞ୍ଚଇ ଅପାଦ ॥ ୮୮ ॥
ହରି ଚରଣ ଯେ ସୁମରଇ ନିତ ।
ହରିର ଭୁବନେ ସେ ପାବଇ ସେ ସ୍ଥିତ ॥ ୮୯ ॥
ହରି ହରି ହରି ଶ୍ରୀରଙ୍ଗ ଶ୍ରୀହରି ।
ହରିର ଚରଣେ ନିତ୍ୟେ ଶରଣ ମୋହରି ॥ ୯୦ ॥
ହରିନାମ ବେନି ଅକ୍ଷର କରଇ ଅନୁପାମ ।
ହରି ନାମ ସଙ୍କେତେ ନ ଦେଖଇ ଯମଭୁବନ ॥ ୯୧ ॥
ହରଷେ ନରହରି ହରି ନାମ ସୁମର ।
ହରି ନାମ ଅହୋନିଶି ହୃଦୟରେ ଧର ॥ ୯୨ ॥
ହରି ନାମ ଶୋଷନେ ହରିନାମ ସ୍ନାହାନେ ।
ହରି ନାମ ଗୋଟି ଶୁଣୁଥାଅ କର୍ଣ୍ଣେ ॥ ୯୩ ॥
ହରି ମଧୁହାସ୍ୟ ସୁମରଇ ଯେ ନିତ ।
ସିଦ୍ଧେଶ୍ୱର ଦାସ ହରି ଚରଣେ ଭଗତ ॥ ୯୪ ॥

## ପୁଲସ୍ତ୍ୟ ଉପାଖ୍ୟାନ

ଏଥୁ ଅନନ୍ତରେ ଯୁଧିଷ୍ଠି ନରେନ୍ଦ୍ର ।
ପୁଣି ପୁଚ୍ଛା କରଇ ମାର୍କଣ୍ଡେୟଙ୍କର ଧରି ଦୁଇ ପାଦ ॥ ୧ ॥
ହେ ମୁନି ଲବକୁଶ କହିଲେ ଯେ ଶ୍ରୀରାମ ଉତପନ ।
କିସ କଲେ ତହୁଁ ଦଶରଥ ନନ୍ଦନ ॥ ୨ ॥

୮୪-୮୫. ଏ ଦୁଇ ପଦ ଖ ପୋଥିରେ ନାହିଁ । ୮୮-୯୩. ଏହି ଛ ପଦ ବଦଳେ ଖ ପୋଥିରେ ପଦେ :— ହରି ହରି ଶ୍ରୀହରି ନିତ୍ୟେ ସ୍ମରଣ ମୋହର । ହରି ନାମ ସୁମରନ୍ତେ ତେଜିଲି ସଂସାର ମହାଘୋର ॥ ୯୪. ମଧୁହାସ୍ୟ—ମଧୁନାମ(କ)

କହସି ମହାମୁନି ଅପୂର୍ବ ଚରିତ୍ର ।
ଶୁଣି ଆନନ୍ଦମୟେ ହୋଉଛି ମୋହର ମତ ॥ ୩ ॥
ଅଠାଶି ସହସ୍ର ବ୍ରାହ୍ମଣ ଅଛନ୍ତି ମୋହର କୂଳେ ।
ବାର ସହସ୍ର ଜଙ୍ଘରେ(ତା) ନାନା ତୀର୍ଥର ଅଇଲେ ॥୪॥
ଆବର ବନ୍ଧୁ ମିତ୍ର ଅରଦେଶୀ ପରଦେଶୀ ।
ତୋହର ମୁଖେ ରାମାୟଣ ଶୁଣନ୍ତି ମୋହର ସଙ୍ଗତେ ବସି ॥୫॥
ଏହି ମତେ ନୁହଇ କି ପୁରୁଷାର୍ଥ ଧର୍ମ ।
କହସି ମହାମୁନି ଏ ଚରିତ୍ର ଅନୁପାମ ॥ ୬ ॥
କହନ୍ତି ମାରକଣ୍ଡେ ଶୁଣ ପଣ୍ଡୁର ତନୟେ ।
ଅରଷ୍ଟି ଉତପାତ ହୋଉ ତୋର କ୍ଷୟେ ॥ ୭ ।
ଲବକୁଶଙ୍କର ମୁଖେ ଆପଣାର ଜନ୍ମ ଶୁଣି ।
ଶରୀର ରୋମାଞ୍ଚଇ ଶ୍ରୀରାମ ନୃପମଣି ॥ ୮ ॥
ଶ୍ରୀରାମ ପୁଛନ୍ତି ଶୁଣସି ବଶିଷ୍ଠ ।
ବାକ୍ୟ ବଖାଣନ୍ତି ଏ ଭୁବନଶ୍ରେଷ୍ଠ ॥ ୯ ॥
ବାଳୁତ ବୟସ ହୋଇ ବଇଷ୍ଟିବ ପଣ ।
ଅମୃତମୟେ କୋମଳ ଶୁଭଇ ବଖାଣ ॥ ୧୦ ॥
ଏ ରାଜ୍ୟର ନୁହନ୍ତି ଏହାରେ ଚହ୍ନିଲିକ ନାହିଂ ।
ଏସନେକ ସାହାସ୍ର ଏ ଶିଖିଲେ ସେ ପୁଣ କାହିଁ ॥ ୧୧ ॥
ବଶିଷ୍ଟେ କହନ୍ତି ଶୁଣ ଦାଶରଥି ।
ମହତ କୁଳେ ଯେ ହୁଅନ୍ତି ଉତପତ୍ତ ॥ ୧୨ ॥
ସେ ସେ ବଖାଣ କରନ୍ତି କୁତ ବାକ୍ୟ ।
ଇତର ଜନକଇ ଏ ପଦ ଅଶଖ୍ୟ ॥ ୧୩ ॥
ଭଲ ଜଣଙ୍କର ଏହି ଦୁହେ ପୁତ୍ର ।
ବାକ୍ୟ କହିବା ସରଲେ ପୁଚ୍ଛିବ ଏହାର ତାତମାତ ॥ ୧୪ ॥
ବଶିଷ୍ଠଙ୍କର କଥା ଶୁଣି ହରଷ ରଘୁନାଥ ।
କୁମରଙ୍କର ଶିରେ ସେ ଦେଲେକ ଚୁମ୍ବନ ॥ ୧୫ ॥
ଶ୍ରୀରାମ ପଚାରନ୍ତି ବାଳୁତ ମୁଖ ଚାହିଁ ।
ଦଶରଥଙ୍କ ପୁତ (ଜନ୍ମ) ଶୁଣି ହରଷ ହେଲ ମୁହିଂ ॥ ୧୬ ॥

୪–୬. ଏ ତିନି ପଦ ଖ ପୋଥିରେ ନାହିଁ । ୯. ଦ୍ୱିତୀୟ ପାଦର ପାଠ ଖ ପୋଥିରେ :—ବଚନ ରାମାୟଣ ତ୍ରିଭୁବନର ଶ୍ରେଷ୍ଠ । ୧୧. ଏହାରେ—ଏହାର(କ) । ୧୩. ଅଶଖ୍ୟ—ଅସଖ୍ୟ'(କ) । ୧୪–୧୫. ଏ ଦୁଇ ପଦ ଖ ପୋଥିରେ ନାହିଁ । ୧୪. କହିବା ସରଲେ—ସରିବା କହିଲେ ।

ଅତି ଅପୂର୍ବ କହିଲ ଯେମନେକ ପୁରାଣବାଣୀ ।
ଶରୀର ଆମୋଦଇ ସୁଧାରସ ଜାଣି ॥ ୧୭ ॥
ଯାହାର ଅର୍ଥେ ବୈକୁଣ୍ଠପୁର ତେଜ ।
ଯେ ବିଷ୍ଣୁପୁରୁଷ ମାନେବ ଉପୁଜ ॥ ୧୮ ॥
ଏବେ ରାବଣ ଜନ୍ମ ପୁଚ୍ଛନ୍ତ ମୋର ଇଚ୍ଛା ।
କହ ତୁ ବିଶେଷି ପୁଣ୍ୟରୂଣୀର ବତ୍ସ ॥ ୧୯ ॥
ତ୍ରିଭୁବନ ବଇରି ଦନୁଜ ଦଶାନନ ।
ଅସୁର ଗର୍ଭେ ସେ କେସନେକ ହୋଇଲା ଉତ୍ପନ ॥ ୨୦ ॥
ଋଷିର ତନୟେ ହୋଇ ଏଡ଼େ କର୍ମା ଦୁଷ୍ଟ ।
ହରବରେ ପ୍ରତାପ ହୋଇଲା ଗରିଷ୍ଠ ॥ ୨୧ ॥
ରାବଣର ଜନ୍ମ କଥା ଶୁଣିତ ବଳିଲା ମୋହର ମନ ।
ତୁମ୍ଭର ମୁଖେ ଶୁଣି ମୁହିଂ ପାଇବଇ ଜ୍ଞାନ ॥ ୨୨ ॥
ଶ୍ରୀରାମର ବଚନ ଶୁଣିଲେକ ସେହି ।
ଲବକୁମର ଧନାଶ୍ରୀରାଗ ହୁଂକାରିଲେକ ତହୁଂ ॥ ୨୩ ॥
କୁଶକୁମର ଧରଇ ଉଚେଣ ନାଦ ।
ଶୁଣି ସକଳ ଲୋକେ ହୋଇଲେ ତବଦ ॥ ୨୪ ॥
ଲବକୁମର ଗାବଇ ପୁରାଣ ଉକତ ।
ଲଙ୍କାରେ ରହି ତପ କରୁଥିଲା ବେଦପତ ॥ ୨୫ ॥
ଉର୍ବଶୀ ଆଦି କରି ପାଞ୍ଚ କନ୍ୟାଏ ଗଲେ ।
ଲଙ୍କାର ପୁରେ ଯାଇ ପ୍ରବେଶ ହୋଇଲେ ॥ ୨୬ ॥
ଜନମାନୁଷ ନାହିଂ ତହିଂ କେହି ।
ନୃତ୍ୟ ଗୀତ ଗାବନ୍ତ ଶରଦ ଚନ୍ଦ୍ରମୁହିଂ ॥ ୨୭ ॥
ମଣିବତୀ ନଦୀତାରେ ଲିଙ୍ଗେକ ଥାପି ।
ବ୍ରହ୍ମା ବସିଅଛୁ ତପ ନରୋପି ॥ ୨୮ ॥
ସେ ଅପସରୀ ତପୀ ଦେଖିଲେକ ଯହୁଂ ।
ଜପ ଛାଡ଼ି ବ୍ରହ୍ମା ଗୃହିଂଲେକ ତହୁଂ ॥ ୨୯ ॥

---

୧୮. ପଦଟି ଖ ପୋଥିରେ ନାହିଁ । ୧୯. ପୁଚ୍ଛନ୍ତ—ପୁଛନ୍ତ ; କହ ତୁ—କହନ୍ତୁ(କ) । ୨୦. କେସନେକ—କେନେକ(କ) । ୨୧-୨୨. ଏ ବିଆଳିଶ ପଦ ବଦଳେ ଖ ପୋଥିରେ ଅଛି ତିନି ପଦ :—କହନ୍ତୁ ରାବଣୁ ଲବକୁଶେ କରନ୍ତୁ ଉକତ । କେବଣ ରୂପେ ଜାତ ହୋଇଲେ ପୌଲସ୍ତି ॥ ପୌଲସ୍ତିଙ୍କ ନନ୍ଦନ ଯେ ବିଶ୍ରବା ମହର୍ଷି । ବୈଶ୍ରବଣ ବୋଲି ଯେ ବିଶ୍ରବାଙ୍କର ଶିଷି ॥ ସାଲୁକା ନାମେଣ ଯେ ଏହାର ନନ୍ଦନୀ । ଭରଦ୍ୱାଜଋଷିଙ୍କର ସାଲୁକା ନନ୍ଦନୀ ॥ ୨୫. ଗାବଇ—ଗାଇବଇ । ୨୯. ତପୀ—ତପ ।

ସ୍ୱର୍ଗର ମୋହିନୀ ଯେ ପଞ୍ଚ ଅପଛରୀ ।
ସେ ପିତାମହ ମଦନ ଶରେ ଘାରି ॥ ୩୦ ॥

ତପ ଉପେକ୍ଷି [illegible]ବଣୀଙ୍କର ସନ୍ନିଧିକୁ ଗଲା ।
ଲଜ୍ୟା ତେଜି ରମଣରଙ୍ଗ ମାଗିଲା ॥ ୩୧ ॥
ଅପସ୍ୱରୀ କହନ୍ତି ତୁହି ପୁରାତନ ଯତି ।
ତୋତେ କିପାଇଁ ଆମ୍ଭର ଭକ୍ତିବାକୁ ମତି ॥ ୩୨ ॥

ତୋହର ସାବିତ୍ରି ଶେ ବୃଧ ସ୍ତ୍ରି ଶ୍ରୀ ଯେବେ ଦେଖିବୁ ।
ତାହାକୁହି ମହାତ୍ମା ଗତି ଇଚ୍ଛୁ କରିବୁ ॥ ୩୩ ॥

ନାସ୍ତି କଥା ବ୍ରହ୍ମା ଯହୁଁ ଶୁଣିଲା ।
ମଦନବାଣେ ଶରୀର ଆରତ ହୋଇଲା ॥ ୩୪ ॥
କୋମଳ କର କରେ ଧରି ଲୋଡ଼ଇ ଯହୁଁ ।
ବିଚାରି ଗତି କରି କନ୍ୟାଏ ସୁରପୁରୀକି ଗଲେ ତହୁଁ ॥୩୫॥
ପାଞ୍ଚ ମନୁ ପରଯନ୍ତେ ବୀର୍ଯ୍ୟ ଖୋଟ ହୋଇଣ ଥିଲା ।
କାଛଟାର ଉପରେ ଗଳି ତଳେଣ ପଡ଼ିଲା ॥ ୩୬ ॥
ଏସନକ କଥା ଯହୁଁ ସଭାଲୋକେ ଶୁଣିଲେ ।
ମନର ଆନନ୍ଦେ ସମସ୍ତେ ହେ ହଂସିଲେ ॥ ୩୭ ॥
ବଶିଷ୍ଠେ କହନ୍ତି କିମ୍ପାଇ ହଂସା କର ।
ଅମୃତ ବଖ୍ୟାଣ ହୃଦୟରେ ଧର ॥ ୩୮ ॥
ବଶିଷ୍ଠଙ୍କର ବଚନ ଶୁଣି ସବହେଁ ହୋଇଲେ ତୂନ ।
ତହୁଁ ଲବକୁଶେ କହନ୍ତି ପୁରାଣ ଧୂନ ॥ ୩୯ ॥

ଯେବଣ ପଦ ଅବା ଅଲପ ଅନ୍ତର ହୁଅଇ ।
କୁଶ କୁମର ତାହା ଅର୍ଥ କରିଣ କହି ॥ ୪୦ ॥
ବୀର୍ଯ୍ୟ ଖଳିତ ହୋଇ ତଳେ ପଡ଼ିଲା ।
ତକ୍ଷଣେ ଋଷି ଏକ ଜନ୍ମ ହୋଇଲା ॥ ୪୧ ॥
ବିଦ୍ୟାଧର ଜାଣି ଦଶଇ ଦିବ୍ୟ ଜ୍ୟୋତି ।
ପୁତ୍ରକୁ ଦେଖି ଲଜ୍ୟା ପାଇଲେ ପ୍ରଜାପତି ॥ ୪୨ ॥
ନିଜ ପୁରକଇ କରନ୍ତେଣ ଗମନ ।
ପଛେଣ ଗୋଡ଼ାଇ ତାହାର ହାକଇ ନନ୍ଦନ ॥ ୪୩ ॥
ହେ ତାତ ଉପେଖି କାହିଁକ ଯାଉ ।
କେବଣ ବିଗୁର ତୋହର ତୁଲେ କିମ୍ପାଇ ନ ନେଉ ॥୪୪॥

---

୩୦. ଅପଛରୀ—ଅପସର । ୩୫. କରେ—ବରେ । ୪୨. ବିଦ୍ୟାଧର—ବିମ୍ବାଧର ; ଜ୍ୟୋତି—ଯୋତି ।

ମାତା ନାହିଂ ବ୍ରତବ କେସନେ ।
ଜନପଦ ନାହିଂ ଏ ଜନକଲ୍ପବନେ ॥ ୪୫ ॥
ପୁତ୍ରର ବଚନ ଯହୁଂ ବ୍ରହ୍ମର୍ଷି ଶୁଣିଲା ।
ନେଜଟି ଗୁହ୍ନଂ କୁମରଙ୍କୁ ବାକ ଦେଲ ॥ ୪୬ ॥
ତୁହି ରେ ଯେବେ ମୋହର ପୁତ୍ର ହୋଇବୁ ।
ସେହି ଠାବରେ ଥିବୁ ଗୋଡ଼ାଇ ନ ଆସିବୁ ॥ ୪୭ ॥
ବ୍ରହ୍ମାର ବଚନେ ପୁତ୍ର ତବଦେ ରହିଲ ।
ତେଣୁ ସେ ପୁତ୍ରର ନାମ ପୌଲସ୍ତି ହୋଇଲ ॥ ୪୮ ॥
ପଉଲସ୍ତିଙ୍କ କହିଲେ ତୁହି ରୁଦ୍ରାକ୍ଷ ବନକୁ ଯାସି ।
ତହିଂ ଆଶ୍ରମେ ଅଛୁ ବନ୍ଦୁ ମହାଋଷି ॥ ୪୯ ॥
ତାହାର ଦୁହିତା ପ୍ରିୟବନ୍ତୀ କାମିନୀ ।
ବିଭା ହୋଅସି ତୁହି ବନ୍ଦୁମୁନିର ନନ୍ଦନୀ ॥ ୫୦ ॥
ମୋହର ପୁତ୍ର ବୋଲି କହିବ ତୁମ୍ଭେ ଯେବେ ।
ଦୁହିତା ଦେଇ ଗଉରୋବ କରିବ ତୋତେ ତେବେ ॥ ୫୧ ॥
ଏସନେକ କଥା ପୌଲସ୍ତିଙ୍କ କହିଲ ।
ତହୁଂ ବ୍ରହ୍ମା ଯେ ନିଜ ପୁରକଇ ଗଲା ॥ ୫୨ ॥
ପଉଲସ୍ତି ମହର୍ଷି ପିତାର ବଚନେ ।
ବନ୍ଦୁମୁନିଙ୍କ ଦେଖିଇ ଯାଇ ରୁଦ୍ରାକ୍ଷ ବନେ ॥ ୫୩ ॥
ଆଶ୍ରମ ଦ୍ୱାରେ ଉଭା ହୋଇଲେକ ଯହୁଂ ।
କାହାର ତନଯ୍ୟେ ବୋଲି ମୁନି ପଚାରିଲେ ତହୁଂ ॥ ୫୪ ॥
ପଉଲସ୍ତି କହଇ ମୁଇ ବ୍ରାହ୍ମଣ କୁଳେ ଜାତ ।
ତୋହର ତହିଂକି ମୋତେ ପଠିଆଇଲେ ତାତ ॥ ୫୫ ॥
ହେ ମୁନି ତୁହି ମୋତେ ଆଜ୍ଞା ଦାନ କରିବୁ ।
ବେଦବିଦ୍ୟା ସାହାସ୍ତ୍ର କହି ସୁବୁଧି କରାଇବୁ ॥ ୫୬ ॥
ଶୁଣିଣ ବନ୍ଦୁମୁନି ହରଷ ହୋଇଲ ।
ନାନା ସାହାସ୍ତ୍ର ସମସ୍ତ ବେଦବିଦ୍ୟା କହିଲ ॥ ୫୭ ॥
ବେଦେ ପଉଲେସ୍ତି ନିର୍ଜିତ ହୋଇଲା ଯହୁଂ ।
ଦୋହିତା ଗୋଟିକି ଆଣି ସମର୍ପିଲ ତହୁଂ ॥ ୫୮ ॥
ପ୍ରିୟବନ୍ତୀକି ଦେଇ କହଇ ତପଶାଳୀ ।
ଭଲେ ପ୍ରତିପାଳ ଏ ମୋହର ଦୁଲାଳୀ ॥ ୫୯ ॥

---

୪୫. ଜନପଦ—ବନପଦ । ୪୯. ବନ୍ଦୁ—ବିନ୍ଦୁର । ୫୦. ପ୍ରିୟବନ୍ତୀ—ପ୍ରୀଅବନ୍ତୀ ।
୫୧. ଦୁହିତା—ଦୁଇଜା ; କରିବ—କହିବ ; ତେବେ—କେବେ ।
୫୪. ତହୁଂ—ଜହୁଂ । ୫୬. କହି—କଇ ।

ଏ କୁମାରୀ ତୋତେ ସେବା କରିଥିବ ।
ଏହାର ଗର୍ଭରେ ପୁତ୍ର ଜାତ ହୋଇବ ॥ ୬୦ ॥
ଆନ ଆଶ୍ରମେ ଯାଇ ବିଶ୍ରାମ କରସି ।
ଭାର୍ଯ୍ୟା ଘେନି ଗଲେ ତହୁଁ ପୌଲସ୍ତି ମହାଋଷି ॥ ୬୧ ॥
ଭରଦ୍ୱାଜଙ୍କର ସନ୍ନିଧେ ରହିଲା ।
କାଳେ ପ୍ରସୂବତୀ ଗର୍ଭବାସ ହୋଇଲା ॥ ୬୨ ॥

## ବିଶ୍ରବା ଉପାଖ୍ୟାନ

ପୁତ୍ରେକ ଉପୁଜିଲା ଅତ୍ୟନ୍ତ ସୁନ୍ଦର ।
ବିଶ୍ରବା ନାମ ତାକୁ ଦେଲେ ମୁନିବର ॥ ୧ ॥
ସକଳ ବେଦବିଦ୍ୟାରେ ନିର୍ଜିତ ଦେଖି ।
ଭରଦ୍ୱାଜ ବିସ୍ମିତେ ରୂପ ଉପଲେଖି ॥ ୨ ॥
ପୌଲସ୍ତିକି କହନ୍ତି ଭରଦ୍ୱାଜ ମୁନି ।
ସାଲେକା ନାମେ ଯେ ମୋହର ନନ୍ଦିନୀ ॥ ୩ ॥
ତୋହର ପୁତ୍ରକୁ ସାଲେକାକଇ ବିଭାଏଣ ଦେବ ।
ବ୍ରହ୍ମାର ତନୟ ତୁହି ବନ୍ଧୁପଣେ ଥିବ ॥ ୪ ॥
ଶୁଣି ପୌଲସ୍ତି ହରଷ ହୋଇଲେ ।
ଅନୁକୂଳ ଖୋଜି ବିଭା କରାଇଲେ ॥ ୫ ॥
ସାଲେକାର ତୁଲେ ବିଶ୍ରବାର ପ୍ରୀତି ବଢିଲା ।
ବୈଶ୍ରବଣ ବୋଲି ଦୁଇ ପୁତ୍ର ଉପୁଜିଲା ॥ ୬ ॥
ବୈଶ୍ରବଣ ନାମ ବିଶ୍ରବାର ତନୟେ ।
ଈଶ୍ୱରଙ୍କଇ ସେବି ଶେଷେ କୋବେର ପଦ ପାଏ ॥ ୭ ॥
ଭରଦ୍ୱାଜଙ୍କର ପୁତ୍ର ଯବଅଙ୍କୁରଇ ।
କୋବେର ତୁଲେ ଅତି ପ୍ରୀତି ତାହାରଇ ॥ ୮ ॥
ଭୋଜନେ ଶୋୟନେ ଏ(କ) ଠାବେଣ ଥାନ୍ତି ।
ମନର ହରଷେ ଲଟବାଟ ଖେଳନ୍ତି ॥ ୯ ॥
କେବଣ ହି ଦିନେ ଯବଅଙ୍କୁର ଲଟଇ ।
କୁବେର ଲଟ ଘାତେ କୂପରେ ଯାଇ ପଡ଼ଇ ॥ ୧୦ ॥
ଦେଖି ଯବଅଙ୍କୁର କହଇ କୋପ ଚଢ଼ି ।
କୂପେ ମୋହର ଲଟ ପକାଇଲୁ କେବଣ ହି ମତ ॥ ୧୧ ॥

---

୧—୬. ଏ ଛଅ ପଦ ଖ ପୋଥିରେ ନାହିଁ । ୨. ରୂପ—ଉପ । ୭. କୋବେର—ଅମର(ଖ) । ୧୨. କାଠି—କାଲ(କ) ।

ଜଣ୍ଟି କୂପରୁ ଲଷ୍ଟ କାଢ଼ି ଅଣ୍ଡ ଯେବେ ।
ତୋହର ମୋହର ପ୍ରୀତ ହୋଇଥିବ ତେବେ ।। ୧୨ ।।
କୁବେର କହଇ କୂପ ବଡ଼ାଇ ଗମ୍ଭୀର ।
ମୁହିଂ କେମନ୍ତେ ପଶିବି ସେ କୂପର ଭିତର ।। ୧୩ ।।
ତୋହର ଲଷ୍ଟ ତୁହି ଆଣସି କୂପ ଭିତରେ ପଶି ।
ଶୁଣି ଯଦଅଙ୍କୁର କହଇ ମହାରୋଷି ।। ୧୪ ।।
ଅମ୍ଭର ଆଶ୍ରମେ ସର୍ବଦା ତୁମ୍ଭେ ଆଅ ।
ଦୁଇ ପୁତ୍ର ବାପେ କାହିଂକି ନ ଯାଅ ।। ୧୫ ।।
ଯେବଣ ଦିନୁ ପିତା ତୋହର ବନ୍ଧି ହୋଇଲା ।
ସେହି ଦିନୁ ଆମ୍ଭର ଆଶ୍ରମେ ରହିଲା ।। ୧୬ ।।
ତୁମ୍ଭେ ଦୁଇ ଭାଇ ଜନ୍ମ ହୋଇଲ ଏଥେ ।
ତୁମ୍ଭଙ୍କୁ ଦୟା କରଇ ମୋହର ତାତେ ।। ୧୭ ।।
ନଉନେତେ ଆଜି ତୋତେ ମାରନ୍ତେ କରବାଳେ ।
ଶିର ଛୁଡ଼ି ତୋହର ପଡ଼ନ୍ତା ଭୂମିତଳେ ।। ୧୮ ।।
ବଶ୍ୟରଲେ ତୁମ୍ଭର ଆମ୍ଭେ ଅର୍ଣ୍ଣିଗୁରୁ ।
ତୁହି ହିନ ଗୁଣ ମୋତେ କୂପରେ ନେଇ ଭରୁ ।। ୧୯ ।।
ଶୁଣିଣ କୁବେର ପାଇଲା ଅଭିମାନ ।
କୋଟଅଗ୍ନି ଜାଳି ଦହଇ ପଞ୍ଚ ମନ ।। ୨୦ ।।
କ୍ରୋଧ ଗୁରୁତରେ ଅଭିମାନେ ଲଜ ପାଇ ।
କ୍ରୋଧମୁଖ ହୋଇ ମାତାର ସନ୍ନିଧିକୁ ଯାଇ ।। ୨୧ ।।
ସହିସପାତକଇ ହକାରଇ ସଙ୍ଗେ ।
ତୁମ୍ଭେ କହିବ ମୋହର ମାତାର ଆଗେ ।। ୨୨ ।।
ଭାଇର କଥା ଶୁଣିମନା ତୁମ୍ଭର କହନ୍ତେ ।
ସଙ୍ଗର କୁମରନ୍ତ ଘେନିଗଲ ସଙ୍ଗତେ ।। ୨୩ ।।
ସାଲୁକା ଦେଖିଲ ପୁତ୍ରର ବଦନ ।
ଲୁହ ଗଳୁଅଛୁ ବେନି ଯେ ନୟନ ।। ୨୪ ।।

---

୧୮. ମାରନ୍ତେ—ମାରବ(କ) ; ପଡ଼ନ୍ତା—ପଡ଼ିବ(କ) । ୧୯. ଏ ପଦ ବଦଳେ ଖ ପୋଥିରେ ଅଛୁ :- ତୋହର ପିତା ଅଟଇ ମୋହର ଭୃତ୍ୟ । ଆମ୍ଭର ଦୟାରେ ରହିଲ ତୁରନ୍ତ ।। ୨୧-୨୩. ଏ ତିନି ପଦ ଖ ପୋଥିରେ ନାହିଁ । ୨୩. ଶୁଣିମନା - ସୁଣିମଲ । ୨୪-୨୫. ଏ ଦୁଇ ପଦ ବଦଳେ ଖ ପୋଥିରେ ଗୃଶ ପଦ : ଜନନୀ ଆଗରେ ଯାଇ କାରୁଣ ଧ୍ୱନି କର । ହା ପୁତ୍ର ବୋଲି ସାଲୁକା କୋଳେ ଧର ।। ବାଲୁତାକୁମରକୁ ଚଳଇ ଶୀଘ୍ରେ ଘେନି । ତୁମ୍ଭେ କହିବ ଗତଜନ୍ମ (?) ଜନନୀ ।।

ଦେଖି ମାତାର ନ ପୁଚଇ କିଛୁ ।
ନିଜ ଅଞ୍ଚଳ ଘେନି ବୈଶ୍ରବଣ ମୁଖ ପୋଛୁ ॥ ୨୫ ॥
ବୋଲଇ ତୋହର ଆପାଦ ପଡ଼ୁ ମୋର ମାଥ ।
କାହାର ସଙ୍ଗେ କଳି କଲୁ କିରେ ସୁତ ॥ ୨୬ ॥
ସବଅଙ୍କୁର ତୋହର(କ) ସଙ୍ଗତେ ନ ଥିଲା ।
ବୈଶ୍ରବଣ ଅ.ଜ(କ) ଖେଳିତ ନ ଗଲା ॥ ୨୭ ॥
କାହାର ତୁଲେ ବାବୁ କଲୁ କିରେ ଦ୍ଵନ୍ଦ ।
କହୁସି ସ୍ଵରୂପ ବାବୁ ମୋହର ଆଗେ ନ କାନ୍ଦ ॥ ୨୮ ॥
କୁବେର କହଇ ତୋହର କନେଷ୍ଟ ଛଇ ।
ସେହୁ ମୋତେ ଅନେକ କୁଂଦାସ କଥା କହୁ ॥ ୨୯ ॥
ଶୁଦ୍ଧ କିପାଂ ମୋହର ବଚନ କରୁ ମିଛ ।
ଏ ତୋହର ଛଇନି ସକଳ କଥା ପୁଚ୍ଛ ॥ ୩୦ ॥
ସାଲେକା ପଚ୍ଚରଇ ସଙ୍ଗର ସଙ୍ଘାତ ।
କହସି ଏହାଙ୍କର ଦ୍ଵନ୍ଦର ଚରିତ ॥ ୩୧ ॥
ବାଲୁତେ କହୁ କୂପରେ ଲୋଟି ପଡ଼ିଲା ।
ସବାଙ୍କୁର ଏହାକୁ ଲୋଟି ଅଂଶିତ ବୋଇଲା ॥ ୩୨ ॥
ଶାର୍ଣ୍ଣନୂପରେ ବୈଶ୍ରବଣ ନ ପଶିଲେକ ସହୁଂ ।
ଅନେକ ମନ୍ଦଛନ୍ଦେ ଗାଳି ଦେଲେକ ତହୁଂ ॥ ୩୩ ॥
ପର ପୁତ୍ରଙ୍କର ମୁଖୁ ଶୁଣିଲା ଏସନେକ ବଚନ ।
କୋପ ବସିଲା ସାଲେକାର ମନ ॥ ୩୪ ॥
ପୁତ୍ରର ହସ୍ତ ଧରି ତତକ୍ଷଣେ ଗଲା ।
ମାତାର ଆଗରେ ତ ମନ୍ତ୍ରରେ କହିଲା ॥ ୩୫ ॥
ତୋହର ପୁତ୍ର(ର) ଏ କଥା ଶୁଣସି ଗୋ ଆଈ ।
ବଇଶ୍ରବଣକୁ ଅନେକ କୁଂଦାସିଣ କହୁ ॥ ୩୬ ॥
ଆବର ବୋଇଲା ମୋହର ପୁରେ ନ ଥାଅ ।
ଏହୁକ୍ଷଣି ଏଥୁ ବାହାର ହୋଇଯାଅ ॥ ୩୭ ॥
[ତୁମ୍ଭର ଆଶ୍ରମେ ଆମ୍ଭର କାର୍ଯ୍ୟ ସେ ଅଛଇ ।
ପୁତ୍ର ଘେନିଣ ଦେଖା ତହୁଣ ଆସଇ] ॥ ୩୮ ॥

---

ସାଲୁକା ଶୁଣିଣ ସୁତର ରୋଦନ । ମନ୍ଦିର ବାହାର ହୋଇ ଆସଇ ଘନଘନ ॥ ଦେଖଇ କାରୁଣ ଯେ ଆସଇ ଜ୍ୟେଷ୍ଠସୁତ । ନିଜ ଅଞ୍ଚଳ ଘେନି ବଦନ ପୁତ୍ରର ପୋଛଇ ମାତ ॥ ୨୮. କଲୁ କିରେ—କଲୁରେ(ଖ), କଲୁସିରେ(କ) । ୩୧. ଦ୍ଵନ୍ଦର—କନ୍ଦର(ଖ) । ୩୨–୩୩. ଏ ଦୁଇ ପଦ ଖ ପୋଥିରେ ନାହିଁ । ୩୫. ହସ୍ତ—ନଡ଼ି(ଖ) ।

ସୁକାନ୍ତ ନାମେ ସାଲେକାର ଜନନୀ ।
ଦୋହଦତାଙ୍କୁ ପ୍ରବୋଧନା କରନ୍ତ ଭରଦ୍ୱାଜଙ୍କ ପତ୍ନୀ ॥ ୩୯ ॥
ସୁଶୀତଳ ପାଣି ଯେନ ଋଷିର ବାଳୀ ।
ଝିଅର ପୁତ୍ରର ମୁଖ ପଖାଳି ॥ ୪୦ ॥
ଶୁଣ ଗୋ ସାଲେକା କାହାକୁ କୋପ କରୁ ।
ତୋହର ସାନ ଭାଇ ଦୋଷ କେସନେ କେ ଧରୁ ॥ ୪୧ ॥
ଗର୍ଭେ ଅବା ପୁତ୍ରକଇ ଧଇଲୁ ତୁହି ।
କ୍ଷୀର ଦେଇ ପୋଷିଲି ମୁଂ ତୋହର ପୁତ୍ର ଦୁଇ ॥ ୪୨ ॥
ଯବଅଙ୍କୁରକଇ ଆଡ଼କର ତୋହର ପୁତ୍ରକଇ ପୋଷିଲି ।
ଦୁଇ ପୁତ୍ରକଇ ତୋହର ଅନୁ କ୍ଷୀର ଦେଲି ॥ ୪୩ ॥
ତେଣୁ ସେ ବୈଶ୍ରବଣ ଯବଅଙ୍କୁରକୁ କରଇ ଭେଦ ।
ତୁହି କେଡ଼େ ମାନ ଭାଇକି ମନେ କରୁ ଖେଦ ॥ ୪୪ ॥
ମାତାର ବଚନେ ସାଲେକାଇ ତୋଷ ।
ପୁତ୍ରନ୍ତ ଯେନ ନିଜ ଭୁବନେ ପ୍ରବେଶ ॥ ୪୫ ॥
ବଇଶ୍ରବଣକଇ ଅନେକ ତଥାର ପ୍ରବୋଧିଲି ।
କୁବେର ଅପମାନ ସହି ନ ପାରିଲି ॥ ୪୬ ॥
ଯହିଂ ସେ ବିଶ୍ରବା ମୁନି ଅଛନ୍ତ ତପେ ।
ବଇଶ୍ରବଣ ମିଳିଲି ପିତାର ସମୀପେ ॥ ୪୭ ॥
ପୁତ୍ରର ମୁଖ ଗୃହିଂଲେ ମହାମୁନ୍ୟ ।
ଲୁହ ଗଳୁଅଛୁ ବେନି ଯେ ନୟନ ॥ ୪୮ ॥
ନିର୍ମଳ ଚନ୍ଦ୍ର ଜାଣି ତୋହର ମୁଖ ଦେଶଇ ।
ଦିବସର ଶଶୀ ପ୍ରାୟେ ତ ଦିଶଇ ବରସଇ ॥ ୪୯ ॥
ପୁତ୍ରକଇ ହକାର ପୁଛନ୍ତ ପୌଲସ୍ତିର ପୁତ୍ର ।
ମନେ ବରସ କମ୍ପା କଲୁସିରେ ପୁତ୍ର ॥ ୫୦ ॥
ପିତାର ବଚନ ଯହୁଂ ବୈଶ୍ରବଣ ଶୁଣିଲି ।
ଉଚେ ରବ କରି ହକାରଣ ଧ୍ୱନି କଲି ॥ ୫୧ ॥
ଆସନ ଛାଡ଼ି ଉଠନ୍ତ ତପଗୃହୀ ।
ଅନେକ ବିନୟେ ପୁଛନ୍ତ ପୁତ୍ରକୁ କୋଳେ ଧରି ॥ ୫୨ ॥
ଶୁଣ ମୋହର ବଳାରେ କୁଳଶ୍ରେଷ୍ଠର ନନ୍ଦନ ।
କିମଅର୍ଥେ କାରୁଣ ତୋହର ଏତେକ ରୋଦନ ॥ ୫୩ ॥

---

୩୯. ସୁକାନ୍ତ—ସୁକୋନ୍ତଲା(ଖ) । ୪୦. ପଖାଳି—ପାଳୀ(କ) । ୪୩. ଦୁଇ ପୁତ୍ରକଇ—ଦୁଇପୁତ୍ରଙ୍କର(କ) । ୪୯. ମୁଖଦେଶଇ—ମୁଖଦିସଇ । ୫୩. କୁଳଶ୍ରେଷ୍ଠର—ଶ୍ରେଷ୍ଠକୁଳର(ଖ) ; କାରୁଣ—କାରଣେ(କ) ।

ପିତାର ବଚନ ଶୁଣି ବୋଲଇ ଧନପତି ।
ଶୁଣସି ହେ ତାତ ମହନ୍ତ ମହାପତି ॥ ୫୪ ॥
ମୋହର ଜନମ ବିଭା ହୋଇଲୁଁ ।
ଶ୍ୱଶୁର ଆଶ୍ରମେ କପାଇଂ ରହିଲୁ ॥ ୫୫ ॥
ଘରଯାର ପିତା (ଘ)ରେ ଯାହା ସୁନ୍ତେ ଥିବା ।
ଭିକ୍ଷା ମାଗିକରି ଓଦର ପୋଷିବା ॥ ୫୬ ॥
ବିବେକ ହୋଇଣ ତୁ କାହିଁ ନ ବିଚାରୁ ।
ଅପମାନ ପାଇଣ ଏଥେ କେତେହେଁ ଦିନ ହରୁ ॥ ୫୭ ॥
ତୋହର ଶାଳକ ବୋଇଲା ପୁଣ ଯାହା ।
ମୋହର ବେଳେ ତାତ ସହି ନୋହି ତାହା ॥ ୫୮ ॥
ଲଟ ଖେଳନ୍ତେ ମୋହର ତୁଳେ କଲା ଦ୍ୱନ୍ଦ
ଅନେକ ଝିଂଗାସି ବୋଇଲା ମୋତେ ମନ୍ଦ ॥ ୫୯ ॥
ମୋହର ବଚନକଇ କଳିକ ସେ ହେଲା ।
ତାହାର ସୀମା ବୋଲି କହିଲା ଅଗ୍ୟର୍ଗଳ ॥ ୬୦ ॥
ବୋଇଲା ପିତା ତୋହର ଦରିଦ୍ର ଅଟଇ ହୀନ ଜାତି ।
ସୂନନ୍ତ ଆଧାର ଅର୍ଥେ ତୁମ୍ଭେ ରହିଅଛ ଏଥି ॥ ୬୧ ॥
ଲଜ ବୋଲିକ ତ କିଛି ନାହିଂ ରେ ତୁମ୍ଭର ।
ଅର୍ଣ୍ଣ ଖାଇ ତୁମ୍ଭେ ରେ ବ୍ରତଅଛ ଆମ୍ଭର ॥ ୬୨ ॥
ଶାସନ ବାଡ଼ ବୃତ୍ତି କିଛି ତୁମ୍ଭର ନାହିଂ ।
ଲଜେ ନ ଖାଲ ତୁମ୍ଭେ ଏଥି ଅଛି ରହି ॥ ୬୩ ॥
ଏସନେକ ବୋଲି ତାତ ମୋତେ ଗାଳି ଦେଲା ।
ଶୁଣିଣ ମୋହର ଦେହେ ଆତ୍ମା ଉଛୁର୍ଗିଲା ॥ ୬୪ ॥
କାହିଂ ଆନେ ପିତା ଆଶ୍ରମ ।
ଏବେ କାହିଂ ତହିଂ କରିବା ବିଶ୍ରାମ ॥ ୬୫ ॥
ତୁହି ଯେବେ ତାତ ରହିଥିବ ଏଥେ ।
ନିଶ୍ଚୟ ମୁହିଂ ଆଜ ମରିବ ଆତ୍ମାଘାତେ ॥ ୬୬ ॥
ବିଶବାଏ ବୋଲନ୍ତି ଶୁଣସି ରେ ନନ୍ଦନ ।
ମୋହର ପିତା (ନ) କହିଲେ ବାଡ଼ବୃତ୍ତି ତଥି ସ୍ଥାନ ॥୬୭॥
ମୁହିଂ ତୁମ୍ଭକଇ ଏହିକ୍ଷଣି ଦେନ ଯିବ ।
ମୋହର ପିତାକଇ ଯାଇ ବାସ୍ତୁବ୍ୟ ପଚାରିବ ॥ ୬୮ ॥
ତୋହର ମାତାକଇ ତୁହି ହକାରି ଆଣ ଯାଇ ।
ବଇଶ୍ରବଣ ସହିତେ ଆବର ପୁତ୍ର ଦୁଇ ॥ ୬୯ ॥

---

୫୯. ଲଟ—ଗୁଡ଼(କ) । ୬୦. ଅଗ୍ୟର୍ଗଳ—ଆଖିଳ(କ) । ୬୧. ସୂନନ୍ତ—ସୁଳନ୍ତ(କ) । ୬୨. ପଦଟି ଖ ପୋଥିରେ ନାହିଁ ; ବୋଲିକ—ବଳିକ ।

ପିତାର ବଚନେ କୁବେର ବେଗେ ଗଲା ।
ମାତାକଇ ଘେଇ ସନାଙ୍କୁ ଆଣିଲା ।। ୭୦ ।।
ସାକ୍ଷାତେ ଆଗେ ମୁନି କହନ୍ତି ପୂର୍ବର କଥା ।
ସ୍ୱରୂପ ବୋଲି ବୋଇଲା କୌବେରର ମାତା ।। ୭୧ ।।
ଧରଣୀର ବଚନେ କୋପିତ ମହାଗ୍ୟାତା ।
ଗୃଲ ଯିବା ମୋହର ଯହିଂ ଅଛୁ ପିତା ।। ୭୨ ।।
କୁବେର ଧାଇ ଘଇ ତାହାଙ୍କର ଜନନୀ ।
ଚଳନ୍ତି ବିଶ୍ୱବା ଏ ପୁତ୍ରବଧୂ ଘେନି ।। ୭୩ ।।
ଯହିଂ ସେ ଅଛନ୍ତି ବ୍ରହ୍ମାଙ୍କର ନନ୍ଦନ ।
ତହିଂ ଯାଇ ମିଳିଲେ ବିଶ୍ୱବା ତପୋଧନ ।। ୭୪ ।।
ପିତାର ପଦ୍ମରେ ନମଇଂ ଯୋଗ୍ୟପଙ୍କ୍ତି ।
ପୁଣି ଭାର୍ଯ୍ୟା ଆନର ବନ୍ଧୁଅଶ (?) ।। ୭୫ ।।
କଲ୍ୟାଣ କର ପୁଚ୍ଛନ୍ତି ପିତାମହ ସୁତ ।
ପୁତ୍ର ବଧୂ ସହିତେ ଅଇଲୁ ତୁ ଏଥ ।। ୭୬ ।।
ମୁନି କହନ୍ତି ଶୁଣସି ପିଅର ।
ମାତୁଳ ସଙ୍ଗେ କଳି କଲାକ ତନୟ ମୋହର ।। ୭୭ ।।
କାହିଂ ଆଶ୍ରମ କାହିଂ ଆନ୍ଧ୍ର ଦେଶ ।
ଏ କଥା ପଗୃର ଅଇଲୁ ତୋହର ପାଶ ।। ୭୮ ।।
ପୌଲସ୍ତି କହନ୍ତି ବିଶ୍ୱବା ମୁଖ ଗୃହିଂ ।
କାହିଂ ଦେଶ ଶାସନ ନ ଜାଣଇ ମୁହିଂ ।। ୭୯ ।।
ଯେବଣ ବେଳେ ପିତା ଜାତ କଲା ।
ଉପେକ୍ଷା କରି ସେ ବ୍ରହ୍ମାମଣ୍ଡଳକଇ ଗଲା ।। ୮୦ ।।
ଯୁଗତ କଥା ଏ ଅଛଇ ବିଗୃରେ ।
ଗୃଲ ପୁଚ୍ଛିବା ମୋହର ପିତାର ଗ୍ରମୁରେ ।। ୮୧ ।।
ପୁତ୍ର ନାତି ଆବର ବଧୂ ସହିତେ ।
ବ୍ରହ୍ମାର ପାଶେ ମିଳିଲେ ସମସ୍ତେ ।। ୮୨ ।।
ଦେଖିଣ ମନେ ବିଗୃରଇ ବିଧାତ ।
ସଗୋତ୍ର ସହିତ ଆସଇ ମୋହର ସୁତ ।। ୮୩ ।।
ଏସନେକ ବିଧାତା ମନେ ଧରନ୍ତେ ଦୌପତ ।
ଯାଇଣ ପ୍ରଣମ୍ୟ କରଇ ପୌଲସ୍ତି ।। ୮୪ ।।

---

୭୩. ଜନନୀ – ପତ୍ନୀଜନନ(କ) । ୭୫. ବନ୍ଧୁଆର—ବନ୍ଧୁ ଧର(ଖ) ।
୭୭. ପିଅର—ପିତୃର । ୮୦. ପଦଟି ଖ ପୋଥିରେ ନାହିଁ ; ବ୍ରହ୍ମାମଣ୍ଡଳ—
ବ୍ରହ୍ମାଣ୍ଡ ; ଉପେକ୍ଷା—ଉପେକ୍ଷ୍ୟା ।

ବସବା ମହର୍ଷି ପୁତ୍ର ବଧୂ ସହିତେ ।
ବ୍ରହ୍ମାର ପଦ୍ମରେ ସେ ନମନ୍ତି ସମସ୍ତେ ॥ ୮୫ ॥
ବଛଙ୍କୁ କଲ୍ୟାଣ କରନ୍ତି ବେଦପତି ।
ପଉଲସ୍ତିଙ୍କ ସନ୍ନିଧେ ହିକାର ପଗ୍ଭରନ୍ତି ॥ ୮୬ ॥
ପୁତ୍ର ନାଥ ତୋହର ଅବର ସ୍ତ୍ରିଜ୍ଞଜନ ।
ଏହାନ୍ତ ଦେନ କପାଂ ଅଇଲୁ ମୋହର ଭୁବନ ॥ ୮୭ ॥
କର ଦୁଇ ଯୋଡ଼ି ବିନୋପି କହଇ ପୌଲସ୍ତି ।
ସଂସାର କରତା ତୁ ଯୁଗେ ଯୁଗେ ପତି ॥ ୮୮ ॥
ତୋହର ଆଜ୍ଞେ ମୋତେ ଜାତ କଲୁ ।
ମୃତ୍ୟୁ ମଣ୍ଡଳରେ ମୋତେ ଛାଡ଼ି ତ ଅଇଲୁ ॥ ୮୯ ॥
ପୁତ୍ର ନାଥ ମୋହର ହୋଇଲା ଉତ୍ପତି ।
କାହିଂ ରହିବୁ ଆମ୍ଭର କାହିଂ ବାଡ଼ ବୃତ୍ତି ॥ ୯୦ ॥
ବନ୍ଧୁଲୋକ ହେ କହନ୍ତି ଅପମାନ ।
କହସି ହେ ତାତ କାହିଂ ନିଜ ସ୍ଥାନ ॥ ୯୧ ॥
ପଉଲସ୍ତିର ବଚନେ ଶୁଣି କହନ୍ତି ବେଦପତି ।
ତପିଷ୍ଟ ଲୋକଙ୍କର ସବୁହି ବାଡ଼ବୃତ୍ତି ॥ ୯୨ ॥
ଏବେ ଗୋତ୍ର ଯେବେ ହୋଇଲା ବର୍ଧମାନ ।
ବିଶ୍ରାମି ରହ ଯାଇ ଏ ଲଙ୍କା ଭୁବନ ॥ ୯୩ ॥

## ଲଙ୍କାର ଇତିବୃତ୍ତି

ପୌଲସ୍ତି ପୁଚ୍ଛାଇ ସେ କାହାର ନିଜ ଦେଶ ।
ତହିଂର କଥା ମୋତେ କରସି ପ୍ରକାଶ ॥ ୧ ॥
ଶଶୁର ଆଶ୍ରମେ ପୁତ୍ର ମୋର ଥିଲା ।
ଭରଦ୍ୱାଜଙ୍କର ପୁତ୍ର ମୋହର ନାତିକ ଜିଂଘାସିଲା ॥ ୨ ॥
ପରର ଭୂମିରେ ରହିବଇ ଯେବେ ।
ସେ କିଂପା ଆମ୍ଭନ୍ତ ଥୋଇବାକ ଏବେ ॥ ୩ ॥
ବ୍ରହ୍ମା କହଇ ସେ ମେରୁ କନେକ ଶୃଙ୍ଗ ।
ମେରୁ ପବନର ବିବାଦ ପିରସଙ୍ଗ ॥ ୪ ॥

---

୮୯. ଏହାର ଦ୍ୱିତୀୟ ପାଦ ଓ ପରବର୍ତ୍ତୀ ୯୦ ପଦ ବଦଳେ ଖ ପୋଥିରେ ପାଦେ :—ଆଶ୍ରମ ପୂର୍ଣ୍ଣକୋଟି ମୋତେ ନ କହିଲୁ । ୯୩. ବର୍ଧମାନ—ବଧିମାନ(କ) । ୨-୩. ପଦ ଦୁଇଟି ଖ ପୋଥିରେ ନାହିଁ ।

ଶ୍ରୀରାମ ପଗ୍ଭରନ୍ତି ଶୁଣସି ବେନ ଭ୍ରାଥ ।
ମେରୁ ପବନର ବିବାଦ କେବଣ ପ୍ରଗତ ॥ ୫ ॥
କୁମର କହଇ ଏ ଅପୂର୍ବ ରସ ବାଣୀ ।
ମେରୁର ପୁତ୍ର ମାଦ୍ରି ମାରଷା ନାମ ଦୁହିଣୀ ॥ ୬ ॥
ମାଦ୍ରି ନାମ ତାହାର ଜେଷ୍ଟ ପୁତ୍ର ।
ମହାପ୍ରତାପୀ ସେ ଅଛ ବଳବନ୍ତ ॥ ୭ ॥
ଭାଇ ଭଗନୀ ସେ ମେରୁ କ୍ଷେପେଛି ଥାନ୍ତି ।
ଦିବ୍ୟ ପଦାଏକ ତହିଂ ଅଛି ଖେଳନ୍ତି ॥ ୮ ॥
ପବନର ତନୟ ଚଣ୍ଡତଳା ନାମ ।
ତାହାର ତହିଂ ବଳବନ୍ତ ଆନ ନ ଦେଖଇ ସମ ॥ ୯ ॥
ଦେହା ଦିବ୍ୟ ଗନ୍ଧର୍ବ ସେ ଖେଳନ୍ତି ନିତ ।
ମାରଷା ସ୍ୱରୂପ ଦେଖି ମୋହେ କର୍ଣ୍ଣ ହୁଅନ୍ତ ॥ ୧୦ ॥
ମାଦ୍ରି ମୁଖ ଗୃହିଂ କହଇ ପ୍ରଚଣ୍ଡ ।
କଥାଏ କହିବ ନ କରିବୁ ଖଣ୍ଡ ॥ ୧୧ ॥
ମାଦ୍ରି ବୋଇଲ କହୁକନା କିସ କଥା ।
ଶୁଣଇ ତୋହର କେବଣ ବେବସ୍ଥା ॥ ୧୨ ॥
ଚଣ୍ଡ କହଇ ମାନ୍ଦ୍ରି ତୋହର ବହେଣୀ ।
ଆମ୍ଭକଇ ବିଭା କର ମୋହର ତରୁଣୀ ॥ ୧୩ ॥
ମାନ୍ଦ୍ରି ବୋଇଲ ମୋହର ପିତା ଜନତେ ବିଖ୍ୟାତ ।
ପିତା ସେ ପ୍ରଦାନ କରିବ ନିଶ୍ଚିତ ॥ ୧୪ ॥
ମୋହର ହେଲେ କି ହୋଏ ବିଭା କରି ।
ଅନୀତ କଥା କିଂପା କହୁ ନ ବିଚାରି ॥ ୧୫ ॥
ଚଣ୍ଡତଳା କହଇ ତୁମ୍ଭ କି ଦେବୁ ହେବେ ।
ବଳେ କନ୍ୟାକଇ ନେମୁ ଆମ୍ଭେ ଏବେ ॥ ୧୬ ॥
ମାନ୍ଦ୍ରି କହଇ ରେ କିସ ତୁମ୍ଭର ବଳ ।
କେବଣ ଦର୍ପରେ ଏ କଥା କହୁ ଖଳ ॥ ୧୭ ॥
ଏସନେକ କଥା ଚଣ୍ଡ(କୁ) କହିଲେ ସେହିଂ ।
ମାଦ୍ରିକା ବିଧାଏ ମାଇଲେକ ତହିଂ ॥ ୧୮ ॥

୪—୫୯. ଏହି ପଞ୍ଚାବନ ପଦ ବଦଳେ ଖ ପୋଥିରେ ମାତ୍ର ଦୁଇ ପଦ :— ତେଣୁ ସେ ସାହେର ଜଳେ ସୁବର୍ଣ୍ଣ ଶିଖ ଥିତ । ଚନ୍ଦ୍ର ଲକ୍ଷେ ଘୁଣେ ନିରବାଣିଲେ ସଙ୍ଗତ ॥ ପୂର୍ବ ନାଥଙ୍କର ଆଗେ କହିଲେ ଚନ୍ଦ୍ରମଥା । ଅସୁର ବଂଶର ବରଣ ବେବସ୍ଥା ॥ ୬. ମାରଷା—ଦୋହିତା । ୧୦. ମାରଷା—ମାଦ୍ରି । ୧୩. ଚଣ୍ଡ—ଚନ୍ଦ୍ର ; ମୋହର—ତୋହର । ୧୪. ବିଖ୍ୟାତ—ବିଖ୍ୟାତ । ୧୬. ତୁମ୍ଭି—ତୁମ୍ଭ ।

ବୁଧାର ପାଏ ମାଦ୍ରି ଅଚେତ ହୋଇଲା ।
ପହରେ ଘରଯନ୍ତ୍ରେ ଅଗ୍ୟାଂନ ହୋଇଲା ॥ ୧୯ ॥
ଚେତନା ପାଇ ସେ ମାଦ୍ରି ମହାବୀରଇ ।
ଧାଇଂ ଯାଇ ଦୁଇ ଭାଇଙ୍କର ବାଳ ଧରଇ ॥ ୨୦ ॥
ବୁଧାଏ ବୁଧାଏ କରି ମାଇଲେ କୋପ କରି ।
ନଚେଷ୍ଟ ହୋଇ ଚଣ୍ଡଲାଏ ପଡ଼ିଲେ ପ୍ରାଣ ହାରି ॥ ୨୧ ॥
ମାଦ୍ରି ମାରି(ଷା) ସଙ୍ଗେ ତହୁଂ ଗଲେ ।
କ୍ଷଣକେ ଚଣ୍ଡଲାଏ ଚେତନା ପାଇଲେ ॥ ୨୨ ॥
ଦେଖନ୍ତି ମାଦ୍ରି ମାରି(ଷା) ସଙ୍ଗେ ନାହୁଂ ।
ପିଅର ଆଗରେ କାନ୍ଦି କହିଲେ ସେ ଯାଇ ॥ ୨୩ ॥
ପୁତ୍ରକଇ ଦେଖି ପଗ୍ଚରଇ ପବନ ।
କାହାର ଗୁଡିଲେ କଲି ଦୁହିନ କଲେ ନନ୍ଦନ ॥ ୨୪ ॥
ଧୂଳଧୂସର ହୋଇଅଛୁ ଦୁହିଙ୍କର ଶରୀର ।
ଅବର ମୁଖେ ତ ରୁଧିର ବାହାର ॥ ୨୫ ॥
ଚଣ୍ଡଲାଏ କହନ୍ତି ଶୁଣସି ହୋ ତାତ ।
ମେରୁର ତନୟେ ମାଦ୍ରି ମାଇଲା ଆମ୍ଭନ୍ତ ॥ ୨୬ ॥
ତାହାର ଭଗ୍ନୀ ମାରିଷା ମାଗିଲୁ ଯହୁଂ ।
ଆମ୍ଭଙ୍କୁ ମାରି ସେ ପଳାଇଲେ ତହୁଂ ॥ ୨୭ ॥
ଶୁଣିଣ ପବନ ସେ ମହାକୋପ କରଇ ।
ବୋଇଲା ଆଜ ସେ ଶତେ ଚୂର କରିବି ମେରୁଇ ॥ ୨୮ ॥
ମାଦ୍ରିକି ମାରିବି ମାରିଷାକୁ ଆଣିବି ।
ସେ କନ୍ୟା ତୁମ୍ଭକଇ ବିଭା କରାଇବି ॥ ୨୯ ॥
ଏସନେକ କହି ତହୁଂ ଗଲାକ ମରୁତ ।
ମେରୁର ସନ୍ନଧେ ମିଳିଲାକ ତ୍ୱରିତ ॥ ୩୦ ॥
ମେରୁକୁ ହାକି ଦେଇ ଅଦ୍‌ଭୁତକୁମର ।
ପାରୁ ଯେବେ ମୋହର ଗୁଡିଲେ ସମର କର ॥ ୩୧ ॥
ମୋହର ପୁତ୍ରକୁ ମାଇଲା ତୋହର ମାଦ୍ରି ।
ତେଣୁ ସେ ଆଜ ମୁହିଂ ଅବଶ ତୋତେ ସାଧି ॥ ୩୨ ॥
ନ ରହ ତୁ ଏଥେ ଯେବେ ନଷ୍ଟନ୍ତେ ଥିବୁ ।
ତୋହର ଦୋହିତା ମୋହର ପୁତ୍ରକଇ ଦେବୁ ॥ ୩୩ ॥
ଶୁଣି କରି ମେରୁ ଗିରି କଲାକ ମହାକୋପ ।
କସରେ ମୋହର ଆଗେ କହୁ ତୁ ବିବସ୍ତ ॥ ୩୪ ॥

୨୬. ମାଦ୍ରି—ମାଦ୍ରିମାଦ୍ରି । ୨୭. ମାରିଷା—ମାରୁସା । ୩୪. ବିବସ୍ତ—ବିବକ୍ଷ ।

ମୁହିଂ ତୋହର ବଳବୀର୍ଯ୍ୟ ପ୍ରତକ୍ଷେ ଜାଣିଲିଂ ।
ଦେଖିଲି ଶକ୍ତିର୍ଯ୍ୟ ତୋହର କେତେକ ପ୍ରାକର୍ମଇ ॥ ୩୫ ॥
ମାଉଷା କନ୍ୟାକୁ (କା) ତୋହର ପୂଅ ସର ।
ତିନ ଭୁବନ ମୋହଇ ମୋହର କୁମାର ॥ ୩୬ ॥
ପନ୍ଦର ହି ନୁହଇ ସତର ହି ନୁହଇ ।
ଦୁଇ ଅଷ୍ଟ ବରଷ ଜଗ୍ତଜନ ମୋହଇ ॥ ୩୭ ॥
ମେରୁର ବଚନ ଯହୁଂ ପବନ ଶୁଣିଲା ।
ଅଣଆୟ ପବନ ସେ ତୂରରେ ବହିଲା ॥ ୩୮ ॥
ଧଉର୍ଯ୍ୟପଣେ ସେ ମେରୁ ଅଛି ରହି ।
ରୋମେଏକ ଭୟ ନୋହିଲା ଭଡ଼୍ୟେ ତାହାର ନାହିଂ ॥ ୩୯ ॥
ମେରୁକୁ ଯହୁଂ ଗୃଳି ନ ପାରିଲା ।
ଶୂନ୍ୟର ମଧ୍ୟେ ପବନ ଲୁଚିଲା ॥ ୪୦ ॥
ଶ୍ରୀରାମଙ୍କ ଆଗେ ଲବକୁଶ କହି ।
ଯେବଣ ପଦ ଅଳପ ଅନ୍ତର ହୁଅଇ ଅର୍ଥ କରି କହିବ ବୁଝାଇ ॥ ୪୧ ॥
ବ୍ରହ୍ମା ପଉଳସ୍ତିର ଆଗେ କହିଲେ ଯାହା ।
ତୁମ୍ଭର ଆଗେ ମୁହିଂ କହୁଅଛି ତାହା ॥ ୪୨ ॥
ଶୁଣିଣ ଶ୍ରୀରାମ ହରଷ ହୋଇଲେ ।
ଶରୀର ଅଣ୍ଟାଇ ମୁଖେ ଚୁମ୍ବନ ଦେଲେ ॥ ୪୩ ॥
ଶୁଣିଣ ମୂର୍ଚ୍ଛକଲେ ଦଶରଥର ନନ୍ଦନ ।
ମେରୁକୁ ହାରି ଯେ ଲୁଚିଲା ପବନ ॥ ୪୪ ॥
ତଦନନ୍ତରେ ହୋଇଲେ କିସ ।
କହସି ବିସ୍ତାରି ଏ ଅତି ଅମୃତ ରସ ॥ ୪୫ ॥
ଲବକୁମର କହଇ ପବନ ଲୁଚିଲେ ଯହୁଂ ।
ସମସ୍ତେ ଦେବଗଣେ ବିଷାଦ ହୋଇଲେକ ତହୁଂ ॥ ୪୬ ॥
ବ୍ରହ୍ମା ବିଷ୍ଣୁ ଦେବଇନ୍ଦ୍ର ସହିତେ ।
ପବନକୁ କହନ୍ତି ଦେବଗଣ ସହିତେ ॥ ୪୭ ॥
କିମ୍ପାଇ ମାରୁତ ହୋଇଲୁ ଗୁପତ ।
ନାଶ କରିବୁ କି ତୁହି ତିନ ଜଗତ ॥ ୪୮ ॥
ପବନ କହଇ ମୋହର ଜୀବନେ କିସ କାର୍ଯ୍ୟ ।
ବଡ଼ ସଙ୍କଟ ମୁହିଂ ପାଇଲଇ ଆଜ ॥ ୪୯ ॥

---

୩୬. ମାଉଷା—ମାଉଁସୀ । ୩୭. ମୋହଇ—ମୋହି । ୪୪. ମୂର୍ଚ୍ଛକଲେ—ମୂର୍ଚ୍ଛାଗଲେ । ୪୮. ଗୁପତ—ଗୋପତ ।

ମେରୁର ସାନ୍ଦୁରେ ସମର ଘୋର କଲି ।
ପରାକ୍ରମେ ମୁହିଂ ତାହାକୁ ସାମର୍ଥ ନୋହିଲି ।। ୫୦ ।।
ପବନ ବଚନ ଶୁଣି ଦେବଗଣେ ।
ମେରୁର ସନ୍ନିଧେ ମିଳିଲେ ତତକ୍ଷଣେ ।। ୫୧ ।।
ବ୍ରହ୍ମା କହଇ ଶୁଣସି ମହାଭାଗ ।
ପବନକଇ ମହାତ୍ମା ଛାଡ଼ସି ବଇରାଗ ।। ୫୨ ।।
ସକଳ ଜୀବଜନ୍ତୁଙ୍କୁ ତୁହି ରକ୍ଷା କରିବୁ ।
ଆମ୍ଭର ବଚନେ ତୁହି ଶିଂଘେକ ଦେବୁ ।। ୫୩ ।।
ଦେବଙ୍କର ବିନୟ କଥା ଯହୁଁ ମେରୁ ଶୁଣିଲା ।
ଶିଂଘକଇ ଦେବ ବୋଲି ସନମତ କଲା ।। ୫୪ ।।
ପୁଣି ଆସି ପବନକୁ କହିଲେ ବେଦବର ।
ଏବେ ମେରୁ ତୁଲେ ତୁହି କରସି ସମର । ୫୫ ।।

ସମସ୍ତ ଦେବତାଙ୍କର ତେଜ ବଳ ଦେବୁ ।
ପିଠି ରକ୍ଷା ହୋଇ ତୋହର ପଛେ ଥିବୁ ।। ୫୬ ।।
ବ୍ରହ୍ମାର ବଚନେ ପବନ ପ୍ରଚଣ୍ଡରେ ବହିଲା ।
ମେରୁର କନେକ ଶିଂଘ ଉଡ଼ାଇଣ ନେଲା ।। ୫୭ ।।

ଏ ଖୀର-ସମୁଦ୍ରେ ପଡ଼ିଲାକ ଯହୁଁ ।
ରକ୍ଷଭକ୍ଷ ଲଙ୍କାପୁର ନିର୍ମାଣ କଲେ ତହୁଁ ।। ୫୮ ।।
ପଉଲସ୍ତ୍ୟଙ୍କର ଆଗେ ଯହୁଁ କହିଲେ ବିଧାତା ।
ଶ୍ରୀରାମର ମଞ୍ଚରେ କହନ୍ତି ସୀତାଦେବୀସୁତ ।। ୫୯ ।।
ଅସୁର ଛଦ୍ମାନ୍ତେକ ଦେବ ମୁରାରି ।
ସକଳ ଦନୁଜନ୍ତୁ କାଟେ ବାରେ ସଂହାରି ।। ୬୦ ।।

ସୁମାଳି ଦଇତ୍ୟ ଯେ ଲଙ୍କାରେ ଥିଲା ।
ଶ୍ରୀହରିର ଡରେ ସେ ପାତାଳେ ପଶିଲା ।। ୬୧ ।।
ତେବେସେ ଲଙ୍କାପୁରେ ଅସୁରବଂଶ ନାହିଂ ।
ତୋହର ପୁତ୍ର ନାଥ ଯେନ ତହିଂ ଆସି ରହି ।। ୬୨ ।।

ପାଞ୍ଚ ମନୁ ପରଯନ୍ତେ ମୁହିଂ ସେ ପୁରେଣ ଥିଲି ।
ତୋହର ଉପୁଜନ୍ତେ ସେ ତାହା ମୁଂ ଉପେଖିଲି ।। ୬୩ ।।

ଅତ ପବନ ସେ ସୁବର୍ଣ୍ଣମୟେ ପୁର ।
ସେ ଭୁବନେ ଏବେ ତୁହି ବିଶ୍ରାମ କର ।। ୬୪ ।।

ବ୍ରହ୍ମାର ବଚନ ଶୁଣି ପଉଲସ୍ତି ମହାଋଷି ।
ପୁଷ୍ପନାଥ ଯେନ୍ନ ଲଙ୍କାରେ ପ୍ରବେଶ ହୋଇଲେକ ଆସି ।। ୬୫ ।।

ଦେଖିଲେ ସେହୁ କନକମୟେ ଭୁବନ ।
ବିସର୍ବାଙ୍କୁ କହିଲେ ପଉଲସ୍ତି ମହାମୁନ୍ୟ ॥ ୬୬ ॥
ପୁଣ୍ୟବନ୍ଧୁ ଦେଶ ତୁହ୍ମି ଏଥି ଥାସି ।
ମର୍ତ୍ତ୍ୟପୁରେ ସ୍ଥିତ କର ମୁଁ ହୋଇଲି ତୀର୍ଥବାସୀ ॥ ୬୭ ॥
ଏସନେକ କହି ତହୁଁ ପଉଲସ୍ତି ଗଲେ ।
ଲଙ୍କାପୁରେ ବିଶ୍ରାମ ମହର୍ଷି କଲେ ॥ ୬୮ ॥
ଧୂଳି ପୁଏ ଯେନ ବିଶ୍ରବା ତପସ୍ୱୀ ।
ଶିବର ପଥୁରେ ଓଦ୍ଧନଶି ସେବା କରି ॥ ୬୯ ॥
[ଅତି ସୁସସ୍ଥ କନକମୟେ ଭୁବନ ।
ହରଙ୍କେ ତପ କରନ୍ତି ବିଶ୍ରବା ମହାମୁନ୍ୟ ] ॥ ୭୦ ॥
ବୈଶ୍ରବଣ ନାମେଣ ଯେବଣ ପୁତ୍ର ।
କ୍ଷୟ ରୋଗେଣ ସେ ହୋଇଲା ପ୍ରାଣେ ହତ ॥ ୭୧ ॥
ବଇଶ୍ରବଣ ନାମେଣ ଯେବଣ କୁମାରଇ ।
ରାତି ଦିବସରେ ଈଶ୍ୱରଙ୍କ ସେବା କରଇ ॥ ୭୨ ॥
ଧ୍ୟାନେଣ ଭଗତି ସେ ଯେତେକାଲେ ପଶୁପତି ।
କୁବେର ପଦ ବଇଶ୍ରବଣଙ୍କୁ ଦେନ୍ତି ॥ ୭୩ ॥
ପୁଷ୍ପକ ବିମାନ ରଥ ଆସନ ପାଇଲା ।
ଈଶ୍ୱର ପ୍ରସାଦେ ଲକ୍ଷ୍ମୀ ଅଚଳୋଚଳ ହୋଇଲା ॥ ୭୪ ॥
ଦକ୍ଷ ପୁରୁଷେ ତାହାଙ୍କୁ କରନ୍ତି ଭଗତି ।
ଦେବଗଣଙ୍କର ସଙ୍ଗେ ତାହାର ବଢ଼ିଲା ପ୍ରୀତି ॥ ୭୫ ॥
ଶୂନ୍ୟରେ ରଥ କରଇ ଗମନ ।
ଦିଗପାଳଙ୍କର ମଧ୍ୟେ ସେ ଅଟଇ ମୋକ୍ଷମାନ ॥ ୭୬ ॥
ଲଙ୍କା ଭୁବନେ ଧୂଇଗତ ତେଉବିଂଶ ନଦୀ ବହଇ ।
ଶ୍ରୀରାମର ସଭାରେ ଲବ କୁମର କହଇ ॥ ୭୭ ॥
ଯେବଣ ପଦ ଅବା ହୁଅଇ ଅନ୍ତର ।
ଅର୍ଥ କରି ବୁଝାଇ ତାହା କୁଶ କୁମର ॥ ୭୮ ॥

## ବିଶ୍ରବାଙ୍କ ଅସୁରୀ ବିବାହ

ମଧ୍ୟରେ ନଦୀ ଯେ ମଣିବନ୍ତୀ ନାମ ।
ତହିଂର ତଟେ ବିଶ୍ରବା ମୁନିର ଆଶ୍ରମ ॥ ୧ ॥

---

୬୯. ପଦଟି ଖ ପୋଥିରେ ନାହିଁ । ୭୧. ବୈଶ୍ରବଣ—ବିଂଶବ(କ) । କ୍ଷୟ—କସ୍ୟ(କ) ୭୭. ବହଇ—ବସଇ(କ) ; କୁମର—କୁସ । ୭୮. ଏ ପଦଟି ଖ ପୋଥିରେ ନାହିଁ ।

ଜପେ ତପେ ସେ ମନ ନିବୃତ୍ତ ।
କୁବେର ଭ୍ରମେ ସେ ଝେଲଇ ତଉକତ ॥ ୨ ॥
ଲବକୁଶେ କହନ୍ତି ଶ୍ରୀରାମର ଅଗ୍ରତେ ।
ଶୁଣନ୍ତି ବଶିଷ୍ଠ ଋଷି ଅମନାତ୍ୟେ ॥ ୩ ॥
ନଗ୍ର ଲୋକେ ଶୁଣି ସେ ତୋଷ କରନ୍ତି ମନ ।
ଶ୍ରବଣେ ଶୁଣନ୍ତି ସେ ଅମୃତମୟେ ବଚନ ॥ ୪ ॥
ଏସନେକେ କେତେହେ ସମସ୍ତ ବହିଯିବ ।
ବିଧାତା ନିର୍ମଣ କେ ଅନ୍ୟଥା କରିବ ॥ ୫ ॥
ସୁମାଳି ଦଇତ୍ୟ ଯେ ପାତାଳେ ଅଛି ରହି ।
ପୁସ୍ୟଦନ୍ତ ଦୋହିତାକୁ ବିଭା ହୋଇଲା ସେହି ॥ ୬ ॥
ସଦାନକା ନାମ ଯେ ପୁସ୍ୟଦନ୍ତଙ୍କ ନନ୍ଦନୀ ।
ତାହାର ଗର୍ଭେ ଜାତ ଦୋହିତା ତନ ॥ ୭ ॥
ପୁତ୍ରେକ ଉପୁଜିଲା ଯେ ବଳବନ୍ତ କ୍ଷିତି ।
ଜମ୍ବୋମାଳ ବୋଲି ଯେ ତାହାର ନାମ ବିଖ୍ୟାତ ॥ ୮ ॥
ଅସୁର ବଂଶ ଯେ ପୃଥ୍ୱୀରେ ନ ଥିଲେ ।
ସୁମାଳିକ ଆଶ୍ର(ସ୍ର) କରି ପାତାଳେ ରହିଲେ ॥ ୯ ॥
ଏହେବେଳେକ ସୁମାଳି ଯେ ପାତାଳେ ବିଶ୍ରାମ କରଇ ।
ପୁଣି ନିତ ଲଙ୍କାପୁରୀ ମନେ ମନେ ଝୁରଇ ॥ ୧୦ ॥
କେବଣ ଉପେକ ଘେନଇ ଲଙ୍କାପୁର କରି ଯିବ ।
ଏକାମ୍ୟରେ ନର ଭ୍ରମି ଆସିବ ॥ ୧୧ ॥
କାଟେ ଶୂଳ ଗୃପି ହୁଅନ୍ତେଣ ବାହାର ।
ନଉକେଶୀ ନାମେଣ ଯେ ଯେବଣ ଦୋହିତା ତାହାର ॥ ୧୨ ॥
ପିତାର ଯାଆନ୍ତେ ପୁତ୍ରୀ ଧରଇ ହସ୍ତ ।
କାହିଂକି ଗମନ କରୁସି ଗୋ ତାତ ॥ ୧୩ ॥
ସୁମାଳି କହଇ ଶୁଣସି ଗୋ ଦୁଲଣୀ ।
ନିଜ ଭୁବନକୁ କରିବ ଭ୍ରମଣି ॥ ୧୪ ॥
ତେଣୁ ସେ ତୁଲେ ତୋତେ ନେମଇଁ କାହିଂ ।
ଗୁପତ କଥା ପ୍ରଗଟ ନ କର ଗୋ ଆଈ ॥ ୧୫ ॥

---

୨. ଭ୍ରମେ—ଘମେ । ୪. ପଦଟି ଖ ପୋଥିରେ ନାହିଁ । ୫. ନିର୍ମଣ—ନିରବାଣ ଖ) ; କେ—କୋ'କ) ୬. ପୁସ୍ୟଦନ୍ତ—ପୁଷ୍ପନାଗ(କ) । ୭. ପୁସ୍ୟଦନ୍ତ—ପୁଣ୍ୟବନ୍ତ । ସଦାନକା—ସାଦୁକା(ଖ) । ଜମ୍ବୋମାଳ—ଯମଲ୍ଲ(କ), ବିଖ୍ୟାତ—ବିଷ୍ଟାତ । ୧୦. ନିତ ଲଙ୍କାପୁରୀ—ତନିଲଙ୍କାପୁରକୁ ରି(କ) । ୧୨. ନଉକେଶା—ନଉକେଶୀ(ଖ) । ୧୪. ଦୁଲଣୀ—ଦୁଲ୍ଲ(କ) ।

ନିଷ୍କ୍ରାନ୍ତ ହୋଇଣ ଉର୍ଦ୍ଧ୍ୱ ଧରେ ରନ୍ଧ୍ର ଆସି ।
କେହି ନ ଜାଣନ୍ତୁ ବାହୁଡ଼ିଣ ଯାସି ।। ୧୬ ।।
ନଉକେଶୀ ବୋଇଲା ଶୁଣସି ହୋ ତାତ ।
ମୁହିଂ ଦେଖିବି ତୋହର ଦେଶ କେବଣ ଚରିତ ।। ୧୭ ।।
କେସନେକ କଥା ତୋହର ଭୁବନ ।
ଦେଖିଲେ ଶରଧା ହୋଇବ ମୋହର ମନ ।। ୧୮ ।।
ନ କର ନିଷେଧ ତାତ କହଇ ମୁହିଂ ।
କାନ୍ଦି କହଇ ନଉକେଶୀ ପିଅର ମୁଖ ଗୃହିଂ ।। ୧୯ ।
ତାହନ୍ତେ ସୁମାଳୀର ଦୟା ବସିଲା ।
ଝିଅ ହସ୍ତ ଧରି ବନ୍ଧ୍ରୁ ବାହାର ହୋଇଲା ।। ୨୦ ।।
ଲଙ୍କାଭୁବନେଶ ଉରତେଣ ମିଳନ୍ତ ।
ପୂର୍ବର ସଙ୍କେତ ସୁମାଳି ଗୃହାଇଂ ଚଉକତ ।। ୨୧ ।।
କିଛୁ ହିଂ ନାହିଂ ଭୂମି ମାତ୍ର ଅଛୁ ।
ଦେଖି ଦାନବରାଜାର ନ ପୁରଇ କିଛୁ ।। ୨୨ ।।
ବିଚାରି ଶାବେ ଚଉକତ କ ରଡ଼ନ୍ତ ।
ଜନମନୁଷ୍ୟ ନ ଥିଲେ ପଶୁଜନ୍ତୁ ବହିଧିତ ।। ୨୩ ।।
ନଉକେଶୀ ନାମେନ୍ନ ବନଜୀବନ୍ତ ଦେଖି ।
ବନଜୀବନ୍ତ ଗୃହାଇଂ ଗୃଳନା ଉପେଖି ।। ୨୪ ।।
ଏମନ୍ତେ ପଞ୍ଚାଶ ଯୋଜନ ଭ୍ରମଣି କଲେ ।
କୁବେର ଖେଳୁଅଛୁ ଯାଇଣ ଦେଖିଲେ ।। ୨୫ ।।
କର୍ଣ୍ଣେଣ କୁଣ୍ଡଳ କିବଣ୍ଠ ବନ୍ଦ ମୁଦ୍ର ହାରଇ ।
ଝୀନବସନ ପିନ୍ଧିଅଛୁ ବସଟାର କୁମରଇ ।। ୨୬ ।।
ଚନ୍ଦନ କୋପି ମୃଗନାଭି ଛିତା ।
ଦେଖିଣ ଆଶ୍ଚର୍ଯ୍ୟ ହୋଇଲେ ପିତା ଦୋହିତା ।। ୨୭ ।।
ସନ୍ନିଧେ ସୁମାଳି ମିଳିଲେ ଉଚିତ ।
ବାମ କରେ ଧରି ଅଛୁ କୁମାରୀ ହସ୍ତ ।। ୨୮ ।।
ଦେଖିଣ ବଇଶ୍ରବଣ ଦେହେ ଶଙ୍କା କଲା ।
ଶୂଳ କରେ ଧରି ଦନୁଜ ଉଭା ହୋଇଲା ।। ୨୯ ।।
କୁବେର ବଚୂରଇ ଏ ସୁମାଳି ଅସୁର ।
ପାତାଳୁ ବାହାର ହୋଇ ଅଇଲା ଲଙ୍କାପୁର ।। ୩୦ ।।

---

୧୯. ନ କର ନିଷେଧ—ନବରନିଶୋଧ । ୨୫. କଲେ—ଗଲେ(କ)
୨୭-୨୮. ଏ ଦୁଇ ପଦ ଖ ପୋଥିରେ ନାହିଁ ।

ତରେ କୁବେର ସମାଧ୍ୟା ନ ଦେଲା ।
ସୁମାଳି ଦନୁଜ କୋପେ ପଚ୍ଚାରିଲା ॥ ୩୧ ॥
କେ ହୋ ମହାତମା କାହିଁ ତୁହି ଥିଲୁ ।
ଏ ମୋହର ନଗ୍ରେ କେମ୍ପା ବିଜୟିଲୁ ॥ ୩୨ ॥
କୁବେର କହଇ ଏ ତୋହର ନିଜ ଦେଶ ।
ତୋତେ ନ ଦେଖି କଲୁ ଏଥି ବାସ ॥ ୩୩ ॥
ତୋହର ରାଜ୍ୟ ବୋଲି ବିଧାତା କହିଲା ।
ମଣ୍ଡ ଭୁବନକୁ ତପ କରି ଚଲି ॥ ୩୪ ॥
[ଏ ପୁରେ ଜନ୍ମିଲେ ପୌଲସ୍ତି ମହର୍ଷି ।
ତାହାଙ୍କର ତନୟେ ବିସର୍ବା ମହର୍ଷି ।
ତାହା ଶୁଣି ସୁମାଳି ହୋଇଲାକ ତୋଷି ॥ ୩୫ ॥
ପିତାପୁତ୍ରଙ୍କୁ ମୁନି ଆଶ୍ରିକରି ଥୋଇ ।
ନାନା ତୀର୍ଥେ ପୌଲସ୍ତି ଗଲେ ପନ୍ଥ ବନ୍ଧି] ॥ ୩୬ ॥
ତୋହର ରାଜ୍ୟେ ତୁହି ବିଶ୍ରାମ କର ।
ଏହିକ୍ଷଣି ନବରୁ ତୋହର ହୋଇବୁ ବାହାର ॥ ୩୭ ॥
ଶୁଣିଣ ସୁମାଳି ହୋଇଲା ହରଷ ।
ବାକ୍ରୁତ (ହୋଇ) ହୋଇଲୁ ତୁ ପରମ ବିଶ୍ୱାସ ॥ ୩୮ ॥
ତୋହର ପିତା ଏଥେ ଅଛୁ ଯେବେ ।
ତାହାର ଥାଉ ତୋତେ କିସ ବୋଲିବା ଏବେ ॥ ୩୯ ॥
ତୁହି ତ କହିଲୁ ଅମୃତମୟେ କଥା ।
ଶୁଣଇ କିନା ତୋହର ପିତାର ବାରତା ॥ ୪୦ ॥
କାହିଁ ଅଛୁ ମୁନି ଦେଖାଅସି ମୋତେ ।
ତୋହର କଥା ଶୁଣି ବଶ୍ୟ ହୋଇଲି ତୋତେ ॥ ୪୧ ॥
ଆସ ବୋଲି କୁବେର ଆଗ ହୋଇଲା ।
ଦୋହିତାର ଭୁଜ ଧରି ସୁମାଳି ପଛେ ଗଲା ॥ ୪୨ ॥
ମଣିବନ୍ତୀ ନଦୀର ଉତ୍ତରଅଙ୍କର ତୀରେ ।
ଅନେକ ପୁଷ୍ପ ଗନ୍ଧେ କି ଉଡ଼ନ୍ତି ଭ୍ରମରେ ॥ ୪୩ ॥
ବେଲବନିକା ଭିତରେ ବିଶର୍ବା ଅଛନ୍ତି ତପେ ।
ସୁମାଳି ମିଳିଲା ବିଶର୍ବାଙ୍କର ସମୀପେ ॥ ୪୪ ॥

---

୩୯-୪୧. ଏ ତିନି ପଦ ବଦଳେ ଖ ପୋଥିରେ ପଦେ :—ଅମୃତ ଧ୍ୱନି ଶୁଣିଲି ତୋହର ବଚନ । କେବଣ ଥାନେ ତୋହର ପିତା ଅଛୁ କରିବା ଗମନ ॥ ୪୧. ଦେଖାଅସି—ଦେଖାଆସି । ୪୨. ଆସ—ଆକାଶ(କ) । ୪୪. ବନିକା—ବନିକାବନିକା ।

ପିତାର ସନ୍ଧେ କୋବେର ଉଭା ହୋଇଲା ।
ବିଶବା ମୁନି ଗୃହକୁଂ ସୁମାଳି କହିଲ ॥ ୪୫ ॥

କସ ହୋ ଯତ କସ ଅବଗୁର ତୁମ୍ଭର ।
କାହୁଂ ଆସି ବିଶ୍ରାମିଲ ମୋହର ପୁର ॥ ୪୬ ॥

ଯୋଗ ଲସ୍ୱେ ଅନ୍ତ ନ ଶୁଣିଲେ ତପୋଧନ ।
କୋପେ ସୁମାଳି ତଦିଂଇ ନୟନ ॥ ୪୭ ॥

ପ୍ରଚଣ୍ଡ ମୂର୍ତ୍ତି କରି ଘର୍ମେ ରକ୍ତଏକ ଦେଲା ।
ତିଳ ମହର୍ଷି ପଡ଼ି ଚେଷ୍ଟ ହୋଇଲା ॥ ୪୮ ॥

[କୁବେର ସନ୍ଧେ ଯେ ଥିଲ ଉଭା ହୋଇ]
କୋଲେ ଧରି ପିତାର ମୁଖେ ନୀର ଆଣି ସିଞ୍ଚଇ ॥ ୪୯ ॥

ବାଞ୍ଛିଣା ଯେନ ସନ୍ଧେ ବାଞ୍ଛିଲ ।
ତେବେ ସେ ମୁନିବର ଦେହରେ ପ୍ରାଣ ପଶିଲ ॥ ୫୦ ॥

ଚେତନା ପାଇ ବ୍ରହ୍ମାନ୍ତ ମହାମୁନି ।
ଶୂଳ ଯେନ ଉଭା ହୋଇଛୁ ଦନୁଜ ମଣି ॥ ୫୧ ॥

ବିଶବା ମୁନି ଗୃହକୁଂ ପଚ୍ଚରଇ ସୁମାଳି ।
କିପାଇଂ ମୋହର ନଗରେ ରହିଛୁ ତପଶ୍ୟାଳି ॥ ୫୨ ॥

ବନ କନ୍ଦରେ ଯେ ଋଷିଙ୍କର ଆଶ୍ରମ ।
ଧ୍ୱଂସ କରୁ ଆମ୍ଭେ ମୋହର କନେକ ଭୁବନ ॥ ୫୩ ॥

ଶୁଣି ବିଗ୍ରରଇ ବିଶବା ମହାଋଷି ।
ଏହି ସେ ସୁମାଳି ପାତାଳେ ଥିଲ ପଶି ॥ ୫୪ ॥

ଏହାର ରାଜ୍ୟକଇ ଅଇଲାନ୍ତ ଯେବେ ।
ଏ ନଗ୍ର ଉପେକ୍ଷି ଚିଲୁ ଆମ୍ଭେ ଏବେ ॥ ୫୫ ॥

ବିଶବା ବୋଇଲେ ଆମ୍ଭେ କମ୍ପୁଧାପେ ଥିଲୁ ।
ଶୂନ୍ୟ ଭୁବନ ଦେଖି ଏଥେ ବିଶ୍ରାମିଲୁ ॥ ୫୬ ॥

ପଉଲସ୍ତି ମହର୍ଷି ମୋହର ହୁଅନ୍ତି ପିତା ।
ଏଥେ ରହିବାକୁ ପଠିଆଇଲ ବିଧାତା ॥ ୫୭ ॥

ବଂଶାନୁବଂଶ ଏ ତୋହର ନବର ।
ଏବେ କନେକପୁରେ ତୁହି ବିଶ୍ରାମ କର ॥ ୫୮ ॥

---

୪୫. କୋବେର—କୋଷ୍ଟର(କ) । ୫୦. ପଦଟି ଖ ପୋଥିରେ ନାହିଁ ।
୫୩. ପଦଟି ଖ ପୋଥିରେ ନାହିଁ । ୫୫. ପଦଟି ଖ ପୋଥିରେ ନାହିଁ ।
୫୮. ବଂଶାନୁବଂଶଏ—ବଂସାନୁବସ୍ୱେସ ।

ଶୁଦ୍ଧ ଯେବେ ବୋଲନ୍ତୁ କଣ୍ଠରେ ହୋଇ ଥିବୁ ।
ନଉଚେତେ ଏହ୍ନକ୍ଷଣି ତ ବାହାର ହୋଇଯିବୁ ॥ ୫୯ ॥
ଶୁଣିଣ କୋପ ଶାନ୍ତ କଲେକ ସୁମାଳି ।
ମନେ ମନେ ବିଚାରଇ ଅସୁର ବୃଢ଼ାଳୀ ॥ ୬୦ ॥
ଏ ଋଷି ଧାର୍ମିକ ବ୍ରହ୍ମାଙ୍କ କୋଳେ ଜାତ ।
ଏହାର ବୀର୍ଯ୍ୟେ ଉପୁଜିବ ଏସନେକ ସୁନ୍ଦର ସୁତ ॥ ୬୧ ॥
ଅତି ରୂଚିର ରୂପେ ମଦନ ମୂରତି ।
ଦହନ କାଞ୍ଚନ ଜାଣି ଦିଶଇ ଦେହ ଜ୍ୟୋତି ॥ ୬୨ ॥
ପୂର୍ବେ ତପ କରିଅଛୁ ଯେବେ ।
ଏହାକୁ ହି ପିତା ମୋହର ବଖାଣି କରିବ ଏବେ ॥ ୬୩ ॥
ଏସନେକ ନଉକେଶୀ ହୃଦରେ ବିଚାରନ୍ତେ ।
ସୁମାଳିର କଣ୍ଠେ ଶାରଦା ବସିଲା ତୁରିତେ ॥ ୬୪ ॥
ସୁମାଳି ପୁଚ୍ଛଇ ଶୁଣସି ନନ୍ଦନୀ ।
ଏ ମହାଋଷିର ତୁହି ହୋଇବୁ କି ଭାର୍ଯ୍ୟାମଣି ॥ ୬୫ ॥
ହୃଦୟରେ ଇଚ୍ଛା ଯେବେ ତୋହର ମନ ।
ଆଜ ଏହାକୁ ତୋତେ କରିବି ପ୍ରଦାନ ॥ ୬୬ ॥
ଋଷିର ବୀର୍ଯ୍ୟେ ଯେବେ ହୋଇବ (ତନୟ) ଉତପତି ।
ସେ ଭୋଗ୍ୟ କରିବ ମୋହର ଲଙ୍କା (ବାଡ଼) ବ୍ରିତି ॥ ୬୭
ନଉକେଶୀ କହଇ ତାତ ତୋହର ଯେ ଇଚ୍ଛା ।
ପିତାର ବଚନ ମୁଂ କି କରଇ ମିଥ୍ୟା ॥ ୬୮ ॥
ଶୁଣିଣ ଦନୁଜ ରାଜା ହରଷ ହୋଇଲା ।
ବିଶବା ମୁଖ ଚାହିଁ ସୁମାଳି କହିଲା ॥ ୬୯ ॥
[ବୋଲଇ ଦଇତ ଶୁଣ ମହାଋଷି ।
ଏ ମୋହର ଦୁହିତାକୁ ପ୍ରଦାନ ହୁଅସି ॥ ୭୦ ॥
ଶୁଣିଣ ମଉନ ହୋଇଲେ ତପସ୍ୟାଳି ।
ଆତ୍ମା ଉତ୍ସର୍ଗିଲା ମନେମନେ ଭାଳି ॥ ୭୧ ॥
ବିଶ୍ରବା ମୁଖ ଚାହିଁ ସୁମାଳି କହଇ ନରୂତ ।]
ହେ ମହାଋଷି ତୁ ମହନ୍ତ ପୁଣ୍ୟବନ୍ତ ।
ତୋ ତହୁଂ ବୁଦ୍ଧି ସୁଶୀଳ ତୋହର ପୁତ୍ର ॥ ୭୨ ॥
ପିତା ପୁତ୍ର ଦୁହିଙ୍କର ଏକ ପରକୃତି ।
ତୁମ୍ଭର ବଚନ ଶୁଣି ହୋଇଲା ଧୃତି ॥ ୭୩ ॥

---

୫୯. ପଦଟି ଖ ପୋଥିରେ ନାହିଁ । ୬୨. ଜ୍ୟୋତି—ଯୋତି । ୬୪, ପଦଟି ଖ ପୋଥିରେ ନାହିଁ । ୬୮. ମୁଂକି—ମୁଂହି । ୬୯. ପଦଟି ଖ ପୋଥିରେ ନାହିଁ ।

ଏ ରାଜେ ଏବେ ବିଶ୍ରାମି ଅଛ ଯେବେ ।
ଏହୁ ରାଜ୍ୟ ଭୋଗ କର ଜନା ତେବେ ॥ ୭୪ ॥
ଯାହା କହିବୁ ନ କରିବୁ ଆନ ।
ଏ ମୋହର ନନ୍ଦନୀକି ତୋତେ କରିବି ପ୍ରଦାନ ॥ ୭୫ ॥
ଶୁଣିଣ ମନେ ମନେ ଭାଳଇ ତପସ୍ୟାକ ।
ଆତ୍ମା ଉଛିଗଲା ଶରୀରୁ ଝାଳ ଗଳ ॥ ୭୬ ॥
ଅସୁର ପୁରେ ଅମ୍ଭେ କଲୁ ଯେବେ ବାସ ।
ସେ କାରଣେ କରି ହୋଇଲୁ ଜାତିନାଶ ॥ ୭୭ ॥
ନୀଚ ସ୍ତିରିଙ୍କର ତୁଲେ ରମଣ କରନ୍ତେ ।
ନର୍କ ଗତି ତାହାକଇ ଦିଅନ୍ତି ଯମଦୂତେ ॥ ୭୮ ॥
ଦୋହରି ଅଗ୍ନି ଛୁଇଂବ କେସନେ ।
ଉପହାସ୍ୟ କରିବେ ମୋତେ ତପୋଧନମାନେ ॥ ୭୯ ॥
ଏସନେକ ବିଶବାଏ ଭାଳୁଛନ୍ତି ସହୁଂ ।
କୋପେଣ ସୁମାଳି ସମାସ୍ୟା ଦିଅଇ ତହୁଂ ॥ ୮୦ ॥
କି ହୋ ଯତି ତବଦ ହୋଇଲୁ ।
ଅସ୍ତି ନାସ୍ତି କଥା କିଛି ହି ନ କହିଲୁ ॥ ୮୧ ॥
ମୋହର ବଚନ (ନ)କରିବୁ ଯେବେ ।
ପିତାପୁତ୍ର ଦୁହନ୍ତ ବିନାଶିବି ଏବେ ॥ ୮୨ ॥
ସନମତ ବାକ୍ୟ କହିଲେ ମହାମୁନି ।
ହୋଇବଇ ବିଭା ତୋହର ନନ୍ଦନୀ ॥ ୮୩ ॥
ସୁମାଳି କହଇ ଆବର ଅଛଇ ଦୁଇ କୁମାରୀ ।
ତିନ କନ୍ୟାକୁ ବିଭା ହୋଇବୁ ତପସ୍ୱୀ ॥ ୮୪ ॥
ଦୋହିତାର ଗର୍ଭେ ପୁତ୍ର ଉପୁଜିବାର ନିମନ୍ତେ ।
ତେସନକଇ ତ ଦେବଇ ସିନା ତୋତେ ॥ ୮୫ ॥
ଏ(କ) କୁମାରୀ ଯେବେ ବନ୍ଧ୍ୟା ହୋଇବ ।
ଆରକର କୋଳେ ତନୟ ଉପୁଜିବ ॥ ୮୬ ॥
ସତ୍ୟ ଉତ୍ତରୁ ଯେବେ ଇଚ୍ଛୁ ତୋହର ମନ ।
ସତ୍ୟ ସତ୍ୟ କଲେ ପୌଲସ୍ତି ମହାମୁନ୍ୟ ॥ ୮୭ ॥
ଶୁଣିଣ ସଭାଲୋକେ ହଂସିଲେ କୁତୂହଳେ ।
ବିସ୍ତାରି ଗୀତ ଗାବନ୍ତି ସୀତଯ୍ୟାର ଦୂଲଲେ ॥ ୮୮ ॥
ସତ୍ୟ ମନାଇଂ ତହୁଂ ଅସୁର ବୀର ଗଲା ।
ପାତାଳ ବମ୍ବରେ ପ୍ରବେଶ ହୋଇଲା ॥ ୮୯ ॥

୮୮. ଗାବନ୍ତି—ବାବନ୍ତି(କ) ।

ଷୋଡ଼ଶାକୁ କହଇ ଯଥାବିଧି ବାଣୀ ।
ଶୁଣିଣ ହରଷ ହୋଇଲେ ଦନୁଜ ଘରଣୀ ॥ ୧୦ ॥
କନ୍ୟାଙ୍କୁ ଘେନି ଚହୁଂ ଶୀଘ୍ରରେ ଅଇଲା ।
ଲଙ୍କାପୁରେ ଅସି ମୁନିବର ସନିଧେ ମିଳିଲା ॥ ୧୧ ॥
ନଉକେଶୀ ପୁଷ୍ପଉତକଣ୍ଠା ପୁଷ୍ପମାଳୁଣୀ ।
[ବିଶକା ବଧୂ ହୋଇଲେ ସେ] ତିନି ଭଗିନୀ ॥ ୧୨ ॥
ଗନ୍ଧର୍ବ ବିଧି ବିଭାଯୋଗ କଲା ।
ଅନେକ ମଣିଗଣ ଯଉତୁକ ଦେଲା ॥ ୧୩ ॥
ଶଙ୍ଖେଣ ଢଳ ଭରଣ (ଉ)ଦେକ ।
ଲଙ୍କାପୁର ସହିତେ ଦେଲା ଯଉତୁକ ॥ ୧୪ ॥
ଚହୁଂଶ ସୁମାଳି ଗଲା ନିଜ ପୁରଇ ।
କନ୍ୟାଙ୍କୁ ଘେନି ଲଙ୍କାପୁରେ ରହିଲେ ମହାମୁନିନ୍ଦ୍ର ॥ ୧୫ ॥
ତିନି ଭଗ୍ନୀ ଆଶ୍ରମ କଲେ ଭିନ୍ନଭିନ୍ନ ।
ତପ ଆଗ୍ରରେ ଥାନ୍ତି ମହାମୁନ୍ୟ ॥ ୧୬ ॥
ସାଲେକା ନାମେଣ ଯେ କୁବେର ଗର୍ଭଧାଣ୍ଡ ।
ପୁତ୍ର ବଧୂ ଘେନି ବିଶ୍ରାମିଲେ ଭରଦ୍ୱାଜଙ୍କର କୃପାଙ୍କ ॥୧୭॥

## ରାବଣ ଜନ୍ମ

ଏସନେକେ କେତେଦିନେ ମାସ ପକ୍ଷ ଗଲା ।
ନଉକେଶୀ କାମେମୀ ପାକାପରଣ ହୋଇଲା ॥ ୧ ॥
ତଦଅନ୍ତରେ ପୁଷ୍ପଉତକଣ୍ଠା ପୁଷ୍ପମାଳୁଣୀ ।
ତ୍ରିଶି ଉପଗୃଶକା ହୋଇଲେ ତିନି ଭଉଣୀ ॥ ୨ ॥
ଶୃଙ୍ଗାର ଇଚ୍ଛା ତାହାକୁ ନ କରନ୍ତି ମହାମୁନି ।
କାମେ ଆରତ ସେ ହୋଇଲେ ତିନି ଭଗ୍ନୀ ॥ ୩ ॥
ଭାଳନ୍ତି କାମେମୀ କିସ ବୁଦ୍ଧି କରିବା ।
ମଦନ ଜାଳାରେ କେସନେ ଦେହ ଧରିବା ॥ ୪ ॥
ପିତା ନ ଜାଣି ସେ ବୃଦ୍ଧ ତପୀଙ୍କି ଦେଲା ।
ପୂର୍ବର ପାପ ଆମ୍ଭଙ୍କୁ ଏବେ ସେ ଫଳିଲା ॥ ୫ ॥
ବିଗୃର ଗୋ ଏବେ କରିବା କିସ ବୁଦ୍ଧି ।
ଦଉଡ଼ି ବନ୍ଧନେ ମରିବା କି ଗଳାରେ ରେଜୁ ଛନ୍ଦି ॥ ୬ ॥

---

୧୪. ଢଳ—ଜଳଢଳ । ୧୭. ଗର୍ଭଧାଣ୍ଡ—ଗର୍ଭଗର୍ଭଧାର(କ) । ୧. ପାକାପରଣ—ପରସ(କ) । ୨. ଉପଗୃଶକା—ଉପହାସ(କ) ; ଭଉଣୀ—ଭରଣୀ(କ) ।

କି ଅବା ନଦୀରେ ହୋଇବା ମରିବେଣି ।
ନନ୍ଦକେଶୀ କହଇ ଆମ୍ଭମାନଙ୍କୁ ମରିବାର ବଡ଼ ଦୋଷ ॥ ୭ ॥
ଆବର ଥିଲେ ମନୁଷ୍ୟ ଜନ୍ମ ନାହିଁ ।
ପୁଷ୍ପଭୂଷଣା କହଇ ଭଗ୍ନୀର ମୁଖ ଚାହିଁ ॥ ୮ ॥
ନଉଥିବେ ଗୃହ ପିତାଙ୍କୁ କହିବା ।
ସେହି ଜାତ ହୋଇ ଦେଶାନ୍ତର ଜରିଯିବା ॥ ୯ ॥
ପୁଷ୍ପମାଳିଣୀ କହଇ ଏ କଥା ପିତା ଜାଣଇ ଯେବେ
ଏ ମହାଋଷି ପ୍ରାଣ ପାଇବ କି ତେବେ ॥ ୧୦ ॥
ସ୍ୱାମୀ ଦ୍ରୋହୀ କଥା କହଇ ମନ୍ତୁଂ ।
ଶତେ ସହସ୍ର ଜନମ ବିଧବା ହୁଅଇ ତହୁଂ ॥ ୧୧ ॥
ନନ୍ଦକେଶୀ କହଇ ଉପାୟେ କରିବା ।
ନୃତ୍ୟଗୀତ ବିନୋଦେ ସ୍ୱାମୀଙ୍କ ମୋହିବା ॥ ୧୨ ॥
ତାଣ୍ଡବ ଦେଖି ଅବା ଇଚ୍ଛଇ କାମ ସନ୍ଧ ।
ତିନି ଭଗିନୀ ଏହି କଥା କଲେ ସାଧ୍ୟ ॥ ୧୩ ॥
ନାନାବିଦ୍ୟାରେ ପ୍ରସିଦ୍ଧି ଅସୁର କୁମାରୀ ।
ଅନେକ ପରିବନ୍ଧେ ନାଦ ହୁଂକାର କରି ॥ ୧୪ ॥
କର ତାଳ ବଜାଇ ଗାଇଣ ନୃତ୍ୟ କଲେ ।
ତଦାପି ମହାଋଷି ଶୁଣି ନ ଶୁଣିଲେ ॥ ୧୫ ॥
ଦୋହିରି ପୂଜା ନ ତେଜିଲେ ତପୋଧନ ।
ପଞ୍ଚ ପ୍ରକୃତି ତଳ୍ପେ କରି ମନ ॥ ୧୬ ॥
ପୁଣି ବିସ୍ତରନ୍ତି ତିନି ଯୁବତୀ ।
ଶୁକସାରି ହୋଇ ମୁନି ସନ୍ନିଧେ କରି ଯାନ୍ତି ॥ ୧୭ ॥
ଯେବଣ ବୃକ୍ଷର ତଳେ ଧ୍ୟାନେ କରନ୍ତି ମୁନି ।
ତହିଁ ଉପରେ ହୁଅନ୍ତି ଅନ୍ୟୋନ୍ୟ ॥ ୧୮ ॥
ଏକକଇ ଆରେକ ପଦ ଖଣ୍ଡିଏ ପକାଇଲା ।
ସେ ଏହାକଇ ହଂସାସି କହିଲା ॥ ୧୯ ॥
କି ଲୋ ତୁହି ମୋତେ ହୋଉ କି ସରି ।
ତୋହର ମତେ ପାତେକି ବିଶଦା ତପସ୍ୱୀ ॥ ୨୦ ॥
ଏ ଜନ୍ମେ ମିଛି ହେ ଯୋଗ ବଖାଣଇ ।
ପାପପୁନ୍ୟର କଥା ଏ କିଛି ହି ନ ଜାଣଇ ॥ ୨୧ ॥

୯-୧୨. ଖ ପୋଥିରେ ୯ ପଦର ଦ୍ୱିତୀୟ ପାଦ, ୧୦ ଓ ୧୧ ଦୁଇ ପଦ ଓ ୧୨ ପଦର ପ୍ରଥମ ପାଦ ଲେଖା ନାହିଁ । ୧୪. ପରିବନ୍ଧେ—ପରସଧେ(କ) । ୧୯. ଏକକଇ—ଏକଇ(କ) ।

ପ୍ରାତ ଅସ୍ତେ ଏହାର ମୁଖ ନ ଦେଖି ।
ତୋତେ ହେ ଦେଖିଲେ ଭୋଜନ ଛୁଏଁଟି ॥ ୨୨ ॥
ଏହାରହି ମତେ ତୁହି ତପୀ ବୋଲାଉ ।
ତୁହି ଗୁରୁ ମୋତେ ସରିସମ ହୋଉ ॥ ୨୩ ॥
ଏସନେକ କଥା ଯହୁଁ ବିଣଙ୍କ ଶୁଣିଲେ ।
ଉପରକଇ ସୃହେଁ ପକ୍ଷୀକି ପଚାରିଲେ ॥ ୨୪ ॥
ପୂର୍ବର ଦୋଷେ ତୁମ୍ଭେ ଖଗକୁଳେ ଉତପନ ।
କେସନେକେ ମୂହିଁ ତୁମ୍ଭ ଡହୁଁ ହିନ ॥ ୨୫ ॥
ପ୍ରାତସ୍ନାହାନ ଶିବଦର୍ଶନ କରଇ ।
ପଞ୍ଚାଶ ଅକ୍ଷର ଜପଇ ଗାୟତ୍ରୀ ସୁମରଇ ॥ ୨୬ ॥
ଆବର ମହାମନ୍ତ୍ର ଏକାକ୍ଷର କରଇ ତପ ।
ଦୋହରି ପୂଜିଲେ ବ୍ରାହ୍ମଣଙ୍କର ଦେହେ ନ ଥାଇ ପାପ ॥ ୨୭ ॥
ଧର୍ମର କଥା ମୋହର ନ କହିଲ କିଛି ।
ମୁହିଁ ନ ଜାଣଇଁ ତ କେବଣ ପାପ କରିଅଛି ॥ ୨୮ ॥
ତୁମ୍ଭେ ଜାଣ ଯେବେ କହ ମୋହର ପାପ ।
ନ କହିଲେ ଏହିକ୍ଷଣି ଦେବି ଅବଶ ଶାପ ॥ ୨୯ ॥
ପକ୍ଷୀ କହନ୍ତି ଶୁଣସି ତପୋଧନ ।
ପବିତ୍ର ବଚକ୍ଷଣ ତୁହି ସର୍ବ ଶାସ୍ତ୍ରେଣ ଗ୍ୟାଂନ ॥ ୩୦ ॥
ଆମ୍ଭର କହିଲେ ରାଗ ନ ପୁଣ କରୁ ।
ତୁହି ତପସ୍ୱୀ ପ୍ରମାର୍ଥ ନ ବିଚାରୁ ॥ ୩୧ ॥
ତିନି ଭାରିଯାଏ ତୋହର ହୋଇଲେ ଋତୁବନ୍ତି ।
ମଦନ ଆରତେ ଭାଳୁଥାନ୍ତି ନିତି ॥ ୩୨ ॥
ତାହାଙ୍କର ତୁଲେ ତୁ ରମଣ ରଙ୍ଗ ନ କରୁ ।
ସୁମାଳ ଦଇତକୁ କାମ୍ପା ଭୟେ ନ କରୁ ॥ ୩୩ ॥
ପିତାର ଆଗେ ସେ କହିବେ ଯେବେ ।
ପୁତ୍ର ସହିତେ ପ୍ରାଣ ପାଉ କି ତେବେ ॥ ୩୪ ॥
ଋଷିଅଙ୍କର ପୁତ୍ର ଉପୁଜିବା ନିମନ୍ତେ ।
ତେବେସେ ତିନି କନ୍ୟା ବିଭା କରାଇଲେ ତୋତେ ॥ ୩୫ ॥
ତୁହି ସେ ଯୁବତୀଙ୍କର କତିକି ନ ଯାଉ ।
ତାହାଙ୍କର ଗର୍ଭେ ପୁତ୍ର ଜାତ (ନ) କରାଉ ॥ ୩୬ ॥
ନବଯୁବତୀକି ରମଣ ନ କରୁ ଯେବେ ।
ସକଳ ଧର୍ମ ନାଶ ତୋହର ଗଲାକ ଏବେ ॥ ୩୭ ॥

---

୨୭. ଏକାକ୍ଷର—ବେନିଅକ୍ଷର(ଖ) । ୨୮. କହିଲ—କହିଲି(କ) ।

ଏସନେକ ଧୀରର ମୁଖୁ ଶୁଣିଲା ତପଗୃଷ୍ଟ ।
ଦଣ୍ଡକମଣ୍ଡଳ ଘେନି ଆଶ୍ରମକଇ ଗମନ କରି ॥ ୩୮ ॥
ମହାଋଷି ତପ ଗୁରୁଡ଼ଣ ସହୁଂ ଅଇଲେ ।
ଗଗନେ ଉଡ଼ି ତିନି ଭଗିନୀ ନିଜ ମନ୍ଦିରକୁ ଗଲେ ॥ ୩୯ ॥
ସ୍ୱାମୀର ପସ୍ଥରେ ତିନି କନ୍ୟାଏ ପ୍ରଣାମ୍ୟ କରନ୍ତି ।
କଲ୍ୟାଣ କରନ୍ତି ମୁନି ଓହ୍ମସ୍ତ ପୁତ୍ରବନ୍ତୀ ॥ ୪୦ ॥
ତିନି ଭଗିନୀ ପୁଚ୍ଛନ୍ତି ଶୁଣି ତପୋଧନ ।
ତପ ତେଜି କିମ୍ପା ଅଇଲୁ ଆମ୍ଭର ଭୁବନ ॥ ୪୧ ॥
ଋଷି କହନ୍ତି ତୁମ୍ଭେ ଯେ ହୋଇଲ ଋତୁବନ୍ତୀ ।
ଶୃଙ୍ଗାର କରି ଉପୁଜାଇବା ସନ୍ତତି ॥ ୪୨ ॥
କେ କେତେବେଳେ ହୋଇଅଛ ସ୍ନାନପ୍ରସନ ।
ଆମ୍ଭର ଆଗେ କହ ସ୍ୱରୂପ ବଚନ ॥ ୪୩ ॥
ନଉକେଶୀ କହଇ ମୁନିଂ ନବବେଳ ହୋଇଲି ଋତୁବନ୍ତୀ ।
ଦଶବେଳ ସମ୍ପୂର୍ଣ୍ଣ ହୋଇବ ଏ ରାତ୍ରି ॥ ୪୪ ॥
ପୁଷ୍ପଉତକଣ୍ଠା କହଇ ମୁନିଙ୍କ ଆଗର ।
ପାଞ୍ଚବେଳ ହୋଇଲାନି ସ୍ତ୍ରିଷ୍ଟି ଉପଗୃର ॥ ୪୫ ॥
ପୁଷ୍ପମାଳୁଣୀ କହଇ ଶୁଣ ତପୋଧନ ।
ମୁହିଂ ଋତୁବନ୍ତୀ ହୋଇଲି ତିନିବେଳ ସମ୍ପୂର୍ଣ୍ଣ ॥ ୪୬ ॥
ମହର୍ଷି କହନ୍ତି ନଉକେଶୀର ଆଗ ।
ତୋହର ଗର୍ଭେ ଦଶପୁତ୍ର ଜାତ ହୋଉ ବେଗ ॥ ୪୭ ॥
ପୁଷ୍ପଉତକଣ୍ଠାର ଗର୍ଭେ ତିନି ପୁତ୍ର ହୋଉ ।
ପୁଷ୍ପମାଳୁଣୀର ଗର୍ଭେ ପୁତ୍ର ଦୋହିତାଏ ଉପୁଜଉ ॥ ୪୮ ॥
ନଉକେଶୀ କହଇ ଶୁଣସି ମହାମୁନ୍ୟ ।
ଦଶ ପୁତ୍ର ଯେବେ ହୋଇବ ଉତପନ ॥ ୪୯ ॥
ତୁମ୍ଭେ ତ ଜପେ ତପେଣ ଥିବ ।
ଦଶ ତନୟ କେ ମୋହର ପ୍ରତିପାଳିବ ॥ ୫୦ ॥
ଏତେକ ପୁତ୍ରେ ନାହିଂ ମୋହର କାର୍ଯ୍ୟ ।
ବଳବନ୍ତ କରି ଜାତ କର ଏକ ତନୁଜ ॥ ୫୧ ॥
ଆବର ଏକ ଦୋହିତା ସୁନ୍ଦର ହୋଇବ ।
ଏସନେକ ଚିନ୍ତା ମୋତେ କର ଦୟା ଭାବ ॥ ୫୨ ॥

---

୩୮. ତପଗୃଷ୍ଟ—ତପଗୃର୍(କ) ; କରି—କର୍(କ) । ୪୫. ଉପଗୃର—ପ୍ରଖର(କ) । ୪୮. ଉପୁଜଉ—ଉପୁଜୁ(କ) । ୪୯. ଦଶ—ଦସରଥ(କ) ।

ମହର୍ଷି କହନ୍ତି ମୁହିଁ କହିଁଛୁ ଯାହା ।
ଦଶ ବଦନ ହୋଇବ ଆବର ବଂଶ ବାହା ॥ ୫୩ ॥
ତୋହର ବାକ୍ୟ ରହୁ ଭୃଥାର କଥା ରହୁ ।
ଯାବତ କାଳକୁ କଥା ପୁରାଣରେ ଥାଉ ॥ ୫୪ ॥
ଶୁଣି ହରଷ ହୋଇଲେ ଚନ୍ଦ କାମେନୀ ।
ଦିବସ ଅନ୍ତେ ବିକାଶିଲ ରଜନୀ ॥ ୫୫ ॥
ଋତୁବନ୍ତୀ ଥୁଲେ ମୁନି ଶୃଙ୍ଗାର ମନଦେଲେ ।
ଗର୍ଭେଣ ବାର୍ଯ୍ୟ ରହିଲ ଶୁଭ ଅନକୂଳେ ॥ ୫୬ ॥

ଦଶମାସ ସପୂର୍ଣ୍ଣ ଯହୁଁ ହୋଇଲା ।
ନଉକେଶୀର ଗର୍ଭେ ପୁତ୍ରେକ ଉପୁଜିଲା ॥ ୫୭ ॥
ଏକ ଶରୀର ଦୁଇ ପଯ୍ୟର ଦଶବଦନ ।
ବଂଶ ଭୂଜ ଦେଖି ନଉକେଶୀ ବିଷାଦ କଲା ମନ ॥ ୫ ॥
ଯାହା ସେ କହିଲେ ମୋତେ ପ୍ରାଣନାଥ ।
ସ୍ୱରୂପେଣ ପୁତ୍ର ହୋଇଲା ଦଶମାଥ ॥ ୫୯ ॥
କେମନ୍ତ କରି ତନଯ୍ୟକଇ ପୋଷିବି ।
କେବଣ ମୁଖେ ଏହାର କ୍ଷୀର ମୁହିଂ ଦେବି ॥ ୬୦ ॥
ମହର୍ଷି କହଇ ଯେବଣ ମୁଖେ ରୋଦନ କରଇ ।
ସେ ମୁଖେ କୁମାରକୁ ଦେସି ଆହାରଇ ॥ ୬୧ ॥
ସ୍ୱାମୀର ବଚନ ଶୁଣିଲାକ ଯହୁଁ ।
ନାଭି କାଟି ପୁତ୍ରକୁ ସ୍ନାହାନ କରାଇଲାକ ତହୁଁ ॥ ୬୨ ॥

ବାମେ ଗୃଧ ମୁଣ୍ଡ ଡାହାଣେ ପଞ୍ଚଶିର ।
ମଝିର ବଦନେ ନେଇ ଦେଲାକ କ୍ଷୀର ॥ ୬୩ ॥
ଏମନ୍ତେ ଦଶବଦନ ହୋଇଲାକ ତୋଷଇ ।
ଦୋହିତାଏ ଉପୁଜିଲା କନେକ ଦେହ ଦଶଇ ॥ ୬୪ ॥

ପୁଷ୍ପଉତକଟା ଗର୍ଭେ ତିନ ପୁତ୍ର ଅବତରି ।
ପିଙ୍ଗଳନୟନୀ ଉପୁଜିଲ କୁମାରୀ ॥ ୬୫ ॥

ପୁଷ୍ପମାଲୁଣୀର ପୁତ୍ର ଏକ ଉପୁଜିଲା ।
ନିର୍ମଳ ତାରା ଜାଣି କନ୍ୟାଏ ଜନ୍ମ ହୋଇଲା ॥ ୬୬ ॥
ସବୁ ପୁତ୍ର ଦୋହିତା ଏକ ଥାନେ ଶୁଆଇଲେ ।
ତିନ ଭଉଣୀ ମହର୍ଷିଙ୍କି ପଚାରିଲେ ॥ ୬୭ ॥

---

୫୩-୫୪. ଏ ଦୁଇ ପଦ ଖ ପୋଥିରେ ନାହିଁ । ୬୪. ଉପୁଜିଲା—ଉପୁଜିବାକ(କ)
୬୫. ପିଙ୍ଗଳ—ସିଙ୍ଗଳ(କ) ।

ଏ ପୁତ୍ରନ୍ତ କିସ କିସ ନାମ ଦେବା ।
ଚିନ୍ତି ତପୋଧନ ବିଚାରଣ କହିବା ॥ ୬୮ ॥
ମହର୍ଷି କହିଲେ ନଉକେଶୀର ନନ୍ଦନ ।
ନାମ ବିଦିତ ହୋଇବ ଦଶାନନ ॥ ୬୯ ॥
କୁମାରୀ ଦେହ ଧରଇ ସୁବର୍ଣ୍ଣର ଜ୍ୟୋତ ।
ସୁବର୍ଣ୍ଣରେଖା ତାହାଙ୍କର ନାମ ଧଅନ୍ତି ॥ ୭୦ ॥
ପୁଷ୍ପଉତକଟାର ଯେ ତିନି କୁମାର ।
ଜ୍ୟେଷ୍ଠ କୁମାର ନାମ ଦେଲେ କୁମ୍ଭକର୍ଣ୍ଣ ମୁନିବର ॥ ୭୧ ॥
ମଧ୍ୟ ପୁତ୍ରର ନାମ ଖର କନେଷ୍ଠର ନାମ ଧୂଷଣ ।
ଦୋହିତାର ନାମ ଦେଲେ ପିଙ୍ଗଳୀ ମୁନି ପୁଣ ॥ ୭୨ ॥
ପୁଷ୍ପମାଲୁଣୀର ଗର୍ଭେ ଯେବଣ ପୁଅ ଉତପତି ।
ବିଭୀଷଣ ନାମ ଦେଲେ ତାହାଙ୍କୁ ମହାଯତି ॥ ୭୩ ॥
ଦୋହିତାର ରୂପ ଗୁଣ ଲକ୍ଷଣ ବିଚାରଲେ ।
ତାରା ବୋଲି ନାମ ବିଖ୍ୟାତ ପୁଣ ଦେଲେ ॥ ୭୪ ॥
ଏସନେକେ ବଢ଼ନ୍ତି ବିଶ୍ରବାର ଅପତ ।
ଏକକୁ ଅନେକ ତେଜ ବିଖ୍ୟାତ ॥ ୭୫ ॥
ପୁଅ ଦୋହିତାଙ୍କୁ ସନଧେ ବସାବନ୍ତି ।
ଦଶାନନର ମୁଖ ଚୁମ୍ବି ଉପଖା କହନ୍ତି ॥ ୭୬ ॥
ଧର୍ମରେ ପଶମାଣି ଅନୁବ୍ରତେଣ ଥିବୁ ।
ଦେବତା ବ୍ରାହ୍ମଣେ ଭଗତି ହୋଇବୁ ॥ ୭୭ ॥
ବନ୍ଧୁ କୁଟୁମ୍ବରେ ନ କରିବୁ ନରାଶ ।
ଅଜ୍ଞାନ (ନ)ରେ ନୋହିବୁ ତୁ ବିଶ୍ୱାସ ॥ ୭୮ ॥
ଦଶାନନ କହଇ ଏ କଥା ନ ଜାଣଇ ତାତ ।
କେସନେକେ ବଶ ହୋଇବ ଗଉରୀର କାନ୍ତ ॥ ୭୯ ॥
ତୋହର ଦୟା ଅଛଇ ମୋତେ ଯେବେ ।
ଶିବର ଜପମନ୍ତ୍ର କହିବୁ ନା ମୋତେ ଏବେ ॥ ୮୦ ॥
ଋଷି ଗୋରୁ ମନୁଷ୍ୟ ମୋହର ଆଧାରଇ ।
ତାହାନ୍ତ ଉପେଖିଲେ କିସ ଭୋଗ୍ୟ କରଇ ॥ ୮୧ ॥
ଶୁଣି ମନେ ମନେ ବିଚାରନ୍ତି ତପଋଷି ।
ଦେବଙ୍କର ବଇରି ଉପୁଜିଲା ଦଶଶିର ॥ ୮୨ ॥

---

୭୦. ଜ୍ୟୋତ—ଯୋତ । ୭୨. ପୁଣ—ଗଣ । ୭୪. ବିଖ୍ୟାତ—ବିକ୍ଷାତ ।
୭୫. ଅପତ—ଆପତ ; ବିଖ୍ୟାତ—ବିକ୍ଷାତ । ୭୯. ଦଶାନନ—ଦଶାନାନ ।
୮୧. ତାହାନ୍ତ—ତାହାତ (କ) ।

ସନ୍ଥ ପ୍ରାଣୀଙ୍କ ଏ ପ୍ରାଭବ କରାଇବ ।
ଅନାଥ ଆଚରଣ ବେଗେଣ ମଟାଇବ ।
[ପିତୃଜନକଇ ଏ ପ୍ରାଭବ କରିବ] ॥ ୮୩ ॥
ପଞ୍ଚାଅକ୍ଷର ମନ୍ତ୍ରଏ ଦଶାନନଙ୍କୁ କହନ୍ତି ।
ଯେସନେ ତୋହର ହୋଇବ ଗଜଗ୍ରର ପଥ ॥ ୮୪ ॥
ଈଶ୍ୱର ପ୍ରସନ୍ନେ ସକଳ ନିଧି ପାଇବୁ ।
ଗୁରୁ ଦକ୍ଷିଣା ମାଗିବି ପ୍ରସନ୍ନେ ମୋତେ ଦେବୁ ॥ ୮୫ ॥
ଶୁଣିଣ ଦଶାନନ [କହଇ] ହରଷ ଚିତ୍ତେ ।
ଯାହା ମାଗିବୁ ପିତା ଦେବଇ ମୁହିଂ ତୋତେ ॥ ୮୬ ॥

ମହର୍ଷି କହନ୍ତି ଶୁଣ ଦଶଶିର ।
ଏ ଯେ କୁବେର ଜ୍ୟେଷ୍ଠ ଭାଇ ତୋହର ॥ ୮୭ ॥

ଶତେ ଯୋଜନ ଏ ଲଙ୍କାପୁର ସୀମାନ୍ତ ।
ଦୁଇ ଭାଗ କରି ତୁମ୍ଭେ ଥିବ ଦୁଇ ଭ୍ରାତ ॥ ୮୮ ॥

ତୋହର ଭାଇ ବନ୍ଧୁ ଯେନ ଅର୍ଦ୍ଧ ଦେଉଣ ଥିବୁ ।
କୁବେରକୁ ହିଂସା ତୁହି କେବେହେ ନ କରିବୁ ॥ ୮୯ ॥
କୁବେର ତୁଲେ ଯେବେ ହୋଇବୁ ଅବିଶ୍ୱାସ ।
ଅଳପ ଦିନେ ତୁ ହୋଇବୁ ପ୍ରାଣେ ନାଶ ॥ ୯୦ ॥

ଏସନେକ କହି ଲଙ୍କା ଦୁଇ ଭାଗ କଲେ ।
ପଶ୍ଚିମ ଅଧକଇ କୁବେରକୁ ଦେଲେ ॥ ୯୧ ॥

ପୂର୍ବଭାଗ ଦଶାନନ ନେଲଇଂ ।
କୁବେର ହକାରି କହନ୍ତି ତପୋଧନଇ ॥ ୯୨ ॥

ଏହାଙ୍କର ବର୍ଦ୍ଧମାନେ ତୁହି ନ ଥିବୁ ଲଙ୍କାପୁରୀ ।
ଏହୁ ଦୁରାଆତ୍ମା ଅତି କ୍ଷୁଦ୍ରକାରୀ ॥ ୯୩ ॥

ଲଙ୍କାପୁରେ ତୁହିଂ ବିଶ୍ରାମ କରିଥିବୁ ।
ଦେବଙ୍କର ତୁଲେ ତୁ ପ୍ରୀତି ହୋଇଥିବୁ ॥ ୯୪ ॥

ଏ ନଗ୍ର ଆମ୍ଭେ ରହି ନ ପାରିବୁ ।
ନାନା ତୀର୍ଥ କରି ଯାଇ ତପ ଆଚୁର କରିବୁ ॥ ୯୫ ॥
ପୁଅକୁ ଲଙ୍କା ଦେଇ ବଣବାଏ ଗଲେ ।
ନାନା ଘୋର ବନେ ନଗମେ ବିଶ୍ରାମିଲେ ॥ ୯୬ ॥

---

୮୪. ପଞ୍ଚାଅକ୍ଷର—ପଞ୍ଚାସଅକ୍ଷର(ଖ) । ୮୮. ସୀମାନ୍ତ—ସୀମନ୍ତ(କ) ।
୯୩. ବର୍ଦ୍ଧମାନେ—ବଦ୍ଧମାନେ । ୯୪. ଲଙ୍କାପୁରେ—ଅନେକପୁରେ(ଖ) ।

ଏମନେକେ ଦଶଶିର ହୋଇଲାକ ଜାତ ।
କିପାଇଁ କନ୍ଦୁରନ୍ତି ସୀତାର ବେନି ସୁତ ॥ ୯୭ ॥
ଶୁଣିଣ ଶ୍ରୀରାମ ଆନନ୍ଦମୟେ ମତ ।
ଧନ୍ୟ ଧନ୍ୟ କରନ୍ତି ବଶିଷ୍ଠ ମହାସତ ॥ ୯୮ ॥
ପାଞ୍ଚ ଅମାତ୍ୟ ଭରଥ ଲକ୍ଷ୍ମଣ ଦୁଇ ଭାଇ ।
ଏଥିତଳେ ଜନଗହଳେ ବସିବ ଠାବ ନାହିଁ ॥ ୯୯ ॥

## ରାବଣର ବରଲାଭ

ଏଥୁ ଅନନ୍ତରେ ଲବକୁଶର ମୁଖ ଚାହିଁ ।
ଶ୍ରୀରାମ ପୁଚ୍ଛନ୍ତି ମୁଖେ ବ୍ୟଞ୍ଜନ ଦେଇ ॥ ୧ ॥
ଦାଣ୍ଡ ହେ ଦଶଶିରର ଜନ୍ମ ଜାଣି ମୁଁ ନ ଥିଲି ।
ତୁମ୍ଭର ମୁଖୁ ଦଣ୍ଡକଙ୍କର ଜନମ ଶୁଣିଲି ॥ ୨ ॥
କେଶବା ଋଷି ସେ ଦଶାନନ ନାମ ଦେଲା ।
ରାବଣର ନାମ ସେ କେମନେକେ ପାଇଲା ॥ ୩ ॥
ଏଥିର ଚରିତ କହ ପୁଣ୍ୟଗୁଣୀର ପୁତ୍ର ।
ଶୁଣି ଭ୍ରାନ୍ତି ଉପେକ୍ଷିବ ମୋହର ଚିତ୍ତ ॥ ୪ ॥
ଶ୍ରୀରାମର ବଚନ ଶୁଣି ଲବକୁମରଇ ।
ତହୁଁଣ ବସନ୍ତବରାଡ଼ି ରାଗ ହୁଁକାର ଧରଇ ॥ ୫ ॥
ନାଦ ବିଚଳିତ ହୋଇଲାକ ସହୁଁ ।
କୁଶ କୁମର ନାଦ ହୁଁକାର ଧଇଲାକ ତହୁଁ ॥ ୬ ॥
ଶୁଣିଣ ସକଳ ଲୋକେ ହୋଇଲେ ବିକଳ ।
ସବୁର ନୟନେ ଆନନ୍ଦେ ବହଇ ଅଶ୍ରୁଜଳ ॥ ୭ ॥
ସଧୀରେ ଗାବଇ ଲବକୁମାରଇ ।
ଯେମନ୍ତ ମତେ ତପ କଲେ ଦଶଶିରଇ ॥ ୮ ॥
କେବଣହି ଦିନେ ନଉକେଶୀର ସୁତ ।
ଭାଇଙ୍କ ସେନାଣ ଭ୍ରମଣି କରଇ ଦଶମାଥ ॥ ୯ ॥
[ଅମରପୁରକଇ କୋବେର ଥିଲା ଯାଇ ।
ତହୁଁ ବାହୁଡ଼ି ଆସି (ଭ୍ରାତା ସନ୍ନିଧେ) ହୋଇ ॥ ୧୦ ॥
ଶୂନ୍ୟେଣ ଗମଇ ସେ ପୁଷ୍ପକ ରଥବର ।
ଦେଖିଣ ଚକିତ ହୋଇଲା ଦଶଶିର] ॥ ୧୧ ॥

---

୯୭. ଦଶଶିର—ଦଶଶିଶ(ଖ) । ୨. ଦଶଶିରର—ଦଶଶିରର(ଖ) ।
୫. ବସନ୍ତବରାଡ଼ି—କୋମଳମଣି ଖ) । ୭. ଆନନ୍ଦେ—ଆନନ୍ଦ ।

ମନେ ବଚ୍ଛ କର ବାହୁଡ଼ି ଅଇଲା ।
ଗମ୍ଭୀରରେ ପଶି କବାଟ ଫେଳାଣ ପୁଚ୍ଛିଲା ॥ ୧୨ ॥
ମାତା ନଉକେଶୀ ଜାଣିଲାକ ଯେବେ ।
ପୁତ୍ରର ମନଯୋ ଦୁଆରେ ମିଳିଲାକ ତେବେ ॥ ୧୩ ॥
ଉଚେ ତାକ ଦୁଆର ଶୁଣସିରେ ସୁତ ।
କବାଟ ଜଳ କମା ପୁଚ୍ଛିଲୁ ତୁ ଏଥ ॥ ୧୪ ॥
ଭୋଜନ ଉଦର ହୋଇଲା ତୋହର ଆଜ ।
କସ ଅସମ୍ଭବ କହସିରେ ତନୁଜ ॥ ୧୫ ॥
ଦଶଶିର କହଇ ଧୀରେ ଶୁଣସି ଗୋ ଆଇ ।
କୁବେର ଶିକ୍ଷା ଦେଖି ନ ସହଇ ମୋହର ଦେହ ॥ ୧୬ ॥
ଏକ ମହାଦ୍ଭିର ଆମ୍ଭେ ଉପୁଜିଲୁ ପୁତ ।
ଗଗନ ମାର୍ଗେ କେସନେକେ ଗମଇଂ ତାର ରଥ ॥ ୧୭ ॥
ଏହାର କଥା ମୋତେ କହିବୁ ଗୋ ଆଇ ।
ତାହାର ଶିକ୍ଷା ଗୋ ମୁଂ ନୁଆଣିଲି ସହ ॥ ୧୮ ॥
ସେହ ରଥେ ମୁହିଂ ଆରୋହଣ କରିବ ।
ନୋହିଲେ ଉପବାସେ ପ୍ରାଣ ମୁଂ ହାରବ ॥ ୧୯ ॥
ନଉକେଶୀ କହଇ ଶୁଣସିରେ ସୁତ ।
ରକ୍ଷିତ ଦୋହିତା ଯେ କୁବେରର ମାତ ॥ ୨୦ ॥
ତେଣୁ ସେ ଧାର୍ମିକ ମଣେ ତପ କଲା ।
ବନୋପ୍ତ ଭଗତ କର ଈଶ୍ୱରଙ୍କୁ ମନାଇଲା ॥ ୨୧ ॥
ଶିବର ପ୍ରସନେ ହୋଇଲା କଲପଭୋଗୀ ।
ଶୂନ୍ୟ ପୁରେ ରଥ ଅଛଇ ଆରୋପି ॥ ୨୨ ॥
ଦଶଶିର କହଇ ଏବେ ମୁଂ ତପ କରିବ ।
ଈଶ୍ୱରଙ୍କୁ ସେବା କର ମୁଂ ସେ ରଥ ମାଗିବ ॥ ୨୩ ॥
ନଉକେଶୀ କହଇ ଶୁଣସିରେ ନନ୍ଦନ ।
ଜ୍ୟେଷ୍ଠ ଭ୍ରାତର ଶିକ୍ଷା ଦେଖି ନ କର ଅଭିମାନ ॥ ୨୪ ॥
ତୋହର ପିତାର ଜ୍ୟେଷ୍ଠ କୁମର ।
ତାହାକଇ ସେବ ରହି ସୁଖେଣ ଭୋଗ୍ୟ କର ॥ ୨୫ ॥
ଦଶାନନ କହଇ ମୋତେ ନ ରୁଚଇ ଏ ବଚନ ।
ତପ କର ତୋଷିବ ମୁହିଂ ଦେବ ତ୍ରିଲୋଚନ ॥ ୨୬ ॥

---

୧୮. ସହ—ଗୃଦ୍ଧି(କ) । ୨୨. କଲପଭୋଗୀ—କଲପକୋଗି (କ) ।
୨୬. ଏ ବଚନ—ଏମାନ(କ) ।

ଏବେ କହି କରି (କ)ପାଠ ଫେଣ୍ଡ଼ି ବାହାର ହୋଇଲା ।
କମ୍ପା ବସନ ପରିହରଣ ବିଭୂତି ଭୂଷଣ କଲା ॥ ୨୭ ॥
ଗଳାରେ ରୁଦ୍ରାକ୍ଷମାଳ ଆବର କାନ୍ଥମାନଇ ।
କର୍ଣ୍ଣରେ ତମ୍ବାର କୁଣ୍ଡଳ କମଣ୍ଡଳାଇ ॥ ୨୮ ॥
ଯେବଣ ଲିଙ୍ଗ ବ୍ରହ୍ମା ପୂଜୁଥିଲା ।
ସେ ଲିଙ୍ଗ ସନ୍ନଧେଣ ରାବଣ ମିଳିଲା ॥ ୨୯ ॥
କନେକ ମଠେ ଶିବକଇ ନଉଡ଼ଇ ପାଣି ।
ନାନା କୁସୁମ ପୂଜା କରଇ ଆଣି ॥ ୩୦ ॥
ପଞ୍ଚାକ୍ଷର ସୁମରି ଜପ କରଇ ।
ରାଏ ଦିବସେ ଶିବ ଶିବ ସୁମରଇ ।
ନୃତ୍ୟ ଗୀତ କରଣ [କରି] ତାଳ ବାବଇ ॥ ୩୧ ॥
ଆହାର ତେଜଣ ଈଶ୍ୱରଙ୍କୁ ସେବା କରଇ ।
ହେଠମାଥ ହୋଇ ଊପରକୁ କରଇ ଚରଣେ ॥ ୩୨ ॥
[ଆପଣା ହାଥେ ଦଶ ଶଙ୍ଖ ଶବଦ
ଈଶ୍ୱରଙ୍କୁ ଧ୍ୟାୟି ସେ ବଜାଇ ଦଶକନ୍ଧ] ॥ ୩୩ ॥
ଏହେବର୍ଣ୍ଣେକ ତପ ଯହୁଂ ଈଶ୍ୱର ଜାଣିଲେ ।
ଦଶାନନର ମନଧେ ବୃଝଭ ଚଢ଼ିଣ ମିଳିଲେ ॥ ୩୪ ॥
ପ୍ରସନ୍ନ ହୋଇଣ ଯେ କହଇ ଗଙ୍ଗାଧର ।
ବର ମାଗସି ହୋ ବିଶବା କୁମର ॥ ୩୫ ॥
ଦଶାନନ କହଇ ଶୁଣ ହିପୁରାରି ।
ଯାବନ୍ତ କାଳେ ଅସୁରନ୍ତ ମାରଇ ମୁରାରି ॥ ୩୬ ॥
ମୁହିଂ ଯେବେ ସେବା କରଇ ତୋତେ ।
ଶ୍ରୀହରି ରଣେ ଜିଣି ନ ପାରିବ ମୋତେ ॥ ୩୭ ॥
ଶୁଣିଣ କୋପେ କହନ୍ତ ଚନ୍ଦ୍ରମଉଳି ।
ଯାବନ୍ତ ଦୁଷ୍ଟନ୍ତ ମାରଇ ବର୍ଣ୍ଣମାଳି ॥ ୩୮ ॥
ତୁହି ରେ ଋଷିର ବଂଶେ ଜାତ ହୋଇଲୁ ।
ଏସନେକ ଦୁର୍ଣ୍ଣୟେ କଥା କପାଇଂ ମାଗିଲୁ ॥ ୩୯ ॥
ମୋହର ବୋଲେ ଏ ବର ନୁଆରଇ ଦେଇ ।
ଦଶଶିର ବୋଲଇ ମୋହର ଆନ ବରେ କାର୍ଯ୍ୟ ନାହିଁ ॥ ୪୦ ॥

---

୩୧. ଏହାର ପ୍ରଥମ ପଦଟି ଖ ପୋଥିରେ ନାହିଁ । ବାବଇ—ବଜାଇ(ଖ) ।
୩୨. ହେଠମାଥହୋଇ——ଚରଣେପାଗୁଣ୍ଡ଼ି(କ) । ୩୬. ଯାବନ୍ତ କାଳେ ଅସୁରନ୍ତ — ଜୀବନ୍ତକାଳେସୁମରବନ୍ତ(କ) । ୩୮. ବର୍ଣ୍ଣମାଳି—ମୁରାରି(କ) । ୩୯. ଦୁର୍ଣ୍ଣୟେ— ଦୁଷ୍ଟ(କ) ।

ତହୁଂ ଅନ୍ତର୍ଧ୍ୟାନ ହୋଇଣ ଗଲେ ହର ।
ପୁଣ ଏକ ପାଦେ ଉଭା ହୋଇ ନୃତ୍ୟ କରଇ ଦଶଶିର ॥ ୪୧ ॥
ଏକ ପାଦେ ନୃତ୍ୟେ ଛଡ଼ମାସ କଲା ଯହୁଂ ।
ଦଶାନନର ସନ୍ନିଧେ ଶିବ ବିଜୟେ କଲେ ତହୁଂ ॥ ୪୨ ॥
ଦଶଶିର ମୁଖ ଗୃହୁଂ କହନ୍ତି ଶଙ୍କର ।
ହର ବୋଲେ ବିବାଦ ଛାଡ଼ି ମାଗ ଆନ ବର ॥ ୪୩ ॥
ଦଶାନନ କହଇ ମୁହିଂ ନ ମାଗଇ ଆନ ।
ନାହୁଁଡ଼ିଣ ଯାସି ତୋହର ନିଜ ସ୍ଥାନ ॥ ୪୪ ॥
ଦଶାନନର କଥା ଯହୁଂ ଧୂର୍ଜଟି ଶୁଣିଲେ ।
କୋପେ ଧୂର୍ଜଟି ଶୂନ୍ୟମାର୍ଗେଣ ଗଲେ ॥ ୪୫ ॥
ଈଶ୍ୱରଙ୍କଇ ନ ଦେଖି ନଉକେଶାର ସୁତ ।
ବହ୍ନି ଆରୋପଣ କଲାକ ତୁରିତ ॥ ୪୬ ॥
ମୁଣ୍ଡେକ ଛେଦନ କରି ସହାତେଣ ଧରଇ ।
ସେ ଅଗ୍ନି ତିନି ବେଳ ପ୍ରଦକ୍ଷିଣ କରଇ ॥ ୪୭ ॥
ସେ ମୁଣ୍ଡ ଅଗ୍ନିରେ ପକାଇ ତତ୍ପର ।
ଆରେକ ମୁଣ୍ଡ କାଟଇ ସେ ଖାଣ୍ଡ ॥ ୪୮ ॥
ସେହି ବିଧି ଅନେକ ପକାଇଲେ ।
ସେହି ବିଧି ଅନେକ ପକାଇଲେ ।
ଏସନେକ ନବ ମୁଣ୍ଡ ଛିନ୍ନ ଇଂଲେ ॥ ୪୯ ॥
ଏସନେକ କୃତ୍ୟ ଯହୁଂ ଦେବଗଣେ ଦେଖିଲେ ।
ବ୍ରହ୍ମାଇନ୍ଦ୍ର ସହିତେ ଈଶ୍ୱର ସନ୍ନିଧିକୁ ଗଲେ ॥ ୫୦ ॥
ସମସ୍ତ ଦେବେ କହନ୍ତି ଶୁଣ ପ୍ରସନ୍ନକେଦାର ।
ଦୁଃସହ ତପ ଯେ କରଇ ଦଶଶିର ॥ ୫୧ ॥
ନବମୁଣ୍ଡ କାଟିଲା ଆରକ ମୁଣ୍ଡ ଛିନ୍ନାଇ ଯେବେ ।
ତିନି ଭୁବନେ ବିଷ୍ଟ ହୋଇବଟି ଏବେ ॥ ୫୨ ॥
ଯେମନ୍ତେ ପାର ତାହାକୁ ତୋଷ କର ।
ଏ ଦୁଷ୍ଟର ତପ ଦେଖି ଆମ୍ଭର ବଡ଼ ଡର ॥ ୫୩ ॥
ଛଡ଼ ବରଷ ତପ ତାହାର ପୂର୍ଣ୍ଣ ହୋଇଲା ।
ଏବେ ସେ ମହାକଷ୍ଟରେ ଶିର ଛେଦନ କଲା ॥ ୫୪ ॥
ଈଶ୍ୱରେ କହନ୍ତି ଶୁଣ ହୋ ଦେବବୃନ୍ଦମାନ ।
ଶ୍ରୀହର କିଣିତ ମାଗଇ ଦଶାନନ ।

---

୪୬. ବହ୍ନି—ତକ୍ଷଣେ(କ) । ୪୭. ସହାତେଣ—ହସ୍ତରେ(କ) । ୫୨. ଛିନ୍ନାଇ—ଛେଦଇ(କ) । ୫୩. ଦୁଷ୍ଟର—ଦୁର୍ଜୟ(କ) ।

ପତ୍ନୀନ୍ତେ ତୁମ୍ଭେ ମୋତେ ନ କହ ମନ୍ଦ ।
ମନ୍ତ୍ରୀନ୍ତ ଭୃତ୍ୟ ସେ କରିବ ଦଶକନ୍ଧ ॥ ୫୬ ॥
ବ୍ରହ୍ମା କହଇ ସେ ତପ କଲୁ ଯେବେ ।
ଅନେକ ଭୋଗ ସେ ନ ଭୁଞ୍ଜିବ କି ଏବେ ॥ ୫୭ ॥
ଦେବଙ୍କର କଲ୍ୟାଣ ଯହୁଁ ଈଶ୍ୱର ଶୁଣିଲେ ।
ଦଶାନନର ସନଧେ ବ୍ରହ୍ମଙ୍କେ ଯାଇ କଲେ ॥ ୫୮ ॥
କଣ୍ଠରେ ପାଣି ଦେଇ ମାଗିଲେକ ହର ।
ଖଣକେ କଅଳିଲା ଦଶାନନର ଶିର ॥ ୫୯ ॥
ସହଜେ ଦଶମୁଣ୍ଡ ହୋଇଲାକ ଯହୁଁ ।
ପ୍ରସନ୍ନେ ଚନ୍ଦ୍ରମଉଳି ବର ମାଗ ବୋଇଲେ ତହୁଁ ॥ ୬୦ ॥
ବ୍ରହ୍ମା ସରସ୍ୱତୀଙ୍କ ଦେଲେକ ପେଷି ।
ତୁହି ଗୋ ଦଶଶିର କଣ୍ଠେ ଥିବୁ ବସି ॥ ୬୧ ॥
ବର୍ତ୍ତୁକୁ କିଛି ନ ବୋଲିଲେ ଏବେ ।
ଜଗତ ସଂସାର ରକ୍ଷା ହୋଇବାକ ତେବେ ॥ ୬୨ ॥
ବ୍ରହ୍ମାର ଆଦେଶ ପାଇଣ ସରସ୍ୱତୀ ।
ଦଶାନନର କଣ୍ଠେ ବସିଲା ଝଡ଼ିତ ॥ ୬୩ ॥
ଦଶାନନ କହଇ ଶୁଣସି ଦେବ ହର ।
ଛପନ ଗଣ୍ଡା ମୂର ରାଜ୍ୟ କରିବ ଲଙ୍କାପୁର ॥ ୬୪ ॥
ପୁତ୍ରପୁତ୍ରୀ ମୋହର ଯେତେକ ଉପୁଜିବେ ।
ମୁହିଁ ଯାହା କହଇ ସେ କଥାରେ ସନଧେ ହେ ଥିବେ ॥ ୬୫ ॥
କୁବେରର ରଥ ମୁହିଁ ଆରୋହିବ ।
ତାହାକଇ କିଣି ଲଙ୍କପୁରେ ନ ଥୋଇବ ॥ ୬୬ ॥
ଇନ୍ଦ୍ର ଯମ କୁବେର ଦଶ ଦିଗ ପାଳେ ।
ସବନ୍ଦେ ଝଟିବେ ମୋହର ପାଦତଳେ ॥ ୬୭ ॥
ପୃଥ୍ୱୀରେ ସମସ୍ତ ରାଜାଙ୍କଇ ଜିଣିମି ।
ଯାହାକଇ ଦୟା କରିବ ତାହାକଇ ସେ ରଖିବ ॥ ୬୮ ॥
ଅକ୍ଷୟେ ଲିଙ୍ଗ ମୋହର ହୃଦରେଣ ଥିବ ।
ଶିର ଛେଦନ ହୋଇଲେ କନ୍ଧ ମୁଣ୍ଡ ବାହାର ହୋଇବ ॥ ୬୯ ॥
ବ୍ରହ୍ମାର ବାଣେ ସେ ବିନାଶ (ନ) ହୋଇବ ।
ଅମର ହୋଇ ଲଙ୍କାରେ ରାଜ୍ୟ କରୁଥିବ ॥ ୭୦ ॥

---

୫୭. ଅନେକ—ଅର୍ଣ୍ଣିହ(କ) । ୬୦. ତହୁଁ—କହୁଁ(କ) । ୬୨. ରକ୍ଷା ହୋଇବାକ ତେବେ—ରକ୍ଷ୍ୟାହୋଇବଙ୍କ ଯେବେ(କ) । ୬୯. କନ୍ଧ ମୁଣ୍ଡବାହାର—କନ୍ଧମୁଣ୍ଡକାହାର(କ) ।

ଅସ୍ତୁ ହୋଉ ବୋଲ ଆଗ୍ୟାଂ ଦେଲେ ତ୍ରିପୁରାରି ।
ତହୁଂ ବାହୁଡ଼ି ଅଇଲା ଦଶଶିର ॥ ୭୧ ॥
ଯେସନେକ ବର ଭୋଳାନାଥ ଦେଲା ।
ମାତା ଆଗେ ତାହା ଦଶାନନ କହିଲା ॥ ୭୨ ॥
ନଇକେଶା କହଇ ଏ ବର ନୋହଇ ସତ ।
ଅମର କେହି ନୁହନ୍ତି ପୃଥ୍ୱୀରେ ହୋଇ ଜାତ ॥ ୭୩ ॥
ବଳି ବେଣୁ ଜାନୁସଣ୍ଡ ମାନଧାତା ଚକ୍ରବର୍ତ୍ତୀ ଥିଲେ ।
ସବୁହି ମୃତ୍ୟୁମଣ୍ଡଳେ କେହି ନ ରହିଲେ ॥ ୭୪ ॥
ବାହୁଡ଼ି ଶିବକଇ ପୁଚ୍ଛନର ଯାଇ ।
କେମନ୍ତେ ମରିବୁ ଜାଣିଥିବୁ ନା ପରମାଣଇ ॥ ୭୫ ॥
ତକ୍ଷଣେ ଦଶାନନ ଶିବଭୁବନକୁ ଗଲା ।
ଯହିଂ ବଳସ୍ଥେ ନଶଥିଲା ତହିଂ ନ ଦେଖିଲା ॥ ୭୬ ॥
ତହୁଂ ଦଶାନନ କୋପିତ ଶରୀରଇ ।
ତତକ୍ଷଣେ ଶିର ଛେଦନ କରଇ ॥ ୭୭ ॥
ଆପଣାର ହସ୍ତରେ ବାନ୍ଧଇ ଅଣି ।
ଶିର କାଟିଣ ଧଇଲାକ ଟାଣି ॥ ୭୮ ॥
ହାତେକ କାଟି ଡାହାଣ କରରେ ବାଇଲା ।
ତେବେ ସେ ନାମ ରାବଣହସ୍ତା ହୋଇଲା ॥ ୭୯ ॥
ଚକ୍ଷୁ ଉପାଡ଼ି ଲିଙ୍ଗ ଉପରେ ଢାଳଇ ରକତ ।
ପ୍ରାଣ ତେଜିବାକୁ (ନ) ମଣଇଂ ଧ୍ୱନିତ ॥ ୮୦ ॥
ଏସନେକ ତାମସ ତପ ଯହୁଂ ଦେଖିଲେ ।
ଚନ୍ଦ୍ରଶେଖର ଆସି ପ୍ରବେଶ ହୋଇଲେ ॥ ୮୧ ॥
ତହିଂ କହନ୍ତି ଦଶାନନର ମୁଖ ଗୃହିଂ ।
କି ହୋ ବଣବାତନସ୍ଥେ ହୋଇଲୁ କି ବାଇ ॥ ୮୨ ॥
କିସ ନାମ ତୋହର ଏତେ କକ୍ଷା ।
ସଙ୍କଳ୍ପ କରି ଦେଲି ଯେତେକ କଲୁ ଇଚ୍ଛା ॥ ୮୩ ॥
ଦଶାନନ କହଇ ଶୁଣ ତ୍ରିପୁରାରି ।
କହସି କେବଣ ମତେ ପ୍ରାଣ ଯିବ ଦେହରୁ ମୋହର ॥ ୮୪ ॥
ଦଶମୁଣ୍ଡର କଥା ଯହୁଂ ଈଶ୍ୱର ଶୁଣିଲେ ।
ହସ୍ତ ଧରି କପିଳାସ ଭୁବନକୁ ନେଲେ ॥ ୮୫ ॥
କାନ୍ଥରେ ରାବାସ୍ତ୍ରେଣ ଲେଖିଲା ଅଛି ଛନ୍ଦ ।
ସୀତା ହରିଲେ ରାମ ଛେଦିବେ ଦଶମାଥ ॥ ୮୬ ॥

୭୫. ପରମାଣଇ—ପରଖଇ(ଖ) । ୮୩. କକ୍ଷା—କଳକ୍ଷା(ଖ) ।

ଦେଖିଣ ଦନୁଜକଇ ଆନନ୍ଦ ନ ପୂରଇ ।
ମହାଭୟେ କଲ୍ପ କମ୍ପଇ ଶରୀରଇ ॥ ୮୭ ॥
କର ଯୋଡ଼ି କହଇ ପୌ ତ୍ରି ଭ ନାଥ ।
ମୋହର ବଚନ ଶୁଣିସି ପଶୁପତି ॥ ୮୮ ॥
କେବେହେ ସୀତାର କଣ୍ଠକ ନ ଛିବି ।
ସୀତା ନ ହରି ସୁମରି ମୁହିଂ ଥିବ ॥ ୮୯ ॥
ଯଦ୍ୟପି ସୀତା ଅବା ହରିବଇ ଖେଳେ ।
ମୋହର ପ୍ରାଣ ନାଶ ହୋଇବ ସେ ବେଳେ ॥ ୯୦ ॥
ସ୍ନାହାନ ଭୋଜନେ ଅସ୍ଥାନେ ମୁହିଂ ବସିଥିବ ।
ସୀତା ନାମ ତହିଂ କୀର୍ତ୍ତନ କରିବ ॥ ୯୧ ॥
ଏସନେକ କଥା ଯହୁଁ ଈଶ୍ୱର ଶୁଣିଲେ ।
ପରମାନନ୍ଦ ଚିତ୍ତେ ଦଶାନନକୁ କହିଲେ ॥ ୯୨ ॥
ଏ କଥା ଯେବେ ତୋହର ସତ୍ୟଟି ଦଶଶିର ।
ଧୂର୍ଣ୍ଣ କରି ଭୋଗ ଭୁଞ୍ଜିବୁ ଦେଲି ତୋତେ ବର ॥ ୯୩ ॥
ରୁଦ୍ରାକ୍ଷମାଳା ଆଣି ଗଳାରେ ଭରିଲେ ।
ଚନ୍ଦ୍ରହାସ ଖଡ଼ଗ ହସ୍ତେ ତୋଷେ ଦେଲେ ॥ ୯୪ ॥
ସୁଖେ ଲଙ୍କାଗଡ଼େ ରାଜ୍ୟ କରୁ ଥାସି ।
ତହୁଂ ଦଶାନନ ବାହୁଡ଼ିଣ ଆସି ॥ ୯୫ ॥
ନନ୍ଦୀ ଭୃକୁଣ୍ଠୀ ଦ୍ୱାରେ ବସିଣ ଅଛନ୍ତି ।
ଦଶଶିରକଇ ଦେଖିଣ ପୁରସରି ପୁଚ୍ଛନ୍ତି ॥ ୯୬ ॥
କି ହୋ ଦଶାନନ କେବଣ ମତେ ତପ କଲୁ ।
କେସନେକେ ଶଙ୍କର ମନ ହରିଲୁ ॥ ୯୭ ॥
ଚନ୍ଦ୍ରହାସ ଖଡ଼ଗ ରୁଦ୍ରାକ୍ଷମାଳା ।
ପୁରିକଇ ଏହା ନ ଦଅନ୍ତି ରୁଦ୍ରଭୋଳା ॥ ୯୮ ॥
ସେ ମନ୍ତ୍ର ଆମ୍ଭକଇ କହିକନା ଭାଇ ।
ପରମ ଯୋଗୀ ନିରଞ୍ଜନ ଯେମନ୍ତେ ତୋଷ ହୋଇ ॥ ୯୯ ॥
ଏସନେକ ବଚନ ଶୁଣିଲକ ଯହୁଁ ।
କୋପେ ଦଶାନନ ସମାସ୍ୟା ନ ଦେଲକ ତହୁଁ ॥ ୧୦୦ ॥

---

୮୭. ଦନୁଜକଇ—ଦନୁଜଇ(କ) । ୯୩. ଭୁଞ୍ଜିବୁ—ଭୁଯଂବ । ୯୫. ଏହାର ଦ୍ୱିତୀୟ ପାଦଟି କ ପୋଥିରେ ନାହିଁ । ୯୬. ଦେଖିଣ ପୁରସରି—ଦେଖିକି ପୁରସରି । ୯୯. ମନ୍ତ୍ର—ମତ(କ) ; ଯେମନ୍ତେ ତୋଷ ହୋଇ—ପରମ ହୋଉ ସାହି(କ) ।

ମହାମନ ପାପୀ କି ମୋତେ ବୁଝିଲୁ ।
ଏ କଥା ଧନ୍ଦରେ ତୁମ୍ଭେ ଖଣ୍ଡ ନ କଲୁ ॥ ୧୦୧ ॥
ଗତକଳମର୍ଦନ ମୁଁ କଳ୍ପରେ ଅଟ ପଥ ।
ବ୍ରହ୍ମାଙ୍କ ଲୋକ ଉତ୍ପଥ ମୁଁ ଯୌବନ୍ଦ୍ରିର ନାଥ ॥ ୧୦୨ ॥
ସେଠାକ ହୋଇଣ ହର ଭୃତ୍ୟପଣ କର ।
ମର୍କଟ ମୁଖ ହୋଇ ରହିଥାଅ ଦ୍ୱାର ॥ ୧୦୩ ॥
ଈଶ୍ୱରଙ୍କୁ କହ ତୁମ୍ଭଙ୍କୁ ଦେଲା ହିବ ।
ଲଙ୍କାର ଦ୍ୱାରେ ରକ୍ଷା କରଣ ଥିବ ॥ ୧୦୪ ॥
ଶୁଣି ନନ୍ଦୀ ମହାକାଳ କୋପେଣ ବୋଲନ୍ତି ।
ଆମ୍ଭରେ ତ ମର୍କଟ ବୋଲି କହିଲୁ ଦୁଷ୍ଟମତି ॥ ୧୦୫ ॥
ମର୍କଟ ତୋହର ପୁରେ ପଶିବଇ ଯେବେ ।
ସର୍ବ ଭୁବନ ଦହନ କରିବଇ ତେବେ ॥ ୧୦୬ ॥
କଇଲାସ ଯଣେ ଶିବଙ୍କୁ ସେବା କରୁ ।
ତେଣୁ ହେ ଦୁରାଶା ଅମ୍ଭଙ୍କୁ ନେଇ ଲେଉଡ଼ୁ ॥ ୧୦୭ ॥
ନିର୍ବିଘ୍ନ ହେବେ ତୋହର ପୁରେ ପବେଶଇ ।
ଶିକ୍ଷମାଗି ତୋହର ଗଣଦ ହୋଇବ ବିନାଶଇ ॥ ୧୦୮ ॥
ଏତେକ ଶ୍ୟାପ ସହୁଂ ପାଇଲା ଦଶଗିର ।
ବାହୁଡ଼ି ଈଶ୍ୱର ଆଗେ କହଇ କର ଯୋଡ଼ି ॥ ୧୦୯ ॥
ସେ ଦେବ ନନ୍ଦୀଭୃଙ୍ଗୀ ଦ୍ୱାରେ ଥିଲେ ।
ତୋତେ ସେବା କଲି ବୋଲି ସେ ମୋତେ ଶ୍ୟାପ ଦେଲେ ॥୧୧୦॥
ବୋଇଲେ ତୋହର ବପ ଅଳପ ଦିନେ ଛୟେ ଯିବ ।
ବୈଷ୍ଣବ ସ୍ୱରୂପ ତୋତେ ଅଳପ ଦିନେ ନାଶ କରିବ ॥ ୧୧୧ ॥
ଈଶ୍ୱର ବୋଇଲେ କିମ୍ପା ମନ୍ଦ କୃତ୍ୟ କଲୁ ।
ସେ ମହାବଇଷ୍ଣବନ୍ତ କେମନ୍ତେ ଗଞ୍ଜିଲୁ ॥ ୧୧୨ ॥
ଅନନ୍ତ କୋଟି ଯୁଗେ ତାହାନ୍ତ ମରଣ ନାହିଁ ।
ପରମ ଯୋଗ ସାଧନ୍ତି ସେ ଦ୍ୱାରେ ରହିଥାଇ ॥ ୧୧୩ ॥
ଯେ ତୋହର କର୍ମେ ଅଛଇ ଲେଖନ ।
କାହାର ବୋଲେ ସେ କି ହୋଏ ଆନ ॥ ୧୧୪ ॥
ଏବେ ତୋହର ଲଙ୍କା ପୁରକୁ ଯାସି ।
ସୀତା ନ ହରିବୁ ବୋଲି ଯେ ବୋଇଲୁ ଏ କଥା ମାନ ସୁମରଣ ଥାସି ॥୧୧୫
ସୀତା ନ ହରିଲେ ତୋତେ ମରଣ ନାହିଁ ।
ତଲ୍ଲୟେ କରି ଅହୋନିଶି ଥାସି ପରଖିଇ ॥ ୧୧୬ ॥

---

୧୦୩. ହୋଇଣ ହର—ହୋଇମୋହର । ୧୦୬. ଭୁବନ ଦହନ—ଦହନ ଭୁବନ ।

ଈଶ୍ୱର ବଚନ ଶୁଣି ଆସଇ ନନ୍ଦିକେଶ୍ୱର ବହଇ ।
ଭବାଙ୍କ ବନେ ପାର୍ବତୀ ବସିଣ ଅଛଇ ॥ ୧୧୭ ॥
ସ୍ୱରୂପେଣ କାମେଶ୍ୱରୀ ତିନି ଭୁବନ ମୋହଇ ।
ଦେଖି ମଦନଭେବଳ ଦଶାନନ ହୋଇ ॥ ୧୧୮ ॥
ସନଧ୍ୟେ ହୋଇଣ କହଇ ଦଶାନନ ।
ଆସ ରେ କାମିନୀ ଯିବା ମୋହର ଭୁବନ ॥ ୧୧୯ ॥
ଶିବଙ୍କୁ ସେବା କରି ଅମର ହୋଇଲି ।
କନକମୟ ପୁରେ ରାଜା ପଦ ପାଇଲି ॥ ୧୨୦ ॥
ଲଙ୍କାସା ମୋହର ହୋଇବୁ ଐଶ୍ୱର୍ଯ୍ୟ ପଣେ ଥିବୁ ।
ଯେ ତୋହର ଇଚ୍ଛା ଭୋଗ ଭୁଞ୍ଜିବୁ ॥ ୧୨୧ ॥
ଶୁଣି ହସି କହନ୍ତି ହେମବନ୍ତର ଝିଲଲୀ ।
ମୋହର ପ୍ରାଣବଲ୍ଲଭ ଚନ୍ଦ୍ରମଉଳି ॥ ୧୨୨ ॥
କାମାକ୍ଷୀ ଦେବୀ ଅଟଇ ମୋହର ନାମ ।
ଅନ୍ୟ ପୁରୁଷେ ଇଚ୍ଛା ନ କଲେ କାମ ॥ ୧୨୩ ॥
ଏ ମୋହର ଦେହେ ଶିବ ଯେ ଅଧିକାରୀ ।
ତାହାର ଦେଲେ ସେ ଯିବ ତୋହର ପୁରୀ ॥ ୧୨୪ ॥
ଦଶାନନ କହଇ ତୁ ଏହିଠାରେ ଥିବୁ ।
ମୋହର ଆସିବା ଯାଏ କାହାଙ୍କି ନ ଯିବୁ ॥ ୧୨୫ ॥
ତୋହର ଭୁଆକୁହି ତତେ ମାଗିବି ।
ନଡ଼ଚେଟ ଶବର ଆଗେ ପ୍ରାଣ ହାରିବ ॥ ୧୨୬ ॥
ଏମନେକ କହି ତହୁଂ ଦନୁଜ ଗଲା ।
ମନେ ମନେ ତହୁଂ ପାର୍ବତୀ ବିଚାରିଲା ॥ ୧୨୭ ॥
ଏ ଦୁଷ୍ଟ ଚେଷ୍ଟା କରି ମାଗିବଇ ଯେବେ ।
ସେ ଭୋଳାଲିଙ୍ଗ ନାସ୍ତି ନ କରିବ ତେବେ ॥ ୧୨୮ ॥
ଏଥି ନ ଥିବ ଗୁପତ ହୋଇଥିବ ।
ଅସୁର ଗୁରୁ ଗୁଲେ କପାଂ ଧଂସ ହୋଇବ ॥ ୧୨୯ ॥
ଏସନେକ ବିଚାରି ଦେବୀ ନିଜ ପୁରକୁ ଗଲା ।
ଈଶ୍ୱର ଆଗେ ଯାଇ ଦଶଶିର କହିଲା ॥ ୧୩୦ ॥
ହେ ଦେବ କାମାକ୍ଷୀ ଦେବୀ ନନ୍ଦନବନେ ଅଛି ।
ତାହାକଇ ଦେଖି ମୁହିଂ ନୁଆରିଲି ମୁଛି ॥ ୧୩୧ ॥

---

୧୧୮. କାମେଶ୍ୱରୀ—କାନ୍ତ(କ) । ୧୨୧-୧୨୫. କ ପୋଥିରେ ୧୨୧ ପଦର ପ୍ରଥମ ପାଦ ପରେ ୧୨୫ ପଦର ଶେଷ ପାଦ ରହିଛି । ୧୩୧. ନୁଆରିଲି—ବିଗୁରି(କ) ।

ରାଜପଦ ଅଭିଶୃଙ୍ଗ ତୁମ୍ଭେ ମୋତେ ଦେଲୁ ।
ପାଟରାଣୀ କେ ହୋଇବ ନାମ ନ ଧଇଲୁ ॥ ୧୩୨ ॥
ସେ କାମାକ୍ଷୀ ହୋଉ ମୋହର ଘରଣୀ
ଶୁଣି କରି କୋପ କରନ୍ତି ଶୂଳପାଣି ॥ ୧୩୩ ॥
ଜଗତମାତା ସେ ମୋହର ଘରେଣୀ ।
ତାହାକଇ କାମଇଚ୍ଛା କଲୁ ତୋହର ହୋଇଲା ଶିରହାନି ॥ ୧୩୪ ॥
ବନିତା ଆନେ ଦେଖି ପାଉ ଯେବେ ।
ତୋହର ଭୁବନକଇ ନେଇ ଯାଅି ଏବେ ॥ ୧୩୫ ॥
ଶୁଣିଣ ଦଶାନନ ଶୀଘ୍ର ହୋଇଣ ଚଳି ।
ଯହିଁ ଥିଲା ପାର୍ବତୀ ଦେଖି ନ ପାରିଲା ॥ ୧୩୬ ॥
ବନନ୍ତେ ଭମି ଲୋଡ଼ଇ ଚଉକତ ।
ନ ଦେଖି କୋପ କରଇ ଲଙ୍କପତି ॥ ୧୩୭ ॥
ଖଳଇ ଦେଖ ହୋ ଈଶ୍ୱର ମୋତେ କେବଣ କୃତ୍ୟ କଲା ।
ଦେବଇ ଭାରିଯା ବୋଲି କେଉଁଣେ ଲୁଗ୍ଇଲା ॥ ୧୩୮ ॥
କଇଲାସ ପର୍ବତ ସହିତେ ମୋହର ଲଙ୍କାକଇ ନେମି
ଯାବତ କାଳକଇ କଥା ରୁହାଇବ ॥ ୧୩୯ ॥
ଆକଷି କଲେଣ ପର୍ବତ ଉପାଡ଼ିଲା ।
ଆପଣା ମାଥେ ଆଣି ବସାଇଲା ॥ ୧୪୦ ॥
ଦେଖି ଶିବଗଣେ ବସିଲେ ଆକଷି ।
ଗଡ଼ଗଡ଼ି ପରି ରଡ଼ି ଛାଡ଼ିଲା ନଉକେଶୀର ବଛୁ ॥ ୧୪୧ ॥
ଦଶମୁଣ୍ଡେ ରୋଧିର ହୋଇଲା କାହାରଇ ।
ଜୀବ ଛାଡ଼ିଲା ପ୍ରାୟେ ମୂର୍ଚ୍ଛା ଗଲା ଦଶଶିରଇ ॥ ୧୪୨ ॥
ଶୁଣିଣ ସଭାଲୋକେ ହସିଲେ କୃତାନ୍ତଲେ ।
ବିଶେଷି କହିଲେ ସୀତାସ୍ୱାମୀର ଦୂତଲେ ॥ ୧୩୩ ॥
ଶିବଗଣଙ୍କୁ ପଚାରନ୍ତି ଦେବ ହର ।
କିସ ଶବଦେକ ଶୁଭିଲା ମହାଘୋର ॥ ୧୪୪ ॥
ଶିବଗଣେ କହନ୍ତି ଦଶଶିର ଏଥି ଥିଲା ।
ଏ ପର୍ବତ ନେମି ବୋଲି ଉପାଡ଼ି ଶିରେ ବସାଇଲା ॥ ୧୪୫ ॥
ତେଣେସେ ପର୍ବତ ମାଡ଼ି ବସିଲୁ ଆମ୍ଭେ ଯହୁଁ ।
ରଡ଼ି ଦେଇ ପ୍ରାଣ ଛାଡ଼ି ପଡ଼ିଲାକ ତହୁଁ ॥ ୧୪୬ ॥
ଶୁଣି ଦୟାକର କହନ୍ତି ତ୍ରିଲୋଚନ ।
ମୋହର ବର ଦେଇତ ହୋଇଲାକ ଆନ ॥ ୧୪୭ ॥

---

୧୩୩. ଦ୍ୱିତୀୟ ପାଦ ଖ ପୋଥିରେ ନାହିଁ । ୧୪୧. ଶିବଗଣେ—ସିବଗଲେ ।

ତାହାର କଥା କେହୁ ନ ଜାଣିମେ ।
ଜଗତ ସଂସାରେ ଅପଖ୍ୟାତ କହିବେ ॥ ୧୪୮ ॥
ଅବର ଜେ ମୋତେ କରିବେ ଭଗତ ।
କମଣ୍ଡଳୁ ପାଣି କାଢ଼ି ମୁଖେ ସିଞ୍ଚିଲେ ପଶୁପତ ॥ ୧୪୯ ॥
ଉଠ ବୋଲି ଟ୍ରପଡ଼େ ମାଇଲେ ଦେବ ହର ।
ଚେତନା ପାଇ ବସିଲା ଦଶଶିର ॥ ୧୫୦ ॥
ଦେହରେ ତାହାର ପ୍ରାଣ ପଶିଲାକ ଯେବେ ।
ଦଶାନନ ମୁଖ ଚୁମ୍ବ କହନ୍ତି ବାମଦେବେ ॥ ୧୫୧ ॥
ତୁହି ମୋହର ପର୍ବତ ନେଇ ଲୋଡ଼ୁ ଦୃଷ୍ଟ ।
ମନ୍ଦ ଅଗ୍ରେରେ ହୋଇଲୁ ତୁ ଭ୍ରଷ୍ଟ ॥ ୧୫୨ ॥
ମହାଭୟେ ଯେବେ ଟ୍ରବେଜ ରୁଡ଼ିଲୁ ।
ଅଜୁ ତୋହର ନାମ ରାବଣ ବୋଲ ଦେଲୁ ॥ ୧୫୩ ॥
ତେବେ ସେ ରାବଣ ନାମ ହୋଇଲା ବଖ୍ୟାତ ।
ଶ୍ରୀରାମ ଆଗରେ ଲବକୁଶେ ଗୀତରେ ଗାବନ୍ତି ॥ ୧୫୪ ॥
ଶୁଣିଣ ଶ୍ରୀରାମଚନ୍ଦ୍ର ହରଷ ହୋଇଲେ ।
ଲବକୁମରଙ୍କ ଦେହେ ଆଶ୍ୱାସି ପଚ୍ଚରିଲେ ॥ ୧୫୫ ॥
ବଚିତ୍ର ଆଛାନ କହିଲ ତୁମ୍ଭେ ମହାବକତା ।
ଧନ୍ୟ ତୁମ୍ଭର ପିଅର ଧନ୍ୟ ତୁମ୍ଭର ମାତା ॥ ୧୫୬ ॥
ରାବଣର ନାମ କଥା ନ ଜାଣିଣ ଥିଲି ।
ତୁମ୍ଭର ମୁଖେ ମୁହିଂ ସକଳ ଶୁଣିଲି ॥ ୧୫୭ ॥
ଏବେ କହି(ବା) ବାବୁ ହେ ପୁରାଣର କଥା ।
ତଦଅନ୍ତରେ କେବଣ କୃତ୍ୟ କଲାକ ଦଶମଥା ॥ ୧୫୮ ॥
ଲବକୁଶେ କହନ୍ତି ରାବଣ ନାମ ପାଇ ।
ଲଙ୍କାପୁରେ ପ୍ରବେଶ ହୋଇଲାକ ଯାଇ ॥ ୧୫୯ ॥
ମାତାର ଆଗେ କହଇ ଦଶଶିର ।
ସୀତା ନ ହରିଲେ ମରଣ ନାହିଂ ମୋର ॥ ୧୬୦ ॥
କଉକେଶୀ କହଇ ଏହୁ କଥା ପାଳ ।
ଏବେ ଐଶ୍ୱର୍ଯ୍ୟ କଥା ଭୋଗ୍ୟ କର ଦୁଲାଳ ॥ ୧୬୧ ॥

## ରାବଣର ଐଶ୍ୱର୍ଯ୍ୟ

ଏଥୁ ଅନନ୍ତରେ ଶ୍ରୀରାମର ଆଗେ ।
ଲବକୁଶେ କହନ୍ତି ବାକ୍ୟ ସୁବାଗେ ॥ ୧ ॥

୧୪୮. ଅପଖ୍ୟାତ—ଅପକ୍ଷାତ । ୧୫୪. ବଖ୍ୟାତ—ବକ୍ଷାତ । ୧୫୬. ପିଅର—ପିତୃର ।

କୁମ୍ଭକର୍ଣ୍ଣ ତପ କରି ନିଦ୍ରା ବର ମାଗିଲା ।
ବିଖ୍ୟାତେଣ ବୈଷ୍ଣବ ଧର୍ମ ଇଚ୍ଛା କଲା ॥ ୨ ॥

ସମସ୍ତ ଦେଶଙ୍କୁ ବଶେଣ ନିହିଲେ ।
ଶୁଣିଣ ସକଳ ଲୋକେ ହରଷ ହୋଇଲେ ॥ ୩ ॥
ରାବଣ ଲଙ୍କାରେ ବିନ୍ୟାସ ହୋଇଲାକ ଯହୁଁ ।
ସମସ୍ତେ ହେ ଅସୁରେ ଲଙ୍କାକୁ ଅଇଲେ ତହୁଁ ॥ ୪ ॥
ସୁମାଳି ଦଇତ୍ୟର ପୁତ୍ର ଗୋଟି ସହିତେ ।
ରାବଣ ରାଜ୍ୟକୁ ଅଇଲେ ସମସ୍ତେ ॥ ୫ ॥
ଏହୁ ଅସୁରମାନଙ୍କର ନାମ ଧରନ୍ତେ ।
ଚନ୍ଦ୍ରିତ ଗହନ ହୋଇବ ନା ବିଶେଷି କହନ୍ତେ ॥ ୬ ॥
ମୂଳ୍ହଂ ମୂର୍ଖ ମନୁଷ୍ୟ ବୁଝି ମୋହର କଥ ।
ଲବକୁଶେ କହନ୍ତି ଶ୍ରୀରାମର ପାଶ ॥ ୭ ॥
କୁବେର ଭୂଲେ ରାବଣ ଯୁଦ୍ଧ କଲା ।
ପୁଷ୍ପକ ରଥ ସହିତେ ସମସ୍ତ ନେଇ ଗଲା ॥ ୮ ॥

ପଳାଇ କୁବେର ଅଳକାପୁରେ ରହଇ ।
ସଭାରେ ବସି ତାହା ଲବକୁମର କହଇ ॥ ୯ ॥
ଯେବଣ ପଦ ଅଳପ ଅନ୍ତର ହୋଇ ।
କୁଶକୁମର ତାହା ଅର୍ଥ କରି କହଇ ॥ ୧୦ ॥

ପୁଷ୍ପକରଥ ଚଢି ରାବଣ ଦିଗବିଜୟେ କଲା ।
ମନ୍ଦୋଦରୀଙ୍କି ମନ୍ଦର ପର୍ବତୁ ଆଣିଲା ॥ ୧୧ ॥

ମନ୍ଦୋଦରୀଙ୍କି ସେ କଲା ପାଟରାଣୀ ।
ସ୍ୱର୍ଗପୁରକୁ ଗଲାକ ଦିନେ ଅସୁର ନୃପମଣି ॥ ୧୨ ॥
ଦେଖି ଦେବଗଣେ ସମସ୍ତେ ହେ ପଳାଇଲେ ।
ବାଂଝଗିରି ପର୍ବତେ ମରୁତରାଜା ଯାଗରେ ରହିଲେ ॥ ୧୩ ॥
ଦଶ ବିଶ୍ୱଦେବାଙ୍କୁ ସଙ୍ଗତେ ନ ଥୋଇଲେ ଯହୁଁ ।
ରାବଣର ଆଗେ ଠାବ କହିଲେକ ତହୁଁ ॥ ୧୪ ॥
ବାଂଝଗିରି ପର୍ବତେ ରାବଣ ପଶିଲା ।
ସକଳ ଦେବତାଙ୍କୁ ଧରି ଭୃତ୍ୟ କଲା ॥ ୧୫ ॥
ଛତ୍ରିଶୋଇଂ କୋଟି ଅପଛରାନ୍ତ ଆଣିଲା ।

---

୪. ବିଖ୍ୟାତ—ବିକ୍ଷାତ । ୬. ଗହନ—ଗମ୍ଭୀର(କ) । ୭. ମନୁଷ୍ୟ—ମନୁଶ ।
୯. ଲବକୁମର—ଲବକୁସ୍ (କ)(ଖ) । ୧୩. ମରୁତ ରାଜା ଯାଗରେ ରହିଲେ—ସମସ୍ତସମ୍ଭାଇଲେ(ଖ) । ୧୪. ଦଶ—ଦ୍ୱାଦଶ(ଖ) । ୧୬. ଅପଛରାନ୍ତ—ଅକ୍ଷରନ୍ତ ।

ସେବଣେ ଚରଣେ କଲା ଦଶାନନ ।
ଶ୍ରୀରାମ ଆସ୍ଥାନେ କହନ୍ତି ସୀତସ୍ୱାର ବେଣ୍ଣ ନନ୍ଦନ ॥ ୩୦ ॥
ରାବଣର ଦୃଷ୍ଟେ ସେସନେକେ ତପ କଲେ ।
ସଭାର ଲୋକେ ଶୁଣି ହରଷ ହୋଇଲେ ॥ ୩୧ ॥
ଲବକୁଶଙ୍କର ବାକ୍ୟ ବଖାଣ କରନ୍ତେ ।
ଆଦିତ୍ୟ ରହିଅଛି ଶୂନ୍ୟ ମାର୍ଗେ ପଥେ ॥ ୩୨ ॥
ସପତ ଦ୍ୱୀପ ଯେ ସପତ ସାଗର ।
ସବୁ ହୋଇ ଅଛି ବେଳ ଦୁଇ ପ୍ରହର ॥ ୩୩ ॥
ସପତଦ୍ୱୀପ ହୋଇଅଛି ଏକତ୍ର ।
ଶ୍ରୀରାମଙ୍କ ଅଗେ ରାବାୟେଣ କହନ୍ତି ସୀତସ୍ୱାର ବେନ ପୁତ୍ର ॥ ୩୪ ॥
ନଗ୍ର ନରନାରୀ ଅସ୍ଥାନର ତଳେ ।
ସାନନ୍ଦେ ଶୁଣନ୍ତି ଆନନ୍ଦ ମତ ଭୋଳେ ॥ ୩୫ ॥

ଜୟତୁ ତ୍ରିପୁରବିନାଶନ ଉମାପତି ।
ଧବଳ ଜଟା କଳାପେ ଧବଳ ଚନ୍ଦ୍ର ସ୍ଥିତି ॥ ୩୬ ॥
ଶରୀର ଧବଳ ତୋହର ବିଭୂତି ଧବଳଇ ।
ଧବଳ ମୁଣ୍ଡମାଳା ତୋହର ଲୁଲଇ ବକ୍ଷସ୍ଥଳଇ ॥ ୩୭ ॥
ଧବଳ ବୃଷଭରେ ରୁହି ଆରୋହଣ କରୁ ।
ଧବଳ ଚର୍ମରେ ହମ୍ବାରୁ ଡମ୍ବରୁ ॥ ୩୮ ॥
ଧବଳ ବାସୁକି ନାଗ ଗଳାରେ ତୋହର ।
ଧବଳ ପନଙ୍ଗ କଙ୍କଣ ପୟରନୂପୁର ॥ ୩୯ ॥
ଧବଳ ପଦ୍ମ ଜାଣି ଦିଶଇ ବଦନ ।
ଧବଳ ତିନି ନୟନ କି ମଧୁପରେ ଚୁମ୍ବନ ॥ ୪୦ ॥
ଧବଳ ଚଉଷଣ ଯେ କରଇ ଭଗତି ।
ଧବଳ କପିଳାସ ପୁରେ ପାବଇ ସ୍ଥିତି ॥ ୪୧ ॥
ସେବକ ଲୋକଙ୍କୁ ଧବଳ ତୋହର ଚଉ ।
ସିଦ୍ଧେଶ୍ୱରଦାସ ଧବଳଲିଙ୍ଗର ପୟରେ ଭଗତ ॥ ୪୨ ॥

## ସୀତା ଜନ୍ମ

ଏଥୁ ଅନନ୍ତରେ ଶୁଣ ପଣ୍ଡୁର କୁମାର ।
ରାବଣର ଜନ୍ମ ଶୁଣି କ୍ଷତ୍ରିବର ସୁନ୍ଦର ॥ ୧ ॥

---

୩୩. ଦୁଇ—ତିନ(କ) । ୩୬. କଳାପେ—କପୋଳେ ; ଚନ୍ଦ୍ର—ରୁଦ୍ର(କ) ।
୩୮. ଆରୋହଣ—ଆରୋପଣ(କ) । ୪୦. ମଧୁପ—ମଧୁ(କ) ।

ଶ୍ରୀରାମ ପୁଚ୍ଛନ୍ତି ପୁତ୍ରଙ୍କ ମୁଖ ଚାହିଁ ।
ରାବଣର ଚରିତ୍ର ଶୁଣିବଇଁ ମୁହିଁ ॥ ୨ ॥
ଯାହାର ଅର୍ଥେ ରାବଣ ମାର ମଲା ।
ସୀତାଙ୍କ କେସନେକେ ଜନମ ହୋଇଲା ॥ ୩ ॥
ଏହାର ଚରିତ୍ର ବିସ୍ତାରିଣ କହ ।
ମନର ଭ୍ରାନ୍ତି ଯେ ଫିଟାଅ ସନ୍ଦେହ ॥ ୪ ॥
ଶୁଣିଣ କୁମାରେ ନାଦ ହୁଂକାରନ୍ତି ।
ବିଚିତ୍ର ଦେଶାଖ୍ୟ ରାଗ ସୁସ୍ୱରେ ଧରନ୍ତି ॥ ୫ ॥
ଶୁଣିଣ ମୋହିତ ହୋଇଲେ ସଭାର ସର୍ବଜନ ।
ଶ୍ରବଣ ଟେକିଲେ ନ ଚାଳିଲେ ନୟନ ॥ ୬ ॥
କୁମରଙ୍କର ମୁଖ ଚାହିଁ ସଧୀରେ କରି ନିରେଖି ।
ଏକଇ ଆରେକ ଆଗସରିଣ ଦେଖି ॥ ୭ ॥
ଲକ୍ଷ୍ମଣ ସମସ୍ତଙ୍କୁ ପଛ କରିଣ ପେଲି ଦିଅଇ ।
ଥିର କରି ଶୁଣ ହୋ କକୁସ୍ଥା ପୁତ୍ର କହଇ ॥ ୮ ॥
ସଭା ନିଶବଦ ହୋଇଲାକ ଯହୁଂ ।
ଲବ କୁମର ଗ୍ରନ୍ଥ ବଖାଣି କରଇ ତହୁଂ ॥ ୯ ॥
ବେଦମତୀ କନ୍ୟା ଜନ୍ମର କଥା କହନ୍ତି ଉକତ ।
ସତ୍ୟଯୁଗେ ବେଦ କରଇ ମହାଯତ ॥ ୧୦ ॥
ଦୋହରି ଥାପି ମୁନି ବେଦ ଆଦ୍ୟାନ କରଇ ।
ଘୃତ ଯବ ତିଳ ବହ୍ନିରେ ପକାଇ ॥ ୧୧ ॥
ମକର ଶୁକଳ ପଞ୍ଚମୀ ଗୁରୁବାରଇ ।
ପୁନର୍ବସୁ ନକ୍ଷତ୍ର ଏଗାର ଦଣ୍ଡ ପ୍ରଭାକରଇ ॥ ୧୨ ॥
ବେଦ ନାଦ କରନ୍ତି ତପସ୍ୱୀ ।
ସୁବର୍ଣ୍ଣ ପଙ୍କୁ ପ୍ରାପ୍ତେକ ବେଦରୁ କନ୍ୟାଏ ଅବତରି ॥ ୧୩ ॥
ଦେଖିଣ ମହର୍ଷି ହରଷ ହୋଇଲା ।
ବେଦମତୀ ନାମ ସେ କନ୍ୟାକଇ ଦେଲା ॥ ୧୪ ॥
ତ୍ରିଭୁବନ-ମୋହିନୀ ମୁନି ମନ ହରଇ ।
ମୁଖ ଦିଶଇ ଶରଦ ପୌର୍ଣ୍ଣମୀ (ଚନ୍ଦ୍ରମା) ଆକାରଇ ॥୧୫॥
ମନ୍ଦାର ବନ୍ଧୁକ କୋମଦ ଓଷ୍ଠ ।
ଗରୁଡ଼ ନାସିକା କାମବାଣ ଦୃଷ୍ଟି ॥ ୧୬ ॥

---

୬. ଚାଳିଲେ—ଚାହିଁଲେ(କ) । ୧୧. ଆଦ୍ୟାନ କରଇ—ଅଭ୍ୟାସଇ(ଖ) ।
୧୨. ଶୁକଳ—କୃଷ୍ଣ(କ) । ୧୩. ପଙ୍କୁ—ପୁଷ୍ପ(ଖ) ।

ଏକଷଣ୍ଡ ଚେଜନପୋଲ ଗୃତର ଧାର୍ମ୍ମ କେଶଇ ।
ଟୁବାସ ପଦ୍ମ ଝଟ୍‌ପଦେ ଉଡ଼ଇ ଚଉପାଶଇ ।। ୧୭ ।।
ସୁଲଲିତ କର୍ଣ୍ଣ ବେନି ଦୃଦସ୍ଥ ବସ୍ତାରଇ ।
ତମ୍ବୁରୁମଧ ମଞ୍ଜା ପଦ୍ମପତ୍ର ଜଦରଇ ।। ୧୮ ।।
ହଂସୂକରୂଳୀ ଜାଣି ଯୁଗଳ ପିଚ ତଶଇ ।
କଦଳୀ ବୃକ୍ଷ ଜାଣି ଜାନୁ ବାହା ମୃନାଳ ମାଦ୍ରିଶଇ ।।୧୯।।
କନକଚମ୍ପା ଯେସନ ତଶଇ ଦେହର କ୍ୟୋତ ।
ପଯ୍ତର ଚଳନ୍ତେ ଅରବିନ୍ଦ ଫୁଟନ୍ତି ।। ୨୦ ।।
ଚମ୍ପା କଢ଼ି ଜାଣି ଅଙ୍ଗୁଳି ଦଶଇ ।
ଜାଇ ଫୁଲ ଯେସନ ଦଶନ ସାଦ୍ରିଶଇ ।। ୨୧ ।।
କନକ କଳସ ଜାଣି ପୟୋଧରଭିରଇ ।
ଅଣ୍ତ୍ରୀର କୋକିଳ ଯେସନେ ବଚନ ମଧୁରଇ ।। ୨୨ ।।
କନ୍ୟାର ମୁଖ ଦେଖି ବିସ୍ମୃତ ମୁନିବର ।
ଏ କନ୍ୟାକାର ବଲ୍ଲଭ ନାହିଂ ପଟାନ୍ତର ।। ୨୩ ।।
କାହାକଇ ଏ କନ୍ୟା ବିଭା କରାଇବ ।
ଅସାଦ୍ରିଶ ହୋଇଲେ କେମନ୍ତେ ଯାଚ ଦେବ ।। ୨୪ ।।
ବେଦମନ୍ତି କହଇ ଶୁଣସି ହୋ ତାତ ।
ତପ କରି ମନାଇବି ମୁଂ ଶ୍ରୀଜଗନ୍ନାଥ ।। ୨୫ ।।
ଆନବରେ ମୋହର ପ୍ରୟୋଜନ ନାହିଂ ।
ପୁରୁଷଙ୍କର ରତ୍ନ ସେ ଲକ୍ଷ୍ମୀଦେବୀର ସାଇଂ ।। ୨୬ ।।
ଭାଗୀରଥି ନଦୀ ପବିତ୍ର ପୁଣ୍ୟ ଜଳ ।
ତପ ଆଚରଇ ଉତ୍ତରମୁଖ କୂଳ ।। ୨୭ ।।
ବିଷ୍ଣୁଙ୍କୁ ଧ୍ୟାୟେ କରି ମଜ୍ଜିଲା ମନ ।
ହୃଦରେ ବିଶ୍ରାମଇ ଶ୍ରୀବତ୍ସଲାଞ୍ଛନ ।। ୨୮ ।।
କଷାବସନ ବିଭୂତି ଲେପଇ କପୋଳ ।
ଗଳାରେ ଲୁଳଇ ରୁଦ୍ରାକ୍ଷ କଣ୍ଠମାଳ ।। ୨୯ ।।
ରାବଣ ଚନ୍ଦ୍ରବ୍ରଜ୍ଞ ଦିଗପାଳ ଚୂଡ଼ାମଣି ।
ଭାଗୀରଥି ନଦୀ ତୀରେ କରଇ ଭ୍ରମଣି ।। ୩୦ ।।

---

୧୮. ପଦ୍ମ—ପୁଲଣୀ(କ) । ୧୯. ଯୁଗଳ ପିଚ—ସୁଗନ୍ଧପିତ । ୨୦. କ୍ୟୋତ—ଯୋତ । ୨୧. ଦଶନ—ନଖ(କ) । ୨୨. ପୟୋଧର—ପଯ୍ତ(କ) । ୨୩. ବଲ୍ଲଭ—ବଲ୍ଲବ । ୨୪. ଅସାଦ୍ରିଶ—ଅସାହସ । ୨୬. ପ୍ରୟୋଜନ—ପ୍ରୀୟୋଜନ(କ) । ୨୭. ଭଗୀରଥି—ଭାରଥି(କ) ; ଆଚରଇ—ଆଚରସି(କ) । ୩୦. ପଦଟି ଖ ପୋଥିରେ ନାହିଁ ; ଭାଗୀରଥି—ଭାରଥ ।

ଦେଖଇ କାମେମୀ ରୂପେଣ ଅନାହତ ।
ସନ୍ନିଧେ ମିଳଇ ଯାଇ ଅସୁରବୀର ଦଶମାଥ ॥ ୩୧ ॥
ରୂପ ଗୃହ୍ମଂ ମଦନେ ଅତି ହୋଇଲା ।
ପୁଷ୍ପକ ରଥରୁ ଓହ୍ଲାଇ କନ୍ୟାର ସନ୍ନିଧେ ଗଲା ॥ ୩୨ ॥
କିସ ଅର୍ଥେ ତପ କରୁ ବୋଲି ପୁଚ୍ଛଇ ଲଙ୍କପତି ।
ମୁହିଂ ସେ ରାବଣ ତିନି ପୁରେ ବିଖ୍ୟାତି ॥ ୩୩ ॥
ରଥେ କିସ ମୋହର ରାଜ୍ୟକୁ ଯିବା ।
ଭାରଯୀ ହୋଇବୁ ଅନେକ କାମିନୀ କରୁଥିବେ ସେବା ॥ ୩୪
ଶ୍ରୀହରିଙ୍କ ଧ୍ୟାଇ ଅଛି ନ ଶୁଣିଲା ସେ ନାରୀ ।
ତହୁଂ କୋପେ କହଇ ଦଶଗିର ॥ ୩୫ ॥
ଏଡ଼େ ଭରସା ତୋହର ନ ଶୁଣୁ ମୋହର ବୋଲଇ ।
ମୋହର ନାମେ ସକଳ ଋଷିଙ୍କର ହୃଦ୍ଧା ଟଳଇ ॥ ୩୬ ॥
ବୋଲେଣ କନ୍ୟାକଇ ଆକର୍ଷି ଧଇଲା ।
ଜଟା କାଟି ତେତେଣେ ଉଲଗ୍ନ କଲା ॥ ୩୭ ॥
ରମଣ କରଇ ଦନୁଜ ଦଶଗିର ।
ତେବେ ସେ ଧ୍ୟାନ୍ତୁ ଚେତିଲା ଋଷିଙ୍କରକୁମାରୀ ॥ ୩୮ ॥
ପ୍ରତକ୍ଷେ ଦେଖିଲାକ ଦଶବଦନ ।
ଡରେଣ କାମେମୀ ବୁଜଇ ନୟନ ॥ ୩୯ ॥
ଗାଢ଼େଣ ରାବଣ ରମଣ ସାରିଲା ।
ଉତ୍ତର ଦିଗ ବିଜୟେ କରି ଗଲା ॥ ୪୦ ॥
କ୍ଷଣକେ ସତୀର ପ୍ରାଣ ପଶିଲା ଶରୀର ।
ଯୋନି ଫାଟି ପାଦେ ପଡ଼ୁଅଛି ରୁଧିର ॥ ୪୧ ॥
କାନ୍ଦଇ କୁମାରୀ ହୋଇଣ ନିର୍ମାକ୍ଷୀ ।
କିପାଇଂ ଆବର ଦେହ ଧରିବ ମୁହିଂ ଦୁଃଖୀ ॥ ୪୨ ॥
ରମଣୀ କଲା ମୋତେ ଆବର ଦଶାନନ ।
କେମନ୍ତେ ଗୃହ୍ମଂବ ମୁଂ ପିତାର ବଦନ ॥ ୪୩ ॥
ଆତ୍ମାଘାତେ ମଲେ ହୋଇବ କା ଦୋଷ ।
କୁଳେ କଳଙ୍କ ମୋତେ ଜନମଧେ ଉପହାସ୍ୟ ॥ ୪୪ ॥
ବଳାତ୍କାରେ କରଇ ନ ଲଟଇ ଆତ୍ମାଘାତ ।
ଏ ମୋହର ହତ୍ୟା ପଡ଼ୁ ଦଶଗିର ମାଥ ॥ ୪୫ ॥

---

୩୧. ଅନାହତ—ଆନନ୍ଦିତ । ୩୩. ବିଖ୍ୟାତି—ବିଖ୍ୟାତ । ୩୮. ଚେତିଲା—ଚେତନ୍ତିଲା ।

ଏସନେକ ବଚ୍ନର ଅଗ୍ନି ଏ ସଂକାଳଲ ।
ଶୂନ୍ୟକୁ ଗୃହ୍ନିଂ ଦଶଦିଗପାଳକଇ ସାକ୍ଷୀ କଲ ॥ ୪୬ ॥
ଶୁଣ ଦେବଗଣେ ମୋହର ଶୁଣିମା ବଚନ ।
ବିଷ୍ଣୁଙ୍କ ବର ଇଚ୍ଛା ବସିଥିଲି ଧାନ ॥ ୪୭ ॥
ମୋତେ ଜାଡନାଶନ କଲି ଦଶଗିର ।
ଏଥକଇ ଗତି ମୋତେ କର ହେ ଶ୍ରୀହରି ॥ ୪୮ ॥
ଯାହାର କୋଳେ ଉପୁଜଇ ମୁହିଂ ।
ନାରାୟଣ ପୁରୁଷ ହୋଇବ ମୋହର ସାଇଁ ॥ ୪୯ ॥
ସେ ବିଷ୍ଣୁ ଦଶକନ୍ଧକୁ କରିବ ବିନାଶ ।
ଏତେ କହି ବେଦମତୀ ଅଗ୍ନିରେ ଦେଲ ଝାସ ॥ ୫୦ ॥
ବେଦମତୀର ବିନାଶ ଶୁଣିଣ ଛନ୍ଦି ବରସୁନ୍ଦର ।
ଦୁଇ ନୟନରୁ ଲୁହ ବହଇ ଝରଝର ॥ ୫୧ ॥
ସଭାର ତଳେ ଯେତେ ଲୋକ ଅଛନ୍ତି ।
ସବିଏ ଶୋକେ ଅଶ୍ରୁପାତ କରନ୍ତି ॥ ୫୨ ॥
ଶ୍ରୀରାମ ପୁଛନ୍ତି ପୁଅଙ୍କର ମୁଖ ଗୃହିଂ ।
ଅଗ୍ନି ଭିତରେ ବେଦମତୀ (ପ୍ର)ବେଶ ହୋଇ ॥ ୫୩ ॥
ଏଥୁ ହୋଇଲା ବାଟସ୍ୟେ କେବଣ ଚରିତ ।
ଗୀତେଣ ଗାବନ୍ତି ସୀତାୟାର ବେନ ସୁତ ॥ ୫୪ ॥
ଅଗ୍ନିରେ ବେଦମତୀ ତହୁଂ ପଶିଲ ।
ଢଗବୁଲି ରାବଣ ସେ ବାହୁଡ଼ି ଅଇଲ ॥ ୫୫ ॥
ଦେଖଇ କନ୍ୟା ଅଗ୍ନିରେ ପୋଡ଼ନ୍ତେ ।
ମନେଣ ବିଗ୍ନର ଭାଳଇ କୋପଚିତ୍ତେ ॥ ୫୬ ॥
ଏ ମୃତ୍ୟୁ ପିଣ୍ଡ ମୁହିଂ ଆଧାର କରିବ ।
ମାନେବ ମାଂସ ଭୁଞ୍ଜି ଶରୀର ତୋଷ କରିବ ॥ ୫୭ ॥
ଅଗ୍ନିରୁ କାଢ଼ି ରଥରେ ପକାଇଲ ।
ଅନ୍ତଃପୁରେ ଯାଇ ପ୍ରବେଶ ହୋଇଲ ॥ ୫୮ ॥
ଯହିଂ ସେ ମନ୍ଦୋଦରୀ ମହାଦେଈ ଅଛଇ ।
ମୃତ୍ୟୁ ପିଣ୍ଡ ଦେନ ରାବଣେଶ୍ୱର ପୁଛଇ ॥ ୫୯ ॥
ତୁହି ମୋହର ଭାବେନୀ ପ୍ରାଣର ଅର୍ଧଅଙ୍ଗ ।
ସକୁମେନ୍ତନ କରି(ବୁ) ତୁହି ଆଜର ମୃତ୍ୟୁଶବ ॥ ୬୦ ॥
ଆପଣାର ସଂହାତେ ତୁହି ସେ ରାନ୍ଧିବୁ ।
ଆନକଇ ଛୁଇଁତ ଦେଖିତ ନ ଦେବୁ ॥ ୬୧ ॥

ଏଅନେକ କହି ବୀର ଆହ୍ୱାନକରି ଗଲା ।
ତାହା ଦେଖି ଇନ୍ଦ୍ର ନାରଦଙ୍କୁ ପଠିଆଇଲା ।। ୬୨ ।।
ମନ୍ଦୋଦରୀ ସନ୍ନିଧେ ମିଳଇ ବ୍ରହ୍ମାସୁତ ।
ଦେଖିଣ ମନ୍ଦୋଦରୀ କରଇ ପ୍ରଣମିତ ।। ୬୩ ।।
କର ଯୋଡ଼ି କହଇ ରାବଣର ନାରୀ ।
କେ ତପୋଧନ କାହାଇଁ ଅଇଲୁ ମୋହର ପୁରୀ ।। ୬୪ ।।
ବ୍ରହ୍ମାର ପୁତ୍ର ତୁହି ରୁଦ୍ର ମୂରତି ।
ତୋତେ ଦେଖି ମୁହିଁ ହୋଇଲି ମୁକତି ।। ୬୫ ।।
ଆଜ ସେ ମୋହର ଜୀବନ ସୁଫଳ ।
ତୁହି ଯହିଁ ବିଜୟେ କଲୁ ବ୍ରହ୍ମାର ଦୁଲାଳ ।। ୬୬ ।।
ନାରଦେ କହନ୍ତି ଶୁଣସି ମହାସତୀ ।
ତୋହର ତହିଁକି ପଠିଆଇଲେ ସୁରପତି ।। ୬୭ ।।
ଯହିଁର ଅର୍ଥେ ତୁ ହୋଇଲୁ ରାବଣର ରମଣୀ ।
ସେ କାହିଁ ଏବେ ଗୋ ହୋଇଲା ତରୁଣୀ ।। ୬୮ ।।
ଯେବଣ ମୃତ୍ୟୁପିଣ୍ଡ ଗୋ ଆଣିଲା ଦଶଶିର ।
ତେଣୁ ସେ ଅସୁର ବଂଶ ହୋଇବ ସଂହାର ।। ୬୯ ।।
ସେ କନ୍ୟାର ନାମ ଗୋ ଅଟଇ ବେଦମତି ।
ବଳେ ତାହାକଇ ଗୋ ରମଣ କଲା ଲଙ୍କାପତି ।। ୭୦ ।।
ଅପମାନ ନ ସହିଲା ସେ ଋଷିରକୁମାରୀ ।
ଅଗ୍ନିରେ ପଶିଲା ସେ ସତ୍ୟବ୍ରତନାରୀ ।। ୭୧ ।
ତାହାକଇ ରାବଣ ଗୋ ଭକ୍ଷିବାକୁ ଆଣିଲା ।
ତୋହର ଗୋଚରରେ ଗୋ ଏହ୍ନରକ୍ଷିଣୀ ଦେଲା ।। ୭୨ ।।
ଏ ମୃତ୍ୟୁପିଣ୍ଡ ରକ୍ଷା କରୁ ଯେବେ ।
ଏ ଦନୁଜ ଦଶମାଥ ବିନାଶ ହୋଇବ ତେବେ ।। ୭୩ ।।
ରହିଥାଉ କଥା ଏ ମୋହର ଶୁଭ୍ରକେଶୀ ।
ଏ ମୃତ୍ୟୁପିଣ୍ଡ ସମ୍ଭାଳିଣ ଥାସି ।। ୭୪ ।।
ନାରଦ ବଚନେ ମନ୍ଦୋଦରୀ ହରଷ ହୋଇଲା ।
ସୁବର୍ଣ୍ଣ ଘଟେ ଭରି ଗୁପତ କରିଣ ଥୋଇଲା ।। ୭୫ ।।
ଆନ ମାଂସ ରାବଣକଇ ରାନ୍ଧଣ ଦଅଇ [ଆହାରଇ] ।
ଭୁଞ୍ଜିଣ ହରଷ ହୋଇଲା ଦଶଶିରଇ ।। ୭୬ ।।

---

୬୨. ଇନ୍ଦ୍ର—ବ୍ରହ୍ମା(କ) । ୬୮. ହୋଇଲୁ—ହୋଇବୁ(କ) । ୬୯. ହୋଇବ—ହୋଇଲା (କ) ।

ଏମନ୍ତେ କେତେହେକ ଦିନ ଗଲା ।
ଘୂଣି ଆସି ମନ୍ଦୋଦରୀଙ୍କି ନାରଦ କହିଲ ॥ ୭୭ ॥
ମୃତ୍ୟୁପିଣ୍ଡ ଥୋଇଲୁ ଯେ ରାବଣର ନାଶ ।
ଦେଖସି ତାହା ବୁଝସି ପରମାଣ କରି ॥ ୭୮ ॥
ନାରଦ ବଚନ ଶୁଣି ମନ୍ଦୋଦରୀ ବାମା ।
ଘଟର ଭିତରେ ଦେଖଇ କନ୍ୟା ଅନୁପମା ॥ ୭୯ ॥
କୁରଙ୍ଗ ଲୋଚନୀ ମୁଖ ପୌର୍ଣ୍ଣମୀ ଚନ୍ଦ୍ର ଜାଣି ଦିଶଇ ।
କର ଚରଣ ଯୁଗଳ ଅରବିନ୍ଦ ବିଂଶଇ ॥ ୮୦ ॥
ଦେଖିଣ ମନ୍ଦୋଦରୀ ଚକିତ ହୋଇଲ ।
ନାରଦ ମହର୍ଷିର ଆଗେ ଆସିଣ କହିଲ ॥ ୮୧ ॥
ତୋହର ବାକ୍ୟ ମୁନି ହୋଇଲା ସ୍ୱରୂପ ।
କନ୍ୟାଏକ ଅଛି ଅତୁଳାଇତ ରୂପ ॥ ୮୨ ॥

ମହର୍ଷି କହନ୍ତି ଶୁଣସି ମହାସତୀ ।
ଯଦ୍ୟପି ଦେଖଇ ତାହା ରାବଣ ପାପମତି ॥ ୮୩ ॥
ବଳେ ସେ କାମେମୋକ ବଶ ହୋଇବ ।
ବାଳୁତ ଯୁବତୀଙ୍କ ରମଣ କରିବ ॥ ୮୪ ॥
ବୃଦ୍ଧ ପୁରୁଷକଇ ଯେବେ ତରୁଣ ଯୁବତୀ ।
ନଅତ ଘରଯା ତାର ନୁହଇନ ପ୍ରୀତି ॥ ୮୫ ॥

ତୁହି ଏବେ ସେ କନ୍ୟା ନଗରେ ନ ଥୁଅ ।
ମଞ୍ଜୁସେ ଭରି ସମୁଦ୍ରେ ମେଲି ଦିଅ ॥ ୮୬ ॥
ଏସନେକ ବାକ୍ୟ ଯହୁଁ ମନ୍ଦୋଦରୀ ଶୁଣିଲ ।
ରାତ୍ରକାଳେ ମଞ୍ଜୁଷେ ଭରି ସାହେରେ ନେଇ ମେଲିଇଲ ॥ ୮୭ ॥
ତହୁଁ ମନ୍ଦୋଦରୀ ଗଲେକ ନିଜ ପୁରେ ।
ବିସ୍ତାରି କହନ୍ତି ସୀତାର ବେନି କୁମରେ ॥ ୮୮ ॥

ଶୁଣିଣ ଶ୍ରୀରାମ ହରଷ ହୋଇଲେ ।
ବଶିଷ୍ଠ ଋଷିଙ୍କର ମୁଖକୁ ଚାହିଁଲେ ॥ ୮୯ ॥
ହେ ମୁନି ଯାହା ବଖାଣ କରନ୍ତି ଦୁଇ ଭାଇ ।
ପୁରାତନ ଲୋକ ଏହା ନ ପାରଇ କହି ॥ ୯୦ ॥
ବଶିଷ୍ଠେ କହନ୍ତି ଏ ବଡ଼ ଲୋକଙ୍କର ପୁଅ ।
ତୁମ୍ଭ ଶୁଣିତ ସରଲେ ପସ୍ତରିବା ଏହାର ପିଅର ମାତ ॥ ୯୧ ॥

---

୭୯. ମନ୍ଦୋଦରୀ—ମନ୍ଦଦୋରୀ(କ) ; ଅନୁପମା—ରତ୍ନପମା(କ) । ୮୫. ନଅତ—ନାଚ(କ) ।

ଏବେ ଥିର ହୋଇ ବାକ୍ୟ ଶୁଣୁ ଆସି ।
ଆନ କଥା ଏବେ ନ କର ପ୍ରକାଶି ।। ୯୨ ।।
ଶୁଣିଣ ତବଦ ହୋଇଲେ ରାମଚନ୍ଦ୍ର ।
ସଭାରେ ସର୍ବଲୋକେ ହସନ୍ତି ଆନନ୍ଦ ।। ୯୩ ।।
ଲବକୁମର କହନ୍ତ ଶୁଣସି ସାବଧାନେ ।
ସମୁଦ୍ରେ ମନ୍ତ୍ରୁଛି ଚଳଲାକ ବନ୍ଧନେ ।। ୯୪ ।।
ଯାହାସେ ବଧାତା ନର୍ମାଣ କଲା ।
ବନ୍ଦ୍ରଦେହ ମଣ୍ଡଳେ ସେ ମନ୍ତ୍ରୁସ ଲାଗିଲ ।। ୯୫ ।।
ବାନିକୃତ ହୋଇଲ ତାହାଂର ଉପର ।
ଅନେକ ମହର୍ଷିର ସେ ନର୍ଘେଣ ଘର ।। ୯୬ ।।
ସେ ଅନେକ ଋଷିର ସ୍ତ୍ରୀର [illegible]ବଣ ।
କାହାର ହି ବୋଲେ ପୁତ୍ର ନାହିଂ ଉତପନ୍ନ ।। ୯୭ ।।
ଋଷିନ୍ଦ୍ର ଯେନ ବସୁରଇ ତପୁଷ୍ପୀ ରାଜନ ।
ମୋହର ବୋଲେ ଯେବେ ନୋହିଲା ନନ୍ଦନ ।। ୯୮ ।।
ଯାଗ କରିବା ବୋଲି ହୃଦରେ ଭାଳିଲ ।
ସେ ପଦ୍ରେ ମନର ଫଳ ବୁଣାଇଲ ।। ୯୯ ।।
ଫଳ ପାଚ ଫୁଟି ତାହାଂରେ ପଡ଼ଇ ।
ତଦଅନ୍ତରେ ଗୋରୁମନ୍ତ ଗୋଷ୍ଠ କରଇ ।। ୧୦୦ ।।
ଏମନ୍ତେ ପଦ୍ରେ ପର୍ବତ ହୋଇଲା ଯେବେ ।
ଯାଗ୍ୟଶାଳକୁ ଅନକୂଳ ଖୋଳାଇଲା ଏବେ ।। ୧୦୧ ।।
ସ୍ତ୍ରୀ ନିକାରେ ଯାଗ ଭୂମି ସୃଜ କରନ୍ତେ ।
କନ୍ୟା ଏକ ଶୂନ୍ୟ ମାର୍ଗେ ଯାନ୍ତେ ଗଗନ ଗତେ ।। ୧୦୨ ।।
ଶୀତଳ ହୋଇ ସହୁଂ ପବନ ବହିଲା ।
ଆକାଶ ମାର୍ଗେ କଇ ଅନେକ ମୁନ ଗୃହିଂଲା ।। ୧୦୩ ।।
ସେ କନ୍ୟାକଇ ଦେଖି ହରଷେ ଭାଳଇ ଯତ ।
ଏମନ୍ତେକ ଦୋହିତା ମୋତେ ହୋଇବାକ ଉତପତ ।।୧୦୪
ସେ କନ୍ୟାବର୍ଷ୍ଟୁଙ୍କୁ ବଶ୍ୱଏଣ ଦେବ ।
ସକଳ ପାତେକ ତେଜି ବୈକୁଣ୍ଠେ ବସିବ ।। ୧୦୫ ।।
ଏସନେକ କଥା ସହୁଂ ଅପଛରୀ ଶୁଣିଲା ।
ରଥ ରୁହାଇ ସେ ସମ୍ଭାଷଣ ଦେଲା ।। ୧୦୬ ।।
ତୁହି ଯେ ଦୋହିତାକୁ ଇଚ୍ଛା କଲୁ ମହଋଷି ।
ଯେବଣ ଠାବରେ ତୁ ଅଛୁ ଏବେ ବସି ।। ୧୦୭ ।।

---

୯୫. ମନ୍ତ୍ରୁସ—ସ୍ତ୍ରୁସ(କ) । ୯୭. କାହାର ହି—ତାହାର(କ) ।
୧୦୧. ଖୋଳାଇଲ—ତୋଳାଇଲ ।

ତାହାଂର ତଳେ ଖୋଳନ୍ତେ କନ୍ୟାଏ ପାଇବୁ ।
ସେ କନ୍ୟା କଷ୍ଟ ନାଥଙ୍କୁ ଦାନ ଦେବୁ ॥ ୧୦୮ ॥
ସେ କୁମାରୀର ସେ ବଲ୍ଲଭ ହୋଇବ ।
ପୃଥ୍ୱୀର ଭାର ସେ ଉଶ୍ୱାସ କରିବ ॥ ୧୦୯ ॥
ଶୁଣିଣ ଜନେକ ମୁନି ହରଷ ହୋଇଲା ।
ଝଣା ଖୋଲନ୍ତେଣ ମସ୍ତୂଟେକ ପାଇଲା ॥ ୧୧୦ ॥
ମସ୍ତୂ ଟର ମୁଦ ଭାଙ୍ଗିଣ ଦେଖଇ ତପସ୍ୱୀ ।
ତ୍ରିଭୁବନେ ତୁଳଇତ ନାହିଂ ରୂପେଣ ସୁନ୍ଦରୀ ॥ ୧୧୧ ॥
ହରଷ ମୁନିବର ଯେ କନ୍ୟାର ମୁଖ ଚାହିଂ ।
ପ୍ରତକ୍ଷେ ଲକ୍ଷ୍ମୀ ଥିଲା ଅବା କାହିଂ ।
ମୋହର ଉପର କଂଶେ ଶିବନାଥ ରାଯ୍ୟେ ।
ଈଶ୍ୱର ସେବା କରି ସେ ଶିବ ଧନୁ ପାଏ ॥ ୧୧୩ ॥
ମୋହର ଉପର ପାଞ୍ଚ ପୁରୁଷେ ଧନୁକୁ ସେବା କରି ।
ମୁହିଂ ଏବେ ପାଇଲି ଯଦ୍ଧି ଏହି କୁମାରୀ ॥ ୧୧୪ ॥
ସେ ଧନୁ ଯେ ଆମଞ୍ଚନ କରଇ ।
ସେ କୁମାରୀର ସେ ହୋଇବାକ ବରଇ ॥ ୧୧୫ ॥
ସତ୍ୟ ସତ୍ୟ ବାକ୍ୟ ଉଚ୍ଚରଇ ମୁନି ।
ସ୍ୱର୍ଗରେ ଜୟ ଜୟ ଶୁଭିଲାକ ଧ୍ୱନି ॥ ୧୧୬ ॥
ଆନନ୍ଦ ହୋଇଲେ ମିଥିଲାପୁର ନରନାରୀ ।
ଅତ୍ତ ହରଷ ହୋଇଲେ ଜନେକ ତପସ୍ୱୀ ॥ ୧୧୭ ॥
ସେ କୁମାରୀଙ୍କ ଘେନ ମୁନି ନବରେ ପଶିଲେ ।
ସକଳ ସ୍ତ୍ରୀବୃନ୍ଦ ଦେଖି ଆନନ୍ଦ ହୋଇଲେ ॥ ୧୧୮ ॥
ସିତ୍ୟା ନାମ ସେ କୁମାରୀକ ଦେଲେ ।
ଆନନ୍ଦ ଚଢ଼େ ମୁନି ହରଷ ହୋଇଲେ ॥ ୧୧୯ ॥
ସୋମକାନ୍ତ ନାମେ ସେ ଜନେକ ଭାରେଜା ।
ସୀତସ୍ୱାକୁ ସେ ପ୍ରତପାଳଇ ମାନନା ॥ ୧୨୦ ॥
ତାହୁଂ ମହର୍ଷି ଯାଗ ଆରୋପିଲା ।
ହବର୍ଭାଗ ଦଅନ୍ତେ ଭନ କୁମାରୀ ଉପୁଜିଲା ॥ ୧୨୧ ॥

---

୧୧୨. ମୁନିବର—ମୁନିଙ୍କର(କ) । ୧୧୩. ଶିବନାଥ—ଶିବ ନାମେ(ଖ) । ୧୧୫. ବରଇ—ବଇର । ୧୧୭-୧୧୯. ଏହି ତନି ପଦ ବଦଳେ କ ପୋଥିରେ ପଦେ ଅଛି :—ସେ କୁମାରୀକ ଘେନ ନବରେ ପ୍ରବେଶ ହୋଇଲା । ସୀତାନାମ ସେ କୁମାରୀକ ଦେଲା ॥ ୧୨୦. ମାନନା—କାମେନା(ଖ) ।

ରତ୍ନ କି ପାଟଣା ଦମୟନ୍ତୀ ପ୍ରାୟେଣ ଦଶନ୍ତି ।
ଦେଖିଣ ହରଷ ଜନେକ ମହୀପତି ॥ ୧୨୨ ॥
ସୀତାଙ୍କର ରୂପ ଜନେଷ୍ଠ ଯେବଣ ଦୋହିତା ।
ହନୂମନ୍ତ ପ୍ରତିପାଳଇ ତାହାର ଛନ୍ଦ ॥ ୧୨୩ ॥
ପଦ୍ମର ଦଶଇ ତାର ଅଳତାପଦ ଓଳ ।
ଅଳକା ନାମ ତାକୁ ଦେଲେ ତପଶୀଳ ॥ ୧୨୪ ॥
ଦୁଇ ଦୋହିତାର ଯେବଣ ଜନେଷ୍ଠ କୁମାରୀ ।
ହୃଦୟ ବସ୍ତ୍ରାର ମଝ୍ୟା କ୍ଷୀନ ତାହାର ॥ ୧୨୫ ॥
ଦେଖିଣ ଜନେକ ରିଷି ହରଷ ହୋଇଲା ।
ତାହାର ନାମ ଉର୍ମିଳା ବୋଲି ଦେଲା ॥ ୧୨୬ ॥
ସାବେଣୀ ନାମ ଯେ ଜନେକର ଭାବେମା ।
ଉର୍ମିଳାକୁ ସେ ଯେ ପ୍ରତିପାଳଇ କାମେମା ॥ ୧୨୭ ॥
କନେଷ୍ଟ ଦୋହିତା ରୂପ ଅତି ବଡ଼ପନ ।
ନିର୍ମଳ ମେଘର ଜ୍ୟୋତି ତାହାର ଯେସନ ॥ ୧୨୮ ॥
ତାହାକୁ ଦେଖିଣ ଜନେକ ମୁନିବର ।
ଦାସୀ ନାମ ତାହାକଇ କରନ୍ତି ପ୍ରଗ୍ରହ ॥ ୧୨୯ ॥
ସୀତାଙ୍କ[କୁ] ପଛାନ୍ତର କେହି ନୁହୋନ୍ତି ସର ।
ଜନେକ ମହାରିଷି ଧନୁ ସମ୍ଭୃର କରି ॥ ୧୩୦ ॥
ଅନେକ ରାଜାଏ ବହୁଦେଇ ମଣ୍ଡଳକଇ ଅସନ୍ତି ।
ଅକଳଅବଳ ଧନୁ ଦେଖି ବାହୁଡ଼ିଣ ଯାନ୍ତି ॥ ୧୩୧ ॥
ଏମନ୍ତେ ସୀତାକୁ ବିଭଯୋଗ ନାହିଂ ।
ଆବର କନ୍ୟାକୁ ବିଭା କରିବଇ କାହିଂ ॥ ୧୩୨ ॥
ଚନ୍ଦନମନ୍ତେ ଜନେକର ଗୃହ କୁମାରୀ ।
ଅବଭାଇତ ହୋଇଥାନ୍ତି ଜନେକ ମୁନିର ପୁରୀ ॥ ୧୩୩ ॥
ଏସନେକ ସୀତାଙ୍କୁ ହୋଇଲା ଉତପତି ।
ସଭାରେ ବଶ୍ରାଣ ତାହା ଲବକୁଶେ କହନ୍ତି ॥ ୧୩୪ ॥
ଶୁଣିଣ ହରଷ ସୀତାଙ୍କର ସାଙ୍ଗଂ ।
ଷଡ଼ି ବର ପୁଛନ୍ତି କୁମରଙ୍କ ମୁଖ ଗୃହଂ ॥ ୧୩୫ ॥
ବାବୁ ଜନେକକୁମାରୀ ଜନ୍ମ ଜାଣିଣ ନ ଥିଲି ।
ଅମୃତମୟେ କଥା ତୁମ୍ଭର ମୁଖୁ ଶୁଣିଲି ॥ ୧୩୬ ॥
ସୀତାଙ୍କର ବିଭା କଥା ଶୁଣିମି ଦିବ୍ୟ ରୀତି ।
ଶୁଣିଣ ମୋହର ଛନ୍ଦ କରିବ ଶାନ୍ତି ॥ ୧୩୭ ॥

---

୧୩୨. ବିଭଯୋଗ—ବିଭାଯଶ(କ) ।

ଶ୍ରୀରାମ କଥା ଯନ୍ତ୍ରଂ କୁମରେ ଶୁଣିଲେ ।
ବରାଡ଼ ରାଗେ ତାବର କରି ଧଇଲେ ॥ ୧୬୮ ॥
ଶୁଣି ସଭା ଲୋକେ ହୋଇଲେ ମୋହ ।
ସର୍ବଙ୍କର ନୟନ ଅଶ୍ରୁ କୁମାରଙ୍କର ତହିଂ ॥ ୧୬୯ ॥

## ତାଡକାସୁରୀ ବଧ

ଲବକୁଶେ କହନ୍ତି ଦିବ୍ୟ ଗୀତ ।
ଦଶରଥ କୋଳେ ଯନ୍ତ୍ରଂ ଶ୍ରୀ ନନ୍ଦନ ଉତପତ ॥ ୧ ॥
ସକଳ ଋଷିଗଣେ ହରଷ ହୋଇଲେ ।
ବିଶ୍ୱାମିତ୍ର ଋଷିଙ୍କି ପୁରସର କହିଲେ ॥ ୨ ॥
ହେ ମୁନି ତୁହି ଅଯୋଧ୍ୟାକୁ ଯିବୁ ।
ଦଶରଥ ପୁତ୍ର ରାମକୁ ଘେନଣ ଆସିବୁ ॥ ୩ ॥
ଯାଗ ଦ୍ୱାର ଶ୍ରୀରାମକୁ ରକ୍ଷା କରାଇବା ।
ଶଙ୍କା ତେଜି ଆମ୍ଭେ ଯାଗ ଆରମ୍ଭିବା ॥ ୪ ॥
ତୁହି ସ୍ୱୟଂ ମିଥିଲା ନଗରେ ଆଧିପତି ।
ତୋହରଦେ ଏଥକୁ ଆସଇନା ରଘୁପତି ॥ ୫ ॥
ସେ ବିଷ୍ଣୁର ମୂରତି ସମ୍ମୁଖେଣ ଦେଖି ।
ପାପ ପଳାଉ ଆମ୍ଭର ଶରୀରୁ ଉପେଖି ॥ ୬ ॥
ଋଷିଙ୍କର ବଚନ ଶୁଣି ଗାଧିର ନନ୍ଦନ ।
ପ୍ରବେଶ ହୋଇଲେ ଯାଇ ଅଯୋଧ୍ୟା ଭୁବନ ॥ ୭ ॥
ରାଜାର ଆସ୍ଥାନେ ବଜସ୍ପେ ମୁନି କଲେ ।
ବଶିଷ୍ଠ ମୁନିଙ୍କି ପ୍ରଣମିତ କଲେ ॥ ୮ ॥
ଯେବଣ କଥା ହୋଇଲେ ବଶିଷ୍ଠଙ୍କର ସଙ୍ଗେ ।
ଲବକୁମର କହଇ ଶ୍ରୀରାମର ଆଗେ ॥ ୯ ॥
ଯେବଣ ପଦ ଅବା ଅନ୍ତର ହୁଅଇ ।
କୁଶକୁମର ତାହା ଅର୍ଥ କରଣ କହି ॥ ୧୦ ॥
ସଭା ଆସ୍ଥାନେ ବସି ମୁନିବରଇ ।
ଦଶରଥ ରାଜା ମୁନିଙ୍କି ପୂଜା କରଇ ॥ ୧୧ ॥
ବିଶ୍ୱାମିତ୍ର ମୁନିଙ୍କ ପୟର ଧୂଳି କପାଳେ ଲଗାଇଲା ।
କରପତ୍ର ଯୋଡ଼ି ବିଶ୍ୱାମିତ୍ରେ ବିନୋଇ କହିଲା ॥ ୧୨ ॥

---

୧୬୮. ତାବର—ତମ୍ବୁର । ୪. ଶଙ୍କା—ଶଙ୍ଖା(କ) । ୭. ଗାଧିର—ଗାଧିସୁତ(ଜ) ।

ସେ ମୁନି ପବିତ୍ର ହୋଇଲା ମୋହର ରାଜ୍ୟଇ ।
ତୁମ୍ଭ ମହତ୍ତ୍ୱଂ ବିଜଗତ୍ରେ କଲୁ ଗାଧିର ତନୟି ॥ ୧୩ ॥
ରାଜଋଷି ହୋଇ ନବସୃଷ୍ଟି ସିର୍ଜିଲୁ ।
ଅତି ତପେଣ ବ୍ରହ୍ମଋଷି ବୋଲାଇଲୁ ॥ ୧୪ ॥
କଉଶିକ କହିଲେ ତୁ ସୂର୍ଯ୍ୟବଂଶେଣ ବିଖ୍ୟାତ ।
ନୃପତିଶେଖର ତୁମ୍ଭ ପ୍ରତାପୀ ଚକ୍ରବର୍ତ୍ତୀ ॥ ୧୫ ॥
ତୋହର କୋଳେ ପୁତ୍ର ଜାତ ହୋଇଲା ।
ବୃଦ୍ଧ ବୟସେ ତୋହର ଗୃହ ପୁତ୍ର ଉପୁଜିଲା ॥ ୧୬ ॥
ଅସୁରଙ୍କ ଡରେ ବନସ୍ତେ ଲୁଚିଥାଉ ।
ପ୍ରାଣେକେସେ ଦିବସନିଶି ବଞ୍ଚିଉ ॥ ୧୭ ॥
ଯାଗ ଆହୂତ ଆମ୍ଭର ତପ ନ ହୋଇଲା ।
କିମ୍ବା ଅନ୍ତରେ ବହୁତ ପାତେକ ବଢ଼ିଲା ॥ ୧୮ ॥
ରାଜା ବାହୁବଳେ ସେ ମୁନି ତପ କରନ୍ତି ।
ତହିଂର ଅର୍ଦ୍ଧ କାରଣୀ ମହୀପତି ହୁଅନ୍ତି ॥ ୧୯ ॥
ତେଣୁ ସେ ରାଜା ସନ୍ତ ପ୍ରତିପାଳି ଦୁଷ୍ଟନ୍ତ ମାରଇ ।
ନଚେତ ଲୋକଙ୍କର ଗୁହାରି ବଗୁରଇ ॥ ୨୦ ॥
ଜମ୍ବୁଦ୍ୱୀପେ ଯେତେ ନୃପତି ବିଖ୍ୟାତ ।
ତାହାଙ୍କର ଶ୍ରେଷ୍ଠ ତୁ ଭାଗ୍ୟରଥି କୁଳେ ଉତପତି ॥ ୨୧ ॥
ତୋହର ଗୃହ କୁମରେ ହୋଇଲେ ଉତପତି ।
ରାମଲକ୍ଷ୍ମଣଙ୍କୁ ମୋତେ ଦିଅସି ନୃପତି ॥ ୨୨ ॥
ଷଟି ମନ୍ତ୍ରବିଦ୍ୟା ସମସ୍ତ କହିବି ।
ଯାଗଶାଳ ମୋହର ରକ୍ଷା କରାଇବି ॥ ୨୩ ॥
ଶୁଣିଣ ଦଶରଥ ଯେ ଚମକାର ହୋଇଲା ।
ଚସାଣ ଲାଗିଲା ପ୍ରାଣ ଉଛୁଗିଲା ॥ ୨୪ ॥
ପାତ୍ର ଅମାତ୍ୟେ ବଶିଷ୍ଠେ ଯେତେ ଥିଲେ ।
ଦଶରଥଙ୍କୁ ଘେନି ନବରକୁ ଗଲେ ॥ ୨୫ ॥
ଦଶରଥଙ୍କୁ ଯେ ସାଷ୍ଟାମ କରାଇ ।
ବଶିଷ୍ଠ ମହାମୁନି କହିଲେ ବୁଝାଇ ॥ ୨୬ ॥
ଯଦ୍ୟପି ମୁହାଂସ କରିବୁ କୁମରଙ୍କୁ ନ ଦେବୁ ।
ଅକାଳ ସମୁଦ୍ରେ ସୂର୍ଯ୍ୟବଂଶ ବୁଡ଼ାଇବୁ ॥ ୨୭ ॥

---

୧୩. ତନୟି—ତନଇ । ୧୫. ବିଖ୍ୟାତ—ବିକ୍ଷାତ । କଉଶିକ—କଉଶିକେ(କ)
୧୭. ଲୁଚି—ଲୁଚ । ୧୯. ତହିଂର ଅର୍ଦ୍ଧ—ଦୋହୋର ଅର୍ଥ(ଖ) ।
୨୧. ବିଖ୍ୟାତ—ବିକ୍ଷାତ । ୨୨. ଦିଅସି—ଦସୁସି । ୨୪. ଚମକାର—ଚମତ୍କାର ।

ଶୁଣିଲ ନାହିଁଙ୍କି ବିଶ୍ୱାମିତ୍ରଙ୍କ ତେଜ ।
କୋପେ ନାଶ କଲ ମୋହର ଶତେକ ତନୁଜ ॥ ୨୮ ॥
ବିଶ୍ୱାମିତ୍ର କୋପ ଯେ ପ୍ରଳୟର ବହ୍ନି ।
କିଛି ନ ବିଗୁର ଦେଖି ପୁତ୍ର ବେନି ॥ ୨୯ ॥
ଦଶରଥ କହନ୍ତି ରାମଙ୍କୁ ଦେଇତ ସତ ନ କରଇ ।
ବନନ୍ତକୁ କେମନେ ପଠାଇବି ଅଳ୍ପ ବାଳକରେ ॥ ୩୦ ॥
ରାମଲକ୍ଷ୍ମଣ ଯେ ଧନୁରେ ଗୁଣ ଦେଉଥିଲେ ।
ଧନୁଶର ଦେନି ପିତାର ସନ୍ନିଧେ ହୋଇଲେ ॥ ୩୧ ॥
ନୃପତିର ବଦନ ଅମରଷ ଦେଖନ୍ତି ।
କଡରେ ହୋଇ ରାମ ପିତାଙ୍କୁ ପୁଚ୍ଛନ୍ତି ॥ ୩୨ ॥
କିସ ନିମନ୍ତେ ଦେବ ବିସ୍ମୟେ ତୋହର ମନ ।
ଦଶ(ରଥ) କହଇ ଶୁଣସି ନନ୍ଦନ ।
ବିଶ୍ୱାମିତ୍ର ବୋଲଇ ତାହାର ଆଶ୍ରମକୁ ନେବି ।
ତୋତେ ବନ ପଠାଇ ମୁହିଁ କେସନେକ ଦେହ ଧରିବି ॥୩୪॥
ନ ଦେଇଲି ତୋତେ ଆଜ ସେ ମୋତେ ମାରୁ ।
ଯାବତ କାଳକୁ କଥା ପୁରାଣେ ପ୍ରଚରୁ ॥ ୩୫ ॥
ଶ୍ରୀରାମ କହନ୍ତି ପିତା କିମ୍ପା ହୋଉ ବିମନ ।
ମାତୁଳ ରାଜ୍ୟକୁ ଯାଇ ଆଣ ଭ୍ରାତ ଶତ୍ରୁଘନ ॥ ୩୬ ॥
ମୁନିଙ୍କର ତୁଲେ ଆମ୍ଭେ ବନକୁ ଯେବେ ଯିବୁ ।
ଏହାହୁଁ ଭାଗ୍ୟ ଆବର କିସ ଅରଜିବୁ ॥ ୩୭ ॥
ଆମ୍ଭେ ବାଳୁତ ମୁନି ନାଶ କରିବ ଯେବେ ।
ପୁରାଣେ ଏ କଥା ରହିବ କିନା ଏବେ ॥ ୩୮ ॥
ହେ ତାତ ମନେ ନ ବିଗୁର ଆନ କିଛି ।
ଆମ୍ଭକଇ ପଠାଇ ଥାସି ମନ ମୁଚ୍ଛି । ୩୯ ॥
ମୁନିଙ୍କର ତୁଲେ ଆମ୍ଭନ୍ତ ପଠାଅ ।
ମନ ଦମ୍ଭ କରି ନିଶ୍ଚିନ୍ତେ ରହିଥାଅ ॥ ୪୦ ॥
ରାମର ବଚନ ଶୁଣି ଦଶରଥ ମହୀପତି ।
ରାମଲକ୍ଷ୍ମଣଙ୍କୁ ଦେଇଲେ ବିଶ୍ୱାମିତ୍ରଙ୍କର କତ ॥ ୪୧ ॥
ଦାନ୍ତେ ତୃଣ ଧରି ଦଇନ କରଇ ।
ହେ ମୁନି ପ୍ରାଣହୁଁ ଅଧିକ ଏ ବାଳୁତ କୁମାରଇ ॥ ୪୨ ॥
ତୋହର ତୁଲେଣ ଏ ଗୋଡ଼ାଇଣ ଥିବେ ।
ବନ ଘୋର କନ୍ଦର କେମନ୍ତେ ଗୁଳିବେ ॥ ୪୩ ॥

---

୩୨. ଅମରଷ—ଅଥିର(ଖ) । ୩୩. ବିସ୍ମୟେ—ବିସ୍ମୟେ ।

ସୁମନ୍ତ୍ର ଯିବେ କି ରଥ ଆରୋହି ।
ଦଶରଥ ଆଜ୍ଞା ଦେଲ ସାରଥିଙ୍କି ଚାହିଁ ॥ ୪୪ ॥
ରଥ ମଣ୍ଡିଣ ଏହିକ୍ଷଣି ନେଇ ଆସ ।
ବିଳମ୍ବିତ ଘୋର ମୋହର ଶ୍ରୀରାମେ ପାଇବେ ତ୍ରାସ ॥ ୪୫ ॥
ନୃପତିର ଆଜ୍ଞା ପାଇଣ ସାରଥି ।
ରଥ ବାହିଣ ମୁନିଙ୍କର ସନ୍ନିଧିକୁ ଆଇଲ ତତ୍କ୍ଷଣ ॥ ୪୬ ॥
ରଥ ଦେଖିଣ କହନ୍ତି ମହାମୁନି ।
ରଥରେ ଆମ୍ଭର ହୋଇ କସ ପ୍ରୟୋଜନ ॥ ୪୭ ॥
ଆମ୍ଭର କଥା ଶୁଣିଥାଅ ମହୀପାଳ ।
ଶ୍ରୀରାମ ନ ପାଇବେ ତୋହର ବେଳ ବୁଲିବ ॥ ୪୮ ॥
ନାନା ଶସ୍ତ୍ରଶାସ୍ତ୍ର ନିର୍ଜିତ କରାଇବ ।
ଦୁଇପୁତ୍ର ତୋହର ସନ୍ନିଧେ ସମର୍ପିବି ॥ ୪୯ ॥
କଣ୍ଟାଖୋଚ ଏହାର ପାଦରେ ନ ବାଜିବ ।
ଶିର କେଶରେ କିଛି ପ୍ରମାଦ ନ ପଡ଼ିବ ॥ ୫୦ ॥
ଶୁଣିଣ ଦଶରଥ ଭ୍ରାନ୍ତି ଛାଡ଼ିଲା ।
ରାମଲକ୍ଷ୍ମଣଙ୍କୁ ବିଶ୍ୱାମିତ୍ର ନେଇଗଲା ॥ ୫୧ ॥
ଅନ୍ତଃପୁର ଭିତରେ ଦଶରଥର ରାଣୀ ।
ରୋଦନ କଲେ ରାମର ବନକୁ ଗଲା ଶୁଣି ॥ ୫୨ ॥
ନଗ୍ର ନଗରୀ ବିକଳେ ଚଳିତ ।
ସବୁନ୍ତ ପ୍ରବୋଧି ବୁଝାଇଲେ ବ୍ରହ୍ମାସୁତ ॥ ୫୩ ॥
ଭରଥ ଶତ୍ରୁଘନେ ଯେ ମଉଳାଘରେ ଥିଲେ ।
ସେହି ଦିନ ଆସି ପିତା ସନ୍ନିଧେ ମିଳିଲେ ॥ ୫୪ ॥
ଦୁଇ ପୁତ୍ରନ୍ତ ସହୁଁ ଦଶରଥ ଦେଖିଲା ।
ବିଶ୍ୱାମିତ୍ର ରାମଲକ୍ଷ୍ମଣଙ୍କୁ ନେଲା ବୋଲି ଦୁଇପୁତ୍ରଙ୍କୁ କହିଲା ॥ ୫୫ ॥
ପିତାର ବଚନ ଶୁଣିଲେକ ସହୁଁ ।
ବନକୁ (ଭରଥ) ଶତ୍ରୁଘନ ସଜ ହୋଇଲେକ ତହୁଁ ॥ ୫୬ ॥
ବଶିଷ୍ଠେ ଯେମନ୍ତେ ଭରଥ ଶତ୍ରୁଘନଙ୍କୁ ବୁଝାଇଲେ ।
ଶ୍ରୀରାମର ଆଗେ ଲବକୁଶେ ଗୀତେଣ ଗାଇଲେ ॥ ୫୭ ॥
ଶୁଣିଣ ଶ୍ରୀରାମ ବଶିଷ୍ଠଙ୍କ ମୁଖ ଚାହିଁ ।
ଏ ମୁନି ସ୍ୱରୂପ କଥାତ କହନ୍ତି ଦୁଇଭାଇ ॥ ୫୮ ॥
ମୁହିଁ ଯେବଣ ବଚନ ପିତାକୁ କହିଲି ।
ସେ ବଚନ ଏହାର ମୁଖରେ ଶୁଣିଲି ॥ ୫୯ ॥

---

୫୩. ପ୍ରବୋଧି—ଓପ୍ରଧି(କ) ।

ବଶିଷ୍ଠେ କହନ୍ତି ତଲ୍ଲୟେ କରି ଶ୍ରୁତି ।
ସ୍ମରଣ ବାକ୍ୟ ବେଳେ ଆନ କଥା ନ ପ୍ରକାଶସି ॥ ୬୦ ॥
ମହତ କୁଳେ ଜାତ ଏ ବେନି ଛଉ ।
ଆନରେ ଶକ୍ୟେକ ପାରଇ ଶାସ୍ତ୍ର କହି ॥ ୬୧ ॥
ବଶିଷ୍ଠେ ଶ୍ରୀରାମ କଥା ଯହୁଁ ହୋଇଲେ ।
ମଉନ ହୋଇ ଲବକୁଶେ ବସିଲେ ॥ ୬୨ ॥
ବଶିଷ୍ଠେ କହନ୍ତି ଶୁଣ ଦୁଇ ଭ୍ରାଥ ।
ରାମଲକ୍ଷ୍ମଣ ଜେନ ଯେ ଗଲେ ଗାଧିସୁତ ॥ ୬୩ ॥
ଏଥିର ଚରିତ୍ର କହସି ବୃତ୍ତାନ୍ତ ।
ତହୁଁ ଲବକୁମର ସୁସ୍ୱରେ ନାଦ ହୁଂକାରି ॥ ୬୪ ॥
କୁମରେ କହନ୍ତି ସାବଧାନେ ଶୁଣ ।
ବିଶ୍ୱାମିତ୍ରଙ୍କ ସଙ୍ଗେ ଯେ ଗଲେ ରାମଲକ୍ଷ୍ମଣ ॥ ୬୫ ॥
ନର୍ଦ୍ଦର ବନସ୍ତେ ହୋଇଲେ ପ୍ରବେଶଇ ।
ବନଜବନ୍ତୁ ଦେଖି ଦୁଇ ଭାଇ ହରଷଇ ॥ ୬୬ ॥
ସିଂହ ଶାର୍ଦ୍ଦୂଳ ହସ୍ତୀ ଯୂଥଯୂଥଇ ।
ବ୍ୟାଘ୍ର ଭାଲୁକ ବରେହା ବହୁତଇ ॥ ୬୭ ॥
ପକ୍ଷୀଜନ୍ତୁହି ସୁସ୍ୱରେ ଭାଷନ୍ତି ।
ଶୁଣି ରାମଲକ୍ଷ୍ମଣେ ଆନନ୍ଦମସ୍ତେ ମତି ॥ ୬୮ ॥
ଗହନ ବନେ ଗଲେ ଲଂଘି ଯେବଣ ବାଟେ ।
ପର୍ବତକ ଗୁଢ଼ ଦୁଃସହ ବନମାର୍ଗେ ॥ ୬୯ ॥
ବନର ମାଲେ ଯେ ବନସ୍ତେ ପଡ଼ିଥିଲେ ।
ଶ୍ରୀରାମଙ୍କୁ ଦେଖି ସେ ମୁକତ ହୋଇଲେ ॥ ୭୦ ॥
ଯହୁଁ ଯେବଣ କୃତ କଲେକ ରଘୁପତି ।
ଶ୍ରୀରାମର ଆଗେ ଲବକୁଶେ କହନ୍ତି ॥ ୭୧ ॥
ଅଯୋଧ୍ୟା ଲୋକେ ଯେ ନ ଜାଣିଣ ଥିଲେ ।
କୁମରଙ୍କର କହନ୍ତେ ସମସ୍ତେ ହେ ଶୁଣିଲେ ॥ ୭୨ ॥
ନର୍ମଦା ତୀର୍ଥେ ପ୍ରବେଶ ହୋଇଲେ ଯହୁଁ ।
ସ୍ନାହାନ ସାରି (ଶିବ) ଦର୍ଶନ କଲେ ତହୁଁ ॥ ୭୩ ॥
ପ୍ରସନ୍ନେ ଚନ୍ଦ୍ରଶେଖର ଦେଲେ ବର ।
କଲ୍ୟାଣ ହେଉ ତୁମ୍ଭଙ୍କୁ ଋଷି ବର ସୁନ୍ଦର ॥ ୭୪ ॥

---

୬୧. ଶକ୍ୟେ—ସଙ୍ଖ୍ୟେ(କ), ବେଳେ(ଖ) । ୬୬. ହରଷଇ—ନରସଇ ।
୬୭. ଭାଲୁକ—ଭାଲୁନ୍ତ(କ) । ୭୪. ହେଉତୁମ୍ଭଙ୍କୁ—ହୁଅସି ତୁହି(କ) ।

ପୃଥ୍ୱୀର ଭାରଭର କରସି ଉସ୍ୱାସ ।
ଦୁଷ୍ଟର ଅସୁରନ୍ତ ସମରେ କର ନାଶ ॥
ବର ଦେଇ ଈଶ୍ୱର ଶୂନ୍ୟେ ବଳେ କରି ଗଲେ ।
ତହୁଂ ବିଶ୍ୱାମିତ୍ର ଧନୁଶାସ୍ତ୍ର କହିଲେ ॥ ୭୬ ॥
ଯେମନ୍ତେ ମନ୍ତ୍ରବିଦ୍ୟା ରାମଲକ୍ଷ୍ମଣଙ୍କୁ କହିଲେ ଗାଧିସୁତ ।
ପଥରେ ବିସ୍ତାରି କହନ୍ତି ସୀତାର ଦେବ ପୁତ୍ର ॥ ୭୭ ॥
ନର୍ମଦାରୁ ବାହାର ହୋଇ ମିଥିଳାକୁ ଯାନ୍ତେ ।
ଶ୍ରୀରାମ ମୁଖ ଚାହିଁ କହନ୍ତି ବିଶ୍ୱାମିତ୍ରେ ॥ ୭୮ ॥
ତାଡ଼କା ନାମେ ଦୁଷ୍ଟର ଅସୁରୀ ।
ପୂର୍ବକାଳେ ସେ ତାଡ଼କା ଦନୁଜ ମନୋହାରୀ ॥ ୭୯ ॥
କୋଟିପଞ୍ଚ ସେ ମନୁଷ୍ୟ ଭକ୍ଷଇ ।
ଦେବାସୁର ନରେ ତାହାକୁ ନୋହଇ ସମକକ୍ଷଇ ॥ ୮୦ ॥
ପୂର୍ବ ସମୁଦ୍ର ତୀରେଣ ଅମ୍ଭେ [ଯେବେ] ଯିବା ।
ଛଅ ମାସେ ମୋହର ଆଶ୍ରମେ ହୋଇବା ॥ ୮୧ ॥
ସଳଖ ବାଟେ ଗଲେ ତିନ ଦିନେ ହୋଇବା ପ୍ରବେଶ ।
କେମନ୍ତେ ଯିବା ଅସୁରେ କରିବେ ପ୍ରାଣନାଶ ॥ ୮୨ ॥
ଶ୍ରୀରାମ କହନ୍ତି ତିନ ଦିନ ବାଟେ ଯିବା ।
କେଡ଼େ ପ୍ରତାପୀ ଅସୁର ତାହା ମୋତେ ଦେଖାଇବା ॥ ୮୩ ॥
ଶ୍ରୀରାମ ବଚନ ଶୁଣିଣ ମୁନିବର ।
ରାମଲକ୍ଷ୍ମଣନ୍ତ ଘେନି ହୋଇଲେ ଆଗୁସାର ॥ ୮୪ ॥
ମନୁଷ୍ୟ ଦେଖି ତାଡ଼କା ରାକ୍ଷସୀ ।
ଶ୍ରୀରାମ ସନ୍ନିଧେ ମିଳିଲା ଆସି ॥ ୮୫ ॥
ଆକାଶମାର୍ଗେ ଲାଗୁଅଛି ଶିର ।
ପଛେ କନିଷ୍ଠ ଭାଇ ଦୁଇ କୁମାର ॥ ୮୬ ॥
ତାହାଙ୍କର ତେଜ ମୂର୍ତ୍ତି ଯହୁଁ ବିଶ୍ୱାମିତ୍ର ଦେଖିଲେ ।
ଶ୍ରୀରାମର ମୁଖ ଚାହିଁ ତରେଣ କହିଲେ ॥ ୮୭ ॥
କିଂପା କ୍ଷତ୍ରିବର ତବଦ ହୋଇଲୁ ।
ଆମ୍ଭର ବଚନ ନ କରି ଯେ ଏ ବାଟେ ଅଇଲୁ ॥ ୮୮ ॥
ଯେବଣ ମନ୍ତ୍ରବାଣ କହିଅଛଇ ତୋତେ ।
ଧନୁ ଧରି ସେ ମନ୍ତ୍ର ପଢ଼ି ନାରାଚ ବିନ୍ଧ ତୁରିତେ ॥ ୮୯ ॥
ବିଶ୍ୱାମିତ୍ରଙ୍କର ବଚନ ଶୁଣିଣ ରାମଚନ୍ଦ୍ର ।
କୋଦଣ୍ଡ ଆମନ୍ତ୍ରନ କଲେ ସତ୍ୟସନ୍ଧ ॥ ୯୦ ॥

---

୭୬. ଶାସ୍ତ୍ର—ସସ୍ତ୍ର । ୯୦. ସତ୍ୟସନ୍ଧ—ରଘୁବଂଶଚନ୍ଦ୍ର (କ) ।

ଅକ୍ଷୋହିଣି ଧାଇଁ ଆସନ୍ତେ ଅସୁରୀ ।
ମୁଣ୍ଡକୁ ବଜ୍ରବାଣ ବିନ୍ଧିଲେ ଗୃପଧାରୀ ॥ ୯୧ ॥
ମହାବଡ଼ା ବାଣ ସହୁଁ ମୁଣ୍ଡରେ ବାଜିଲା ।
ମଦନ ମାତ୍ରେ ରାକ୍ଷସୀ ମୂର୍ଚ୍ଛଣ ପଡ଼ିଲା ॥ ୯୨ ॥
ଚେତନା ପାଇ ଉଠିଲାକ ଯେବେ ।
ବାବଲବାଣ ରାମ ଧଇଲେକ ତେବେ ॥ ୯୩ ॥
କଟିଶ୍ରେଣୀ ବାବଲଶର ପଡ଼ିଲା ।
ଦୁଇ ଖଣ୍ଡ ହୋଇ ଦନୁଜ ଶିର ଛିଡ଼ିଗଲା ॥ ୯୪ ॥
ସୁବାହୁ ମାରୁଚ ତାହାର ଦୁଇ ସୁତ ।
ଅଶ୍ୱ ରୂପ ଧରି ସେ ଧାଇଁଲେ ତୁରିତ ॥ ୯୫ ॥
ବୃଷଭ ରୂପ ସହୁଁ ରାମଚନ୍ଦ୍ର ଦେଖିଲେ ।
ପବନା ଶରେ ମାରୁଚଙ୍କ ସନ୍ଧି କଲେ ॥ ୯୬ ॥
ସେ ବାଣ ମାରୁଚ ସହି ନ ପାରିଲା ।
ସମୁଦ୍ରକୂଳେ ପଡ଼ି କୂପେ ଲୁଚିଲା ॥ ୯୭ ॥
ପବନାବାଣ ସୁବାହୁ ନ ପାରିଲା ସଂବରି ।
ମୂର୍ଚ୍ଛଣ ପଡ଼ିଲା ସେ ସମୁଦ୍ରର ପାରି ॥ ୯୮ ॥
ବାଲମୋଚନ ନାମେ ତାଡ଼କାର ସାନଭ୍ରାଥ ।
ବାବଲ ପେଷି ରାମ ଛେଦିଲେ ତାହାର ମାଥ ॥ ୯୯ ॥
ଅଯୋଧ୍ୟା ନରନାଥ ତାଡ଼କା ବଧ ଶୁଣି ।
ହରଷ ହୋଇଲେ ଅମୃତପାନ ଜାଣି ॥ ୧୦୦ ॥
ଶ୍ରୀରାମଙ୍କୁ ପ୍ରଶଂସା କରନ୍ତି ସର୍ବଜନ ।
ଧନ୍ୟ ମହିମା ତୋହର କଉଶଲ୍ୟାନନ୍ଦନ ॥ ୧୦୧ ॥
ବାଳୁତକାଳେ କଲୁ ଏତେକ ଅସୁର ବଧ ।
କ୍ଷତ୍ରି ଦର୍ପ ତୋହର ଜଗତେ ପ୍ରସିଦ୍ଧ ॥ ୧୦୨ ॥
ଏବେ ସେ ଭେଟ ନାଥ ଅମାତ୍ୟକୃତ୍ୟ କଲୁ ।
ସୀତା ନବାସିଣ ଅପଣ କପାଂ କଲୁ ॥ ୧୦୩ ॥
ଶୁଣିଣ ଶ୍ରୀରାମ ଲଲାଟେ ଦେଲେ ହସ୍ତ ।
ବଶିଷ୍ଠେ କହନ୍ତି ସ୍ଥିର ହୋଇ ଶୁଣ ସମସ୍ତ ॥ ୧୦୪ ॥
ବାକ୍ୟ ବଖାଣନ୍ତେ ଆନକଥା ନ କହି ।
ବଶିଷ୍ଠଙ୍କର ବଚନେ ସମସ୍ତେ ତୂନ ହୋଇ ॥ ୧୦୫ ॥

---

୯୬. ପବନାଶରେ—ଯୋଆଶ୍ୟରେ(କ) ; ମାରୁଚ—ମାରିଚ ; ସନ୍ଧି—ବଧ(କ) ।
୯୭. କୂପେ—କମ୍ଭରେଣ ।  ୯୮. ସଂବରି—ସମ୍ଭାଳସରି(କ) ।
୧୦୩ ନବାସିଣ—ବନାଶି(କ) ।

## ଅହଲ୍ୟା ଶାପ ମୋଚନ

ବହୁଂ କହନ୍ତି ସୀତାର ବେନି ସୁତ ।
ତାଡ଼କା ମାରି ବହୁଂ ଗଲେ ରଘୁନାଥ ।। ୧ ।।
କପାଳ ବିମୋଚନ ତୀର୍ଥେ ସ୍ନାହାନ କରି ।
ଶ୍ରୀରାମଲକ୍ଷ୍ମଣ ଯେନି ଗଲେ ତପଗୃଣ୍ଣା ।। ୨ ।।
ମିଥିଳାପୁରେ ପ୍ରବେଶ ହୋଇଲେ ।
ଶ୍ରୀରାମଙ୍କୁ ସମସ୍ତ ଋଷିଗଣେ ଦେଖିଲେ ।। ୩ ।।
ବିଶ୍ୱାମିତ୍ରଙ୍କୁ ପ୍ରଶଂସା କରନ୍ତି ଋଷିଗଣମାନେ ।
ତୋହରେ ଦେଖିଲୁ ପ୍ରତକ୍ଷେ ଭଗବାନେ ।। ୪ ।।
ଏବେ ଯାଇ ଯାଗ ଆରୋପଣ କରିବା ।
ଷନ୍ଦି ବର ସୁନ୍ଦରଙ୍କୁ ଯାଗ ଦ୍ୱାର ରଖାଇବା ।। ୫ ।।
ଶୁଣି ବିଶ୍ୱାମିତ୍ର ଯାଗ ଆରୋପିଲେ ।
ମାର୍ଗଶିର ଶୁକ୍ଳ ଏକାଦଶୀକି ଅନୁକୂଳ ଯେନିଲେ ।। ୬ ।।
ଯାଗ ଦୁଆରେ ଶ୍ରୀରାମ ଲକ୍ଷ୍ମଣଙ୍କୁ ରଖାଇଲେ ।
ବେଦ ଶବଦ ଶୁଣି ଅସୁରେ ଅଇଲେ ।। ୭ ।।
ଯାଗର ଅଗ୍ନି ଜଳବାଇଲେ ଯହୁଁ ।
ଅସୁରଙ୍କର ଝୁଲେ ରାମ ଯୁଦ୍ଧ କଲେ ତହୁଁ ।। ୮ ।।
ସମସ୍ତ ଅସୁରେ ବିନାଶ ହୋଇଲେ ।
ଦଶବିଂଶ ମାତ୍ର ପଳାଇଣ ଗଲେ ।। ୯ ।।
ନରିଙ୍କେ ମୁନିମାନେ ଦିଅନ୍ତି ଆହୁତ ।
ଶ୍ରୀ ଭଗବତେ ବାସୁଦେବର ନାମ ଉଚ୍ଚରନ୍ତି ।। ୧୦ ।।
ଜଗ୍ନ ସମାପତ କରି ପୂର୍ଣ୍ଣ ଆହୁତ ଦେଲେ ।
ଶ୍ରୀରାମକୁ କ୍ଷେମେ କଲ୍ୟାଣ ବାଞ୍ଛିଲେ ।। ୧୧ ।।
ସମସ୍ତ ମୁନିବରେ ନିଷ୍ଟନ୍ତେ ରହନ୍ତି ।
ବନମାର୍ଗେ ଅସୁରଙ୍କୁ ଶଙ୍କା ନ କରନ୍ତି ।। ୧୨ ।।
ନନ୍ଦନୀ ହକାରି ବିଶ୍ୱମିତ୍ର ମହାଋଷି ।
ଶରୀର ଆଉଂସି କହନ୍ତି ଆଶ୍ୱାସି ।। ୧୩ ।।
ଦଶରଥ ତନୟେ ରାମଲକ୍ଷ୍ମଣ ଦୁଇଭାଇ ।
କିସ ଇଚ୍ଛା କରନ୍ତି ତାହା ଦେବୁ ଆଣି ।। ୧୪ ।।
ଶୁଣିଣ କାମଧେନୁ ହରଷ ହୋଇଲା ।
ଅମୃତ ଜାଣି ରାମଲକ୍ଷ୍ମଣଙ୍କୁ ଦେଲା ।। ୧୫ ।।

---

୨. କପାଳବିମୋଚନ—କପିଳବନେ(କ) । ୧୦. ଭଗବତେ ବାସୁଦେବର—ଭଗବାନ(ଖ) । ୧୧. କଲ୍ୟାଣ—କଲ୍ଣ ।

ଝଣ୍ଡକ୍ଷୀର କଦଳୀ ବିବିଧ ପଦାର୍ଥ ।
ଭୁଞ୍ଜିଣ ସନ୍ତୋଷ ଦଶରଥଙ୍କ ଦୁଇ ସୁତ ॥ ୧୬ ॥
ଏସନେକେ ରାମଲକ୍ଷ୍ମଣ ଥାନ୍ତି ମିଥିଳା ପୁରେ ।
ସେ କଥା ଜାଣିଲେ ଗଉତମ ମୁନିବରେ ॥ ୧୭ ॥
ସଦାନନ୍ଦର ନାମେ ଗଉତମର ଶିଷି ।
ବିଶ୍ୱାମିତ୍ରର ତହିଂ ତାହାକୁ ଦେଲେ ପେଷି ॥ ୧୮ ॥
ମୋହର କଥା ବିଶ୍ୱାମିତ୍ରଙ୍କୁ କହିବୁ ।
ରାମଲକ୍ଷ୍ମଣ ସହିତେ ତାହାକୁ ଘେନ ଆସିବୁ ॥ ୧୯ ॥
ଗୁରୁ ବଚନେ ସଦାନନ୍ଦ ଅଇଲା ।
ବିଶ୍ୱାମିତ୍ର ମହର୍ଷିଙ୍କର ଆଗରେ କହିଲା ॥ ୨୦ ॥
ମୋହର ତହିଂକି ପଠିଅଇଲେ ତାତ ।
ରାମଲକ୍ଷ୍ମଣ ଘେନ ଆସସି ସ୍ୟାଧିସୁତ ॥ ୨୧ ॥
ସଦାନନ୍ଦ ବଚନ ଶୁଣି ବିଶ୍ୱାମିତ୍ର ମହାମୁନ୍ୟ ।
ଶ୍ରୀରାମଲକ୍ଷ୍ମଣ ମୁଖ ଗୃହିଂ କହନ୍ତି ତପୋଧନ ॥ ୨୨ ॥
ବ୍ରହ୍ମାର ତନୟ ବାବୁ ହେ ଗଉତମ ମହର୍ଷି ।
ତୋତେ ଦେଖିବା ନିମନ୍ତେ ଦୂତ ଦେଲେ ପେଷି ॥ ୨୩ ॥
ଏହାର ସଙ୍ଗେ ଗୌତମ ଆଶ୍ର(ମ)କଇ ଯିବା ।
ବ୍ରହ୍ମଋଷି ଗଉତମଙ୍କୁ ଦର୍ଶନ କରିବା ॥ ୨୪ ॥
ଶୁଣିଣ ଶ୍ରୀରାମ ଲକ୍ଷ୍ମଣ ହରଷ ହୋଇଲେ ।
ବିଶ୍ୱାମିତ୍ର ତୁଲେ ସଦାନନ୍ଦ ସହିତେ ଗଲେ ॥ ୨୫ ॥
ବାଟେ ଯେବଣ ନଦୀରେ ସ୍ନାହାନ କଲେ ରଘୁପତି ।
ସଭାରେ ଲବକୁଶେ ବିସ୍ତାର କହନ୍ତି ॥ ୨୬ ॥
ଗଉତମଙ୍କ ଆଶ୍ରମେ ପ୍ରବେଶ ହୋଇଲେ ।
ବିଶ୍ୱାମିତ୍ର ସଦାନନ୍ଦ ଗଉତମଙ୍କ ସନିଧିକୁ ଗଲେ ॥ ୨୭ ॥
ଗଉତମଙ୍କ ଘରେ ପାଷାଣେ ପଡ଼ିଥିଲା ।
ରାମପାଦ ଲଗି ଅହଲ୍ୟା ମୁକତ ହୋଇଲା ॥ ୨୮ ॥
ବିମାନ ଆରୋହଣ ଗଲେକ ଗଗନେ ।
ଅମର ସଭାରେ ବସିଲା ବାରସ୍ୱର୍ଗ ଭୁବନେ ॥ ୨୯ ॥
ତହିଂ ରାମଲକ୍ଷ୍ମଣ ପର୍ଣ୍ଣକୁଟୀରେ ପଶନ୍ତି ।
ଗଉତମଙ୍କର ଚରଣ ଧରି ପ୍ରଣମିତ କରନ୍ତି ॥ ୩୦ ॥
ଯେବଣ (କଥା) ଗଉତମ ରାମଲକ୍ଷ୍ମଣଙ୍କୁ କହିଲେ ।
ଲବକୁଶେ ଚରିତ୍ର ଗୀତେଣ ଗାଇଲେ ॥ ୩୧ ॥

---

୨୬· ପଦଟି ଖ ପୋଥିରେ ନାହିଁ । ୨୯. ଭୁବନେ—ତିନିଭୁବନେ ।

ଶୁଣିଣ ଶ୍ରୀରାମ [ବଶିଷ୍ଠ] ଋଷିର ମୁଖଃ ଗୃହ୍ୱଂ ।
ଷନ୍ଧି ବରସୁନ୍ଦର କହ୍ନ ହରଷ ଭାବ ହୋଇ ॥ ୩୨ ॥
ହେ ମୁନି ଯେବଣ ବଚନ ମୋତେ ଗଉତମ କହ୍ନିଲେ ।
ଏହୁ କ୍ରମରେ ତାହା କେମନ୍ତେ ଜାଣିଲେ ॥ ୩୩ ॥
ସେ କଥା ଲକ୍ଷ୍ମଣ ଯେ ନ ଶୁଣିଲା ମୋର ଭାଇ ।
ଅମୃତ ସଙ୍ଗୀତ ରାମାୟେଣ କହ୍ନିଲେ ଏହି ॥ ୩୪ ॥
ବଶିଷ୍ଠେ କହନ୍ତି ଯେ କାବ୍ୟ କରନ୍ତି ଉକତ ।
ତାହାଙ୍କର କଣ୍ଠେ ବସିଥାନ୍ତି ବ୍ରହ୍ମାଙ୍କର ଦୋହିତ ॥ ୩୫ ॥
ତିନି ଭୁବନର ଚରିତ୍ର ଜାଣଇଂ
ତାହାର ମୁଖେ ବଖାଣ କରୁଥାଇ ନାରାୟେଣେଇ ॥ ୩୬ ॥
ଯେବଣ ଗୁରୁ ଏହାଙ୍କୁ ପଢ଼ାଇଲା ଶାସ୍ତ୍ର ।
ପ୍ରତକ୍ଷେ ସେ ମହାତମା ବହ୍ନି ବଧାତ ॥ ୩୭ ॥
ଏ କୁମର ଦୁଇଗୋଟି ବଡ଼ ଜଣଙ୍କର ପୁତ୍ର ।
ଆନର ବୋଲେ କି କରି ହୁଅଇ ଉଜାତ ॥ ୩୧ ॥
ଶାସ୍ତ୍ର ବଖାଣ ସରିଲେ ଏହାକଇ ପୁଚ୍ଛିବା ।
କେ ଏହାର ଅଛି ପିତା ମାତା ବୁଝିବା ॥ ୩୯ ॥
ଏବେ ସ୍ଥିର ହୋଇ ଶୁଣ ସାବଧାନ ଚତ୍ତେ ।
ତୁନି ହୋଇ(ଥା)ଲେ ଲବକୁଶେ ପୁଣି ଗୀତ ଗାଇଲେ ଶୁଣନ୍ତି ସମସ୍ତେ ॥୪୦॥
ଗୌତମ ରାମଲକ୍ଷ୍ମଣଙ୍କୁ ଅପୂର୍ବ ଦ୍ରବ୍ୟ ଦିଅନ୍ତି ।
ବିଶ୍ୱାମିତ୍ର ସହିତେ ଏକ ଠାବେ ବିଶ୍ରାମନ୍ତି ॥ ୪୧ ॥
ରାତ୍ରେ ରାମ ବିଶ୍ୱାମିତ୍ରଙ୍କୁ ପୁଚ୍ଛିଲା ।
ହେ ମୁନି ପାଷାଣ ମାଡ଼ନ୍ତେ କନ୍ୟାଏକ ହୋଇଲା ॥ ୪୨ ॥
ବିଶ୍ୱାମିତ୍ର କହ୍ନିଲେ ଗୌତମଙ୍କର ଭାର୍ଯ୍ୟା ।
ଅହଲ୍ୟା ନାମେଣ ତିନିଭୁବନ ମୋହିନୀ ॥ ୪୩ ॥
ଇନ୍ଦ୍ର ଆଦିତ୍ୟ ତା ରୂପ ଦେଖିଲେ ।
କଇତବ ଚରିତେ ରମଣ ରଙ୍ଗ କଲେ ॥ ୪୪ ॥
ଦୁହିଙ୍କର ବୀର୍ଯ୍ୟେ ଉପୁଜିଲା ଦୁଇ ପୁତ୍ରେ ।
ବଡ଼ ସଂଜାତ ସ୍ୱରୂପ ତେଜବନ୍ତେ ॥ ୪୫ ॥
ସେ ପୁତ୍ରକଇ ଗଉତମେ ଶରଧା କରନ୍ତେ ।
ଅଞ୍ଜନା କୁମାରୀ କହିଲା ରାଗ ଚତ୍ତେ ॥ ୪୬ ॥

---

୩୨. କହ୍ନ ହରଷ—କୁହରସ । ୩୫. କାବ୍ୟ—ବାକ୍ୟ(ନ) । ୪୦. ଦିଅନ୍ତି—ଦିସନ୍ତି ।

ସେ ପୁଷ୍ପ ମୁନି ଜଳେଣ ପକାଇଲେ ।
ରାଗେ ବ୍ରହ୍ମରୂଷି ବିଷାଦ ହୋଇଲେ ॥ ୪୭ ॥
ଅହଲ୍ୟାକୁ କୋପେ ଶାପ ଦେଲେ ଗଉତମେ ।
ସେ ସେ ଏଥେ ହୋଇଲକ ପାଷାଣେ ॥ ୪୮ ॥
ବିଶ୍ୱାମିତ୍ରେ ରାମର ଆଗେ କହିଲେକ ଯାହା ।
ଲବକୁମର ସଭାରେ ଅଗତେ ଗାଇଲେକ ତାହା ॥ ୪୯ ॥
ଯେବଣ ପଦ ଲବ ଅବା ନ ପାରଇ କହି ।
କୁଶକୁମର ତାହା ଅର୍ଥ କରି ବୁଝାଇ ॥ ୫୦ ॥
ଅହଲ୍ୟା ଶ୍ୟାପ ପାଇବାର କାଳେ ।
ଅଞ୍ଜନାକୁ ଶ୍ୟାପ ଦେଲକ ସେ ବେଳେ ॥ ୫୧ ॥
ତେଣୁ ସେ ଅଞ୍ଜନାକୁ ପବନ ରମଣ କଲା ।
ତାହାର ଗର୍ଭେ ହନୁମନ୍ତ ଉପୁଜିଲା ॥ ୫୨ ॥
ଆଦି ଅନ୍ତ କରି କହନ୍ତି ଲବକୁଶ ।
ଶୁଣିଣ ଅଯୋଧ୍ୟା ଲୋକେ ସମସ୍ତେ ହରଷ ॥ ୫୩ ॥
ଦୁଇ ପହର ଶିଖେ ଆଦିତ୍ୟ ଅଛୁ ରହି ।
କ୍ଷୁଧା ପିପାସ କାହାର ଦେହେ ନାହିଂ ॥ ୫୪ ॥

## ରାମାଦିଙ୍କ ବିବାହ

ଲବକୁଶେ କହନ୍ତି ଗୌତମଙ୍କର ଆଶ୍ରମ ।
ପାଞ୍ଚ ଦିବସ ବିଶ୍ରାମ କଲେକ ଶ୍ରୀରାମ ॥ ୧ ॥
ଗୌତମ ମୁନିଙ୍କର କଲ୍ୟାଣ ଘେନି ବିଶ୍ୱାମିତ୍ର ସହିତେ ।
ମିଥିଲପୁରକଇ ଆସନ୍ତି ତୁରିତେ ॥ ୨ ॥
ଯେବଣ ଠାବରେ ବିଶ୍ରାମ କରନ୍ତି ।
ବିଶ୍ୱାମିତ୍ର ମୁନି ନାନା ଶାସ୍ତ୍ର କହନ୍ତି ॥ ୩ ॥
ଆସିଯାଇ ହୋଇଲ ତିନି ମାସ ।
ମିଥିଲପୁରେଣ ହୋଇଲେ ପ୍ରବେଶ ॥ ୪ ॥
ଅନେକ ଗୌରବେ ତିନି ଦିବସ ରହିଲେ ।
ରାମଲକ୍ଷ୍ମଣଙ୍କର କଥା ଜନେକ ଶୁଣିଲେ ॥ ୫ ॥
ବିଶ୍ୱାମିତ୍ର ତହିଂକ ପଠିଆଇଲେ ଦୂତ ।
ରାମଲକ୍ଷ୍ମଣଙ୍କୁ ଘେନି ମୋହର କଟକ ଆସ ତୁମ୍ଭେ ତୁରିତ ॥ ୬ ॥

---

୪୭. ପାଷାଣେ—ଭସ୍ମେ(କ) । ୫୧. ଅଞ୍ଜନାକୁ ପବନ ରମଣ କଲା—ଅଞ୍ଜନା ଅନ୍ଧ ବଧିର ହୋଇଲ(ଖ) । ୫୩. ଦେହେ—ହୃଦେ(କ) । ୪. ହୋଇଲେ—ହୋଇଲ(କ) । ୫. ଦିବସ—ବରଷ(ଖ) ।

ଶୁଣି ବିଶ୍ୱାମିତ୍ର ହରଷ ହୋଇଲେ ।
ରାମଲକ୍ଷ୍ମଣଙ୍କୁ ବସାଇ କହିଲେ ॥ ୭ ॥
କହିଦେବି ମଣ୍ଡଳେ ଜନକ ମହାଋଷି ।
ମହାଧାର୍ମିକ ସେ ତପୀ ରଘୁବଂଶୀ ॥ ୮ ॥
ସୀତାଦେବୀ ନାମ ଯେ ତାହାର କୁମାରୀ ।
ରୂପେଣ ପଟାନ୍ତର ନାହିଁ ତିନିପୁରୀ ॥ ୯ ॥
ଧନୁ ଏକ ଅଛି ଅକଳାତ ବୋଲି ନାମ ।
କେବଣ ହି ରାଜା ଏ ଆମଣ୍ଠିବାକୁ ନୋହିଲେକ କ୍ଷେମ ॥୧୦॥
ଶତେବାରଇ ସ୍ୱୟମ୍ବର କରଇ ।
କେହି ଧନୁ ଧରି ଆମଣ୍ଠି ନ ପାରଇ ॥ ୧୧ ॥
ଜନେକ ମହାଋଷି କରିଛନ୍ତି ସତ୍ୟ ।
ଯେ ଧନୁ ଆମଣ୍ଠି ପାରଇ ଦେବଇ ଦୋହିତ ॥ ୧୨ ॥
ଯହୁଁ ସେ ଧନୁ ଆମଣ୍ଠି ନ ପାରନ୍ତି ।
କାହାକଇ ସେ କନ୍ୟା ବିଭା ନ ହୁଅନ୍ତି ॥ ୧୩ ॥
ଶୁଣିଣ ଶ୍ରୀରାମ ହରଷେ ମୁନିଙ୍କି ଚାହିଁ ।
ବୋଲନ୍ତି ବଚନ ସେ ରଘୁକୁଳ ସାଇଁ ॥ ୧୪ ॥
ଚାଲ ମହାଋଷିଏ ଜନେକ ରାଜ୍ୟକଇ ଯିବା ।
କେମନ୍ତେଟି ଅକଳାତ ବଳ ଧନୁ ଦେଖିବା ॥ ୧୫ ॥
ଶ୍ରୀରାମର ବଚନେ ଗାଧିର ନନ୍ଦନ ।
ତତକ୍ଷଣେ ଦୂତ ତୁଲେ କରନ୍ତି ଗମନ ॥ ୧୬ ॥
ରାମଲକ୍ଷ୍ମଣ ମୁନିଙ୍କର ତୁଲେ ଗଲେ ।
ଜନେକ ରାଜ୍ୟରେ ପ୍ରବେଶ ହୋଇଲେ ॥ ୧୭ ॥
ଜନେକ ଋଷିକି ଓଲଗନ୍ତି ଦୁଇଭାଇ ।
ବିଶ୍ୱାମିତ୍ରଙ୍କୁ ଜନେକ କୋଳାଗ୍ରତ କରଇ ॥ ୧୮ ॥
ଶ୍ରୀରାମଙ୍କୁ କଲ୍ୟାଣ କରନ୍ତି ଜନେକ ମହାମୁନ୍ୟ ।
ଅମୃତମୟେ ପଦାର୍ଥ ଦେଲେକ ଭୋଜନ ॥ ୧୯ ॥
ସ୍ୱୟମ୍ବର ଜନେକ କଲେ ଯେବଣ ବାଟେ ।
କହନ୍ତି ଲବକୁଶେ ଶ୍ରୀରାମର ଆଗେ ॥ ୨୦ ॥
ଜନେକ ରାଜାନ୍ତି ନିମନ୍ତ୍ରଣ କଲି ।
ନାନା ବିଚିତ୍ର [କରି] ନବର ମଣ୍ଡିଲି ॥ ୨୧ ॥

---

୧୦. ଅକଳାତ—ଅକଳବଳ(ଖ) । ୧୭-୧୮. ଏହି ଦୁଇ ପଦ ବଦଳେ କ ପୋଥିରେ ପଦେ :—ତାହାକୁ ସେ କନ୍ୟା ବିଭାଏଣ ହୁଅଇ । ଶୁଣିଣ ଶ୍ରୀରାମ ହରଷେ ମୁନିଙ୍କି କହି ॥ ୧୫. ଅକଳାତବଳ—ଅକଳ(ଖ) । ୨୧. ଜନେକ ରାଜାନ୍ତି—କନେକରାଜାତ ।

ଅନେକ ରାଜାଏ ରାବଣ ସହିତେ ।
ସିଂହାମଣ୍ଡଳେ ମିଳିଲେ ତୁରିତେ ॥ ୨୨ ॥
ସ୍ଫଟିକର ମଣ୍ଡପେ ସୀତାକୁ ବସାଇଲେ ।
ଅକଳିତ ବଳଧନୁ ସଭାର ସନ୍ନିଧିକୁ ଆଣିଲେ ॥ ୨୩ ॥
ଦେଉଳ ଭିତରେ ସେ ଧନୁ ଭରି ଥାନ୍ତି ।
ଧନୁ ଦେଖି ରାମ ବିଶ୍ୱାମିତ୍ରଙ୍କୁ ପଚାରନ୍ତି ॥ ୨୪ ॥
ଧନୁର କଥା ଯେ ବିଶ୍ୱାମିତ୍ର କହିଲେ ।
ଲବକୁଶେ ତାହା ଗୀତେଣ ଗାଇଲେ ॥ ୨୫ ॥
ଶୁଣିଣ ହରଷ ସଭା ସର୍ବଜନ ।
ବହୁତ ଆନନ୍ଦିତ ବଶିଷ୍ଠ ତପୋଧନ ॥ ୨୬ ॥
ଶ୍ରୀରାମ ଲକ୍ଷ୍ମଣ ଶୁଣନ୍ତି ତହିଁର କଥା ।
ଆଶ୍ଚର୍ଯ୍ୟ ହୋଇ ଅଛୁ ଭରତ ମହାରଥୀ ॥ ୨୭ ॥
ସେ ଧନୁ କେହି ଟେକି ନ ପାରନ୍ତି ।
ଦେଉଳେ ଉଠି ରାମ ଧନୁକୁ କାଢ଼ନ୍ତି ॥ ୨୮ ॥
ରାବଣକୁ ରାମଚନ୍ଦ୍ର କହିଲେକ ଯାହା ।
ସଭାରେ ଲବକୁଶେ ଗୀତେଣ ଗାଇଲେ ତାହା ॥ ୨୯ ॥
ରାବଣ ଧନୁ ଯେ ଆମଞ୍ଚି ନ ପାରିଲା ।
ଦଶମୁଖେ ତାହାର ରୁଧିର ବାହାରିଲା ॥ ୩୦ ॥
ଶୁକସାରଣେ ଲଙ୍କାକୁ ଘେନି ରାବଣକୁ ନେଲେ ।
ସେ ଧନୁ ରାମଚନ୍ଦ୍ର ଆମଞ୍ଚନ କଲେ ॥ ୩୧ ॥
ଯାନ୍ତିକ ଆମଞ୍ଚନ ଧନୁ ସହିଲା ।
ଆରକ ଯାନ୍ତ ଉଚ୍ଛୁଡ଼ନ୍ତେ ମଧ୍ୟରୁ ଭଗ୍ନ ହୋଇଲା ॥ ୩୨ ॥
ଧନୁଭଗ୍ନ ଦେଖି ଜନେକର ଦୁଲାଳୀ ।
ଶ୍ରୀରାମର ଗଳାରେ [ଦେଲେ] ଜନେକର ପଦ୍ମମାଳୀ ॥ ୩୩ ॥
ଅଯୋଧ୍ୟାକୁ ଶ୍ରୀରାମ ପଠାଇଲେ ଦୂତ ।
ବିଭା ଯୋଗ ଲଗ୍ନେ ଆସିବେ ଦଶରଥ ॥ ୩୪ ॥
ବଶିଷ୍ଠ ମହର୍ଷି ଅମାତ୍ୟ ତୁଲେ ।
ବ୍ରହ୍ମମେଧ ଲୋମପାଦ ଶୁଣିଣ ଆଇଲେ ॥ ୩୫ ॥
ଅନେକ ରଥ ଗଜ ଅଶ୍ୱ ସଇନ ।
ଭରଥ ଶତ୍ରୁଘନ ଦୁଇ କୁମାରନ୍ତ ଘେନି ॥ ୩୬ ॥
ନାନା ବାଦ୍ୟ ନିଶାଣ ଶବଦେ ।
ପର୍ବତ ଚୂର ହୋଇଲା ସୈନ୍ୟର ପାଦେ ॥ ୩୭ ॥

୨୨. ସିଂହାମଣ୍ଡଳେ—ମାହାମଣ୍ଡପେ(ଖ) । ୩୩. ଜନେକର ପଦ୍ମମାଳ—ବନମାଳ(ଖ) । ୩୭. ବାଦ୍ୟ—ଦ୍ରବ୍ୟ(କ) ।

ଜନେକ ରାଜାଙ୍କୁ ଜଣାଇଲେ ଜଗୁଆଳି ।
ଦଶରଥ ରାଜାଙ୍କୁ ନ ପାରିବୁ ସମ୍ଭାଳି ॥ ୩୮ ॥

ବହୁତ ସୈନ୍ୟ ଘେନି ନୃପତି ଅଛଇ ।
ଶୁଣିଣ ଜନେକ ରାଜା ହୋଇଲେ ହରଷଇ ॥ ୩୯ ॥

ବୋଇଲ ସିଦ୍ଧ୍ୟ ଅର୍ଣ୍ଣ ମୋହର ସମସ୍ତଙ୍କୁ ଦେବ ।
ଯେ ଯିସ ଇଚ୍ଛଇ ସବୁରି ମନ ରଞ୍ଜିବ ॥ ୪୦ ॥

ଏତେକ କହିଣ ପାଗ ସମ୍ବାହିଲ ।
ବିଚିତ୍ର ବିଧାନେ ନବରଂ ମଣ୍ଡିଲି ॥ ୪୧ ॥

ସନ୍ନିଧ୍ୟେ ହୋଇଲ ଯହୁଁ ଦଶରଥ ରାଜନ ।
ପାଛୋଟି ଅଇଲେ ଜନେକ ମହାମୁନ୍ୟ ॥ ୪୨ ॥

ଦଶରଥଙ୍କୁ ଘେନି ନବରେ ଧୀରେଧୀରେ ଗମଇଂ ।
ବଶିଷ୍ଠ ମହାମୁନିଙ୍କ କରଇ ସମ୍ଭାଷଇ ॥ ୪୩ ॥

ସମସ୍ତ ସୈନ୍ୟଙ୍କୁ ଭୋଜନବିଧି ଦେଲା ।
ଯେ ଯାହା ଇଚ୍ଛିଲ ସେ ତାହା ପାଇଲ ॥ ୪୪ ॥

ରାମଲକ୍ଷ୍ମଣ ବଶିଷ୍ଠଙ୍କୁ ନମସ୍କାର କରନ୍ତି ।
କଲ୍ୟାଣ କରନ୍ତି ବଶିଷ୍ଠ ମହାଯତି ॥ ୪୫ ॥

ଅଇଶ୍ୱର୍ଯ୍ୟ ହୁଅସି ବିପୁଳ ଭୋଗ ଭୁଞ୍ଜି ।
ଭୁଜବଳେ ପୃଥ୍ୱୀର ଦୁଷ୍ଟ ଦନୁଜ ଗଞ୍ଜି ॥ ୪୬ ॥

ତଦଅନ୍ତରେ ପିତାର ସନ୍ନିଧାନଇ ଗଲେ ।
ଚରଣ ଧରି ଓଳଗି ସ୍ତୁତିଲେ ॥ ୪୭ ॥

ଦଶରଥ ପୁତ୍ରଙ୍କଇ ତୋଳି ଧଇଲ ।
ଶରୀର ଆଶ୍ୱାସି ଶିରେ ଚୁମ୍ବ ଦେଲ ॥ ୪୮ ॥

ଭରଥ ଶତ୍ରୁଘନେ ଶ୍ରୀରାମଙ୍କୁ ପ୍ରଣମ୍ୟ କରନ୍ତି ।
ଗୁରୁ ଭାଇ ପିତାର ସନ୍ନିଧେ ବସନ୍ତି ॥ ୪୯ ॥

ପୁତ୍ରଙ୍କୁ ଯିସ କଥା କହିଲେ ଦଶରଥ ।
ଗୀତେଣ ଗାବନ୍ତି ସୀତାର ବେଦ ସୂତ୍ର ॥ ୫୦ ॥

ଏଥୁ ଅନନ୍ତରେ ଦଶରଥ ମହାରାଜା ।
ବିଶ୍ୱାମିତ୍ରଙ୍କୁ କଲେ ଅନେକ ପାଦପୂଜା ॥ ୫୧ ॥

କରଯୋଡ଼ି କହଇ ଶୁଣସି ତପୋଧନ ।
ତୋହର ପ୍ରସାଦେ ମୁଂ ହୋଇଲି ପୁଣ୍ୟମାନ ॥ ୫୨ ॥

---

୩୮. ଜଗୁଆଳି—ଜୁଆଳି । ୪୦. ଯେ ଯିସ—କେ କସ(କ); କେ କୃସ(ଖ) ।
୪୧. ପାଗ—ଯାଗ(କ) । ୫୦. ଯିସ—କସ(କ) ।

ବିଶ୍ୱାମିତ୍ର କହନ୍ତି ପୁଣ ତୋହର ମହାଯୋଧୀ ।
ଭୁଜବଳେ ଲଭିଲୁ ତ୍ରିବଟଚନ୍ଦନାଧି ॥ ୫୩ ॥
ଏବେ ଶ୍ରୀରାମଙ୍କୁ ବିଭା ଯୋଗ କର ।
ଏମନେକ କଥା ଶୁଣି କହଇ ଜନେକ ମୁନିବର ॥ ୫୪ ॥
ଛନ୍ଦି ପଣେ ସେ ଶ୍ରୀରାମ ପାଇଲେ ଜାମେନୀ ।
ମୋହର ଘରେ ଅଛନ୍ତି ତିନି ନନ୍ଦନୀ ॥ ୫୫ ॥
ସୁଶ କନ୍ୟା ଦଶରଥର ସୁଶପୁତ୍ରଙ୍କୁ ଦେବି ।
ଯାବତ ଜାନଙ୍କୁ କଥା ବୁଝାଇବି ॥ ୫୬ ॥
ଶୁଣିଣ ଦଶରଥ ଯେ ପରମ ଆନନ୍ଦ ମନ ।
ଜନେକଙ୍କୁ ପ୍ରଶଂସା କରନ୍ତି ସକଳ ତପୋଧନ ॥ ୫୭ ॥
ସୁଶ କନ୍ୟାଙ୍କୁ ସୁବେଶ କରାଇଲେ ।
ଗ୍ରୁସ୍ତାମଣ୍ଡପ ତଳେ କୁମାରୀନ୍ତି ବସାଇଲେ ॥ ୫୮ ॥
ସୀତାକୁ ବିଭା ହୋଇଲେ ଛନ୍ଦି ବର-ସୁନ୍ଦର ।
ଅଳକାକୁ ବିଭା ହୋଇଲେ କକୟୀର କୁମାର ॥ ୫୯ ॥
ଊର୍ମିଳା ନାମେ ଯେବଣ କୁମାରୀ ।
ସେ କନ୍ୟାର ହସ୍ତ ଲକ୍ଷ୍ମଣ ବୀର ଧରି ॥ ୬୦ ॥
ତାହା ନାମେ କନ୍ୟା ତ୍ରିଭୁବନ ମୋହନୀ ।
ଶତ୍ରୁଘନଙ୍କୁ ସେ କନ୍ୟା ବିଭା କଲେ ସେ ମୁନି ॥ ୬୧ ॥
ଜନେକ ମହର୍ଷି ବରକନ୍ୟାଙ୍କର ହସ୍ତେ ।
ପାଞ୍ଚ ପାଞ୍ଚ କୋଟି ରତ୍ନ ଦେଲେ ହରଷ ଚିତ୍ତେ ॥ ୬୨ ॥
ବାଦ ମୁଦ୍ରା କଙ୍କଣ ଅନେକ ବସ୍ତ୍ର [ରତ୍ନ ଜଡ଼ିତ] ।
ରତ୍ନ ଜଡ଼ିତ ଶଙ୍ଖ ସୁବର୍ଣ୍ଣର ପାତ୍ର ॥ ୬୩ ॥
ଶ୍ରୀରାମଙ୍କୁ ଜନେକ ମୁନି ଯିସ ପ୍ରବୋଧି କହିଲା ।
ଲବକୁମର ତାହା ଗୀତେଣ ଗାଇଲା ॥ ୬୪ ॥
ଯେବଣ ପଦ ଅଳପ ଅନ୍ତର ହୁଅଇ ।
କୁଶକୁମର ତାହା ଅର୍ଥ କରଣ ଦିଅଇ ॥ ୬୫ ॥
ଶୁଣିଣ ଶ୍ରୀରାମ ବଶିଷ୍ଠଙ୍କର ମୁଖ ଚାହିଁ ।
[ଭୋ ମୁନି ସ୍ୱରୂପ କଥା କହନ୍ତି ବେନି ଭାଇ] ॥ ୬୬ ॥
ବଶିଷ୍ଠେ ହସ୍ତ ପଠାରନ୍ତି ଆସି ସ୍ଥିର ହୋଇ ।
[ଶୁଣି ରାମ ଯେ ରହିଲେ ଥିର ହୋଇ ॥ ୬୭ ॥
ବାକ୍ୟ ବଖାଣିଲ୍ ବେଳେ ଆନ କଥା ନ କହି ।
ଏହା ଶୁଣି ରାମ ଯେ ହରଷ ହୋଇ ରହି] ॥ ୬୮ ॥

୬୪· ଯିସ—କସ(କ) । ୬୭. ପଠାରନ୍ତି—ସମାର୍ଜନ୍ତି(କ) ।

ଲବକୁମର କହଇ ବଖ ସାର ସମସ୍ତେ ଭୋଜନ କଲେ ।
ଗୃରକନ୍ୟାନ୍ତ ଦେନ ଗୃରବରେ ମହୁଶେଯ୍ୟାରେ ସୁତଲେ ।।୬୯।।
ଶ୍ରୀରାମ ସୀତା ଶେଯ୍ୟାରେ ଯାହା କହିଲେ ।
ସଭାର ମଧ୍ୟେ ତାହା ଲବକୁଶେ ଗାଇଲେ ।। ୭୦ ।।
ଏସନେକ ରଯ୍ଣୀ ହୋଇଲା ପ୍ରଭାତ ।
ବରକନ୍ୟାନ୍ତ ଦେନ ଆସଇ ଦଶରଥ ।। ୭୧ ।।
ବିଶ୍ୱାମିତ୍ର କହନ୍ତି ଦଶରଥ ମୁଖ ଗୃହିଂ ।
ରାମଲକ୍ଷ୍ମଣଙ୍କୁ ଦେନ ଯେ ଅଇଲଇ ମୁହିଂ ।। ୭୨ ।।
ପୁଅଙ୍କୁ ଦେନ ଆସିବାବେଳେ ବିଷାଦ ହୋଇଲୁ ।
ପୁନ୍ୟର ବେଳେ ଏବେ ଗୁଣ ବଧୂ ପାଇଲୁ ।। ୭୩ ।।
ପୁଅ ବଧୂ ଦେନ ଏବେ ରାଜ୍ୟକୁ ଯାସି ।
ଏତେ କହି ବିଶ୍ୱାମିତ୍ରେ ତାହାର ସ୍ଥାନକୁ ପ୍ରବେଶି ।। ୭୪ ।।

## ପରଶୁରାମ ପରାଭବ

ଦଶରଥ ରାଜା ଅଯୋଧ୍ୟାକୁ ଆସନ୍ତେ ।
ଘୋର ତୂର ବାଦ୍ୟ ଶବଦ ଶୁଭନ୍ତେ ।। ୧ ।।
ନନ୍ଦନ ନାମ ତାହାର [ଏକ] ଗିରିବର ।
ଧନ୍ୟ ଉଠିଲେ ସେ ପର୍ବତ ଶିଖର ।। ୨ ।।
ନାନା ବାଦ୍ୟେ ସେ ଶବଦ ଉଚ୍ଛୁଳିଲା ।
ଶୁଣିଣ ପ୍ରଶୁରାମ କୋପେଣ ଧାଇଲା ।। ୩ ।।
ବାଟରେ ପ୍ରଶୁରାମ ଓଗାଳିଲେ ଆସି ।
ଦେଖିଣ ସୈନ୍ୟ ଯେ ପଳାଇଲେ ତ୍ରାସି ।। ୪ ।।
ବଶିଷ୍ଠଙ୍କୁ ଦେନ ଯେ ଦଶରଥ ଗଲା ।
ପ୍ରଶୁରାମ ପଯୃରେ ଗଡ଼ପାଳି ସୁତଲା ।। ୫ ।।
ବଶିଷ୍ଠେ ପ୍ରଶୁରାମକୁ ଯେତେ କଥା କହିଲେ ।
ସଭାରେ ଲବକୁଶେ ତାହା ଗୀତେଣ ଗାଇଲେ ।। ୬ ।।
କୋପେ ପ୍ରଶୁଧର ବୋଇଲେ ପ୍ରଚଣ୍ଡ ।
ମିଥିଲପୁରେ ଭଗ୍ନ କେ କଲା ଈଶ୍ୱରକୋଦଣ୍ଡ ।। ୭ ।।
ଦନ୍ତେ ତୃଣ ଧରି ଦଶରଥ ଲୋଟଇ ପ୍ରଶୁଧର ପଯୃର ତଳେ ।
ସନ୍ଧ୍ୟେ ମିଳିଲେ ରାମ ଏସନେକର ବେଳେ ।। ୮ ।।

---

୬୯. ଗୃରବରେ—ଗୃରଘରେ(କ) । ୭୧. ରଯ୍ଣୀ—ଜନନ୍ନ(କ) । ୭୩. ପୁନ୍ୟର ବେଳେ—ବିଦ୍ୟା ପୁଣ୍ୟ ବଳେ(ଖ) । ୨. ନନ୍ଦନ—ଚନ୍ଦନ(ଖ) ; ନାମ—ନାମେ
୫. ଗଡ଼ପାଳି—ନଉଗ୍ରୁଳି(ଖ), ଗୋଡପାଳି(କ) । ୭. ବୋଇଲେ—ବଳେଣ(କ)

କୋପ କଲେ ରାମ ପିତାର ଭଗତ ଦେଖି ।
ମର୍ମ କଥା କହିଲେ ଔପ୍ରଧ ଉପେକ୍ଷି ॥ ୯ ॥
ବ୍ରାହ୍ମଣ ହୋଇଣ କିପାଇଁ ଶସ୍ତ୍ର ଧରୁ ।
ରାଜାଙ୍କର ସଙ୍ଗେ କମ୍ପା ବିବାଦ କରୁ ॥ ୧୦ ॥
ଶ୍ରୀରାମ ବଚନେ ପ୍ରଶୁରାମ କୋପ କଲା ।
ଆପଣାର ଶଉର୍ଯ୍ୟ ପ୍ରତାପ କହିଲା ॥ ୧୧ ॥
ତେଣେସେ ଏହାକୁ ନ କରଇ ପ୍ରାଣଘାତ ॥ ୧୨ ॥
ଶ୍ରୀରାମେ କହନ୍ତି ତୁ କସ କହୁ ପଉରୋଷ ।
ଆଜ ସେ ତୋହର କଥା କରିବି ପ୍ରକାଶ ॥ ୧୩ ॥
ବ୍ରାହ୍ମଣ ହୋଇ ତୁ କ୍ଷତ୍ରି ବୋଲାଉ ।
ବୃଧ ବୟସେ ମୋହର ଆଗେ ଗର୍ବ ବହୁ ॥ ୧୪ ॥
ମୋହର ପିତା ତୋହରେ ଭଗତ ।
ଦେଖିଣ ଦୟା ତୋର ନ ବମଇ ପାପମତ ॥ ୧୫ ॥
ଏଥର ପ୍ରାଭବ କରି ପାରଇ ତୋତେ ।
ଧର୍ମ ନାଶ ଯିବ ଯେ ବ୍ରାହ୍ମଣ ମାରନ୍ତେ ॥ ୧୬ ॥
ଶୁଣି ପ୍ରଶୁରାମ ପ୍ରଜ୍ୱୋଳିତ କୋପେ ।
ଶ୍ରୀରାମ ମୁଖଂ ଗୃହଂ କହଇ ମହାତାପେ ॥ ୧୭ ॥
ଜନେକ ଧନୁ ଭଞ୍ଜି ପ୍ରତଗ୍ୟାଂ ବହିଲୁ ।
ସବୁନ୍ତି ଏକ ପ୍ରାସ୍ଥେକ ତୁଟିଲୁ ॥ ୧୮ ॥
ବହୁତ କାଳର ଧନୁ ସେ ଘୁଣ ଲଗିଥିଲା ।
ତୋହର ଆମର୍ଷନ୍ତେ ସେ ତେମନ୍ତ ଭାଜିଲା ॥ ୧୯ ॥
ମୋହର ଧନୁରେ ଯେବେ ଦେଇପାରୁ ଗୁଣ ।
ତେବେ ଜାଣଇ ନା ତୋହର ବଡ଼ପଣ ॥ ୨୦ ॥
ଶୁଣି ହଂସି କହନ୍ତି ଦଶରଥର ସୁତ ।
ଦେଖିବା ଧନୁ ବୋଲି ପସାରଲେ ବାମ ହସ୍ତ ॥ ୨୧ ॥
ରାମର ବଚନ ଯହୁଂ ପ୍ରଶୁରାମ ଶୁଣିଲେ ।
ବିଜୟ ଧନୁ ନେଇ ରାମର କରେ ଦେଲେ ॥ ୨୨ ॥
ରତ୍ନ ସିଂହାସନେ ବିଜୟ କରିଛନ୍ତି ରଘୁପତି ।
କୋଳେଣ ଶୋହଇ ସୀତଯ୍ୟା ମହାସତୀ ॥ ୨୩ ॥

---

୯. ଭଗତ—ବିନୟ(ଖ) । ୧୪. ବୃଧ—ବୃଧା । ୧୬. ପ୍ରାଭବ କରି—ପ୍ରଭବ କହି । ୧୯. ଘୁଣ—ଗୁଣ । ୨୧. ଶୁଣି—ମୁହିଂ(କ) । ୨୨. ବଚନ—ବଳ ; ରାମର—ପ୍ରସୁରାମର(କ) । ୨୩-୨୪. ଏ ଦୁଇ ପଦ ଖ ପୋଥିରେ ନାହିଁ ।

ଶ୍ରୀରାମ କନେଷ୍ଟ ଭ୍ରଥ (ଲକ୍ଷ୍ମଣ) ଶତ୍ରୁଘନ ।
ଭରତଃ ସହିତେ ସେ ଅଛନ୍ତି ସନ୍ନିଧାନ ।। ୨୪ ।।
ଧନୁରେ ଗୁଣ ଦେଲେ ରାମ ବାମ କରେ ନେଇ ।
ଆମଞ୍ଚନ କଲେ ଆକର୍ଣ୍ଣ ପୂରେଇ ।
ବେନି ଖଣ୍ଡ ହୋଇ ଧନୁ ଭାଙ୍ଗିଯାଇ ।। ୨୫ ।।
ଦେଖିଣ ପ୍ରଶୁରାମ ହୋଇଲେ ଚକିତ ।
ଏ ସେ ଶ୍ରୀରାମ ପ୍ରତକ୍ଷେ ଅଚ୍ୟୁତ ।। ୨୬ ।।
ଯିସ ଭ୍ରାନ୍ତି ପାପ [ମୋହର] ହୃଦରେ ଥିଲା ।
ଶ୍ରୀରାମର ମୁଖ ଦେଖି ଦୂରିତ ଛୟେ ଗଲା ।। ୨୭ ।।
ଧନୁବାଣ ଦେଇ ମନ୍ତ୍ରବିଦ୍ୟା ଦେଇ ।
ତୀର୍ଥ ସଙ୍ଗମେ ପ୍ରଶ୍ନୁ ତପ କରି ଯାଇ ।। ୨୮ ।।
ତହୁଁ ଦଶରଥ ଗମଇ ହରଷେ ।
ପ୍ରବେଶ ହୋଇଲେ ଅଯୋଧ୍ୟା ନିଜ ଦେଶେ ।। ୨୯ ।।
ନବରେ ପଶନ୍ତେ କୁବୁଜାକୁ ମାଇଲେ ।
ବିସ୍ତାରି କରି ତାହା ଲବକୁଶେ କହିଲେ ।। ୩୦ ।।
ସଭାଲୋକେ ଶୁଣନ୍ତି ସ୍ୱରୂପ ବଚନ ।
ଧନ୍ୟ ଧନ୍ୟ କରନ୍ତି ବଶିଷ୍ଠ ମହାମୁନ୍ୟ ।। ୩୧ ।।
କୁବୁଜାକୁ ମାରି ନବରେ ପଶନ୍ତେ ରଘୁପତି ।
ପୁନି ବଧିନ୍ତି ଦେଖନ୍ତି ଦଶରଥର ଯୁବତୀ ।। ୩୨ ।।
ଶ୍ରୀରାମ ଜନନୀର ଚରଣେ ପ୍ରଣମିତ ହୁଅନ୍ତି ।
ସକଳ ମାତାଏ କଲ୍ୟାଣ ବାଞ୍ଛନ୍ତି ।। ୩୩ ।।
ଚାରି ପୁତ୍ରଙ୍କର ଚାରି ଭାରିଯା ଦେଖିଲେ ।
ଅତି ହରଷେ କୃତକୃତ ହୋଇଲେ ।। ୩୪ ।।
ଯେତେ କଥା କହିଲ ଦଶରଥଙ୍କର ଯୁବତୀ ।
ଶ୍ରୀରାମର ଆଗେ ଲବକୁଶେ କହନ୍ତି ।। ୩୫ ।।
ପୁତ୍ରନ୍ତି ପେନି ଦଶରଥ ରାଜନ ।
ନିଷ୍ଟନ୍ତେ ରାଜ୍ୟ କରଇ ଅଯୋଧ୍ୟା ଭୁବନ ।। ୩୬ ।।

---

୨୪. ଭ୍ରଥ -ଭ୍ରାଥ । ୨୫. ପ୍ରଥମ ପାଦଟି ଖ ପୋଥିରେ ନାହିଁ ଓ ତୃତୀୟ ପାଦଟି କ ପୋଥିରେ ନାହିଁ । ଖ ପୋଥିରେ ୨୫ ପଦ ପରେ ୨୩ ଓ ୨୪ ପଦ ଲେଖା ହେବା ପରେ ଲେଖା ଅଛି :—ଧନୁରେ ଗୁଣ ଦେଲେ ରାମ ବାମ କର ଚଳାଇ । ବେନିଖଣ୍ଡ ହୋଇ ଧନୁ ଭାଜି ଯାଇ ।। ଧନୁ ଆମଞ୍ଚ କଲେ ଆକର୍ଣ୍ଣ ପୁରେଇ । ଦେଖି ସକଳ ଜନ ହୋଇଲେ ହରଷଇ ।। ୨୯. ନିଜ—ନଗ୍ର(ଙ୍ଖ) । ୩୪. ହରଷେ—ଯତନେ(କ) ।

ଲୋମପାଦ ଗୃହମେଧ ବିଭାକରାଇ ଯାଇଥିଲେ ।
ତାହାଙ୍କର ରାଜ୍ୟକଇ ପଡ଼ଶ୍ରେଷ ପାଇ ଗଲେ ।। ୩୭ ।।
ମାରକଣ୍ଡେ କହନ୍ତି ଶୁଣ ପଣ୍ଡୁସୁତ ।
ଶ୍ରୀରାମର ଆଗେ ରାମାୟେଣ କହନ୍ତି ସୀତସ୍ତ୍ରୀର ବେନିସୁତ ।। ୩୮ ।।
ନଗ୍ର ନରନାରୀ ଅସ୍ଥାନର ତଳେ ।
ରାମାୟେଣ ଶୁଣନ୍ତି ଆନନ୍ଦମତି ଭୋଳେ ।। ୩୯ ।।
ଆଦିତ୍ୟ ଶିଖେ ଦୁଇ ପ୍ରହର ଅଛି ରହି ।
ସବୁରି ଚକ୍ଷୁ ଅଛି କୁମରଙ୍କର ତହିଂ ।।
ଜସ୍ମୁରୁ ବିଷ୍ଣୁ ବୈକୁଣ୍ଠେ ଯାର ବାସ ।
ବିଷ୍ଣୁ ସୁମରଲେ ଦୁରିତ ବିନାଶ ।। ୪୧ ।।
ଜଳେ ବିଷ୍ଣୁ ସ୍ଥଳେ ବିଷ୍ଣୁ ବିଷ୍ଣୁ ନାମ ଧରି ।
ବିଷ୍ଣୁ ନାମ ସୁମରଲେ ଅସୁର ମାୟାରୁ ତରି ।। ୪୨ ।।
ବିଷ୍ଣୁ ସୁମରନ୍ତି ସୁର ସିଦ୍ଧ ମୁନି ।
ବିଷ୍ଣୁ ନାମ ସୁମରଲେ ଜନ୍ମ ନୁହଇ ଯୋନି ।। ୪୩ ।।
ବିଷ୍ଣୁ ସୁମର ନରେ ବିଷ୍ଣୁ ନାମ ଉଚ୍ଚର ।
ବିଷ୍ଣୁ ନାମ ସୁମରଲେ ଭବସାଗରୁ ହୋଇବ ପାର ।। ୪୪ ।।
ବିଷ୍ଣୁର ଚରିତ ଶ୍ରବଣେ ଶୁଣଇଂ ଯେ ଜଣ ।
ବିଷ୍ଣୁର କଥା ଶୁଣିଲେ ସେ ପାପକୁ କସ ଘ୍ରାଣ ।। ୪୫ ।।
ବିଷ୍ଣୁ ସୁମରଲେ କୃତଦୋଷ ନାଶଇ ।
ବିଷ୍ଣୁନାଥର ପ୍ରସନେ କହଇ ସିଦ୍ଧେଶ୍ୱର ଦାସଇ ।। ୪୬ ।।

## ରାମଙ୍କ ବନଗମନ

ଏଥୁ ଅନନ୍ତରେ ଶୁଣ ପଣ୍ଡୁସୁତ ।
ଶ୍ରୀରାମର ଆଗେ କହନ୍ତି ଲବକୁଶ ବେନିଭ୍ରାଥ ।। ୧ ।।
ଅକଣ୍ଟକ ରାଜ୍ୟ କରଇ ଦଶରଥ ନୃପତି ।
ଶ୍ରୀରାମର ତେଜ ଜଗତେ ବିଖ୍ୟାତି ।। ୨ ।।
ପୁତ୍ରଙ୍କର ସଉନ୍ଦର୍ଯ୍ୟ ସନ୍ତୁଂ ଦଶରଥ ଦେଖିଲା ।
ମନ୍ତ୍ରୀ ଅମନାତ୍ୟେ ଦେଖି ବିଚାରିଲା ।। ୩ ।।

---

୩୭. ବିଭାକରାଇ—ବିଭାକଇ(ଖ) । ୩୮. ରାମାୟେଣ—ରାବାୟେଣ(ଖ) ।
୩୯. ରାମାୟେଣ—ରାବାୟେଣ(ଖ) ; ଆନନ୍ଦମତି—ଆନନ୍ଦମସ୍ତେ(କ) ।
୪୬. ନାଶଇ—ନଶଇ ; ବିଷ୍ଣୁନାଥର ପ୍ରସନେ କହଇ—ବିଷ୍ଣୁ ସୁମରଇ(ଖ) ।
୧-୪. ଖ ପୋଥିରେ ପ୍ରଥମ ପଦର ଆରମ୍ଭର କିଛି ଅଂଶ ପରେ ଚତୁର୍ଥ ପଦର ଶେଷାଂଶ ଲେଖାଅଛି । ୨. ବିଖ୍ୟାତି—ବିଖ୍ୟା ।

ବଶିଷ୍ଠ (କହନ୍ତି) ଅନୁକୂଳ ଶ୍ଳୋକ ।
ରାଜ୍ୟରେ ଅଭିଷେକ କରାଇବି ମୋହର ଜ୍ୟେଷ୍ଠ ତନୁଜ ॥ ୪ ॥
ବଶିଷ୍ଠେ କହନ୍ତି ଅନୁକୂଳ ବିଧାନ ।
ତହୁଁ ଶ୍ରୀରାମେ ହକାରନ୍ତି ପିତାର ସନ୍ନିଧାନ ॥ ୫ ॥
ରାଜ୍ୟପାଳଣ କଥା କହିଲେ ନୃପତି ।
ପ୍ରଜା ପାଳିଲେ ସେ ଧର୍ମ ବିବର୍ଦ୍ଧତି ॥ ୬ ॥
ଅଶ୍ୱମେଧ ଯାଗ ଗଜଘଣ୍ଟ ଦାନ ।
ପ୍ରଜା ପାଳିବାକୁ କେହି ନୋହିଲେ ସମାନ ॥ ୭ ॥
ଯେତେକଥା ଦଶରଥ ଶ୍ରୀରାମକୁ ଢଆରିଲେ ।
ସଭାରେ ବସି ତାହା ଲବକୁଶେ କହିଲେ ॥ ୮ ॥
ପିତାର ବଚନ ଶୁଣିଲେ ରଘୁବୀର ।
ବ୍ରତ ଆଚରିଛନ୍ତି ସୁମିତ୍ରାର ଘର ॥ ୯ ॥
ରାମ ଅଭିଷେକ ବୋଲି ରାଜ୍ୟରେ ଚହଟଇ ।
ନଗରେଣ ଘୋଷଣ ଦ୍ୱାରେ ବସାନ୍ତି ସୁବର୍ଣ୍ଣ ଘଟଇ ॥ ୧୦ ॥
ମନ୍ଥରୀ ନାମ ଯେ କେକୟୀର ଦାସୀ ।
ଭରଥର ମାତାର ଆଗରେ କହିଲାକ ଆସି ॥ ୧୧ ॥
ଯେତେକଥା ମନ୍ଥରୀ ବୁଝାଇ କହିଲା ।
ସଭା ଲୋକଙ୍କର ଆଗେ ଲବକୁମର କହିଲା ॥ ୧୨ ॥
ଅର୍ଥ କରି କହଇ କୁମର କୁଶ ।
ଶୁଣିଣ ଶ୍ରୀରାମ ମନ୍ଥରାକୁ କଲେ ରୋଷ ॥ ୧୩ ॥
ମନ୍ଥରା ସେ ମୋହର ବଇରି ହୋଇଲା ।
ସେ ସେ ମୋତେ ଏତେକ ଅବସ୍ଥା କରାଇଲା ॥ ୧୪ ॥
ଯପାଇଁ ଆନେ [ପିତା] ହୋଇଲା ପ୍ରାଣନାଶ ।
ଯେତେ କଷ୍ଟ ପାଇଲା ସେ ମନ୍ଥରୀର ଦୋଷ ॥ ୧୫ ॥
ଲବକୁମର କହିଲା ଯହୁଁ ମନ୍ଥରୀର କଥା କେକୟୀ ଶୁଣିଲା ।
ଦଶରଥକଇ ଭଗତି ହୋଇ ସତ୍ୟ ମନାଇଲା ॥ ୧୬ ॥
ମୋହର ପୁତ୍ରକଇ ଅଭିଷେକ କରାଇବୁ ।
ଶ୍ରୀରାମକାଇ ତୋହର ବନବାସ ପଠାଇବୁ ॥ ୧୭ ॥
ଚଉଦ ବରଷ ରାମ ବନସ୍ତରେ ଥିବ ।
ମୋହର ତନୟେ ଏଥେ ରାଜ୍ୟ କରିବ ॥ ୧୮ ॥

---

୫. ଶ୍ରୀରାମେ—ଶ୍ରୀରାମ(କ) ।     ୭. ଗଜ—ଯମ(ଖ) ; ସମାନ—ସମ(କ) ।
୯. ସୁମିତ୍ରାର ଘର—ସୁମନ୍ତ୍ରପାଖକର (ଖ) । ୧୬. କଥା—କଥାକହୁଁ ।

ଶୁଣିଣ ଦଶରଥ ମୂର୍ଚ୍ଛା ଯାଇ ପଡ଼ିଲା ।
କକେୟୀ ଯେତେ [କୁଟ] କଥା କହିଲା ॥ ୧୯ ॥
ଗୀତେଣ ଗାବଇ ତାହା ଲବକୁମରଇ ।
ସମସ୍ତ କଥା ଶୁଣନ୍ତି ଷର୍ଦ୍ଧି ବରଚ୍ଛନ୍ଦରେଇ ॥ ୨୦ ॥
ଏସନେକେ ରଯ୍ଣୀ ଯହୁଂ ପ୍ରଭାତ ହୋଇଲା ।
ରାମକଇ ହକରାଇ ଦଶରଥ କହିଲା ॥ ୨୧ ॥
ତୁହି ରାମ ଏବେ ବନସ୍ତକଇ ଯିବୁ ।
ଚଉଦ ବରଷ ପରଯନ୍ତେ ତୁହି ଥିବୁ ॥ ୨୨ ॥
କନ୍ଦମୂଳ ସେ କରିବୁ ଭୋଜନ ।
ଜଟା ଜସା କମଣ୍ଡଳ ବିଭୂତି ବିଲେପନ ॥ ୨୩ ॥
ପିତାର ବଚନ ଶୁଣି ରାମ ହରଷ ହୋଇଲେ ।
ସୀତାକୁ ଯାଇ ଏଥିର କଥା କହିଲେ ॥ ୨୪ ॥
ଶୁଣିଣ ସୀତୟା ଯେ ବନକଇ ହୋଇଲା ସଜ ।
ଆବର ଗୋଡ଼ାଇଲା ସୁମିତ୍ରାର ତନୁଜ ॥ ୨୫ ॥
ଅଲେଷ୍ଠ ଜଟା ରାମଲକ୍ଷଣ ବାନ୍ଧିଲେ ।
ଦଣ୍ଡକମଣ୍ଡଳ ବିଭୂତି ବିଲେପନ ହୋଇଲେ ॥ ୨୬ ॥
ସୀତୟା ରାମର ପଛେ ଅଛଇ ଗୋଡ଼ାଇ ।
ତହିଁହେ କୌଶଲ୍ୟାକୁ କହିଲେକ ଯାଇ ॥ ୨୭ ॥
ଦେଖିଣ କୌଶଲ୍ୟା ଅନେକ ରୋଦନ କଲା ।
ଶ୍ରୀରାମର ମୁଖ ଗୃହୁଂ ଯେତେ କଥା କହିଲା ॥ ୨୮ ॥
ସଭାର ମଧ୍ୟେ ତାହା ଲବକୁଶେ କହନ୍ତି ।
ଶୁଣିଣ ଶ୍ରୀରାମ ବଶିଷ୍ଠେ ପଚାରନ୍ତି ॥ ୨୯ ॥
ଭୋ ମହର୍ଷି ଯେତେ ବଚନ ମାତାଏ କହିଲେ ।
ଏ କୁମର ଦୁଇଗୋଟି ସେ କଥା କେମନ୍ତେ ଜାଣିଲେ ॥ ୩୦
ବଶିଷ୍ଠେ କହନ୍ତି ଯାହାର ପୂର୍ବ ଅଭ୍ୟାସଇ ।
ସେ ଲୋକ କହନ୍ତି ଗ୍ରନ୍ଥ ପ୍ରକାଶଇ ॥ ୩୧ ॥
ଏବେ ଥିର ହୋଇ ତୋହର ଚରିତ ଶୁଣ ।
ସ୍ୱରୂପ ମିଥ୍ୟା ଆପଣେ ପରମାଣ ॥ ୩୨ ॥
ତୁହି ଯେତେ କୃତ କଲୁ କହନ୍ତି ଏ ଯେବେ ।
ଏହାଙ୍କର ସ୍ୱରୂପ [ବଚନ ବୁଝି] ସବୁ ତେବେ ॥ ୩୩ ॥

---

୨୨. ପରଯନ୍ତେ—ଅନ୍ୱେଷଣ(କ) । ୨୪. ଏଥିର—ଏଥର । ୩୧. ଅଭ୍ୟାସଇ—ଆଭ୍ୟସଇ । ୩୩. ଯେତେ—ଯେବେ ; କହନ୍ତିଏ—କହନ୍ତୀସ୍ତେ ।

ଶୁଣିଣ ଶ୍ରୀରାମ ଯେ ହୋଇଲେ ମଉନ ।
ନାଦ ଉଙ୍କାରନ୍ତି ସୀତାଙ୍କର ନନ୍ଦନ ॥ ୩୪ ॥
ମାତାକଇ ପ୍ରବୋଧି ରାମ ବନକୁ ଗଲେ ।
ଭରଥ ଶତ୍ରୁଘନେ ଯେ ମଉଳାଘରେ ଥିଲେ ॥ ୩୫ ॥
ସୁଧନ୍ତ୍ର ସହ୍ନଂ ଦଶରଥ ନ ଦେଖିଲା ।
ସେହି ରଜନୀରେ ପ୍ରାଣନାଶ ହୋଇଲା ॥ ୩୬ ॥
ଭରଥକଇ ଦୂତ ପେଷିଲେ ମନ୍ତ୍ରୀ ପ୍ରୋହିତ ।
ଶୁଣିଣ ଦୁଇ ଭାଇ ଅଇଲେ ତୁରିତ ॥ ୩୭ ॥
ଅଯୋଧ୍ୟା ଭୁବନେ ହୋଇଲେ ପ୍ରବେଶ ।
ନବରେ ଦେଖିଲେ ପିତାର ବିନାଶ ॥ ୩୮ ॥
ଶ୍ରୀରାମ ଲକ୍ଷ୍ମଣକଇ ନ ଦେଖିଲେ ସହୁଂ ।
ମୋହର ଭାଇ କାହୁଂକ ଗଲେ କାହା ପୁଚ୍ଛିଲେ ତହୁଂ ॥ ୩୯
ବଶିଷ୍ଠେ କହନ୍ତେ ଶ୍ରୀରାମକଇ ରାଜ୍ୟ ଦିଅନ୍ତେ ।
ତୋହର ମାତା ସତ୍ୟ କରାଇଲେ ରାଧେ ॥ ୪୦ ॥
ତୁହି ରାଜା ହୋଇବୁ ରାମ ଯିବ ବନ ।
ତେବେ ସେ ଅରଣ୍ୟକଇ ରାମ କଲେ ଗବନ ॥ ୪୧ ॥
ଲକ୍ଷ୍ମଣହିଂ ଶ୍ରୀରାମ ସଙ୍ଗତେ ଗୋଡ଼ାଇଣ ଗଲା ।
ପତିଭଗତା ସୀତାୟୀ ଏଥେ ନ ରହିଲା ॥ ୪୨ ॥
ତେଣେ ସେ ଦଶରଥ ହୋଇଲା ପ୍ରାଣନାଶ ।
ମୃତ୍ୟୁପିଣ୍ଡ ଦହନ କରି ଏ ରାକ୍ୟେଣ ତୁହି ବଶ ॥ ୪୩ ॥
ଶୁଣିଣ ଭରଥ ମାତାକଇ କୋପ କଲା ।
ଖଡ଼ଗ ଉପାଡ଼ି ଶିରକମଳ କାଟୁଥିଲା ॥ ୪୪ ॥
କଉଶଲ୍ୟା ସୁମିତ୍ରା ଭରଥକୁ ବୁହାଇଲେ ।
ସଭାରେ ବସି ତାହା ଲବକୁଶେ କହିଲେ ॥ ୪୫ ॥
କୌଶଲ୍ୟାଙ୍କ ବଚନେ ଭରଥ ପ୍ରବୋଧ ହୋଇଲା ।
ମୃତ୍ୟୁପିଣ୍ଡ ପିତାର ଦେନ ରାମ ତହୁଂକ ଗଲା ॥ ୪୬ ॥
ଏକଇ(ଶ) ଶତ ଦଶରଥର ଭାବେନୀ ।
ଶ୍ରୀରାମକଇ ଦେଖିଗଲେ ସକଳ ଜନନୀ ॥ ୪୭ ॥
ପାତ୍ର ଅମାତ୍ୟ ବଶିଷ୍ଠ ତପୋଧନ ।
ଆବର ଅନେକ ନଗ୍ରର ସାଧୁଜନ ॥ ୪୮ ॥
ସମସ୍ତେ ଯାଇଣ ଚିତ୍ରକୂଟେ ହୋଇଲେ ।
ପିତାର ମରଣ ଦେଖି ଶ୍ରୀରାମ ଶୋକ କଲେ ॥ ୪୯ ॥

୩୪. ମଉନ—ଆନନ୍ଦ ମଉନ(କ) ୪୦. ଶ୍ରୀ—ଶ୍ରେ । ୪୨. ପତିଭଗତା—ପ୍ରତିଭଗତା ୪୪. ଉପାଡ଼ି—ଉଖାଇ(ଖ) । ୪୬. ପିତାର ଦେନ—ଦହନକରି(ଖ)

ପିତାଙ୍କର ବନ୍ଦନ କଲେ ଯେବଣଇ ମତେ ।
କହନ୍ତି ଲବକୁଶେ ଶ୍ରୀରାମର ଅଗ୍ରତେ ।। ୫୦ ।।
ଶୁଣିଣ ଶ୍ରୀରାମ ବଶିଷ୍ଠ ମୁଖଃ ଗ୍ରହ୍ମଂ ।
ମହର୍ଷି କହନ୍ତି ଶୁଣେସି ଥିର ହୋଇ ।। ୫୧ ।।
ପିତାଙ୍କର ଦଶାର୍କ୍ରିୟା ସେ ପର୍ବତେ ସାରିଲେ ।
ଶ୍ରୀରାମଙ୍କର ଦର୍ଶନ କରି ଭରଥ ଶତ୍ରୁଘନେ କହିଲେ ।। ୫୨ ।।
ଦନ୍ତେ ଧରଣ ଘେନ ଭରଥ ଶ୍ରୀରାମଙ୍କୁ ରାଜ୍ୟକୁ ରାଇଲେ ।
ପିତାର ସତ୍ୟଭଙ୍ଗ ନିମନ୍ତେ ରାମ ରାଜ୍ୟକୁ ନଇଲେ ।। ୫୩ ।।
ଭରଥ ଶତ୍ରୁଘନେ ରାଜ୍ୟକୁ ନ ଗଲେ ।
ତପ ଆଚରି ସେହି ବନରେ ରହିଲେ ।। ୫୪ ।।
ମାତୃଗଣନ୍ତ ଘେନ ମନ୍ତ୍ରୀ ପୁରୋହିତେ ।
ଅଯୋଧ୍ୟାନଗ୍ରକୁ ଅଇଲେ ସମସ୍ତେ ।। ୫୫ ।।
କକୟୀଙ୍କୁ ଙ୍କଂଘାସ ଯେତେକ ବୋଇଲେ ।
ଶ୍ରୀରାମ ଆଗେ ତାହା ଲବକୁଶେ କହିଲେ ।। ୫୬ ।।
ଅଯୋଧ୍ୟାରେ ସମସ୍ତେ ପ୍ରବେଶ ହୁଅନ୍ତି ।
କଉଶଲ୍ୟା ରାମଙ୍କର ଅହୋନିଶି ସୁମରନ୍ତି ।। ୫୭ ।।

## ଖରଦୂଷଣ ବଧ

ଚିତ୍ରକୂଟ ପର୍ବତେ ରାମ ବରଷେ ରହିଲେ ।
ତହୁଁ ନାନା ତୀର୍ଥକରି ଚଳିଗଲେ ।। ୧ ।।
ଯେବଣ ବନସ୍ତରେ କଲେ ଯେବଣ କୃତ ।
ବିସ୍ତାରି କହନ୍ତି ସୀତାଙ୍କର ବେନି ସୁତ ।। ୨ ।।
ଯେବଣ ନଦୀରେ ସ୍ନାହାନ କଲେ ।
ରାମର ଆଗେ ତାହା ଲବକୁଶେ କହିଲେ ।। ୩ ।।
ଅଗସ୍ତି ମହର୍ଷି ଶ୍ରୀରାମଙ୍କର ଦେଖନ୍ତି ।
ଅନେକ ସୁବୁଦ୍ଧି ରାମଙ୍କର କହନ୍ତି ।। ୪ ।।
ପଞ୍ଚବଟୀ ବନକୁ ଶ୍ରୀରାମଙ୍କୁ ଘେନିଗଲେ ।
ଶିମୂଳିଲତା ତଳେ ବସାଇ ସେ ବାହୁଡ଼ି ଅଇଲେ ।। ୫ ।।
[ପକ୍ଷୀଜଟା ରାମଙ୍କୁ ଯେତେ କଥା କହିଲେ ।
ଶ୍ରୀରାମ ଆଗେ ତାହା ଲବକୁଶେ ବଖାଣିଲେ ।। ୬ ।।

---

୫୩. ରାଜ୍ୟକୁ ରାଇଲେ—ରାଜାକରାଇଲେ(କ) ; ରାମରାଜ୍ୟକୁ—ରାମରାଯକୁ ।
୫୬. କକୟୀଙ୍କୁ—କକୟୀ(କ) ।  ୧. ତୀର୍ଥକରି—ତୀର୍ଥକରିବାକରି(ଖ) ।
୫. ଶିମୂଳିଲତା—ପଦ୍ମ(କ) ।

ଲୁଚିଲୁମର କହଇ ଅର୍ଥ କରି ବୁଝାଇ ରଘୁନାଥ ।
ରାମଚନ୍ଦ୍ର କହନ୍ତି ସକଳ ଯଥାର୍ଥ ] ॥ ୭ ॥
ଯନ୍ତ୍ରକୋଠୀକି ଲକ୍ଷ୍ମଣ କାଠ କାଟି ଗଲା ।
ବନସ୍ତେ ଭ୍ରମି ଶୁଖିଲା କାଠ ନ ପାଇଲା ॥ ୮ ॥
ଜପାସୁର ବେଶୁନ୍ତାରେ ତପ କରଇ ।
ଉପରକୁ ତାର ଧୂଇ ପସରଇ ॥ ୯ ॥
ଲକ୍ଷ୍ମଣ କାଠ ନ ଦେଖି ମନେଣ ହିଂସା ବନ୍ଧ ।
ବାଉଂଶ କଣ୍ଟା ବନ୍ଧିଲା ଲକ୍ଷ୍ମଣର ଡାହାଣ ପାଦଇ ॥ ୧୦ ॥
ବାମ ହସ୍ତେ ବାଉଂଶ କଣ୍ଟା କାଢ଼ିଲିକ ଯେବେ ।
ଶୋଣିତ ବନ୍ଧ ମହା ଜ୍ୱାଳା କଲିକ ତେବେ ॥ ୧୧ ॥
ଘାଏ ଦ୍ରୁମାଇଂ ଲକ୍ଷ୍ମଣ ବଇରାଗ ହୋଇଲା ।
ନିକସ୍ତାକଇ କୋପ କରି ଯେତେକ ଗାଳି ଦେଲା ॥ ୧୨ ॥
ଲବକୁଶେ ତାହା ସଭରେ କହି ।
ଶୁଣିଣ ଶ୍ରୀରାମ ଲକ୍ଷ୍ମଣ ମୁଖ ଗୃହିଂ ॥ ୧୩ ॥
ଲକ୍ଷ୍ମଣ ବୋଲଇ ଦେବ ଏ କଥା ସ୍ୱରୂପ ।
ଖୁଣ୍ଟ ବହନ୍ତେ ମୁଂ ପାଇଲି ବହୁତ ଶୋକ ॥ ୧୪ ॥
ବଶିଷ୍ଠେ ବୋଲନ୍ତି ହୋ ଏବେ ନ କହ ଆନ କଥା ।
ଥିର ହୋଇ ଶୁଣୁଥାଅ ଏବେ ନୋହିବା ବକତା ॥ ୧୫ ॥
ବଶିଷ୍ଠଙ୍କର ବଚନେ ରାମ ମଉନ ହୋଇଲେ ।
ତହୁଂ କୁମାରେ ନାଦ ହୁଂକାରିଲେ ॥ ୧୬ ॥
ଘାଏଣ ଲକ୍ଷ୍ମଣ ଯେ କୋପେଣ ଧାଇଂଲେ ।
କାଠ ପ୍ରାୟେ ବୁଝି ଜପାସୁରକୁ ହାଣିଲେ ॥ ୧୭ ॥
କଟିଭାଗଠାରୁ ପଡ଼ିଲା ତାର ମୁଣ୍ଡ ।
ଅସୁର କାୟା ହୋଇଲା ବେନି ଖଣ୍ଡ ॥ ୧୮ ॥
ଋଷି ପ୍ରାୟେ ବୁଝି ଲକ୍ଷ୍ମଣ ଶୋକ କଲା ଯେତେ ।
ଲବକୁଶେ କହିଲେ ସୁସରନାଦ ଗୀତେ ॥ ୧୯ ॥
ଶ୍ରୀରାମର ଆଗରେ ଲକ୍ଷ୍ମଣ କହିଲିକ ଯହୁଂ ।
ସୀତସ୍ୱାର ହସ୍ତଧରି ରାମ ଦେଖିଗଲେ ତହୁଂ ॥ ୨୦ ॥
ରାମକୁ ଦେଖି ଜପାସୁର ମୁକତ ହୋଇଲା ।
ପୂର୍ବ ଜନ୍ମ କଥା କହି ଶୂନ୍ୟମାର୍ଗେଣ ଗଲା ॥ ୨୧ ॥

---

୧୦. ଡାହାଣ—ବାମ(ଖ) । ୧୬. ରାମ—ରାମଲକ୍ଷ୍ମଣ(ଖ) । ୧୮. ଠାରୁ ପଡ଼ିଲା ତାର ମୁଣ୍ଡ—ଠାରେ ପଡ଼ିଲିକ ଖଣ୍ଡା(ଖ) ; ଖଣ୍ଡ—ଖଣ୍ଡା(ଖ) ।

ତହୁଂ ଷର୍ଣ୍ଣି ବରସୁନ୍ଦର ବାହୁଡ଼ି ଅଇଲେ ।
ଶାମ୍ବୁ(କ) ତଳେ ପର୍ଣ୍ଣକୋଠୀ ତୋଳିଲେ ॥ ୨୨ ॥
ଏଥୁ ଅନନ୍ତରେ ଜପାସୁର ମାତ ।
ସୂପନେଖୀ ଅଇଲା ପୁତ୍ରକୁ ଦେଖିତ ॥ ୨୩ ॥
ପୁତ୍ରର ପ୍ରାଣନାଶ ଯହୁଂ ଦେଖିଲା ।
ଭୂମିରେ ପଡ଼ି ଅନେକ ରୋଦନ କଲା ॥ ୨୪ ॥
କ୍ଷଣକେ ଦନୁଜା ଶୋକ ଉପେକ୍ଷିଲା ।
ପଦ୍ମ ଅଲଂକୃତ ଚକ୍ର ଚହ୍ନ ଦେଖିଲା ॥ ୨୫ ॥
ଖୋଜ ଗୋଡ଼ାଇଣ ସୂପନେଖୀ ଗଲା ।
ଶାମ୍ବୁକର ତଳେ ରାମ ଲକ୍ଷ୍ମଣଙ୍କୁ ଦେଖିଲା ॥ ୨୬ ॥
ଜପାସୁରକୁ ମାଇଲା ଯେବଣ ବାଗେ ।
ଲକ୍ଷ୍ମଣ କହୁଛନ୍ତି ରାମଚନ୍ଦ୍ରଙ୍କର ଆଗେ ॥ ୨୭ ॥
ସେ କଥା ସୂପନେଖୀ ଶୁଣିଲାକ ଯହୁଂ ।
ଏହୁ ସେ ମାଇଲା ବୋଲି ଜାଣିଲାକ ତହୁଂ ॥ ୨୮ ॥
ମୁହୁଂ ଏହାଙ୍କର ମନ ମୋହିବି ।
ଭାରିଯା ହୋଇଣ ରମଣିରଙ୍ଗ ଦେବି ॥ ୨୯ ॥
ଶୃଙ୍ଗାର କରି ହୋଇ ସିନା ହରଷ ।
ନିନ୍ଦା ଗଲେ ପ୍ରାଣେ କରିବି ବିନାଶ ॥ ୩୦ ॥
ଏସନେକ ବି(ଗ୍ର)ହ ନବଯୁବା ତରୁଣୀଏ ହୋଇଲା ।
ରଜନୀ ପ୍ରଭାତେ ଉଚ ସ୍ୱରେ ରୋଦନ କଲା ॥ ୩୧ ॥
ସୀତାଯ୍ୱା ମନ ମୋହିଲା ଯେମନ୍ତେ ।
ଲବକୁଶେ କହନ୍ତି ତାହା ସଭାଜନଙ୍କର ଅଗ୍ରତେ ॥ ୩୨ ॥
ସୀତା ସୂପନେଖୀକି ଆଶ୍ରମକୁ ଆଣିଲା ।
ରାତ୍ରେ ଲକ୍ଷ୍ମଣଙ୍କୁ ରମଣ ମାଗି ଗଲା ॥ ୩୩ ॥
ଲକ୍ଷ୍ମଣ ତାହାଙ୍କୁ ନ କଲା ରମଣ ।
ଯେମନ୍ତେ ଛେଦିଲା ତାର ନାସା ଶ୍ରବଣ ॥ ୩୪ ॥
ଲବକୁଶେ ତାହା ଗାବନ୍ତି ସଧୀର ଗୀତେ ।
ଶୁଣିଣ ସଭାଲୋକେ ହରଷ ସମସ୍ତେ ॥ ୩୫ ॥
ହରଷେଣ ଚହଳ ଯହୁଂ ହୋଇଲା ।
ଭରଥ ମହାବୀର ସବୁନ୍ତି ନିରୋଧ କଲା ॥ ୩୬ ॥
ସଭା ନିଶବଦ ହୋଇଲାକ ଯହୁଂ ।
ଲଳିତ ନାଦ ଧରି ଲବକୁଶ କହିଲେ ତହୁଂ ॥ ୩୭ ॥

---

୨୫. ଅଲଂକୃତ—ଅଲାଭୃତ । ୨୯. ହୋଇଣ—ନୋହିବ(କ) ।

ନାକକାନ ଛେଦିଲେ ସୂପନେଖୀ ଅସୁରୀ ।
ତ୍ରିଶିରା ଆଗେକ ସେ କଲେ ଗୁହାରି ॥ ୩୮ ॥
ଖର ଦୂଷଣ ନାମେ ରାବଣର ଭାଇବେନି ।
ଯୁଦ୍ଧ କଲେ ସେ ଚଉଦ ସହସ୍ର ବୀର ଘେନି ॥ ୩୯ ॥
ଚଉଦ ସହସ୍ର ସୈନ୍ୟ ତାହାଙ୍କର ଥିଲେ ।
ସମସ୍ତ ଅସୁରନ୍ତ ଶ୍ରୀରାମ ବିନାଶିଲେ ॥ ୪୦ ॥
ଖରଦୂଷଣର ଛେଦିଲେକ ଶିର ।
ତ୍ରିଶିରା ତିନିଶିର କାଟିଲେ ରଘୁବୀର ॥ ୪୧ ॥

## ସୀତା ହରଣ

ତହୁଂ ସୂପନେଖୀ ଲଙ୍କାକଇ ଗଲା ।
ରାବଣର ଆଗେ ନାକକାନ ଦେଖାଇଲା ॥ ୧ ॥
ସୀତାଙ୍କର ରୂପ କହିଲାକ ସହୁଂ ।
ଶୁଣି ଦଶଶିର ଦେଖି ଅଇଲାକ ତହୁଂ ॥ ୨ ॥
ରାମର ତେଜେ ଯାଇତ ନ ପାରିଲା ।
ମାରୁଚକୁ ମାୟାମୃଗେକ କଲା ।
ପଞ୍ଚବଟୀ ବନେ ଶ୍ରୀରାମର ସନିଧାନ ।
ଦୁଇମୁଣ୍ଡ ହୋଇ ଚରୁଥାଇ ପ୍ରତିଦିନ ॥ ୪ ॥
ମୃଗ ଦେଖି ସୀତାସ୍ତ୍ରୀ ରାମଙ୍କୁ କହିଲାକ ଯାହା ।
ସଭାରେ ଲବକୁଶେ ବିସ୍ତାରେ କହନ୍ତି ତାହା ॥ ୫ ॥
ଶ୍ରୀରାମଚନ୍ଦ୍ର ମୃଗ ମାରିବାକୁ ଗଲା ।
ରାମକୁ ଦେଖି ମୃଗ ଦୂରକୁ ପଳାଇଲା ॥ ୬ ॥
ସହସ୍ରେ ଯୋଜନ ରାମଚନ୍ଦ୍ର ଗୋଡ଼ାଇଲେ ।
ଗୋଡ଼ାଇ ନ ପାରି ଦୁଇମୁଣ୍ଡ କାଟିଲେ ଛେଦିଲେ ॥ ୭ ॥
ମାରୁଚ ପ୍ରାଣନାଶ ହୋଇଲାକ ସହୁଂ ।
ପ୍ରତକାର ଲକ୍ଷ୍ମଣ ବୋଲି ଶୂନ୍ୟେ ଡାକ ଦେଲା ତହୁଂ ॥୮॥
ସୀତାସ୍ତ୍ରୀ ଶୁଣି ଲକ୍ଷ୍ମଣଙ୍କୁ ପଠିଆଇଲା ।
ତିନିରେଖା ଲକ୍ଷ୍ମଣ ଧନୁହୁଲେ କାଟିଲା ॥ ୯ ॥
ଏ ରେଖା ଡେଇଁ ନ ଯିବୁ ମହାସତୀ ।
ପୁରୁଷ ରାକ୍ଷସେ ନ ଆସିବେ ତୋହର କତି ॥ ୧୦ ॥
ଯେ ଡେଇଂ ଆସିବ ସେ ହୋଇବ ପ୍ରାଣନାଶ ।
ଏସନେକ କହି ଗଲା ସୁମିତ୍ରାର ଶିଷ୍ୟ ॥ ୧୧ ॥

---

୩୯-୪୧. ଏ ତିନି ପଦ ଖ ପୋଥିରେ ନାହିଁ । ୭. ସହସ୍ରେ—ଶତେକ(ଖ) ।

ଲକ୍ଷ୍ମଣ ସୀତସ୍ତାଙ୍କୁ ଗୁମ୍ଫାକର ଗଲା ।
ତପସ୍ୱ ରୂପେ ରାବଣ ଭିକ୍ଷା ମାଗି ଅଇଲା ।। ୧୨ ।।
ଯେବଣ ଯେବଣ କଥା କହିଲା ତପସ୍ୱୀ ରୂପେ ।
ଲବକୁଶେ କହନ୍ତ ଶ୍ରୀରାମ ସମୀପେ ।। ୧୩ ।।
ରେଖା ଡେଇଁ ଫଳ ଭିକ୍ଷା ଦେଲେ ଜନେକ କୁମାରୀ ।
ତେମନ୍ତେ ସୀତାକୁ ରାବଣ ନେଲା ହରି ।। ୧୪ ।।
ବାଟେଣ ଯାନ୍ତେ ପକ୍ଷୀଜଟା ଦେଖିଲା ।
ରାବଣର ତୁଲେ ଯେତେ ଯୁଦ୍ଧ କଲା ।। ୧୫ ।।
ଲବକୁମର ସେ କଥା ସଭାରେ ପ୍ରକାଶି ।
ଶୁଣି ସମସ୍ତେହେ ପକ୍ଷୀଜଟାକୁ ପ୍ରଶଂସି ।। ୧୬ ।।
ଜଟାୟୁଷ ତୁଲେ ରାବଣ ଯୁଦ୍ଧ କଲେ ।
ବଟର ମୂଳେ ସୀତା ତରସ୍ତେ ଲୁଚଲେ ।। ୧୭ ।।
ପକ୍ଷୀଜଟାର ଡାହାଣଭୁଜ ଚନ୍ଦ୍ରହାସ୍ୟ ଖଡ଼୍‌ଗେ ଛେଦିଲା ।
ବଟମୂଳୁ ସୀତାକୁ କେଶ ଧରଣ ଆଣିଲା ।। ୧୮ ।।
ଶୁଣିଣ ସଭାଲୋକେ ଅାଶ୍ଚର୍ଯ୍ୟ ହୋଇଲେ ।
ବିସ୍ତାର କର ତାହା ଲବକୁଶେ ଗାଇଲେ ।। ୧୯ ।।
ତହୁଁ ରାବଣ ଆକା(ଶ)ରେ ରଥ ବାହିଲା ।
ଋଷିମୁଖ ପର୍ବତେ ସୁଗ୍ରୀବରକୁ ସୀତସ୍ତା ଦେଖିଲା ।। ୨୦ ।।
କନେକ(ର) ଦୁଇ ଚୂଡ଼ି ଅମଳାଣ ବସ୍ତ୍ର ।
ପକାଇଣ ଗଲା ତହୁଁ ଜନେକ ଦୋହିତ ।। ୨୧ ।।
ସୀତସ୍ତାକୁ ଘେନ ଗଲା ଲଙ୍କପଥ ।
ଅମନାତ୍ୟଙ୍କୁ ହକାରି ବସିଲା ଜଗଥ ।। ୨୨ ।।
ସୀତାକୁ ଯେ ପ୍ରାଣନାଶିତ ଲେଡ଼ିଲା ।
ରାବଣରେ ଆଗେ ବିଭୀଷେଣ ଯାହା କହିଲା ।। ୨୩ ।।
ରାମର ଆଗେ ଲବକୁଶେ ବିସ୍ତାରିଣ କହନ୍ତ ।
ଶୁଣିଣ ଶ୍ରୀରାମ ବିଭୀଷେଣକୁ ପ୍ରଶଂସନ୍ତ ।। ୨୪ ।।
ଧନ୍ୟରେ ବିଭୀଷେଣ ତୋହର ମହିମା ।
ତୁହିସେ ଉଦ୍ଧରିଲୁ ମୋହର ଗାରିମା ।। ୨୫ ।।
ଲବକୁଶେ କହନ୍ତ ବିଭୀଷେଣର କଥାଶୁଣି ।
ଅଶୋକ ବନେ ସୀତାକୁ ଥୋଇଲା ବଂଶପାଣି ।। ୨୬ ।।

---

୧୩. ସମୀପେ—ସ୍ୱରୂପେ(କ) । ୧୭. ଜଟାୟୁଷ—ଜଟାସୁର(ଖ) । ୧୮. କେଶ—ହସ୍ତ(କ) ୨୩. ରାବଣର—ଆବଣର(କ) । ୨୫. ଗାରିମା—ମହିଂମା(କ) ।

ଏ ଜଟା ସୁଷମା ଦୁଇ ଭଗ୍ନୀନ୍ତ ହକରାଇଲା ।
ଏହ୍ନସେ ଅପୁଷ୍ଟି ସୀତାକୁ ରକ୍ଷା କରାଇଲା ॥ ୨୭ ॥
କନେକ ମୃଗ ମାରି ରାମ ବାହୁଡ଼ି ଆସନ୍ତେ ।
ଲକ୍ଷ୍ମଣଙ୍କୁ ଦେଖିଲେ ଗହନ ବନପନ୍ତେ ॥ ୨୮ ॥
ବଇରାଗେ ଲକ୍ଷ୍ମଣଙ୍କୁ ରାମ କହିଲେକ ଯାହା ।
ଗୀତେଣ ଲବକୁଶେ ଗାଉଛନ୍ତି ତାହା ॥ ୨୯ ॥

ଜହୁଂ ଆସି ଦୁଇଭାଇ ପର୍ଣ୍ଣକୋଠୀରେ ଲେଉଡ଼ିଲେ ।
ବହୁତ ଶୋକଭର ହୋଇଣ କାନ୍ଦିଲେ ॥ ୩୦ ॥
ସୀତସ୍ନାକୁ ରାମ ନ ଦେଖିଲେ ଯହୁଂ ।
ପର୍ଣ୍ଣକୋଠୀ ଭିତରେ ରାମ ପଶି ଲେଉଡ଼ିଲେକ ତହୁଂ ॥୩୧॥
ଯେତେକ ଶୋକ କଲେକ ସୀତାପତି ।
ସଂସ୍କୃତ ସ୍ୱରୂପ ତାହା ଲବକୁଶେ କହନ୍ତି ॥ ୩୨ ॥
ଶୁଣିଣ ଶ୍ରୀରାମ ମନବରଙ୍ଗ କଲେ ।
ସଭାର ଲୋକେ ସମସ୍ତେ କାନ୍ଦିଲେ ॥ ୩୩ ॥
ଭରଥ ମହାବୀର ଶୁଣିଣ ପାଇଲା ମହାବ୍ୟଥା ।
ଆଶ୍ଚର୍ଯ୍ୟ ହୋଇଲେ ବଶିଷ୍ଠ ମହାଗ୍ୟାଂତା ॥ ୩୪ ॥

ସୀତା ନ ଦେଖି ରାମ ଲକ୍ଷ୍ମଣଙ୍କୁ କୋପ କଲେ ।
ଖଡ଼ଗ କାଢ଼ିଣ ମାରତ ଲେଉଡ଼ିଲେ ॥ ୩୫ ॥
ଲକ୍ଷ୍ମଣ କହଇ କ୍ଷମା ମାଶବୁ ମୋତେ ।
ମୁହିଂ ଆଗେ ଶିରକମଳ କାଟି ଦେବ ତୋତେ ॥ ୩୬ ॥
ଆଗହୁଂ ଭାରଯାକୁ ଗାରମାପଣେ ବଢ଼ାଇଲୁ ।
ବଚନ ଠେସି ନ ମାରି ମୃଗମାରି ଗଲୁ ॥ ୩୭ ॥
ସେ ମୋତେ ଅନେକ କ୍ରଂଧାସି କହିଲା ।
ତୋହର ତହିଂକି ପଠିଆଇଣ ଦେଲା ॥ ୩୮ ॥
ତିନ ରେଖା କାଟିଲି ମୁହିଂ ଯାହା ।
ଅବଗ୍ୟାଂ କରି ଦେଖ ଡେଇଂ ଗଲା ତାହା ॥ ୩୯ ॥
ପସୁର ଚହ୍ନ ଦେଖି ଲକ୍ଷ୍ମଣଙ୍କୁ କୋପ ଛାଡ଼ିଲେ ।
ଶୋକେ ସୀତସ୍ନାକୁ ଲେଉଡ଼ି ତହୁଂ ଗଲେ ॥ ୪୦ ॥

---

୩୦. ପଦଟିର ପାଠ ଖ ପୋଥିରେ :—ଲକ୍ଷ୍ମଣର କାନ୍ଧେ ମୃଗ ଭାର ଦେଇ । ତହୁଂ ଆସି ବେନି ଭାଇ ପଞ୍ଚବଟୀ ହୋଇ ॥ ୩୨-୩୪. ଏ ତିନି ପଦ ଖ ପୋଥିରେ ନାହିଁ । ୩୭. ଠେସି—ମେଣ୍ଟି (ଖ) । ୩୮. କ୍ରଂଧାସି—ଦ୍ୱନ୍ଦାଂସି(କ) ।

ଯୋଜନବାହୁକୁ ମାଇଲେ ଯେମନ୍ତେ ।
ଲବକୁଶେ ତାହା ଗାଇଲେ ମଧୁର ଗୀତେ ॥ ୪୧ ॥
ତହୁଁ ମାଇ ରାମ ଜଟାୟୁଷକୁ ଭେଟିଲେ ।
ରାବଣ ହରି ନେଲା ତାହା ତହୁଁ ଶୁଣିଲେ ॥ ୪୨ ॥
ସୀତାର କଥା ସମସ୍ତ କହିଲା ।
ରାମର ମୁଖ ଦେଖି ପ୍ରାଣ ଉପେଖିଲା ॥ ୪୩ ॥
ଦହଇ ପକ୍ଷୀଜଟାକୁ ଦହନ କଲେ ।
ତହୁଁ ଯାଇ ଗଦାବରୀ କୂଳେଣ ମିଳିଲେ ॥ ୪୪ ॥
ଚକୁଆ ଚକୋଇ ବନୋଦକ୍ରୀଡ଼ା ଶୁଣି ।
ସୀତାର କଥାକୁ ପୁଚ୍ଛିଲେ ରଘୁମଣି ॥ ୪୫ ॥
ରାମକୁ ଉପହାସ୍ୟ କଲାକ ସେ ଯହୁଁ ।
ଶୁଣି ରାମଚନ୍ଦ୍ର କୋପ କଲେ ତହୁଁ ॥ ୪୬ ॥
ରାତ୍ରେ ଯେବେ ପକ୍ଷୀ ରମଣ କରିବୁ ।
ପ୍ରଭାତ ହୋଇଲେ ମୂର୍ଦ୍ଧ ଫାଟି ମରିବୁ ॥ ୪୭ ॥
ତାମ୍ରଚୂଡ଼ ପକ୍ଷୀକି ବର ଦେଇଣ ତହୁଁ ଗଲେ ।
ତଦନ୍ତରେ ବକକୁ ଦେଖିଲେ ॥ ୪୮ ॥
ତହୁଁ ଯେବଣ କୃତ୍ୟ କଲେକ ବେନଭାଇ ।
ବିସ୍ତାରି କରି ତାହା ଲବକୁମର କହି ॥ ୪୯ ॥
କୁଶକୁମର ଅର୍ଥ କରି କହଇ ।
ମନ୍ମଥ ବନେ ମିଳିଲେକ ଯାଇ ॥ ୫୦ ॥
ଗୋଗୋଷ୍ଠ ଦେଖି ଲକ୍ଷ୍ମଣ ଆନନ୍ଦଇ ।
ଢନକରକ କ୍ଷୀର ଆଣିଲେ ଚନ୍ଦ୍ରକଳାମଣି ଦେଇ ॥୫୧॥
କ୍ଷୀର ଭକ୍ଷି ତହୁଁ ଶ୍ରୀରାମ କରେ ଦେଲେ ।
ମାହେନ୍ଦ୍ର ବନେ ତରୁତଳେ ବସିଲେ ॥ ୫୨ ॥
ସୀତାକୁ ହକାରି ହୋଇଲା ଦଶଦିବସ ।
ବସିଲେକ ରାମ ଦେହେ ହୋଇଲେ ଆଳସ୍ୟ ॥ ୫୩ ॥

---

୪୧. ମଧୁର—ମଧୀର । ୪୪. ମିଳିଲେ—ମେଳିଲେ । ୪୫. ଖ ପୋଥିରେ ଏ ପଦଟି :—ଚକୁଆଚକୋଇ କ୍ରୀଡ଼ା ବନୋଦ ଦେଖିଲେ । ରାବଣ ହରିନେଲା ବୋଲି ତାହାର ମୁଖରୁ ଶୁଣିଲେ । ସିତ୍ୟାର କଥା ତାହାଙ୍କଇ ରଘୁମଣି ପୁଚ୍ଛିଲେ ॥ ୪୯. କୁମର—କୁଶେ(କ) । ୫୦. ଖ ପୋଥିରେ ଏ ପଦର ପାଠ :—ଯେବଣ କଥା ନ କହଇ ଲବ । କୁଶକୁମର ଅର୍ଥ କରି କହଇ ସବ । ୫୧. ଖ ପୋଥିରେ ଏହାର ପ୍ରଥମ ପାଦର ପାଠ :—ମନ୍ମତ ବନେ ପଶିଲେକ ଯାଇ । ଗୋଗୋଷ୍ଠ—ଗୋଗଷ୍ଟ । ଢନକରକ—ଢନଙ୍କର(କ) । ୫୨. ମାହେନ୍ଦ୍ର—ମାରକଣ୍ଡ(କ) । ୫୩. ଦଶ ଦିବସ—ଚଉଦିଶିବରଷ(ଖ) ।

ଲକ୍ଷ୍ମଣର ଜାନୁ ସୀମନ୍ତାନ କରି ।
ନିଶ୍ଚିନ୍ତେ ନିଦ୍ରାଗଲେ ରାମ କରେ ଚାପ ଧରି ॥ ୫୪ ॥

## ସୁଗ୍ରୀବ ସଙ୍ଗେ ମିତ୍ରତା

ସୁଗ୍ରୀବର ବାଳିର ତାହାଙ୍କ ଯୁଦ୍ଧ କରି ମାଇଥିଲା ।
ଶ୍ରୀରାମର ତେଜ ଦେଖି ବାହୁଡ଼ି ପଳାଇଲା ॥ ୧ ॥
ଋଷ୍ୟମୂକ ପର୍ବତେ ଲୁଚିଲା ସୁଗ୍ରୀବର ।
ଶ୍ରୀରାମଙ୍କୁ ଦେଖି ଅଇଲା ପବନକୁମର ॥ ୨ ॥
ଶ୍ରୀରାମ ନିଦ୍ରାଏଣ ଶୋଇଣ ଅଛନ୍ତି ।
ବୃକ୍ଷର(ଉପରେ) ଉଠିଲେ ମାରୁତି ॥ ୩ ॥
ତରୁବର ହଲାଇ ହନୁମନ୍ତ ଦେଲା ।
ଶ୍ରୀରାମର ଉପରେ ଯେ ବୃନ୍ତପତ୍ର ପଡ଼ିଲା ॥ ୪ ॥
ଦେଖିଣ ଲକ୍ଷ୍ମଣ କଲକ ମହାକୋପ ।
ବାଣେକ ଯୋଖି କାଢ଼ି ଆମଞ୍ଜିଲାକ ଚାପ ॥ ୫ ॥
ଜାନୁ ଚଳନ୍ତେଣ ରାମ ନିଦ୍ରାଭଗ୍ନ ହୋଇଲା ।
କାହାକୁ ନାରାଚ ସନ୍ଧୁ ବୋଲି ଲକ୍ଷ୍ମଣଙ୍କୁ ପଚାରିଲା ॥ ୬ ॥
କରପଦ୍ମ ଯୋଡ଼ି ଲକ୍ଷ୍ମଣ କହିଲା ।
କାହିଁର ମର୍କଟ ବୃକ୍ଷରେ ଉଠିଲା ॥ ୭ ॥
ରକତମୁଖା ବାନର ତରୁବର ହଲାଇ ।
ତେଣୁ ସେ ମୋ ଦେବ ନାରାଜ ସନ୍ଧାଇ ।
ଶୁଣିଣ ଶ୍ରୀରାମଚନ୍ଦ୍ର ଉପରକୁ ଚାହିଁ ॥ ୮ ॥
ବନ୍ଦ୍ର କରପୁଟ କରନ୍ତି ମର୍କଟ ଦେଖିଲେ ।
ତହୁଁ ଶ୍ରୀରାମଚନ୍ଦ୍ର ସନିଧକୁ ହକାରିଲେ ॥ ୯ ॥
ଶ୍ରୀରାମର ମୁଖ ଯହୁଁ ହନୁମନ୍ତ ଦେଖିଲା ।
ପଦ୍ମର ଯୁଗଳ ଧରି ଓଳଗି ସୁଦ୍ଧିଲା ॥ ୧୦ ॥
[ମହାବଳ ଆସି ତ ତକ୍ଷଣେ ହୋଇଲା ।
ସମସ୍ତ ବିଚାର ଆସି ଶ୍ରୀରାମେ କହିଲା] ॥ ୧୧ ॥
ଶ୍ରୀରାମର ହନୁମନ୍ତର ଯେବଣ ବଚନ ।
ବିସ୍ତାରି କହନ୍ତି ସୀତାର ବେନି ନନ୍ଦନ ॥ ୧୨ ॥
ତହୁଁ ହନୁମନ୍ତ ସୁଗ୍ରୀବ କହିଲା ।
ଅମଳାଣ ବସ୍ତ୍ର ଦୁଇ ରତ୍ନ ଚୂଡ଼ି ଘେନି ରାମଙ୍କୁ ଦର୍ଶନ କଲା ।

---

୬. ସନ୍ଧୁ—ଛନ୍ଦୁ(କ) । ୮. ଏହି ପଦର ଦ୍ୱିତୀୟ ପାଦଟି କ ପୋଥିରେ ନାହିଁ ।
୧୩. ବସ୍ତ୍ର ଦୁଇ ରତ୍ନ—ରତ୍ନ ବସ୍ତ୍ର ଦୁଇ(କ) ।

ସୁଗ୍ରୀବର ତୁଲ(ରେ) ରାମ ମଇତ୍ର ହୋଇଲେ ।
ସୁଗ୍ରୀବର ଛଳେ ବାଳୀକି ମାଇଲେ ।। ୧୪ ।।
ସୁଗ୍ରୀବରକୁ କିଷ୍କିନ୍ଧାନଗ୍ରରେ ଭୂପଢ଼ କରନ୍ତି ।
ନିଜ ଭାରିଯା ତାହାର ତାରାକୁ ଦିଅନ୍ତି ।। ୧୫ ।।
ତହୁଂ ରାମଚନ୍ଦ୍ର ମାଲ୍ୟବନ୍ତ ପର୍ବତେ ଚତୁର୍ମାସ୍ୟା ରହିଲେ ।
ସୁଗ୍ରୀବର ତହୁଂକ ଲକ୍ଷ୍ମଣକୁ ପଠାଇଲେ ।। ୧୬ ।।
କିଷ୍କିନ୍ଧାପୁରକୁ ଲକ୍ଷ୍ମଣ ସହୁଂ ଗଲା ।
ଯେସନେକ ସେ ଋକ୍ଷକୁ ସୁଗ୍ରୀବରକୁ ଅଣିଲା ।। ୧୭ ।।
ବିସ୍ତାର କହନ୍ତି ସୀତାର ବେନି ସୁତ ।
ଶୁଣିଣ ଶ୍ରୀରାମଚନ୍ଦ୍ର ହରଷଭର ଚିତ୍ତ ।। ୧୮ ।।
ସକଳ ବାନରକୁ ଦୂତ ବରଗିଲେ ।
ସୁଗ୍ରୀବର ଆଗ୍ୟାଂରେ ଯେ ବାନରେ ଅଇଲେ ।। ୧୯ ।।
ଶ୍ରୀରାମର ପୟରେ ପ୍ରଣାମ୍ୟ କରନ୍ତି ।
ବାନର ସୈନ୍ୟ ରାମ ଗଣିତା ଯେନନ୍ତି ।। ୨୦ ।।
ଜମ୍ବୁବର ଭାଇ ତାଳମ୍ବ ନାମେ ଋକ୍ଷ ।
ଋକ୍ଷ ସୈନ୍ୟ ଘେନି ସେ ହୋଇଲା ସପକ୍ଷ ।। ୨୧ ।।

## ଲଙ୍କା ପୋଡ଼ି

ସୀତାକଇ ଲୋଡ଼ିତ ଦୂତ ବରଗିଲେ ।
ଚ୍ଯାରି ଦଗକଇ ଦୂତମାନ ଗଲେ ।। ୧ ।।
ଜମ୍ବୁବ ଶତବାଳ ଗନ୍ଧମାର୍ଦନଇ ।
ପବନ ତନୟ ବାଳର ଯେ ସୁତଇ ।। ୨ ।।
ଦକ୍ଷିଣ ଦଗକୁ ଏ ପାଞ୍ଚେହେ ଗଲେ ।
ସମୁଦ୍ରତୀରେ ବସି ବିଗ୍ଚର ସେ କଲେ ।। ୩ ।।
କାହାର ଶକ୍ତର୍ଯ୍ୟ ନୋହିଲା ସେ ଯାଇ ।
ଶୁନ୍ୟେ ହନୁମନ୍ତ ବାହମି ଗଲା ଡ଼େଇଂ ।। ୪ ।।
ଉତ୍ତରତାରା ସିଂହିକାକଇ ଯେମନ୍ତ ମାଇଲା ।
ମଣିନାଗ ପର୍ବତ ଯେମନ୍ତେ ଆଦରଣ କଲା ।। ୫ ।।
ଲଙ୍କା ବନାଶ କଲାକ ଯେମନ୍ତ ମତେ ।

---

ମାଲ୍ୟବନ୍ତ ପର୍ବତେ ଚତୁର୍ମାସ୍ୟା—ଋଷିମୁଖ ପର୍ବତେ(ଖ) । ୧୭. ଯେସନେକ ସେ ଋକ୍ଷ—ଜନେକ ଚଋକ(କ) । ୧୯. ସୁଗ୍ରୀବର ଆଗ୍ୟାଂରେ—ବାଳି ବଧ ଶୁଣି(ଖ) ୪. ଶକ୍ତର୍ଯ୍ୟ—ଧଇର୍ଯ୍ୟ(କ) । ୫. ସିଂହିକାକଇ—ସିଂଘକଇ ।

ସଭ୍ୱରେ ଲବକୁଶ ସେ କଥା କହନ୍ତି ଗୀତେ ॥ ୬ ॥
ଅଯୋଧ୍ୟା ଲୋକେ ଯେ ନ ଜାଣିଣ ଥିଲେ ।
ଶୁଣିଣ ସମସ୍ତେ ହନୁମନ୍ତକୁ ଧନ୍ୟ ଧନ୍ୟ କଲେ ॥ ୭ ॥

ତହୁଁ ପାବନ ଯେ ଲଙ୍କାପୁରେ ପଶିଲା ।
ରାବଣ ଭୁବନେ ସମସ୍ତ ଠାବେ ଠାବେ ଲୋଡ଼ିଲା ॥ ୮ ॥
ତାହାଙ୍କୁ ଦେଖିଲେ ଅହଲ୍ୟାର ନାତି ।
ସେ କହିଲା ଅଶୋକ ବନେ ଅଛି ମହାସତୀ ॥ ୯ ॥
ତାହା ବଚନେ ଅଶୋକ ବନେ ପଶିଲା ।
ଅଶୋକ ବନେ ସୀତାଙ୍କୁ ଠାବ କଲା ॥ ୧୦ ॥
ଶ୍ରୀରାମର ସନ୍ଦେଶ ଦେଲା ଶ୍ରୀମୁଦ୍ର ।
ମଥାମଣି ଦେଲା ଯୁବତୀ-ରତ୍ନନିଧି ॥ ୧୧ ॥

ଶ୍ରୀରାମ ଲକ୍ଷ୍ମଣଙ୍କର କୁଶଳ ସମସ୍ତ କହିଲା ।
ଆସିବାର ବେଳେ ସୀତାଙ୍କୁ ଆହାର ମାଗିଲା ॥ ୧୨ ॥

ସୀତା ଆଜ୍ଞା ଦେଲେ ମଧୁବନେ ପଶ ।
ପକ୍ୱ ଫଳମାନ କରହୋ ଯାଇ ଗ୍ରାସ ॥ ୧୩ ॥

ତହୁଁ ହନୁମନ୍ତ ମଧୁବନେ ପଶିଲା ।
ଦଶ ଯୋଜନ ବନସ୍ତ ସମସ୍ତ ଉଜାଡ଼ିଲା ॥ ୧୪ ॥

ଇଚ୍ଛା ସୁଖରେ ଭୁଞ୍ଜିଲା ସମସ୍ତ ଫଳ ।
ତେବେ ସେ ଶେଷ ହୋଇଲା ପବନ ଦୁଲାଳ ॥ ୧୫ ।

ବନସ୍ତ ଭାଙ୍ଗନ୍ତେ ରକ୍ଷା ଲୋକେ ଦେଖିଲେ ।
ଚଉରାଶି ଲକ୍ଷ ତୋଟାଳେ ହନୁମନ୍ତ ଭୁଲେ ଯୁଦ୍ଧ କଲେ॥ ୧୬ ॥
ସମସ୍ତ ସୈନ୍ୟ ହନୁମନ୍ତ କଞ୍ଚିତ ଯୁଦ୍ଧେ ମାଇଲା ।
ତାହା ଶୁଣି ରାବଣ ଅକ୍ଷୟକୁମର ବରଗିଲା ॥ ୧୭ ॥

ହନୁମନ୍ତର ଭୁଲେ କଲେକ ଅନେକ ଯୁଦ୍ଧ ।
ବୃକ୍ଷବାଟେ ପିଠି କାଢ଼ି ଅକ୍ଷୟେ କଲା ବଧ ॥ ୧୮ ॥

ଯେ ଅବା ସଂଗ୍ରାମ ପୁଣ ପଳାଇଣ ଗଲେ ।
ଅକ୍ଷୟେ ମଲା ବୋଲି ରାବଣଙ୍କୁ କହିଲେ ॥୧୯ ॥

---

୯. ଅଶୋକ— ଓସେକ (ଖ) । ୧୦. ଅଶୋକ ବନେ ପଶିଲା —ଓସେକ ବନେ ପଶିଲା (ଖ) ; ଅଶୋକ ବନେ ସୀତାକୁ—ହଶଡ଼ା ବୃକ୍ଷ ମୂଳେ ସୀତାକୁ । ୧୧. ସନ୍ଦେଶ—ସନ୍ଦେଶ (ଖ) । ୧୪. ଉଜାଡ଼ିଲା—ଉପାଡ଼ିଲା (କ) ୧୬. ଲକ୍ଷ—ସହସ୍ର (ଖ) । ୧୯. ସଂଗ୍ରାମୁ—ସାଗ୍ରାଂମୁ ।

ଶୁଣିଣ ଦଶାଶିର ଅନେକ ଶୋକ କଲା ।
ବହୁତ ସୈନ୍ୟ ଘୂଲେ ଇନ୍ଦ୍ରଜିତ୍‌କୁ ବରାଗଲା ॥ ୨୦
ହନୁମନ୍ତର ତୁଳେ ଇନ୍ଦ୍ରଜିତ କଲା ସମର ।
ଅସୁର ସୈନ୍ୟ ମାଇଲେ ପବନକୁମାର ॥ ୨୧ ॥
ତହୁଂ ଇନ୍ଦ୍ରଜିତ ମାୟା ରୁଦ୍ଧ କଲା ।
ନାଗଫାଶ ବାଟେ ହନୁମନ୍ତକୁ ବାନ୍ଧି ଆଣିଲା ॥ ୨୨ ॥
ରାବଣର ସମ୍ମୁଖରେ ସେ ବଳିକ ନେଇ ।
ଦେଖିଣ ଆଶ୍ଚର୍ଯ୍ୟ ହୋଇଲା ଲଙ୍କସାଇଁ ॥ ୨୩ ॥

ରାବଣ ହନୁମନ୍ତର ଯେବଣ ପ୍ରଚଉତ୍ତର ।
ବର୍ଣ୍ଣେଣି କହଇ ତାହା ଲବକୁମର ॥ ୨୪ ॥
ଯେବଣ ପଦ ଅବା ଅଳପ ଅନ୍ତର ହୁଅଇ ।
କୁଶକୁମର ତାହା ଅର୍ଥ କରିଣ କହଇ ॥ ୨୫ ॥
ହନୁମନ୍ତର ଗାରମା କଥା ତହୁଂ ଶୁଣିଲା ।
ପ୍ରାଣ ନାଶ କରିବାକୁ ଆଜ୍ଞା ତହୁଂ ଦେଲା ॥ ୨୬ ॥
ବିଭୀଷଣ କହଇ ଏହାକୁ ଅଜ ନ ମାରିବା ।
ରାମ ପାଇଲେ ଏହାକୁ ପ୍ରାଣେ ନାଶ କରିବା ॥ ୨୭ ॥
ଭାଇର ବଚନେ ରୋଷ ହୋଇଲା ଦଶାନନ ।
ସେ ରାଜ ଦୃଢ଼ କରି କରାଇଲା ବନ୍ଧନ ॥ ୨୮ ॥
ରଯୂଣୀ ପ୍ରଭାତେ ଆସ୍ଥାନକଇ ଆଣି ।
ମାର ବୋଲି ଆଜ୍ଞା ଦେଲାକ ବିଂଶପାଣି ॥ ୨୯ ॥
ଚନ୍ଦ୍ରହାସ ଖଡ଼ଗେ ଇନ୍ଦ୍ରଜିତ ପ୍ରହାରିଲା ।
ରୋମେକ ଭଗ୍ନ ନୋହିଲା ଖଡ଼ଗ ଉଛୁଳି ପଡ଼ିଲା ॥
ଅଢମାଡ଼େ ହନୁମନ୍ତ ଦନ୍ତ କରିଣ ରହିଲା ॥ ୩୦ ॥
ବିସ୍ମୟେ ହୋଇଲା ଅସୁର ରାଜନ ।
ତହୁଂ ହସି ବୋଲଇ ପବନନନ୍ଦନ ॥ ୩୧ ॥
ଏମନ୍ତ ପ୍ରକାରେ ନ ହୋଇବ ମୁହିଁ ।
ଯେମନ୍ତେ ମରିବି ଶୁଣ ହୋ ଲଙ୍କ ସାଇଁ ॥ ୩୨ ॥
ଏ ମୋହର ଲାଙ୍ଗୁଳେ ବସ୍ତ୍ର ଗୋଡ଼ାଅସି ।
ତେଲ ଲଗାଇ ଅଗ୍ନି ଲଗାଇ ଦିଅସି ॥ ୩୩ ॥

---

୨୪. ପ୍ରଚଉତ୍ତର—ପ୍ରତିଉତ୍ତର । ୨୬. ଗାରମା—ଆଗଳମା (କ)। ୨୯. ଏହି ପଦବଦଳେ କ ପୋଥିରେ ଅଛି ପାଦେ:—ରଜନୀ ପ୍ରଭାତେ ଆସ୍ଥାନକୁ ଆଣିଲା ।
୩୦. ଉଚ୍ଛୁଡ଼ି—ଉପୁଡ଼ି; ଏହି ପଦର ତୃତୀୟ ପାଦଟି ଖ ପୋଥିରେ ନାହିଁ ।

ଶୁଣିଣ ସନ୍ତୋଷ ହୋଇଲେ ଦନୁଜଗଣେ ।
ଏମନ୍ତେ ସେ ଛୁଟିବ ତାହାର ନିଜ ପ୍ରାଣେ ॥ ୩୪ ॥
ବସ୍ତ୍ର ବେଢ଼ାଇ ଦେଇ ତୈଳ ଢାଳିଲେ ।
ହନୁମନ୍ତର ଲାଙ୍ଗୁଳେ ଅଗ୍ନି ଲଗାଇଲେ ॥ ୩୫ ॥
ଲଙ୍ଘ ବୁଲିଲା ପବନନନ୍ଦନ ।
ଲଙ୍କାଗଡ ସମସ୍ତ କଲାକ ଦହନ ॥ ୩୬ ॥
ସୀତସ୍ତାମଣି ଘେନି ବାହୁଡ଼ି ଅଇଲା ।
ଶ୍ରୀରାମର ହସ୍ତେ ନେଇ ସୀତାର ମଣିକି ଦେଲା ॥ ୩୭ ॥

## ଯୁଦ୍ଧ ପାଇଁ ଉଦ୍‌ଯୋଗ

ବାନର ସୈନ୍ୟ ଘେନି ସୁଗ୍ରୀବର ତୁଲେ ।
ସେତୁବନ୍ଧ ବାନ୍ଧିଲେ ରାମ ବରୁଣର ବୋଲେ ॥ ୧ ॥
କଟେ୍ୱବ ଶତବାନ୍ଧା ନଳ ନୀଳଙ୍କର ହସ୍ତେ ।
ସମୁଦ୍ରେ ଉପୁଚଅଇଲେ ସକଳ ପର୍ବତେ ॥ ୨ ॥
ଏକା ହନୁମନ୍ତ ପର୍ବତ ଆଣିଲା ।
ଶତେ ଯୋଜନ ବିସ୍ତାର ହୋଇଲା ॥ ୩ ॥
ବାନର ସୈନ୍ୟ ଘେନି ଲଙ୍କାରେ ପ୍ରବେଶ ହୋଇଲେ ସହୁଂ ।
ଦେଖିଣ ରାବଣ ଭୟେ କଲାକ ତହୁଂ ॥ ୪ ॥
ଜବାଟ ପାଡ଼ି ଗଡ ନରୋଧିଲା ।
ଲଙ୍କାପୁର ସେ ନିବୃତ୍ତ କରାଇଲା ॥ ୫ ॥
ସୁବଳସ୍ତା ପର୍ବତେ ରାମଚନ୍ଦ୍ର ବିଶ୍ରାମିଲେ ।
ଲଙ୍କ ଧର୍ମ ସୁବଳସ୍ତା ଶିଖରେ ସେ ଥିଲେ ॥ ୬ ॥
ତକ୍ଷଣେ ଲଙ୍କାପୁରେ ପ୍ରବେଶ ହୋଇଲେ ।
ରାବଣର ଆଗେ ଯାଇ ସେ ବାରତା କହିଲେ ॥ ୭ ॥
ହେ ଦେବ ଦନୁଜ ରାଜା ଶୁଣ ମୋହର ବାଣୀ ।
ମର୍କଟ ଶକ୍ଷ ସୈନ୍ୟ କେ ପାରେ ପରମାଣି ॥ ୮ ॥
ଶ୍ରୀରାମର ତେଜ ତ କହଣ ନ ଯାଇ ।
ଶୁଣିଣ ଭୟେ କଲା ମନ୍ଦୋଦରୀର ସାହିଂ ॥ ୯ ॥
ପୁଷ୍ପକ ରଥ ଆରୋହଣ କଲା ।
ଲକ୍ଷେ ଛତ୍ର ଧରାଇ ଦଣ୍ଡ ମେଲଇଲା ॥ ୧୦ ॥

---

୩୪. ପଦଟି ଖ ପୋଥିରେ :—ତେବେ ସେ ମୋର ଦେହୁ ଛାଡ଼ିଯିବ ପ୍ରାଣ । ଶୁଣିଣ ମତ ଯେ ବୋଇଲା ରାବଣ । ୩୫. ଢାଳିଲେ—ଲଗାଇଲେ (କ)
୨. ଉପୁଚଆଇଲେ—ଉପୁଜାଆଇଲେ (ଖ)

ଶ୍ରୀରାମଙ୍କୁ ଦେଖିଣ ଦଶଗିର ।
ଟୃନ୍ୟେଣ ପୁଷ୍ପକ ରଥେ ବିଶ୍ରାମ ସେତୁ କରି ॥ ୧୧ ॥

ଶ୍ରୀରାମ ସ୍ନାହ୍ନାନ ସାରି ତର୍ପଣ କରନ୍ତେ ।
ଅର୍ଘ୍ୟ ଅଞ୍ଜୋଳି ସୂର୍ଯ୍ୟଙ୍କୁ ଦିଅନ୍ତେ ॥ ୧୨ ॥

ଛତ୍ରଙ୍କର ଛାୟାରେ ସୂର୍ଯ୍ୟ ନ ଦିଶିଲେ ଯହିଁ ।
କନ୍ଦେବ ହୁଙ୍କାର ପଚାରନ୍ତି ତହିଁ ॥ ୧୩ ॥

ଏହିକ୍ଷଣି ଦିବାକର ଆକାଶେ ଥିଲା ।
କିପାଇଁ ଚନ୍ଦ୍ରପଣର ତେଜ ନ ଦିଶିଲା ॥ ୧୪ ॥

କନ୍ଦେବ କହଇ ଶୁଣ ଷର୍ଷି ବର ସୁନ୍ଦର ।
ତୋତେ ଦେଖିବ ଅଇଲା ରାବଣ ନୃପବର ॥ ୧୫ ॥
ଛତ୍ରଛାୟାରେ ନ ଦିଶିଲା ଛାୟାର ପତି ।
ଶୁଣିଣ ଶ୍ରୀରାମ ସୂର୍ଯ୍ୟଙ୍କୁ ଅର୍ଘ୍ୟ ଦେନ୍ତି ॥ ୧୬ ॥
ତକ୍ଷଣେ ରାମ କୋଦଣ୍ଡ ଧରିଲେ ।
ଯୋଗ୍ୟ ନାରାଚ କାଢ଼ି ତୂଣରେ ବସାଇଲେ ।
ଆକର୍ଣ୍ଣ ସର କରି ନାରାଚ ପୂରେଇଲେ ॥ ୧୭ ॥
ବିଶ୍ୱାମିତ୍ରଙ୍କୁ ସ୍ମରି ନାରାଚ ବିନ୍ଧିଲେ ରଘୁପତି ।
ଲକ୍ଷେକ ଛତ୍ର ଛୁଟି ସମୁଦ୍ରେ ପଡ଼ନ୍ତି ॥ ୧୮ ॥

ରାବଣକୁ ସୂର୍ଯ୍ୟର ତେଜ ଯହିଁ ଲାଗିଲା ।
ଶୁକସାରଣକୁ ଦଶାନନ ପଚାରିଲା ॥ ୧୯ ॥
ଅନେକ ଛତ୍ର ମୋହର ଗଲେ କାହିଁ ।
ଶୁକସାରଣେ କହନ୍ତି ଶୁଣ ଲଙ୍କସାଇଁ ॥ ୨୦ ॥
ଶ୍ରୀରାମ ଛେଦିଲେ ତୋହର ସକଳ ପାଟଛତ୍ର ।
ଶୁଣିଣ ଭୟେ କଲା ଅସୁର ଦଶମାଥ ॥ ୨୧ ॥
ମଥା ଆଉଂସିଣ ଶୀଘ୍ରେଣ ପଳାଇଲା ।
ଅନ୍ତଃପୁରେ ପଶି ପଛକୁ ନ ଗୃହିଁଲା ॥ ୨୨ ॥
ସେତେକ ଭାଙ୍ଗିଲା ମନ୍ଦୋଦରୀର ପତି ।
ସଭାରେ ବସି ତାହା ଲବକୁଶେ କହନ୍ତି ॥ ୨୩ ॥
ଶୁଣିଣ ଆନନ୍ଦ ଅଯୋଧ୍ୟା ନରନାରୀ ।
ଧନ୍ୟ ଧନ୍ୟ କରନ୍ତି ବଶିଷ୍ଠ ଉପଗୃହୀ ॥ ୨୪ ॥

---

୧୭. ଏହାର ପ୍ରଥମ ପାଦଟି କ ପୋଥିରେ ଓ ଦ୍ୱିତୀୟ ପାଦଟି ଖ ପୋଥିରେ ନାହିଁ ; କାଢ଼ି—କଢ଼ି (କ) । ୧୮. ଲକ୍ଷେକ—ଷୋଳସହସ୍ର (ଖ) ।
୨୦. ଅନେକ—କନେକ ମଉଳା (ଖ) ।

## ବିଭୀଷଣଙ୍କୁ ଶରଣ ଦାନ

ଲବକୁଶେ କହନ୍ତି ସାବଧାନେ ଶୁଣ ।
ଯହୁଂ ଡରେ ପଳାଇଲାକ ରାବଣ ॥ ୧ ॥
କର୍ଣ୍ଣ ଧର୍ଣ୍ଣ ସୁବଳୟାରେ ଥିଲେ ।
ଶ୍ରୀରାମର ଧନୁ ସେ ନେମାକୁ ଭାଇଭାଇ ବାଗୁଥିଲେ ॥ ୨ ॥

ତୋଳନ୍ତେ ଧନୁ ସେ ନ ପାରିଲେ ଟେକି ।
ଦୁହିଙ୍କର ମୁଣ୍ଡକୁ ଛୁଞ୍ଚି ପଡ଼ଇ ଗଳି ॥ ୩ ॥

ଧନୁର ଗୁଣ ଛେଦନ କଲେ ଯହୁଂ ।
ଦୁଇ ଭାଇ ଧନୁର ତଳେ ଫାଶିଲେକ ତହୁଂ ॥ ୪ ॥

ଧନୁରେ ଗୁଣ ଦେଇ ନାରାଚ ଛନ୍ଦନ୍ତି ।
ବିଶ୍ୱାମିତ୍ର ସୁମନ୍ତ୍ର ନାରାଚ ବିନ୍ଧନ୍ତି ॥ ୫ ॥

ଯେତେକ ସୈନ୍ୟ କର୍ଣ୍ଣ-ଧର୍ଣ୍ଣଙ୍କର ମିଳିଲେ ଥିଲେ ।
ଶତ୍ରୁ-ଅନ୍ତେକ ନାରାଚେ ସମସ୍ତେ ପ୍ରାଣ ଦେଲେ ॥ ୬ ॥
ସେ ଅନା ଆଗ ହୋଇଣ ପଳାଇଲା ।
କର୍ଣ୍ଣ ଧର୍ଣ୍ଣଙ୍କର ମରଣ ରାବଣ ଆଗେ କହିଲା ॥ ୭ ॥
ଶୁଣିଣ ଶୋକ କରନ୍ତେ ରାବଣ ।
କରପଦ୍ମ ଯୋଡ଼ି କହଇ ବିଭୀଷଣ ॥ ୮ ॥
ଶୁଣ ଦନୁଜ ନୃପତି ପ୍ରତାପ ଚକ୍ରବର୍ତ୍ତୀ ।
କଥାଏକ କହିବି ଛାଡ଼ିବ ଶୋକମତି ॥ ୯ ॥
ସୀତାକୁ ଶ୍ରୀରାମର ପାଶେ ସମର୍ପିବା
ଅଭୟେ ହୋଇ ଆମ୍ଭେ ଲଙ୍କାପୁରେ ଥିବା ॥ ୧୦ ॥
ଯଦ୍ୟପି ମୋହର ବଚନ ନ କରିବୁ ।
ଶୀଘ୍ର ସମ୍ପଦ ତୋହର ସମସ୍ତ ହରାଇବୁ ॥ ୧୧ ॥
ଶୁଣିଣ ରାବଣ ମନେ ଖେଦ କଲା ।
ବିଭୀଷଣ ହୃଦରେ ଲତେକ ମାଇଲା ॥ ୧୨ ॥
ବାଳଧରି ନେଲେକ ଯେବଣ ମତେ ।
ଲବକୁମର କହନ୍ତି ଶ୍ରୀରାମ ଅଗ୍ରତେ ॥ ୧୩ ॥

---

୨-୩. ଏ ଦୁଇ ପଦ ବଦଳେ ଖ ପୋଥିରେ ପଦେ :—କର୍ଣ୍ଣ ଧର୍ଣ୍ଣ ଦାହୁଙ୍କି ଶ୍ମୁବଳୟାଙ୍କୁ ବରଗଲା । ଶ୍ରୀରାମର ଧନୁ କାଠ ବୋଲି ଆଗ୍ୟାଂ ଦେଲା । ୬. ଦ୍ୱିତୀୟ ଧାଡ଼ି ଖ ପୋଥିରେ ନାହିଁ । ୭. ପଳାଇଲା—ପଳାଇଣ ଗଲେ (ଖ) କହିଲା—କହିଲେ ; ଖ ପୋଥିରେ ଦ୍ୱିତୀୟ ପାଦ ପରେ ପାଦ ରହିଛି :—"ସେ ସୈନ୍ୟ ବରଗିଲ ସମସ୍ତେ ଦେହ ମଲେ" । ୧୩. କୁମର—କୁଶେ (ଖ) ।

ଅର୍ଥ ଦେଇ କହଇ କୁଶକୁମର ।
ଶୁଣିଣ ହରଷ ଷଡ଼ିବର ସୁନ୍ଦର ॥ ୧୪ ॥
ଲବକୁମର କହଇ ବଭ୍ରୀଷେଣ ଅଚେତ ହୋଇ ପଡ଼ିଲା ।
ଶିଶିର ଲାଗନ୍ତେ ସେ ଚେତନା ପାଇଲା ॥ ୧୫ ॥
ମନେ ମନେ ବଚାର ସେ ମନ୍ତ୍ରୀ ବଭ୍ରୀଷେଣ ।
ଶ୍ରୀରାମଙ୍କ ଠାରେ ଯାଇ ପଶିବ ଶରଣ ॥ ୧୬ ॥
ଏତେକ ବଚାର ବଭ୍ରୀଷେଣ ଗଲା ।
ଶ୍ରୀରାମ ଚରଣେ ଯାଇ ଶରଣ ପଶିଲା ॥ ୧୭ ॥
ଶ୍ରୀରାମ ବଭ୍ରୀଷେଣ ଯେବଣ ସିଧ୍ୟାନ୍ତ ।
ସଭାରେ କହନ୍ତି ତାହା ସାଚାର ବେକ ଦୂତ ॥ ୧୮ ॥
ବଭ୍ରୀଷେଣର କଥା ଯହୁଁ ଶ୍ରୀରାମ ଶୁଣିଲେ ।
କୋଳେ ବସାଇ ମଥା ଆଘ୍ରିଲେ ॥ ୧୯ ॥
ଆଟେ ବଭ୍ରୀଷେଣଙ୍କୁ କଲେକ ସେ ରାଜା ।
ବୋଇଲେ ଲଙ୍କା ଗଡ଼େ ତୋତେ କରାଇବ ପୂଜା ॥ ୨୦ ॥
ବଭ୍ରୀଷେଣ ଶରଣେ ପଶିଲା ବୋଲି ଯହୁଁ ରାବଣ ଜାଣିଲା ।
ହୃଦରେ ଗଳା ଅନେକ କ୍ରୋଧ ହୋଇଲା ॥ ୨୧ ॥
ଶୁକସାରଣଙ୍କୁ କହୁ ନବେଶି ହୋଇ ।
ସାଧେ ରାମର ତହିଁକି ଦୁଇ ମନ୍ତ୍ରୀକି ଦୂତ ପେଷଇ ॥ ୨୨ ॥
ଶୁଣିଣ ଶୁକସାରଣେ ମର୍କଟ ରୂପ ଧଇଲେ ।
ବାନରଙ୍କ ଭିତରେ ପଶି ସମସ୍ତ ଠାବ ବୁଲିଲେ ॥ ୨୩ ॥
ବଭ୍ରୀଷେଣ ଦୁଇ ମନ୍ତ୍ରୀଙ୍କୁ ଭେଟିଲା ।
ଶ୍ରୀରାମର ସନ୍ନିଧଙ୍କୁ ବାନ୍ଧି ଘେନିଗଲା ॥ ୨୪ ॥
ଶୁକସାରଣଙ୍କୁ ରଘୁପତି କହିଲେ ଯାହା ।
ସଭାରେ ଲବକୁଶେ ଗୀତରେ ଗାଇଲେ ତାହା ॥ ୨୫ ॥
ଦୂତ ବୋଲି ଶୁକସାରଣଙ୍କୁ ଗଉରବ କଲେ ।
ବନ୍ଧନ ଫେଡ଼ିକର ଜୟମାଳା ଦେଲେ ॥ ୨୬ ॥
ବଚନ ସନମାନ ପାଇଲେ ପଉରୋଷ ।
ବାହୁଡ଼ି କହିଲେ ସେ ଦଶଗ୍ରୀବ ପାଶ ॥ ୨୭ ॥

---

୧୭. ପଦଟି ଖ ପୋଥିରେ ନାହିଁ । ୨୦. ଆଟେ—ପାଟବାନ୍ଧି (ଖ) ।
୨୨. ନବେଶି—ନବେସିତ(ଖ) । ୨୪. ଦୁଇମନ୍ତ୍ରୀଙ୍କୁ—କୁ ଦୁଇମନ୍ତ୍ରି (କ) ।
୨୫. ଲବକୁଶେ—ଲବ କୁମେ । ୨୭. ସନମାନ—ସମାନେ (କ) ।

## ମାୟା ମୁଣ୍ଡ

ଶୁଣିଣ ରାବଣ ମନେଣ ଭୟେ ହେଲା ।
ମାୟାରେ ବେନି ଶିର କରି ସୀତାର ସନ୍ନିଧିକି ଗଲା ॥ ୧ ॥
କପଟ କଥା କହଇ ଲଙ୍କପତି ।
ରାମ ଲକ୍ଷ୍ମଣ ବେନି ଶିର ଦେଖସି ଗୋ ସତୀ ॥ ୨ ॥
ଲଙ୍କାପୁରେ ତୋହର ସ୍ୱାମୀ ପଶିଲେକ ସହୁଂ ।
ମୁହିଂ ନ ଜାଣଇ ଅସୁର ସୈନ୍ୟ ଏହାଙ୍କୁ ବିନାଶ କଲେ ସେହୁଂ ॥ ୩ ॥
ତୁହି ରାମ ଲକ୍ଷ୍ମଣଙ୍କୁ କରିଥିଲୁ ଆଶ ।
ଏ ମୁଣ୍ଡ ଦୁଇ ଦେଖି ଛାଡସି ମୁହାଂସ ॥ ୪ ॥
ଏବେ ମୋହର ହୁଅ ମନୋହାରୀ ।
ସୁନ୍ଦରି କୋପ ତେଜ ହେ ଜନକକୁମାରୀ ॥ ୫ ॥
ମଥା ପୋତି ସତୀ ରୋଷେଣ କହଇ ।
ତୋହର କଥା ଶୁଣି ଶରୀର ମୋହର ଦହଇ ॥ ୬ ॥
ତୁହି ଅସୁର ପାମର ଦୁର୍ଲକ୍ଷଣ ଚୋର ।
କେମନ୍ତେ ମାରିଲୁ ମୋହର ପ୍ରଭୁ ରଘୁବର ॥ ୭ ॥
ତିନି ଭୁବନେ ଯେତେକ ଅଛନ୍ତି ଛତ୍ରି ।
ଛତ୍ରି କର ସୁନ୍ଦର ରାମ ପାରଇ ନପାରି ॥ ୮ ॥
ପ୍ରତାପ ଚକ୍ରବର୍ତ୍ତୀ ସୁମିତ୍ରାଙ୍କ ସୁତ ।
ତାହାଙ୍କୁ ମାରିବାକୁ କେ ଅଛଇ ସାମର୍ଥ ॥ ୯ ॥
ଯଦ୍ୟପି କପଟେ ଅବା ମାରିଲୁ ଦୁଇ ଭାଇନ୍ତ ।
ତୋହର ଲକ୍ଷ୍ମୀ ଜାଣ ହୋଇଲା ଚିର ଗତ ॥ ୧୦ ॥
ହନୁମନ୍ତ ଏ କଥା ଜାଣଇ ସେ ଯେବେ ।
ତୋହର ଦଶମୁଣ୍ଡ କାଟଇ ସେ ତେବେ ॥ ୧୧ ॥
ଆବର ଅଛନ୍ତି ଯେତେକ ମର୍କଟ ।
ସେ ତୋହର ଅସୁର ସୈନ୍ୟଙ୍କୁ କରନ୍ତି ସିନା ନଷ୍ଟ ॥ ୧୨ ॥
ମର୍କଟ ସୈନ୍ୟ ଯୁଦ୍ଧ ନ ପାରିବେ ମାତ୍ର ।
ମୁହିଂ ଭସ୍ମ କରିବି ତୋହର ଲଙ୍କାପୁରୀ ॥ ୧୩ ॥
ରାବଣକୁ ମହାସତୀ ଯେତେକ କହିଲେ ।
ଲବକୁଶେ ତାହା ସଭାରେ ଗାଇଲେ ॥ ୧୪ ॥
ଯେବଣ ଯେବଣ ପଦ ହୁଅଇ ଅନ୍ତର ।
ବୁଝାଇଣ କହଇ ତାହା କୁଶକୁମର ॥ ୧୫ ॥

---

୧୦. ଚିରଗତ—ସିଦ୍ଧିଗତ ।

ଶୁଣିଣ ସଭ୍ଲୋକେ ହରଷ ହୁଅନ୍ତି ।
ସମସ୍ତେ ସୀତାଙ୍କୁ ଧନ୍ୟ ଧନ୍ୟ କରନ୍ତି ॥ ୧୬ ॥
ଅନନ୍ତରେ ରାମ ସୀତାଙ୍କୁ କଲେ ରୋଷ ।
ଜାନଙ୍କର ଶଙ୍କାରେ କହୁ ହୁ ନାହିଁ ଦୋଷ ॥ ୧୭ ॥
ସୀତା ଯେବେ ରାବଣଙ୍କୁ କରେଣ କଲ୍ଲା ।
ଏମନ୍ତ କଥା ସେ କପଟଇଂ କହନ୍ତା ॥ ୧୮ ॥
ଶୁଣିଣ ଶ୍ରୀରାମ ବସିଲେ ମଥା ପୋଡ଼ ।
ଭରଥ ଲକ୍ଷ୍ମଣ ବିଷାଦ କଲେ ମନ୍ଦ ॥ ୧୯ ॥
ସଭା ଲୋକେ ଯହୁଁ ଏକଥା କହିଲେ ।
ଲବକୁଶ ଦୁଇ ଭାଇ ତୁନ ହୋଇ ବସିଲେ ॥ ୨୦ ॥
ବଶିଷ୍ଠେ ସଭ୍ରାନ୍ତଙ୍କ ନଶବଦ କରନ୍ତି ।
ତହୁଂ ଲବକୁଶେ ନାଦ ହୁଂକାରନ୍ତି ॥ ୨୧ ॥
ସୀତାର ରୂଳେ କଥା ହୁଅନ୍ତେ ଦଶଶିର ।
ରଜନୀ ବିସରିଲ ଉଦୟେ ଭାସ୍କର ॥ ୨୨ ॥
ବାନରେ ଲଙ୍କା ପାଚେଶ୍ୱରେ ଉଠିଲେ ।
ରାବଣର ଆଗେ ଯାଇ ଡଗରେ କହିଲେ ॥ ୨୩ ॥
ଭୋ ଲଙ୍କପତି ଜାସ କରୁ ଏଥ ।
ମର୍କଟେ ତୋହର ନଗ୍ର କଲେନ ଧୂମାନ୍ତ ॥ ୨୪ ॥
ଏକ ଯୁବତୀଏ ଗ୍ରେହାଇ ଆଣିଲୁ ।
ତେତେ ଅଭୟେ ରାଜ୍ୟ ଧ୍ୱଂସ କରାଇଲୁ ॥ ୨୫ ॥

## ଯୁଦ୍ଧାରମ୍ଭ

ଡଗର ବଚନ ଶୁଣିଣ ଦଶଶିର ।
ଅଶୋକବନରୁ ବାହୁଡ଼ି ଆସଇ ଲଙ୍କେଶ୍ୱର ॥ ୧ ॥
ସୈନ୍ୟ ବଳ ସାଜି ଗଲେକ ଯୁଦ୍ଧ କରି ।
ସଂଗ୍ରାମେ ପଶି ମାଇଲେ ଅନେକ ବୃକ୍ଷ ହରି ॥ ୨ ॥
ଯୁଥପତିମାନେ ସମର ଘୋର କଲେ ।
ଅସୁର ସୈନ୍ୟ ଅବହେଳେ ନାଶିଲେ ॥ ୩ ॥
ସମର ଗୋଳ ଶୁଭିଲାକ ଯହୁଂ ।
ଜମ୍ବୁବନ୍ତଙ୍କୁ ଶ୍ରୀରାମ ପୁଚ୍ଛି କଲେ ତହୁଂ ॥ ୪ ॥

---

୧୮. ସୀତା—ସୀତାଙ୍କୁ ; ରାବଣଙ୍କୁ—ରାବଣ । ୨୪. ଧୂମାନ୍ତ—ହତ (କ) ।
୨୫. ତେତେ—ଏତେ(ଖ) । ୧. ଅଶୋକ—ଓସେକ (ଖ) ।

ନୀଳ ନଳ ଶରଭ ଦକ୍ଷିଣ ଦ୍ୱାରେ ଶୁଭଇ ।
କରପତ୍ରି ଯୋଡ଼ି ଜମ୍ବେବ କହଇ ॥ ୫ ॥
ଶୁଣି ଦେବ ସୀତାପତି ଖଣ୍ଡିବର ସୁନ୍ଦର ।
ଦ ନରେ ହନୁଂ ପଶିଲେ ଲଙ୍କାଗଡ଼ ଭିତର ॥ ୬ ॥
ତେ ନେ ପେ ଦଶମାଥ ଯୁଦ୍ଧ କରି ଅଇଲା ।
କହୁତ ମର୍କଟ ସୈନ୍ୟ ସମରେ ମାଇଲା ॥ ୭ ॥
ଯୂଥପତିମାନେ ସମରେ କରନ୍ତି ଗୋଳ ।
ଶୋପେ ଶ୍ୱେ ଦେବ ସମରେ ଶୁଭଇ ଗୋଳ ॥ ୮ ॥
ଶୁଣିଣ ଶ୍ରୀରାମ ଧାଆନ୍ତି ମହା ରାଗେ ।
ଲକ୍ଷ୍ମଣ ରୂପ ଧରିଅଛି ଖଣ୍ଡିବରର ଲାଗେ ॥ ୯ ॥
ସଂଗ୍ରାମେ ହନୁଂ ପଶିଲେ ରଘୁନାଥ ।
ପଦେ ପଡ଼ି କହଇ ଅଞ୍ଜନାର ସୁତ ॥ ୧୦ ॥
ମୁହିଂ ତୋହର ଦାସ ମୋହର ଦେହେ ପ୍ରାଣ ଥାନ୍ତେ ।
ଯାଦେ କେମନ୍ତେ ଯୁଦ୍ଧ କରିବୁ ସନ୍ତାନାନ୍ତେ ॥ ୧୧ ॥
ଏ ମୋହର କନ୍ଧେ ବିଜେ(ଯେ) ଦେବ କର ।
ଦୁଷ୍ଟ ନିଶାଚର ମାରି ତୋହର ମାନ ସାର ॥ ୧୨ ॥
[ଏବେ କୋପଶାନ୍ତ କର ରଘୁବୀର ।
ଅନେକ କହଇ ସେ ପବନ କୁମାର] ॥ ୧୩ ॥
ନହ ଚେତ ଆଗ୍ୟାଂ(ଦିଅ) ଭୃଥକେଷ୍ଟି ।
ରାବଣର ମୁଣ୍ଡ ମୋଡ଼ି ରକାଟଇ ତାହାର ଭଣ୍ଡି ॥ ୧୪ ॥
ଶୁଣିଣ ହରଷେ କହନ୍ତି ରଘୁନାନ ।
ତୋହର ମାରିଲେ ସରଇ ମୋହର ମାନ ॥ ୧୫ ॥
ରାବଣ ନିଶାଚରକୁ ମୁହିଁ ସେ ମାରିବି ।
ତେବେ ହେ ମୋହର ପ୍ରତଗ୍ୟାଂ ରୁହାଇବ ॥ ୧୬ ॥
ଶୁଣିଣ ହରଷ ହୋଇ କହଇ ପବନର ଶିଷ ।
ଆସସି ଶ୍ୱେ ନାଥ ସ୍କନ୍ଧରେ ମୋର ବସ ॥ ୧୭ ॥
ଶୁଣିଣ ଶ୍ରୀ ରାମଚନ୍ଦ୍ର ହରଷ ହୋଇଲେ ।
କୋଦଣ୍ଡ ଧରି ହନୁମନ୍ତର ସ୍କନ୍ଧରେ ବିଜେ କଲେ ॥ ୧୮ ॥
ଦାସର ସ୍କନ୍ଧରେ ଶ୍ରୀରାମ ବିଜୟେ କଲେ ଯହୁଁ ।
ତେଣୁ ସେ ଦାଶରଥି ନାମ ବଖ୍ୟାତ ତହୁଁ ॥ ୧୯ ॥

---

**୧୬. ପ୍ରତଗ୍ୟାଂ ରୁହାଇବ—ପ୍ରତାପ ସାରିବ (କ) । ୧୯. ବଖ୍ୟାତ—ବିଖ୍ୟାତ ।**
**ଏ ପଦର ଶେଷ ପାଦ ବଦଳେ ଖ ପୋଥିରେ ଅଛି :—**

ଲକ୍ଷ୍ମଣଙ୍କୁ ସ୍କନ୍ଧେ ବସାଇ ବାତାସୁତ ।
ସୁଗ୍ରୀବଙ୍କୁ ଆଗମ ଦଶରଥ ବେନିସୁତ ॥ ୨୦ ॥
ଅନେକ ରଥଗଜ ଅସୁର ସୈନ୍ୟ ମାରିଲେ ।
କୋଦଣ୍ଡ ଧରି ରାମ ସମରେ ବିଜେ କଲେ ॥ ୨୧ ॥
ଶୁକ ସାରଣେ କହନ୍ତି ଶୁଣ ହୋ ଲଙ୍କ ପତି ।
ଯୁଦ୍ଧ କଲେ ଏହିକ୍ଷଣି ମାରିବ ଦାଶରଥି ॥ ୨୨ ॥
ଶୁକସାରଣଙ୍କର ବଚନ ଯହୁଁ ଶୁଣିଲା ।
ସଂଗ୍ରାମ ଉପେଖି ରାବଣ ତରେଣ ପଳାଇଲା ॥ ୨୩ ॥
ଯେତେକ ସଇନ୍ୟ ପ୍ରାଣ ଘେନି ଗଲେ ।
ସମସ୍ତେ ହେ ଶରୀରେ ବାଣଘାତ ହୋଇଲେ ॥ ୨୪ ॥
ଲଙ୍କାଗଡ଼ରେ ଅନେକ ଅସୁର ମଲା ।
କିଛୁ କିଛୁ ସୈନ୍ୟ ପ୍ରାଣ ସେ ପାଇଲା ॥ ୨୫ ॥
ଶତ୍ରୁର ଦର୍ପଧଂସନ କୋଦଣ୍ଡଧାରୀ ।
ବାହୁଡ଼ି ବିଜୟେ ରାମ ସୁବଳାସ୍ଥା ଗିରି ॥ ୨୬ ॥

## ଅଙ୍ଗଦର ଦୌତ୍ୟ

ଇତଅନ୍ତରେ ରାବଣ ଖଲାଇ ମନ୍ତ୍ରୀ ଗୁଲେ ।
ଫଳନ୍ତ ଖାଇ ମର୍କଟ ବଳବନ୍ତ ହୋଇଲେ ॥ ୧ ॥
ଗଡ଼ ଦୁଆର ଯାଡ଼ି କପିନ୍ଦ୍ର ପଶି ନ ଦେବା ।
ଅସବଳ ହୋଇଲେ ସମସ୍ତେ ବେଢ଼ି ମାରିବା ॥ ୨ ॥
ଗଡ଼ ଦୁଆରେ ରାବଣ ଯୋଦ୍ଧା ବରଗିଲା ।
ଲବକୁମର ତାହା ଗୀତେଣ ଗାଇଲା ॥ ୩ ॥
[ଶତ୍ରୁ ଦର୍ପ ଧଂସିଲେ କୋଦଣ୍ଡ ରୂପ ପାଣି ।
ବାହୁଡ଼ି ବିଜେ କଲେ ରଘୁକୁଳମଣି] ॥ ୪ ॥
ଦେବଇନ୍ଦ୍ର ଦେଖିଲା ରାବଣ ଗଡ଼ ନିରୋଧିଲା ।
ଗନ୍ଧର୍ବ ହୁଙ୍କାର ପାକଶାସନ କହିଲା ॥ ୫ ॥

---

"ଦାଶରଥି ନାମ ଦେବଗଣେ ଦେଲେ ତନ୍ତୁଂ ॥ ତେଣୁ ସେ ଶ୍ରୀରାମ ଦାଶରଥି ନାମ ବିଖ୍ୟାତ । ସଙ୍କରେ ବିଶେଷି ଏହା ଲବକୁଶେ କହନ୍ତି ॥" ୨୫. ସୈନ୍ୟ ପ୍ରାଣସେ—ସେ ସଂଗ୍ରାମେ (କ) । ୨୬. ପଦଟି ଖ ପୋଥିରେ ନାହିଁ । ୧. ଖଲଇ ମନ୍ତ୍ରୀ—ଖଇ ମାଦ୍ରି (କ) । ୨. ଅସବଳ—ଓଦ୍‌ବଳ (ଖ) । ୩. ଗଢ଼—ଗୃହ (ଖ) ।

ଶ୍ରୀରାମର ଆଗେ କହ ମୋହର ବଚନ ।
ମର୍କଟେନ୍ଦ୍ର ସମ୍ଭାଳି ଥାଉ ରଘୁନାନ ॥ ୬ ॥

ଇନ୍ଦ୍ରଙ୍କର ଆଗ୍ୟାଂରେ ଗନ୍ଧର୍ବ ଗଲା ବେଗେ ।
ଶୃଚନ୍ୟ ଥାଇ କହଇ ରାମଚନ୍ଦ୍ରଙ୍କର ଆଗେ ॥ ୭ ॥
ତେଣୁ ରଘୁମଣି ରାବଣ ନଷ୍ଟ କଲ ମୁରାରି ।
ତୁମ୍ଭ ବନ୍ଧା କରିଥାଅ ତୋହର କପିବଳ ଥାଟ ॥ ୮ ॥
ତାହାଙ୍କ ବଚନ ଶୁଣିଣ ଦାଶରଥି ।
ହନୁମନ୍ତ ଶରୀର ଆଶ୍ୱାସି କହନ୍ତି ॥ ୯ ॥
ରାବଣ ତାହାର ନଗ୍ର ରକ୍ଷା କଲା ଯେବେ ।
ତୁମ୍ଭେ ହେ ମର୍କଟେନ୍ଦ୍ର ରକ୍ଷା କର ଏବେ ॥ ୧୦ ॥
ଶୁଣିଣ ହନୁମନ୍ତ ହରଷ ହୋଇଲା ।
ଲାଙ୍ଗୁଳ ବେଢ଼ାଇ ମର୍କଟେନ୍ଦ୍ର ରକ୍ଷା କଲା ॥ ୧୧ ॥
ତାହା ଦେଖି ଗନ୍ଧର୍ବ ଗଲାକ ତୁରିତେ ।
ରାମର କଥା କହିଲା ଦେବତାଙ୍କର ଅଗ୍ରତେ ॥ ୧୨ ॥
ଶୁଣି ସୁରଗଣ ହୋଇଲେ ହରଷ ।
ସଭାରେ ବସି ବିସ୍ତାର କହନ୍ତି ଲବକୁଶ ॥ ୧୩ ॥

ଏଥୁ ଅନନ୍ତରେ ରାମ ମନ୍ତ୍ରୀ ଯେନ ବିଚାରିଲେ ।
ଲଙ୍କାକଇ ଅଙ୍ଗଦକୁ ଦୂତ ବରଗିଲେ ॥ ୧୪ ॥

ଶ୍ରୀରାମର ଆଗ୍ୟାଂରେ ସେ ବାଳିର ତନୁଜ ଗଲା ।
ରାବଣ ନଗ୍ରେ ସେ ପ୍ରବେଶ ହୋଇଲା ॥ ୧୫ ॥
ଜଗତିରେ ବସି ଅଛଇ ଲଙ୍କ ପତି ।
ଦେଖିଣ ବିଚାର କରଇ ଅହଲ୍ୟାର ନାଥ ॥ ୧୬ ॥
ଏ ଛାର ଅସୁରର କର୍ମା ଜଗତରେ ବସିବା ।
ଏହାର ସହ କରି ଲାଙ୍ଗୁ ପଦ୍ମପୃଷ୍ଠେ କରିବା ॥ ୧୭ ॥

ଶ୍ରୀରାମ ସୁମରି ଲାଙ୍ଗୁ ଭୂମିରେ ବେଢ଼ାଇଲା ।
ରାବଣର ଜଗତିରୁ ହାତେ ଉଚ ହୋଇଲା ॥ ୧୮ ॥

ଜଗତିରେ ବସି ଅଛଇ ଲଙ୍କପତି ।
ଅଙ୍ଗଦ ବସଇ ସେହୁ ଉଚ ଥାନ ଜଗତି ॥ ୧୯ ॥
ତହୁଂ ଆନନ୍ଦି ବସଇ ବାଳି ସୁତ ।
ରାବଣ ହୃଦକଇ ଉଣ୍ଡାଇଣ ଲୁତ ॥ ୨୦ ॥

---

୧୭, ପଦ୍ମପୃଷ୍ଠେ କରିବ—ବେଢ଼ାଇବ (ଖ) । ୧୯· ପଦଟି ଖ ପୋଥିରେ ନାହିଁ ।

ଦେଖିଣ କୋପ କରଇ ଦଶଗିର ।
କରେ ମର୍କଟ କମ୍ପା କପିଲୁ ମୋହର ପୁର ॥ ୨୧ ॥
ପ୍ରାଣକଇ ତୋହର ଶଙ୍କା ନ କଲୁ ।
ଗୋଡ଼ ମେଲଇ ମୋହର ଛାମୁରେ ବସିଲୁ ॥ ୨୨ ॥
କେ ତୋହର ପିତା କାହାର ତୁହି ସୁତ ।
ସ୍ବରୂପ କରି କହ ମୋହର ଅଗ୍ରତ ॥ ୨୩ ॥
ଅଙ୍ଗଦ କହଇ କେହ୍ନେ ନ ଚିହ୍ନିଲୁ ମୋତେ ।
ମୁହିଁ-ସେ ଅଙ୍ଗଦ ଚଳେ ଦଉଡ଼ି ଲଗାଇ ଥାଇ ତୋତେ ॥ ୨୪ ॥
ମୋହର ପିତା ବାଳି କପି ରାଜନ ।
ବାଳ ଧରି ତୋତେ ଯେନ ଯାଇ ଆପଣା ଭୁବନ ॥ ୨୫ ॥
ମୁହିଁ ବାନ୍ଧ ଯେ ବୁଲଇ ଥାଇ ତୋତେ ।
କେହ୍ନଂଶ ଗର୍ବରେ ରେ ନ ଚିହ୍ନିଲୁ ମୋତେ ॥ ୨୬ ॥

ଏବେ ମୁହିଂ ରାମଚନ୍ଦ୍ରଙ୍କର ଦୂତ ।
ସୀତାକୁ କମ୍ପା ହରି ଆଣିଲୁରେ ଅସୁର ପାପ ଚିତ୍ତ ॥ ୨୭ ॥
ଦୟାସାଗର ସେ କ୍ଷତ୍ରବର ସୁନ୍ଦର ।
ତୋହର ତହିଂକି ମୋତେ ପ୍ରମନ୍ତ୍ରିଲେ ରଘୁବୀର ॥ ୨୮ ॥
ଶ୍ରୀରାମଙ୍କୁ ସେ ସୀତା ସମର୍ପ ନେଇ ।
ଦନ୍ତେ ତୃଣ ଧରି ଯେନ ଶରଣ ପଶି ଲଙ୍କସାଇଁ
ନହୁଚେତ ମୋହର ଗୋଚରେ ଦେଇ ଥା-ଅ ସୁସ୍ଥ ହୋଇ ୨୯ ॥
ଯେତେକ କଥା ଅଙ୍ଗଦ ରାବଣକୁ କହିଲା ।
ଲବକୁମର ତାହା ଗୀତରେ ଗାଇଲା ॥ ୩୦ ॥
ଅର୍ଥ କରିଣ ବୁଝାବଇ କୁମର କୁଶ ।
ଶୁଣିଣ ସଭାରେ ଲୋକେ ସମସ୍ତେ ହରଷ ॥ ୩୧ ॥
ଅଙ୍ଗଦ ବଚନ ଶୁଣି ରାବଣ କୋପ କଲା ।
ଧରି ମାର ବୋଲି ଅସୁରଙ୍କୁ ଆଗ୍ୟାଂ ଦେଲା ॥ ୩୨ ॥
ରାବଣର ଆଗ୍ୟାଂରେ ଅସୁରେ ଧାଇଁଲେ ।
ଲବକୁମର ତାହା ଗୀତରେ ଗାଇଲେ ।
ଅଠର ଲକ୍ଷ ଦନୁଜ ଅଙ୍ଗଦକୁ ଧଇଲେ ॥ ୩୩ ॥
ବାନର ମୂରତି ଅଙ୍ଗଦ କାୟା ବସ୍ତାରିଲା ।

---

୨୪. ଚିହ୍ନିଲୁ—ବୁଝିଲୁ (କ) । ୨୭. ଦୂତ—ଭୃତ୍ୟ (କ) । ୨୮. ପ୍ରମନ୍ତ୍ରିଲେ—ପେଷିଲେ (ଖ) । ୨୯. ଦ୍ବିତୀୟ ପାଦଟି ଖ ପୋଥିରେ ନାହିଁ ଓ ଶେଷ ପାଦଟି ଖ ପୋଥିରେ ନାହିଁ । ୩୩. ଦ୍ବିତୀୟ ପାଦଟି କ ପୋଥିରେ ନାହିଁ ।

ମୁଷ୍ଟି ବେଢ଼ାଇ ସକଳ ଅସୁର ଧଇଲ ।
ଏଡ଼ିଲା ବାନରମାନେ ଶିରକମଳ ମୋଡ଼ାଇଲ ॥ ୩୪ ॥
ବାମକରେ ଧରି ଝିଙ୍କିଲେ ଜଗତ ।
ମୁଣ୍ଡ ମାଡ଼ି ତଳେ ପଡ଼ିଲା ଲଙ୍କାପତି ॥ ୩୫ ॥
ଲତେକ ମାରି ମର୍କଟ ସେନାରେ ଅଇଲା ।
ଦଶମୁଖେ ରାବଣର ରୁଧିର ବାହାର ହୋଇଲା ॥ ୩୬ ॥
ବିଭୀଷଣେ ଶ୍ରୀରାମଚନ୍ଦ୍ରର ଆଗେ କହନ୍ତି ।
ଶୁଣି ସର୍ବଲୋକେ ଅଙ୍ଗଦଙ୍କୁ ପ୍ରଶଂସନ୍ତି ॥ ୩୭ ॥
ମର୍କଟ ସେନା ଅଙ୍ଗଦ ବିକ୍ରମେଣ ଅଇଲା ।
ବୀରାଜ ମର୍କଟ ଶ୍ରୀରାମର ସନ୍ନିଧ୍ୟେ ଥୋଇଲା ॥ ୩୮ ॥
ଶ୍ରୀରାମର ଆଗେ ଅଙ୍ଗଦ କହିଲେ ଯାହା ।
ବିକ୍ରମର ଗୀତେଣ ଗାଇଲେକ ତାହା ॥ ୩୯ ॥
ମର୍କଟ ସେନ ସହୁଂ ଅଙ୍ଗଦ ଅଇଲା ।
ଏଣିକେ ରାବଣର ଦେହେ ଚେତନା ପଶିଲା ॥ ୪୦ ॥
ମନ୍ତ୍ରୀ ଅମାତ୍ୟ ଯେତେକ ପଳାଇଣ ଥିଲେ ।
ଯୂଥପତି ହାତେ ବିନାଶ ହୋଇଲେ ॥ ୪୧ ॥
ବହୁଂ ଥୋକା ଏଣ ଉବୁରିଣ ଥିଲେ ।
ରାଜାର ଆଶ୍ୱାସି ପ୍ରବୋଧି କହିଲେ ॥ ୪୨ ॥
ଆମ୍ଭଙ୍କର ଆଗ୍ୟାଂ ହୋଇଥିବି ଲଙ୍କାଗ୍ରାମେ ।
ରକ୍ଷ ମର୍କଟ ସବୁ କରିବୁ ॥ ୪୩ ॥
ରାମ ଲକ୍ଷ୍ମଣ ଦୁଇ ଭାଇଙ୍କୁ ମାରି ।
ଦେଖ ରାଜ୍ୟ ତୋହର କାର୍ଯ୍ୟ କରି ॥ ୪୪ ॥
ଶୁଣିଣ ରାବଣ ଯେ ହରଷ ହୋଇଲା ।
ସାତ ସେନାପତିଙ୍କି ଯୁଦ୍ଧକୁ ପେଷିଲା ॥ ୪୫ ॥
ମର୍କଟ ସୈନ୍ୟରେ ଯେ ପଶି ଯୁଦ୍ଧ କଲେ ।
ଯୂଥପତିଙ୍କର ହସ୍ତେ ବିନାଶ ହୋଇଲେ ॥ ୪୬ ॥
ସାତ ସେନାପତିଙ୍କର ମରଣ (ରାବଣ) ସହୁଂ ଶୁଣିଲା ।
ସାତଙ୍କର ନାମଧରି ଅନେକ ରୋଦନ କଲା ॥ ୪୭ ॥

---

୩୪. ଦ୍ୱିତୀୟ ପାଦଟି କ ପୋଥିରେ ନାହିଁ । ୩୫. ମୁଖ ମାଡ଼ି—ମୋହଯାଇ (ଖ)
୪୦-୪୨. କ ପୋଥିରେ ୪୧ ପଦର ଶେଷ ପାଦ ଓ ୪୨ ପଦର ପ୍ରଥମ ପାଦ
ନାହିଁ । ୪୪. ମାରି—ମାରିବୁ(ଖ) ; ଦ୍ୱିତୀୟ ପାଦ ରଖ ପୋଥିର ପାଠ :—
ସମସ୍ତ ଯୂଥପତି ବାନର ସଂହାରିବୁ ।

## ଇନ୍ଦ୍ରଜିତର ଯୁଦ୍ଧ

ପିତାର ରୋଦନ ଦେଖି କୁମାର ଇନ୍ଦ୍ରଜିତ ।
ହସି ଯୋଡ଼ି କହଇ ଶୁଣସି ହେ ତାତ ॥ ୧ ॥

ଆଜ ମୁହିଁ ଘୋର ସମର କରିବି ।
ଋକ୍ଷବାନର ସମସ୍ତ ସୈନ୍ୟ ମାରିବି ॥ ୨ ॥

ନରାନ୍ତକ ଦେବାନ୍ତକ ଦୁଇଭାଇ ମୋତେ ଦେସି ।
ନିଷ୍କମ୍ପ ହୋଇ ଯୁଦ୍ଧ ଜଗତରେ ବାପ ଆସି ॥ ୩ ॥

ଶୁଣିଣ ଆନନ୍ଦ ଅସୁର ବୀର ରାୟେ ।
ଚନ୍ଦ୍ରସମ ଚନ୍ଦନ ଲେପଇ ପୁତ୍ରର କାୟେ ॥ ୪ ॥

ମକୁଟ ବାନ୍ଧି କର୍ଣ୍ଣେ କୁଣ୍ଡଳ ଭରିଲା ।
ଶତେ ସର ମୁକୁତା ଗଳାରେ ଲମ୍ବାଇଲା ॥ ୫ ॥

ଅନେକ ଛନ୍ଦେ ବୀର ବାଦ୍ୟ ବଜାଇ ।
ସଂଗ୍ରାମକୁ ବେଗେ କଲା ରାବଣ ତନୁଜଇ ॥ ୬ ॥

ନରାନ୍ତକ ଦେବାନ୍ତକ କରେ ଶୂଳଗଦା ଧରି ।
ରଥ ଆଗେ ଧାମନ୍ତି କାନ୍ଧା ବିଧାରି ॥ ୭ ॥
ଇନ୍ଦ୍ରଜିତ ରଥ ଚଢି ସୈନ୍ୟେ ସମ୍ଭାଇ ।
ନରାନ୍ତକ ଦେବାନ୍ତକ ଶ୍ରୀରାମର ସୈନ୍ୟ ବିନାଶଇ ॥ ୮ ॥
ଯୂଥପତିମାନେ ବାଟ ଓଗାଳିଲେ ।
ଚରଣ ଧରି ଯୂଥପତି (ଙ୍କି) କଚାଡ଼ିଲେ ॥ ୯ ॥
ଷଡ଼ବର ସୁନ୍ଦର ବସିଅଛନ୍ତି ଯହିଁ ।
ସନ୍ଧ୍ୟେ ମିଳିଲେ ନରାନ୍ତକ ଦେବାନ୍ତକ ଦୁଇଭାଇ ॥ ୧୦ ॥
ଦେଖିଣ ଶ୍ରୀରାମ କୋଦଣ୍ଡ କରେ ଧରି ।
କୃତାନ୍ତକ ଶରେ ଦୁଇ ଭାଇଙ୍କୁ ନିବାରି ॥ ୧୧ ॥
ନରାନ୍ତକ ଦେବାନ୍ତକ ବିନାଶ ଯହୁଁ ଇନ୍ଦ୍ରଜିତ ଦେଖିଲା ।
ଆକାଶରେ ଥାଇ ଅନେକ ଶର ବନ୍ଧିଲା ॥ ୧୨ ॥

ସକଳ ସୈନ୍ୟ ବିନାଶିଲା ଯହୁଁ ।
ସଂଗ୍ରାମେ ଶ୍ରୀରାମ ବିଜୟେ କଲେ ତହୁଁ ॥ ୧୩ ॥

ରାମଙ୍କୁ ଦେଖିଣ ଇନ୍ଦ୍ରଜିତ ମହାବୀର ।
ରଥ ଆଣି କଲା ଷଡ଼ବର କଡର ॥ ୧୪ ॥

---

୫. ଶତେସର—ସପ୍ତସର(ଖ) । ୬. ଛନ୍ଦେ—ସୁଛନ୍ଦେ (ଖ)

ମୋହନା ବାଣେ ରାମଲକ୍ଷ୍ମଣଙ୍କୁ ମାରିଲା ।
ପ୍ରାଣ ଘେନି ଏକା ବିଭୀଷଣ ପଳାଇଲା ॥ ୧୫ ॥
ସମସ୍ତ ସୈନ୍ୟ ବିନାଶିଲି ଇନ୍ଦ୍ରଜିତ ।
ରାମ ଲକ୍ଷ୍ମଣ ଶିର ବିନାଶିବି ବୋଲି ବିଚାରଇ ମନେ ଚିନ୍ତି ॥ ୧୬ ॥
ଆଦିତ୍ୟ ଯେ ଏଗାର ପଣ୍ଡିତ ହୋଇଥିଲା ।
ତତକ୍ଷଣେ ସେ ମେରୁ ଶିଖରେ ଲୁଚି ରହିଲା ॥ ୧୭ ॥
ରାମର ବୋହିନା ବିନାଶିଲା ଯହୁଁ ।
ନିଜପୁରକୁ ଇନ୍ଦ୍ରଜିତ ଆଇଲା ତହୁଁ ॥ ୧୮ ॥
ପିତାର ଆଗେ କହିଲା ସବୁର ବିନାଶ ।
ଶୁଣିଣ ଦଶାନନ ହୋଇଲା ହରଷ ॥ ୧୯ ॥
ରାବଣ ପୁଚ୍ଛଇ ଇନ୍ଦ୍ରଜିତର ମୁଖ ଚାହିଁ ।
ନରାନ୍ତକ ଦେବାନ୍ତକ ଗଲେ ଯେ ସେ ଅଛନ୍ତି କାହିଁ ॥ ୨୦ ॥
ଇନ୍ଦ୍ରଜିତ କହଇ ଯେ ଅନେକ ସୈନ୍ୟ ମାରିଲେ ।
ରାମର ବାଣେ ସେ ପ୍ରାଣାନ୍ତକ ହୋଇଲେ ॥ ୨୧ ॥
ଶୁଣିଣ ରାବଣ ଶୋକ ଯେତେ କଲା ।
ଲବକୁଶର ତାହା ଗୀତେଣ ଗାଇଲା ॥ ୨୨ ॥
ଏଥି ଅନନ୍ତରେ ଯେ ସାବଧାନେ ଶୁଣ ।
ପ୍ରବଳମ୍ବା ଗିରିରେ ଯେ ଲୁଚିଥିଲା ବିଭୀଷଣ ॥ ୨୩ ॥
ଇନ୍ଦ୍ରଜିତ ଯହୁଁ ଲଙ୍କାପୁରକୁ ଗଲା ।
ଗିରୁ ବିଭୀଷଣ ବାହାର ହୋଇଲା ॥ ୨୪ ॥
କପିରାଜଙ୍କୁ ଦେଖି ରୋଦନ କରଇ ।
ଶିର ଛିଣ୍ଡା ପଡ଼ିଛି ଅଛଇ ସୁଗ୍ରୀବରାଇ ॥ ୨୫ ॥
ଅଙ୍ଗଦ ସହିତେ ସେନା ଯୂଥପତି ।
ଖଣ୍ଡ ଖଣ୍ଡ ହୋଇ ସବୁହେ ପଡ଼ିଣ ଅଛନ୍ତି ॥ ୨୬ ॥
ରାମ ଲକ୍ଷ୍ମଣ ଜାମ୍ବୁବ ହନୁମାନ ।
ଏ ଗୁଣରେ ହୋଇ ଅଛନ୍ତି ଅଚେତନ ॥ ୨୭ ॥
ରାମଙ୍କୁ ଦେଖି ବିଭୀଷଣ ରୋଦନ କଲା ଯେତେ ।
ମଣ୍ଡପରେ ଲବକୁଶେ ଗାବନ୍ତି ସେ ଗୀତେ ॥ ୨୮ ॥
ଜାମ୍ବୁବକୁ ବିଭୀଷଣ ଅନେକ ବୋଇଲା ।
ତୋହର ସଙ୍ଗେ ମରିବି ବୋଲି କୋଳ କରି ଯୁଝିଲା ॥ ୨୯ ॥

---

୧୫. ମୋହନା ବାଣେକ—ଅମୋଘ ନାରାଜ (ଖ) । ୨୦. ଗଲେ—ମଲେ (କ) । ୨୧. ପ୍ରାଣାନ୍ତକ—ନିଧନ (ଖ) । ୨୫. ପଡ଼ିଇ—ପଡ଼ି (ଖ) । ୨୯. ବୋଇଲା—ଡାକିଦେଲା (କ) ।

ବିଭୀଷଣର ଦେହ ଜାମ୍ବବ ତହିଁ ଲାଗନ୍ତେ ।
ହୃଦରେ ପ୍ରାଣ ତାର ପଶିଲା ତୁରିତେ ॥ ୩୦ ॥
ନୟନ ମେଲି କରି ଚଉଦିଗ ଚାହିଁଲା ।
ଜାମ୍ବବ ମୁଖ ଚାହିଁ ବିଭୀଷଣ ରାହା କରି କହିଲା ॥ ୩୧ ॥
କିସ ବୁଦ୍ଧି କେଉଣ କୃତ୍ୟ କରିବା ।
କେମନ୍ତେ ରାମ ଲକ୍ଷ୍ମଣଙ୍କୁ ଜୀଆଇବା ॥ ୩୨ ॥
ଜାମ୍ବବ କହଇ ଶୁଣ ବିଭୀଷଣେ ।
ହନୁମନ୍ତକୁ ମୋହ ତେଜି ମୋହର କଥାକି ଆଣ ॥ ୩୩ ॥
ସେହୁ ସେ ଆଣି ପାରଇ ନା ମହଉଷୋଧି ପତ୍ର ।
ସେ ପତ୍ରେ ବଞ୍ଚିବେ ଋକ୍ଷ ମର୍କଟ ସମସ୍ତ ॥ ୩୪ ॥
ଜାମ୍ବବ ବଚନେ ବିଭୀଷଣ ବେଗେ ଗଲା ।
ରାମ ରାମ ସୁମରି ହନୁମନ୍ତର ଦେହ ଅଉଂସିଲା ॥ ୩୫ ॥
ବିଭୀଷଣର ଦେହ ଲାଗିଲାକ ଯହୁଁ ।
ମୋହ ତେଜି ହନୁମନ୍ତ ଉଠିଲାକ ତହୁଁ ॥ ୩୬ ॥
ଶ୍ରୀରାମର ବିନାଶ କଥା ବିଭୀଷଣ କହିଲା ।
ଶୁଣି ହନୁମନ୍ତ ଅନେକ ରୋଦନ କଲା ॥ ୩୭ ॥
ହାତ ଧରି ବିଭୀଷଣ ଦେନଣ ଆସଇ ।
ଆଣିଣ କରାଇ ଜାମ୍ବବ ପାଖଇ ॥ ୩୮ ॥
ଋକ୍ଷ ରାଜା କହଇ ଶୁଣସି ମାରୁତି ।
ହେମବନ୍ତ ପର୍ବତକୁ ବାରୁ ଯାଅସି ପବନ ଗତି ॥ ୩୯ ॥
ମହଉଷୋଧି ବୃକ୍ଷର ପତ୍ର ମାରି ଆଣ ।
ତେବେ ସେ ରାମଲକ୍ଷ୍ମଣେ ପାଇବେ ନିଜ ପ୍ରାଣ ॥ ୪୦ ॥
ମହଉଷୋଧି ବୃକ୍ଷର କଥା ଜାମ୍ବବ କହିଲା ।
ଗଗନ ଲଂଘି ହନୁମନ୍ତ ଶୂନ୍ୟେ ବଜମିଣ ଗଲା ॥ ୪୧ ॥
ହନୁମନ୍ତ ଯାନ୍ତେ ଦେବଗଣ ଜାଣିଲେ ।
ଗିରିରାଜ ତାହାଂକ ଗନ୍ଧର୍ବ ପେଷିଲେ ॥ ୪୨ ॥
ଇନ୍ଦ୍ରର ବାକ୍ୟ ହେମବନ୍ତ ଜାଣିଲା ।
କଳ୍ପବୃକ୍ଷ ଧରି ସେ ଗଗନେ ଲୁଚିଲା ॥ ୪୩ ॥

---

୩୧. ମଲି—ମଲିଣ (କ) । ୩୩. ଖ ପୋଥିରେ ପ୍ରଥମ ପାଦଟି ନାହିଁ, ଦ୍ୱିତୀୟ ପାଦ ପରେ ସେଥିରେ ପାଠ ରହିଛି ;—ବେଗେ ଆଣ ଭୁମ୍ଭ ପବନ ନନ୍ଦନ । ୩୪. ନା—ନାନା (କ) ; ମହଉଷୋଧି ପତ୍ର—ମହଉଷଧି ପର୍ବତ (ଖ), ସେ ପତ୍ରେ—ତେବେ ସେ (ଖ) । ୪୦. ମାରି—ମାଗି (ଖ) ।

ହନୁମନ୍ତ ହେମବନ୍ତକଇ ଦେଖଲ ଶୂନ୍ୟେ ଯାଅନ୍ତେ ।
ଗୋଡ଼ାଇ ପର୍ବତକୁ ଧଇଲେ ତୁରିତେ ॥ ୪୪ ॥
ହନୁମନ୍ତଙ୍କଇ ହେମବନ୍ତ ଯେତେକ କହିଲା ।
ଲବକୁମର ତାହା ଗୀତରେ ଗାଇଲା ॥ ୪୫ ॥
ମହୋଦଧି ମଧ୍ୟରେ ହେମବନ୍ତ ଗିରି ।
ଆଣିଲେ ହନୁମନ୍ତ ଅଣାଳିକ ଧରି ॥ ୪୬ ॥
ଜଟେ. ଜର ସନ୍ନଧ୍ୟେ ହେମଗିରି ହଲା ।
ହନୁମନ୍ତର ମୁଣ୍ଡ ଗୃହ୍ନି ଜଟେ କହିଲା ॥ ୪୭ ॥
କପାଳି ବାକୁ ଏ ପର୍ବତ ଆଣିଲୁ ।
କଳପ ମହୋଦଧି ମୂଳ ସହିତେ କମ୍ପାଇ ହଲାଲୁ ॥ ୪୮ ॥
ହନୁମନ୍ତ କହଇ ଶୁଣ ମହାମନ୍ତ୍ରୀ ।
ମହୋଦଧି ଯେନ ଏ ପଳାଉଥିଲା ଗଗନଗତି ॥ ୪୯ ॥
ତେଣୁ ସେ ଯେନ ଅଛିଲା ଗିରିରାଜ ।
ମହୋଦଧି କଥା ଶୁଣି ବର୍ତ୍ତରଣି ବୁଝି ॥ ୫୦ ॥
କଳଧ ମୁଣ୍ଡର ପଥ ଗିରିରାଜ ଦେଲା ।
ଜଟେବ ତ୍ରିଦୋଷ ବଚନ ଯେନ ସେ ନିଜଠାବକୁ ଗଲା ॥ ୫୧ ॥
ସେ ପଥ ହନୁମନ୍ତର ହାତରେ ଦେଲେ ।
ସମସ୍ତଙ୍କ ଏହୁ ପଥ ଯେନ ବାନ୍ଧି ଆସିମି ବୋଇଲେ ॥ ୫୨ ॥
ଏଥର ପବନେ ଚଢ଼ିବେ ସମସ୍ତ ।
ଶୁଣିଣ ହରଷ ହୋଇଲା ହନୁମନ୍ତ ॥ ୫୩ ॥
ରାମ ଲକ୍ଷ୍ମଣ ଯହୁଁ ମୋହେଣ ପଡ଼ିଛନ୍ତି ।
ତହିଂର ସନ୍ନଧ୍ୟେ ଯାଇ ହୋଇଲା ମାରୁତି ॥ ୫୪ ॥
ମହୋଦଧି ପଥ ଯେନ ସନ୍ନଧ୍ୟେ ମିଳନ୍ତେ ।
ପବନ ଲଗନ୍ତେ ରାମଲକ୍ଷ୍ମଣ ବଢ଼ିଲେ ତୁରିତେ ॥ ୫୫ ॥
କପି ଋକ୍ଷ ସୈନ୍ୟ ସମସ୍ତ ଯୂଥପତି ।
ଯେ ଯେତେ ଦୂରେ ଛାଡ଼ିଣ ପଡ଼ିଛନ୍ତି ॥ ୫୬ ॥
ସେ ପଥ ଯେନ ହନୁମନ୍ତ ବାନ୍ଧିଲେ ।
ସକଳ ସୈନ୍ୟ ରାମର ତତକ୍ଷଣେ ବଢ଼ିଲେ ॥ ୫୭ ॥
ଦେଖିଣ ଦେବଗଣେ ହରଷ ହୋଇଲେ ।
ରାମର ସୈନ୍ୟରେ କୁସୁମ ବରଷିଲେ ॥ ୫୮ ॥
ଶିଶିର କରଣ ମଣି ଇନ୍ଦ୍ର ରାମକୁ ଅକ୍ଷତ ଦେଲେ ।
ରାମର କରେ ଦେଇ ଗନ୍ଧର୍ବ ସ୍ୱର୍ଗକଇ ଗଲେ ॥ ୫୯ ॥

---

୪୯. ଗୃକାଲୁ—ଗୃକାଳେ । ୫୨. ବାନ୍ଧି—ବନ୍ଧ ।

ମନ୍ତ୍ରୀ ସେନା ରାମ ଜଣେ୍ଣକୁ କହିଲେକ ଯାହା ।
ସଭାରେ ବସି ଲବକୁଶେ ଗାଉଛନ୍ତି ଗାଇଲେ ତାହା ॥ ୬୦ ॥
ଶୁଣିଣ ଶ୍ରୀରାମ ବଶିଷ୍ଠ ମୁନି ଗ୍ରହିଁ ।
ଏହେ ମୁନି ସ୍ୱରୂପ କଥା କହନ୍ତୁ ବୁଝି ହୁଇ ॥ ୬୧ ॥
ବଶିଷ୍ଠେ ବୋଲନ୍ତି ହୋ ସ୍ଥିର ହୋଇ ଶୁଣ ।
ତୋହର ନିଜର କଥା ରାମ ବାଲ୍ମୀକର ପରମାଣ ॥ ୬୨ ॥

## ନାଗପାଶରେ ରାମଲକ୍ଷ୍ମଣ

ଲବକୁଶେ କହନ୍ତି ଶୁଣ ସାବଧାନ ହୋଇ ।
ପ୍ରଭାତେ ମଲ୍ଲ ସୈନ୍ୟ ଦେଖି ଅଏଇ ଲଙ୍କସାଇଁ ॥ ୧ ॥
ରାବଣ ଆସିବାର ସନ୍ଧିଂ ବିଭୀଷଣ ଶୁଣିଲା ।
କରପଦ୍ମ ଯୋଡ଼ି ଶ୍ରୀରାମର ଅଗ୍ରତେ କହିଲା ॥ ୨ ॥
ଏହେ ଦେବ ମଲ୍ଲ ପ୍ରାୟେକ ବୁଝି ଆସଇ ଲଙ୍କରାୟେ ।
ମୋହର ବୁଦ୍ଧି ଦେବ ଅଛଇ ଉପାୟେ ॥ ୩ ॥
ମଲ୍ଲ ପ୍ରାୟେ ହୋଇ ସମସ୍ତେ ଶୋଇଥିବା ।
ସୈନ୍ୟ ଭିତରେ ପଶିଲେ ଆଜ ଅସୁରନ୍ତ ମାରିବା ॥ ୪ ॥
ଶୁଣିଣ ଶ୍ରୀରାମ ସନମତ କଲେ ।
ଯୁଥପତିମାନଙ୍କୁ ହକାରି ବିଭୀଷଣର କଥା କହିଲେ ॥ ୫ ॥
ସମସ୍ତେ ହେ ଚକ୍ଷୁ ବୁଜିଣ ଶୋଇଥିବ ।
ଏକଇ ଆରେକ ସମାଦ ନ ଦେବ ॥ ୬ ॥
ସୈନ୍ୟ ଧରି ରାବଣ କପିଙ୍କ ଭିତରେ ପଶଇ ଯେବେ ।
ସକଳ ଦନୁଜନ୍ତ ଧରି ମାରିବାକ ତେବେ ॥ ୭ ॥
ରାମର ବଚନ ସନ୍ଧିଂ କପି ଋକ୍ଷ ଶୁଣିଲେ ।
ନିଶ୍ୱାସ ଗର୍ଜ୍ଜି ଧରି ନିଶବଦେ ସୁତିଲେ ॥ ୮ ॥
ଅସୁର ସୈନ୍ୟ ଘେନି ରାବଣ ରଥ ଚଢ଼ି ଗଲା ।
ସନ୍ଧିରେ ରାମଚନ୍ଦ୍ରର ଆଗରେ ପଶିଲା ॥ ୯ ॥
ନିଦ୍ରାଭଙ୍ଗ ହୋଇ କପିଋକ୍ଷ ଉଠିଲେ ।
ଦୁସହ ସଂଗ୍ରାମ ମହାରୋଳ କଲେ ॥ ୧୦ ॥
ଅସୁର ସୈନ୍ୟ ମାଇଲେ ଯେବଣ ବିଧି ।
ଶୁଣିଣ ସଭାଲୋକେ ହୋଇଲେ ପ୍ରବୋଧି ॥ ୧୧ ॥

୬. ସମାଦ—ସମାସ୍ୟା (ଖ) । ୯. ସନ୍ଧିରେ—ବେଲିବନେ (ଖ) ।

ଲଙ୍କାପୁରେ ମର୍କଟେ ସମସ୍ତେ ଧ୍ୱଂସିଲେ ।
ଦେବକନ୍ୟା ଯେତେକ ଥିଲେ ତାହାଙ୍କୁ ମୁକତ କରି ଦେଲେ
ଯେତେକ କୃତ୍ୟ କଲେ ଲଙ୍କାପୁରେ ପଶି ।
କହୁବଲ ରାକ୍ଷସେ ସମରେ ସାହସୀ ।
[ଶ୍ରୀରାମଙ୍କ ଅଗ୍ରତେ ଲବକୁଶେ ପ୍ରକାଶି] ॥ ୧୩ ॥
ରାବଣ ସମସ୍ତ ପଳାଇ ନଯାଉଲା ।
ପର୍ବତା ଶସ୍ତ୍ର ପେଶି ରାମ ଓଗାଳିଲା ॥ ୧୪ ॥
ଇନ୍ଦ୍ରଜିତ ମିଳିଲା ରାମର ସମୀପେ ।
ତହୁଂ ଘୋର ଯୁଦ୍ଧ କରଇ ଲଙ୍କ ନୃପେ ॥ ୧୫ ॥
କାଳନାଗେଣି ଯମଘଣ୍ଟା ରାବଣର ଦୁଇ ପୁତ୍ର ।
ହନୁମନ୍ତ ତୁଲେ ଯୁଦ୍ଧ କରଇ ବହୁତ ॥ ୧୬ ॥
ସେ ଦୁହିଙ୍କି ହନୁମନ୍ତ ମୁଣ୍ଡ ମୋଡ଼ି ପକାଇଲା ।
ସମୁଦ୍ର ଭିତରକୁ ଫିଙ୍ଗିଡ଼ାଇ ଦେଲା ॥ ୧୭ ॥
ସେ ପୁତ୍ରଙ୍କ ବିନାଶ ରାବଣ ଶୁଣିଲାକ ଯହୁଂ ।
ସଂଗ୍ରାମ ଉପେକ୍ଷି ଇନ୍ଦ୍ରଜିତକୁ ଘେନିଗଲା ତହୁଂ ॥ ୧୭ ॥
ଲଙ୍କାନଗ୍ର ଭିତରେ ପଶିଲା ।
ଅସୁର ନାରୀଙ୍କର ବିକଳ ଦେଖିଲା ॥ ୧୮ ॥
ନାସାଛେଦନ ହୋଇଛନ୍ତି ଅନେକ ନାରୀ ।
ଛତ୍ରିଶୋଇ କୋଟି ନାହାନ୍ତି ଦେବ କୁମାରୀ ॥ ୧୯ ॥
କିଛି ହି ନ ପୁଚ୍ଛିଲା ମନ୍ଦୋଦରୀର ପାଶଂ ।
ବିସ୍ମୟ ମନ ହୋଇଣ ଭାଳଇ ॥ ୨୦ ॥
ମାନ ଅଗ୍ନି ତାହାର ଶରୀରେ ଦହଇ ଘନ ଘନ ।
ଉଚ୍ଚେ ଦଶଶିର କରଇ ରୋଦନ ॥ ୨୧ ॥
ଇନ୍ଦ୍ରଜିତ କହଇ ଶୁଣ ହୋ ମୋ ତାତ ।
ଆଜ ବାନ୍ଧି ଆଣିବି ରାମଲକ୍ଷ୍ମଣ ଦେନି ଭ୍ରାଥ ॥ ୨୨ ॥
ଶୁଣିଣ ରାବଣ ରୋଦନ ଛାଡ଼ିଲା ।
ଏହିକ୍ଷଣି ଯାଅ ବୋଲି ପୁତ୍ରକଇ ଆଜ୍ଞା ଦେଲା ॥ ୨୩ ॥

---

୧୪. ଶସ୍ତ୍ର—ଶର (ଖ) । ୧୫-୧୭ ଖ ପୋଥିରେ ୧୪ ପଦର ଦ୍ୱିତୀୟ ପାଦ ପରେ ୧୭ ପଦର ଦ୍ୱିତୀୟ ପାଦ ରହିଛି, ମଧ୍ୟର ପାଦଗୁଡ଼ିକ ନାହିଁ । ୧୭. ଇନ୍ଦ୍ରଜିତକୁ—ହନୁମନ୍ତକୁ (ଖ) । ୧୯. ଛତ୍ରିଶୋଇ କୋଟି—ଛତ୍ରିଶୋଇ (ଖ) । ୨୦. ବିସ୍ମୟ—ବିସ୍ମୟଂ (କ) । ୨୧. ଶରୀରେ ଦହଇ—ଦହଇ (କ) । ଇନ୍ଦ୍ରଜିତ—ଇନ୍ଦ୍ର (କ) ।

ପିତାର ଆଗ୍ୟାଂସେ ମାଇଲେ ଇନ୍ଦ୍ରଜିତ ।
ମାୟା ସୀତା କଲା ଜାନକୀର ସଂଜାତ ॥ ୨୪ ॥
ମାୟା ସୀତା ନେଇ ଉଭାଇଲେ ଜାଲେ ।
ଶ୍ରୀରାମ ସନ୍ନିଧ୍ୟକରି ଯଥ ରାବଣ ଦୁଲାଲେ ॥ ୨୫ ॥

ଯେତେକ ବଚନେ କହିଲା ଇନ୍ଦ୍ରଜିତ ।
ଗୀତେଣ ଗାଇଲେ ତାହା ସୀତାର ବେନି ସୁତ ॥ ୨୬ ॥
[ସୋଗ୍ରାମେ ମାଇଲ ରାବଣ ଦୁଲାଲ ।
ଦେଖିଣ ଶ୍ରୀରାମ ମେ ଶୋକ ଅସାମ୍ଭାଳ ॥ ୨୭ ॥
ଦେବ ଲେକେ ଆସି ରାମଙ୍କୁ କହିଲେ ।
ନୋହଇ ସିତ୍ୟା ବୋଲନ୍ତେ ରାମ ପ୍ରତେ ନାଇଲେ ॥ ୨୮ ॥

ଦୟା ସାଗର ସେ କ୍ଷେମାଶୀଳ ଦାଶରଥି ।
ଶତ୍ରୁଙ୍କୁ ହି କୋପ ନ ବସଇ ତାହାର ମତି ॥ ୨୯ ॥
ଶ୍ରୀରାମର ସନ୍ନିଧ୍ୟେ ସୀତାନେଇ ଦେଲା ।
କପଟେ ନାଗଫାଶ ବାଣେକେ କଲା ॥ ୩୦ ॥
ପାପୀ ଦୁରାତ୍ମା ସେ ରାବଣର ସୁତ ।
ନାଗଫାଶ ବାଣେ ବାନ୍ଧିଲା ରାମଲକ୍ଷ୍ମଣ ବେନିଭାଇ ଥ ॥ ୩୧ ॥
ମନ୍ତ୍ରୀ ସହିତେ ଶକ୍ଷ ବାନର ବଳ ।
ସବୁନ୍ତ ବାନ୍ଧିଲା ରାବଣର ଦୁଲାଳ ॥ ୩୨ ॥
ବିଭୀଷେଣ ମାତ୍ର ବନ୍ଧନେ ନ ଗଣ୍ଡିଲା ।
ପଳାଇ ସୁବଳସ୍ଥଗିର ପର୍ବତେ ଲୁଚିଲା ॥ ୩୩ ॥

ଇନ୍ଦ୍ରଜିତ ରାମକଇ ମାରନେଲିଇ ଯହୁଂ ।
ଦୁର୍ଗାଦେବୀ ସଂଗ୍ରାମେ ବିଜୟେ କଲେ ତହୁଂ ॥ ୩୪ ॥
ଯେତେକ କଥା ଦୁର୍ଗା ଇନ୍ଦ୍ରଜିତକଇ କହିଲେ ।
ଲବକୁଶେ ତାହା ସଭାରେ ଗାଇଲେ ॥ ୩୫ ॥
ତହୁଂ ଇନ୍ଦ୍ରଜିତ ବାହୁଡ଼ିଣ ଗଲା ।
ବନ୍ଧନ କଥା ପିତାର ଆଗେଣ କହିଲା ॥ ୩୬ ॥

ଶୁଣିଣ ରାବଣ ହୋଇଲା ହରଷଇ ।
ଓଶୋକ ବନକୁ ନିକଟାକୁ ଦୂତ ପେଷଇ ॥ ୩୭ ॥

---

୨୪. ଆଗ୍ୟାଂସେ—ଫରମାସ (କ) । ଜାନକୀର—ଯାନକୀର । ୨୫. ଶ୍ରୀରାମ—ରାବଣର (ଖ) । ୩୦. ନାଗଫାଶ (କ) । ୩୧. ନାଗଫାଶ ବାଣେ—ନାଗଫାସ ବାଣେ (କ), ପନଙ୍ଗଶରେ (ଖ) । ୩୫. କଥା ଦୁର୍ଗା (କ) ।

ସୀ ଜେଠାଙ୍କୁ କହ ମୋହର ବାରତା ।
ସଂଗ୍ରାମ ଭୂମିକି ନେଇ ଜନକ ଦୁହିତା ॥ ୩୮ ॥
ଶ୍ରୀରାମର ବନ୍ଧନ ଦେଖାଇ ନେଇ ।
ରାବଣର ଆଜ୍ଞାରେ ଦୂତି ନଇଲେକ ଯାଇ ॥ ୩୯ ॥
ରାବଣରେ ସମାଜ ଚହୁଂ ତ୍ରିଜଟା ସ୍ତ୍ରୀବିନ୍ଧ ।
ତତକ୍ଷଣେ (ତେଥି) ବସାଇ ସୀତାକଇ ନେଲ ॥ ୪୦ ॥
ତ୍ରିଜଟା ସହିତେ ଯେତେ ଅପ୍ସରାମାନେ ବେଢେ ।
ଶୂନ୍ୟେ ରଥ ଚଳେ ଗଗନ ମାର୍ଗେ ॥ ୪୧ ॥
ଦେବବନେ ବନ୍ଧନ ଦେଖାଇଲା ନେଇ ।
ରୋଦନ କରଇ ସର୍ବ କପି ସୈନ୍ୟ ତହିଂ ॥ ୪୨ ॥
ତହୁଂଣ ବିମାନ ଖରରେ ଫେରିଗଲେ ।
ସୁନାଲଙ୍କା ପର୍ବତେ ରଥ ନେଇ କଲେ ॥ ୪୩ ॥
ଶ୍ରୀରାମର ବନ୍ଧନ ଦେଖି ଜନେକର ନନ୍ଦନୀ ।
ଉଚେ କାନ୍ଦନ୍ତି ତାହା ରାମଚନ୍ଦ୍ର ଶୁଣି ॥ ୪୪ ॥
ଯେବଣ କଥା ଶ୍ରୀରାମ ଜଟେମୂବଙ୍କୁ କହିଲେ ।
ଲବକୁଶେ ଚାହାଗୀତରେ ଗାଇଲେ ॥ ୪୫ ॥
ତହୁଂ ବାହୁଡ଼ିଲେ ଜନେକ କୁମାରୀ ।
ଯେବଣ ମତେ ଦୁର୍ଗାଙ୍କୁ ସୁମରିଲେ ଗୃଧାରୀ ॥ ୪୬ ॥
ରାମର ସ୍ତୁତି ଶୁଣି ଦେବୀ ତୋଷ ହୋଇଲେ ।
ସର୍ପ ବନ୍ଧନୁ ଦେବୀ ଉଦ୍ଧାର କରାଇଲେ ॥ ୪୭ ॥
ଗରୁଡ଼ଙ୍କୁ ଶ୍ରୀରାମ ସୁମରିଲେ ଯହୁଂ ।
ବିନତା ନନ୍ଦନ ସଂଗ୍ରାମେ ମିଳିଲେକ ତହୁଂ ॥ ୪୮ ॥
ଗରୁଡ଼କଇ ଦେଖି ସର୍ପ ପଳାଇଲେ ।
ଯେ ଅବା ରହିଲେ ପ୍ରାଣେ ନାଶ ଗଲେ ॥ ୪୯ ॥
ଶ୍ରୀରାମକଇ ଖଗପତି କହଇ ମୁଖରୁହୁଂ ।
ରାବଣକୁ (ମାରି) ସୀତାଙ୍କୁ ଆଣିମଇ ମୁହିଂ ॥ ୫୦ ॥
ଗରୁଡ଼କଇ ପ୍ରବୋଧି କହନ୍ତି ଗୃଧାରୀ ।
ମୁହିଂସେ ମାରିବି ଯେ ମୋହର ବଇରି ॥ ୫୧ ॥

---

୩୮. ନ୍ରିଜଟାଙ୍କୁ—ସୀତାଙ୍କୁ (ଖ) । ୪୫-୪୭- ଏ ତିନ ପଦ ବଦଳେ କ ପୋଥିରେ ଅଛି ପଦେ :—ଯେବଣ ଯେବଣ କଥା ରାମଚନ୍ଦ୍ର କହିଲ । ସର୍ପ ବନ୍ଧନୁ ଦେବୀ ଉଦ୍ଧାର କରାଇଲ ॥

ଶୁଣିଣ ଝରେଶ୍ୱର ହରଷ ହୋଇଲା ।
ରତ୍ନେକ ଦ୍ୱୀପକଇ ବାହ୍ମଣ ଗଲା ॥ ୫୨ ॥
ସନ୍ତାପ କହନ୍ତି ଗୀତେ ଲବକୁଶ ।
ଶୁଣିଣ ସଖୀଲୋକେ ହରଷ ବରଷ ॥ ୫୩ ॥
ଭୁଥ ମହାରଥୀର ନୟନୁ ଗଳଇ ପାଣି ।
ରାଗେ ମଥା ନେଇ କୋଡ଼ଇ ଧରଣୀ ॥ ୫୪ ॥
ଲକ୍ଷ୍ମଣ ଦୁଇ କରେ ଧଇଲେକ ଟୋଳି ।
ଭୁଅନଇ କହନ୍ତି ବଶିଷ୍ଠ ତପଶ୍ୟାଳୀ ॥ ୫୫ ॥
ତୁହ୍ମେ ଯେ ରାମର ତୁଳେ ବନକୁ ଯାଇ ଲେଉଥିଲୁ ।
ଶୁଣିମା କଥାକୁ ଏଡେ଼ କ୍ରୋଧ କଲୁ ॥ ୫୬ ॥
ମହାକଷ୍ଟ ରାମ ଯେ ବନସ୍ତେ ପାଇଲେ ।
ଲକ୍ଷ୍ମଣ ସେ ଧଉର୍ଯ୍ୟ ପଣେ ହନ ନେଲେ ॥ ୫୭ ॥
ମୁଛେ ଜୟେ ଯେବେ ଅପାଜୟେ ଜାଣ ।
ଟାଲକଥା କଇ ଶୋକକର କେବଣ କାରଣ ॥ ୫୮ ॥
ଏବେ ଶୋକ ଉପେଖି ଶୁଣ ହୋ ତବ୍ୟଗାଢ ।
କୁମାରଙ୍କ ମୁଖ ଚାହିଁ କହନ୍ତି ବ୍ରହ୍ମସୁତ ॥ ୫୯ ॥
କହିସି ହୋ ଏବେ ଯୁଦ୍ଧର ନଅସ ।
ସଭା ନବତ କରଇ ଗାବନ୍ତି ସେ ଗୀତ ବେନି ଭାଇ ॥ ୬୦ ॥

## ଇନ୍ଦ୍ରଜିତ ବଧ

ଏଥୁ ଅନନ୍ତରେ ରଜନୀର ସମୟେ ।
ସୀତାୟାର ସନ୍ଧ୍ୟାକୁ ଗଲେ ଅସୁର ରାୟେ ॥ ୧ ॥
ରାମର ବନ୍ଧନ ଦେଖି ରୋଦନ କରଇଣ ସତୀ ।
ପ୍ରବୋଧି କହଇ ଯେ ମନ୍ଦୋଦରୀର ପତି ॥ ୨ ॥
ରାମ ଲକ୍ଷ୍ମଣଙ୍କୁ କମ୍ପାଇଂ ତୁହ୍ମ କାନ୍ଦ ।
ଆଜ ହୁଂ ହୋଇଲୁ ତୁ ମୋହର ପ୍ରାଣବନ୍ଧ ॥ ୩ ॥
ନାଗଫାଶେ ମୋହର ପୁତ୍ର ବାନ୍ଧିଲେକ ଯେବେ ।
ରାନ୍ଧ ପାଇଲେ ସେ ମରନ୍ତି ସିନା ଏବେ ॥ ୪ ॥
ଶ୍ରୀରାମକୁ ସୀତା ତୁହ୍ମ ଛାଡ଼ସି ମୁହାଂସ ।
ଭାରଯା (ମୋହର) ହୋଇ ସୁଖ ଭୋଗ ବିଳସ ॥ ୫ ॥

---

୫୩. ହରଷ ବରସ—ହୋଇଲେ ହରଷ (ଖ) । ୫୮. ଯେବେ ଅପାଜୟେ—ଅପଜୟେ ଦୁଇ କଥା (ଖ) । ୪. ମରନ୍ତି—ମରନ୍ତି (କ) ।

ମନ୍ଦୋଦରୀ ହୁଁ ତୋତେ ପୁରୁଷାର୍ଥ କରିବି ।
ତୋହର ବଚନେ ସର୍ବଦା ମୁହିଂ ଥିବି ॥ ୬ ॥
ଶୁଣିଣ ସୀତାଯ୍ୟା ମହାକୋପ କଲ ।
ଭୂମିଜା ଗୃହିଂ ଅନେକ କାଂଗାସି କହିଲା ॥ ୭ ॥
ହାର ନଲକ୍ଷଣ ତୁହି ଅସୁର ପ ପମତ ।
ଖାଏ ବରସୁନ୍ଦର ମୋହର ପ୍ରାଣର ଆଧିପତି ॥ ୮ ॥
ଦଶରଥନନ୍ଦନ ମରଣ ପାବଇ ଯେବେ ।
ଏ ମୋହର ଦେହ ଧରିବି କି ତେବେ ॥ ୯ ॥
ଯେତେକ କଥା ସୀତାଯ୍ୟା କହିଲ ।
ଲବକୁମର ତାହା ଗୀତରେ ଗାଇଲ ॥ ୧୦ ॥
ଯେବଣ ପଦ ଅବା ଅଳପ ଅନ୍ତର ହୁଅଇ ।
କୁଶ କୁମର ତାହା ଆନ କରି କହଇ ॥ ୧୧ ॥
ଅଶୋକ ବନେ ସୀତାଯ୍ୟା କୁ କହନ୍ତେ ଦଶଗିରି ।
ଏଣ୍ଭେଣ ପ୍ରଭାତ ହୋଇଲ ତମିର ॥ ୧୨ ॥
ବାନରେ ତେଜିଂ ପାଟେଶରେ ଉଠିଲେ ।
ତରୁଶିଳ ଦେଇ ଦ୍ୱାର ରକ୍ଷାଙ୍କୁ ମାଇଲେ ॥ ୧୩ ॥
ଅନେକ ଗୋଳ ଗହଳ ଶୁଭିଲ ।
ରାବଣ ଆଗେ ଯାଇ ଡଗର କହିଲ ॥ ୧୪ ॥
ଏରୁ ବାନରେ ବନ୍ଧନୁ ଫିଟିଲେ ।
ରାମଲକ୍ଷ୍ମଣ ବନ୍ଧନୁ ମୁକତ ହୋଇଲେ ॥ ୧୫ ॥
ଶୁଣିଣ ରାବଣ ଅଶୋକ ବନ ବାହୁଡ଼ି ଅଇଲ ।
ଆସ୍ଥାନେ ବସି ଇନ୍ଦ୍ରଜିତକଇ ହକାରିଲ ॥ ୧୬ ॥
ପିତାର ସନ୍ନିଧ୍ୟେ ମିଳିଲ ଇନ୍ଦ୍ରଜିତ ।
କୋପେଣ ମୁଖ ଗୃହିଂ କହଇ ଦଶମାଥ ॥ ୧୭ ॥
ସର୍ପ ବନ୍ଧନେ ବିନାଶ ନୋହିଲେ କେହି ।
ଶୁଣିଣ ଇନ୍ଦ୍ରଜିତ କହଇ ପିତାର ମୁଖ ଚାହିଂ ॥ ୧୮ ॥
ଆଜ ସମୁଖେ ମୁହିଂ ଯୁଦ୍ଧ କରିବି ।
ରିଛ ବାନର ସହିତେ ରାମଲକ୍ଷ୍ମଣକୁ ମାରିବି ॥ ୧୯ ॥

---

୬. ବଚନେ—ବଚନେ ମୁହିଂ (କ) । ୯. ପାବଇ—ପାଇବଇ (କ), ପାଇବ (ଖ) । ୧୨. ଅଶୋକ—ଓସେକ (ଖ) । ୧୩. ତରୁଶିଳ—ତରୁ-ପଥରନ୍ତ (ଖ) । ୧୬. ଅଶୋକ—ଓସେକ (ଖ) ; ଇନ୍ଦ୍ରଜିତ—ଇନ୍ଦ୍ର (କ) ।

ଏସନେକ କହ୍ନ ନିକୁମ୍ଭିଲା କାରି ... ଗଲା ।
ବ୍ରାହ୍ମଣ ମେଳ ସେ ଯାଗ ଆରୋପ କଲା ॥ ୧୦ ॥
ସେହ୍ନ ଯାଗଭଙ୍ଗ ମୃଥପଦ୍ମମନେ କଲେ ।
ବ୍ରାହ୍ମଣଙ୍କଇ ଅନେକ ପ୍ରପଞ୍ଚ ଶାସ୍ତି ଦେଲେ ॥ ୧୧ ॥
କୋପେ ଯୁଦ୍ଧ କରନ୍ତି ଇନ୍ଦ୍ରଜିତ ବୀର ।
ଲକ୍ଷ୍ମଣଙ୍କୁ ସମରେ ରାମ କଲେକ ଅଗ୍ରସାର ॥ ୧୨ ॥
ସମରେ ପ୍ରତାପୀ ସେ ରାବଣର ସୁତ ।
ବ୍ରହ୍ମଶରେ ଲକ୍ଷ୍ମଣ ତାହାଙ୍କୁ କଲେ ହତ ॥ ୧୩ ॥
ଇନ୍ଦ୍ରଜିତର ମରଣ ଯହୁଁ ରାବଣ ଶୁଣିଲା ।
ଭୂମରେ ଲେଟି ସେ ଅନେକ ରୋଦନ କଲା ॥ ୧୪ ॥

## କୁମ୍ଭକର୍ଣ୍ଣ ବଧ

ନିଦ୍ରାରେ କୁମ୍ଭକର୍ଣ୍ଣ ହୋଇଥିଲା ଅଚେତ ।
ତାହାଙ୍କଇ ନିଦ୍ରାରୁ ତୋଳିଲା ଦଶମଥ ॥ ୧ ॥
ଶୁକସାରଣଙ୍କୁ ବୋଇଲା କିପାଇଁ ମୋତେ ତୋଳି ।
ମରଣକୁ ଶଙ୍କା ତୁମ୍ଭେ କିପାଇଁ ନ କଲ ॥ ୨ ॥
ମନ୍ତ୍ରୀ କହଇ ତୋତେ ତୋଳିତ .. ପାଇଁ ।
ନୃପତିର ଆଗ୍ୟାଂକୁ ମହାଭୟେ କରୁ ॥ ୩ ॥
ତୋହର ଭାଇ ଯେ ଅଲଂଘିତ କୃତ କଲା ।
ଶ୍ରୀରାମର ଘରଣୀକି ଗେହ୍ନଇ ଆଣିଲା ॥ ୪ ॥
ହନୁମନ୍ତ ନାମେ ସେ ପବନର ସୁତ ।
ସୀତାଙ୍କଇ ଲୋଡ଼ି ସେ ଅଇଲାକ ଦୂତ ॥ ୫ ॥
ମଧୁବନ ଭାଙ୍ଗିଲା ଅକ୍ଷୟେ ମାଇଲା ।
ଇନ୍ଦ୍ରଜିତ ତାହାଙ୍କଇ ବାନ୍ଧଣ ଆଣିଲା ॥ ୬ ॥
ମହାବୁଦ୍ଧ କହିଲା ସେ ତୋହର ଜ୍ୟେଷ୍ଠ ଭାଇ ।
କସ୍ତ ବେଢ଼ାଇ ତାହାଙ୍କୁ ଲାଙ୍ଗୁଡ଼େ ତେଲ ନିଉଡ଼ାଇ ॥ ୭ ॥
ବନ୍ଧନ ଫେଡାଇ ତାହାଙ୍କୁ ଅଗ୍ନି ଲଗାଇଲା ।
ତେମନ୍ତେ ସେ ଲଙ୍କାପୁର ସମସ୍ତ ଦହିଲା ॥ ୮ ॥
ଶ୍ରୀରାମର ଆଗେ ବାରତା କହିଲାକ ଯହୁଁ ।
ସମୁଦ୍ର ବାନ୍ଧି ରାମ ଅଇଲାକ ତହୁଁ ॥ ୯ ॥

---

୧୦. ନକୁମ୍ଭିଲ—କୁମ୍ଭିଲ (କ) । ୧୧. ପ୍ରପଞ୍ଚ—ପ୍ରମଞ୍ଚ । ୪. କୃତ—କଲ(ଖ) ।
୭. କହିଲ—କଲ (ଖ) ।

ଅକନକ ଅସୁର ଏଥେ ଯୁଦ୍ଧରେ ପଡ଼ିଲା ।
ଶ୍ରୀରାମ ଭାଇ ଇନ୍ଦ୍ରଜିତକେଇ ମାଇଲା ॥ ୧୦ ॥
ଦେଖି ସେ ନୃପତି ତୋତେ ନିଦ୍ରାରୁ ତୋଳାଇଲେ ।
ଶୋଧକ ତାହାଙ୍କୁ ଆସି ପାଚୁଛି ଅସୁର ବୋଲେ ॥ ୧୧ ॥
ଶୁକସାରଣେ କୁମ୍ଭକର୍ଣ୍ଣଙ୍କୁ କହିଲେକ ଯାହା ।
ଲଙ୍କକୁଣେ ଶ୍ରୀରାମର ଆଗେ ଗୀତେ ଗାଇଲେ ତାହା ॥ ୧୨ ॥
ଶୁଣିଣ କୁମ୍ଭକର୍ଣ୍ଣ ଗଲା ତୁରିତେ ।
ପଣମ୍ୟ ହୋଇଲା ଯାଇ ରାବଣର ଅଗ୍ରତେ ॥ ୧୩ ॥
ଦେଖିଣ ଶୋକ କରଇ ଦଶଶିର ।
କହଇ ଭାଇ ନାହିନ୍ତି ମୁଣ୍ଡ ଧରି ଧର ॥ ୧୪ ॥
ରାବଣ କହଇ ଶୁଣସିରେ ଭ୍ରାଥ ।
ଦୁଃଖେ ମୋହର ରାଜ୍ୟ ସର୍ବ ହୋଇଲା ହତ ॥ ୧୫ ॥
କର୍ଣ୍ଣେଣ ପାପୀ ମୋତେ ଗୁଡ଼ିଲେ ।
ତାହାର ଯୋଗୁଁ ମୋହର ସମସ୍ତ ନାଶଗଲା ॥ ୧୬ ॥
ଏ ପ୍ରତାପ କୁମର ଯେ ମୋହଦେଡ଼ ପଞ୍ଚାଣ ।
ତାହାକଇ ମାଇଲା ରାମର ଭାଇ ଲକ୍ଷ୍ମଣ ॥ ୧୭ ॥
ତୁହି ଭାଇ ମୋହର ଅଭିମାନ ସାରବୁ ।
ଶ୍ରୀରାମ ଲକ୍ଷ୍ମଣଙ୍କୁ ଯୁଦ୍ଧରେ ମାରବୁ ॥ ୧୮ ॥
ସୁଗ୍ରୀବର ନାମରେ ଯେ ବାଳିର ଭାଇ ।
ମର୍କଟ ବଳ ଘେନି ରାମକୁ ହୋଇଲା ସାହି ॥ ୧୯ ॥
ଜୀର୍ଣ୍ଣର ତେଜେ ରାମ ଏଥକୁ ଅଇଲା ।
ଧନକରନହେତୁ ସେ ମୋହର ବଇର ହୋଇଲା ॥ ୨୦ ॥
କୁମ୍ଭକର୍ଣ୍ଣ ବୋଇଲା କିପାଁ ପରକୁ ଦୋଷ ଧରୁ ।
ଆପଣେ ଅନୀତି କଲୁ କିପାଇଁ ନ ବିଚାରୁ ॥ ୨୧ ॥
ସୀତା ନ ହରିବ ବୋଲି ଯେ ସକଳ ଠାବେ କହିଲୁ ।
ଶ୍ରୀରାମର ପତ୍ନୀକି କିମ୍ପା ହରାଇ ଆଣିଲୁ ॥ ୨୨ ॥
ମତଗର୍ବେ ଅବା କଲୁ ମନ୍ଦ କୃତ୍ୟ ।
ମୋହର କଥା ଏବେ ଶୁଣସି ହେ ଭ୍ରାଥ ॥ ୨୩ ॥

---

୧୦. ପଡ଼ିଲା—ପଡ଼ିଲେ (ଖ) । ମାଇଲା—ମାଇଲେ (ଖ) ।
୧୨. ଶୁକସାରଣେ—ସୂପନେଖୀ (କ) ; କହିଲେକ—କହିଲକ (କ) ।
୧୪. ଶୋକ—କୋପ । ୧୬. ଯୋଗୁଁ—ପ୍ରସାଦେ (କ) । ୨୦. ବଇର—ବଇର (ଖ) । ୨୨. ନ ହରିବ—ହରିବ (କ) ; ପତ୍ନୀକି—ପତ୍ନୀ (କ) । ୨୩. ମୋହର—ତୋହର (କ) ।

ଏବେ ଗୃଲ ଶ୍ରୀରାମର ପାଶେ ସୀତା ସମର୍ପିବା ।
ଦନ୍ତେ ତୃଣ ଘେନି ରାମର ପୟର ତଳେ ପଡ଼ିବା ॥ ୨୪ ॥
ଯାବତ କଥା ପୁରାଣରେ ଥାଉ ।
ଅକ୍ଷୟେ ଆରୋଗ୍ୟ ହୋଇବୁ ଲକ୍ଷ୍ମୀନାଶ ନୋହୁ ॥ ୨୫ ॥
ଶୁଣିଣ କୋପକରି କହଇ ଦଶଗିରି ।
କାମ୍ପା ଏସନେକ କଥା କହୁ ନ ବିଚାରି ॥ ୨୬ ॥
ଶ୍ରୀରାମର ବାଣେ ଆମ୍ଭେ ଦୁଇଭାଇ ମରିବା ।
ବିଷ୍ଣୁନାଥ ପୁରେ ଯାଇ ବିଶ୍ରାମ କରିବା ॥ ୨୭ ॥
ଏହୁ ଅସୁର ଭୋଗ୍ୟରେ କିସ ଆମ୍ଭର କାର୍ଯ୍ୟ ।
ପୂର୍ବଜନ୍ମର କଥା ପାସୋରିଲୁ କି ରେ ସାନୁଜ ॥ ୨୮ ॥
ଏକାନ୍ତେ ଯେବଣ କଥା ହୋଇଲେ ଦୁଇଭାଇ ।
ଶ୍ରୀରାମର ଆଗେ ଲବକୁଶେ କହି ॥ ୨୯ ॥
ରାବଣ ବଚନ ଶୁଣି କୁମ୍ଭକର୍ଣ୍ଣ ମହାବୀର ।
ଗ୍ରାସମାନ କଲା ଅନେକ ଫଳାହାର ॥ ୩୦ ॥
ଅନେକ ଷାଠିଏ ପୌଟି ଅନ୍ନ କରଇ ଭୋଗ୍ୟ ।
ଛଅମାସର ଯେତେକ ନିଯୋଗ ॥ ୩୧ ॥
ଅନେକ ମେଷ ଛାଗଲ ମହିଷି ନିଯୋଗ ।
ଏକବେଳେକ ସେ କରଇ ଗ୍ରାସ ଭୋଗ୍ୟ ॥ ୩୨ ॥
ସଂଗ୍ରାମେ କୁମ୍ଭକର୍ଣ୍ଣ ପ୍ରବେଶ ହୋଇଲେକ ଯହୁଂ ।
ଋକ୍ଷ ବାନର [ଅନେକ] ପାଦେ ମର୍ଦ୍ଦିଲେକ ତହୁଂ ॥ ୩୩ ॥
କୁମ୍ଭକର୍ଣ୍ଣର ତେଜ ଦେଖିଣ ରାମଚନ୍ଦ୍ର ।
କୋଦଣ୍ଡେ ବାଣ ଆମନ୍ତ୍ରିଲେ ସତ୍ୟସନ୍ଧ ॥ ୩୪ ॥
ବିଭୀଷଣ ଶ୍ରୀରାମର ପାଦେଣ ପଡ଼ିଲା ।
ଦାନ୍ତରେ ତୃଣ ଧରି କରଯୋଡ଼ି କହିଲା ॥ ୩୫ ॥
କେଷ୍ଟ ଦେବ କୁମ୍ଭକର୍ଣ୍ଣ ତହୁଂକ ମୁହିଂ ଯିବି ।
ପ୍ରବୋଧି ତାହା କଇ ପୁଛ ରୁହାଇବି ॥ ୩୬ ॥
ଶ୍ରୀରାମ କହନ୍ତି ତୋହର ବୋଲେ ଯେବେ ଆସିବ ।
ଲଙ୍କାଗଡ଼େ ସେ ରାଜା ହୋଇବ ॥ ୩୭ ॥

---

୨୪-୨୭. ଖ ପୋଥିରେ ୨୪ ପଦର ପ୍ରଥମ ପଦ ପରେ ୨୭ ପଦର ଦ୍ୱିତୀୟ ପାଦ ରହିଛି, ମଧ୍ୟରେ ପାଦଗୁଡ଼ିକ ନାହିଁ । ୨୮. ଏହୁ—ତାହୁଏ (କ) । ୩୦. ଫଳାହାର—ଫଳହାର (କ) । ୩୨. ଏ ପଦଟି ଖ ପୋଥିରେ :—
ଏକାବେଳକେ ତାହା କରଇ ଭୋଜନ । ଆନନ୍ଦେ ଭୁଞ୍ଜଇ ତହୁଂ ବୀର କୁମ୍ଭକର୍ଣ୍ଣ ॥

ଶ୍ରୀରାମର ବଚନେ ଯେ ବିଭୀଷଣ ଗଲା ।
କୁମ୍ଭକର୍ଣ୍ଣକଇ ଅନେକ ପ୍ରବୋଧି କହିଲା ॥ ୩୮ ॥

ବିଭୀଷଣ କୁମ୍ଭକର୍ଣ୍ଣର ଯେବଣ ଯେବଣ ସିଦ୍ଧାନ୍ତ ।
ଗୀତେଣ ଗାବନ୍ତି ତାହା ସୀତାଙ୍କର ବେଦ ସୁତ ॥ ୩୯ ॥

ଶୁଣିଣ ଶ୍ରୀରାମ ଯେ ହରଷ ହୋଇଲେ ।
ବଶିଷ୍ଠ ମହାମୁନିଙ୍କର ମୁଖ ଚାହିଁଲେ ॥ ୪୦ ॥

ଶୁଣିଲକି ମୁନି ହେ ବିଭୀଷଣର ମହତ ପଣ ।
ତେବେ ସେ ଲଙ୍କାପୁରେ ହେଲା ମହାରଣ ॥ ୪୧ ॥

ବଶିଷ୍ଠେ କହନ୍ତି ସ୍ଥିର ହୋଇଣ ଥାସି ।
ଶାସ୍ତ୍ର ଛକତେ ଆନ କଥା ନ ପ୍ରକାଶସି ॥ ୪୨ ॥

କୁମର ମୁଖ ଚାହିଁ କହନ୍ତି ରଘୁସୂନ ।
ବିଭୀଷଣ ବଚନ ଯେ ନ କଲା କୁମ୍ଭକର୍ଣ୍ଣ ॥ ୪୩ ॥

ତହୁଁଣ ବିଭୀଷଣ କଲା ଯେବଣ କୃତ୍ୟ ।
ବିସ୍ତର କହ ଏବେ ଶୁଣନ୍ତୁ ସମସ୍ତ ॥ ୪୪ ॥

ତହୁଁଣ ଲବକୁମର ହୁଂକାରନ୍ତି ନାଦ ।
ଶୁଣିଣ ସଭା ଲୋକେ ହୋଇଲେ ତବଦ ॥ ୪୫ ॥

ଲବକୁମର କହଇ ବିଭୀଷଣ ବାହୁଡ଼ି ଅଇଲା ।
ଶ୍ରୀରାମର ଆଗରେ ବିଭୀଷଣ କୁମ୍ଭକର୍ଣ୍ଣର କଥା କହିଲା ॥ ୪୬॥

ତହୁଁ କୁମ୍ଭକର୍ଣ୍ଣ କରନ୍ତେ ସମର ।
ବାବନ ବାଣେ ରାମ ଛେଦିଲେ ତାର ଶିର ॥ ୪୭ ॥

ମୁଣ୍ଡ ଛୁଡ଼ି ପଡ଼ିଣ ଭୂମିରେ ଗଡ଼ିଲା ।
ଦୁଇ ଭୁଜ ଦୁଇ ବୀର ହୋଇଣ ଯୁଦ୍ଧ କଲା ॥ ୪୮ ॥

ଦୁଇ ଭୁଜ ହୋଇ କରନ୍ତେଣ ଯୁଦ୍ଧ ।
ବିଭୀଷଣ କହଇ ବ୍ରହ୍ମଶରେ ହୋଇବ ବଧ୍ୟ ॥ ୪୯ ॥

ତହୁଁଣ ରାମଚନ୍ଦ୍ର ବ୍ରହ୍ମାଙ୍କୁ ସ୍ତୁତି କଲେ ।
ବ୍ରହ୍ମଶରେ କୁମ୍ଭକର୍ଣ୍ଣର ଶିର ଛେଦିଲେ ॥ ୫୦ ॥

ଅସ୍ଥି ଚର୍ମ ସହିତେଣ ଚୂର୍ଣ୍ଣ ହୋଇଲା ।
ପବନ ବାଣେ ସେ ଗଗନେ ଉଡ଼ିଲା ॥ ୫୧ ॥

---

୪୨. ପ୍ରକାଶସି—ପ୍ରକାଶି (ଖ) । ୪୩. ରଘୁସୂନ—ବ୍ରହ୍ମସୂନ (ଖ) । ୪୫. ତବଦ—ଆନନ୍ଦ (ଖ) । ୪୬. ଆଗରେ—ଅଗ୍ରାଂରେ । ୪୮. ଗଡ଼ିଲା—ପଡ଼ିଲା ।

# ମାୟା ସୀତା

ଖଇର ମରଣ ଶୁଣିଲ ଲଙ୍କପତି ।
ହୃଦରେ ବିସ୍ମୟ ମନରେ କଲ ଯୁକ୍ତି ॥ ୧ ॥

ପାତାଳ ବିମ୍ବରେ ନେଇ ସୀତାକୁ ଲୁଚାଇଲ ।
ମାୟା ସୀତା ଏକ ଅଶୋକ ବନେ ଥୋଇଲ ॥ ୨ ॥
ଜମ୍ବୋମାଳୀଙ୍କ ଯେ ମଧୁବନେ ଚଞ୍ଚାଇ ।
ଶ୍ରୀରାମର ତୁଳେ ଯୁଦ୍ଧ କରଇ ଲଙ୍କସାଇଁ ॥ ୩ ॥
ଶ୍ରୀରାମଙ୍କଇ ରାବଣ ଦ୍ୱାର ପଳାନ୍ତେ ।
ମାୟା ସୀତା ଏକ ଆଣି ମାଇଲ ତୁରତେ ॥ ୪ ॥
ଦେଖିଣ ଶ୍ରୀରାମ ଅନେକ ରୋଦନ କଲେ ।
ମୃତ୍ୟୁ ପିଣ୍ଡ ଚହ୍ନି ନୁହଇ ବୋଲିଣ ଜାଣିଲେ ॥ ୫ ॥
ହନୁମନ୍ତ ପଠିଆଇଲେ ସୀତାଠାବ କରି ।
ମନ୍ଦୋଦରୀଙ୍କ ହନୁମନ୍ତ ଆଣିଲ ବାଳ ଧରି ॥ ୬ ॥

ମନ୍ଦୋଦରୀଙ୍କ ଶ୍ରୀରାମ ସହୁଁ ଦେଖିଲେ ।
ବନ୍ଧନୁ ମୁକତ କରି ଗଉରବ କଲେ ॥ ୭ ॥

ହନୁମନ୍ତକୁ କହିଲେ କମ୍ପା ଆଣିଲୁ ଏ କାମେନୀ ।
ସତୀ ଶୁଦ୍ଧଶାଳୀ ଏ ରାବଣର ଘରଣୀ ॥ ୮ ॥
ସ୍ତ୍ରୀଙ୍କ କୋପ କଲେ ଯେ ନାହିଁ ପରିତ୍ରାଣ ।
ଏ ଯୁବତୀଙ୍କର ହୋ କିଛିହି ନାହିଁ ଦୋଷ ॥ ୯ ॥
ଶ୍ରୀରାମର ବଚନ ସହୁଁ ମନ୍ଦୋଦରୀ ଶୁଣିଲ ।
ପ୍ରଣାମ୍ୟ ହୋଇ ଅନେକ ବିନୋଇ କହିଲ ॥ ୧୦ ॥
ମନ୍ଦୋଦରୀର ସ୍ତୁତି ଶୁଣି ଶ୍ରୀରାମ ହରଷ ହୋଇଲେ ।
ସୀତମ୍ମା କାହିଁ ଅଛି ବୋଲି ପଚାରିଲେ ॥ ୧୧ ॥
ମନ୍ଦୋଦରୀ କହଇ ଶୁଣସି ରଘୁବୀର ।
କୁମ୍ଭକର୍ଣ୍ଣ ମରନ୍ତେ ଭୟ କଲ ଦଶଶିର ॥ ୧୨ ॥
ପାତାଳ ବିମ୍ବରେ ଲୁଚାଇ ଥୋଇଲିକ ନେଇ ।
ଜନ ମନୁଷ୍ୟ ରାକ୍ଷସ କାହାରି ଗମ୍ୟ ନାହିଁ ॥ ୧୩ ॥
ଖେଚର ଭୂଚର ତହିଁଙ୍କ ଯାଇତ ନ ପାରନ୍ତି ।
ସୁର ସିଦ୍ଧ ଅମରଗଣେ ତହିଁଙ୍କ ଶଙ୍କା କରନ୍ତି ॥ ୧୪ ॥

---

୨. ଅଶୋକ—ଓସେକ (ଖ) । ୫. ଚହ୍ନି—ଚହିଁ ; ଜାଣିଲେ—ଆଣିଲେ ।
୧୩. ଗମ୍ୟ—ଗ୍ୟାଂନ (କ), ମନୁଷ୍ୟ—ମନୁଶ ।

ଏ ମେ ହିତ ମଣି କରେ ଧରି ଥିବ ।
ପବନ ତନୟେ ସେ ବାମ୍ଭରେ ପଶିବ ॥ ୧୫ ॥
ଏମନ୍ତେକ କହି ଗ୍ୟାନବନ୍ତ ମଣି ।
ଶ୍ରୀରାମ କରେ ଦେଲା ମନ୍ଦୋଦରୀ ରାଣୀ ॥ ୧୬ ॥
ମଣି ଘେନି ରାମ ହରଷ ହୋଇଲେ ।
ହନୁମନ୍ତର ହସ୍ତରେ ସେ ମଣିରତ୍ନ ଦେଲେ ॥ ୧୭ ॥
ହନୁମନ୍ତକଇ ଆଶ୍ୱାସି କହନ୍ତି ରଘୁବୀର ।
ଜାନକୀ ସତେବାକୁ ଗ୍ଲୁଡ଼ ଏହାର ଭୁବନର ॥ ୧୮ ॥
ଏ ମଣି ଘେନି ସେଠୁ କଟକରେ ଥିବୁ ।
ସୀତାର ସମାଦ ଘେନି ତୁ ବେଗେଣ ଆସିବୁ ॥ ୧୯ ॥
ଶୁଣି ହନୁମନ୍ତ ମନ୍ଦୋଦରୀଙ୍କି ହସ୍ତରେ ବସାଇଲା ।
ରାବଣର ଅନ୍ତଃପୁର ଭିତରେ ଗ୍ଲୁଡ଼ିଲା ॥ ୨୦ ॥
ମନ୍ଦୋଦରୀଙ୍କି ଥିସ କୋଇଲେ ଲଙ୍କପତି ।
ଶ୍ରୀରାମର ଆଗେ ଲକ୍ଷ୍ମଣେ ତାହା ବଖାଣନ୍ତି ॥ ୨୧ ॥
ଗ୍ୟାନବନ୍ତ ମଣି ଘେନି ପବନର ସୁତ ।
ପାତାଳ ବାମ୍ଭରେ ପଶିଲା ତ୍ୱରିତ ॥ ୨୨ ॥
ସୀତାଙ୍କୁ ଦେଖି ସୁଖର କଥା କହିଲେ ।
ଶୁଣିଣ ଜାନକୀ ହରଷ ଚିତ୍ତ ହୋଇଲେ ॥ ୨୩ ॥
ଶ୍ରୀରାମଙ୍କ ମୁଦ ସନ୍ତକ ଦେଅ ନେଇ ।
ମୁଦ ଘେନି ହନୁମନ୍ତ ଗ୍ଲୁଡ଼ିଲେ ଚମଇ ॥ ୨୪ ॥
ଶିଳାକଇ ଘେନିଣ ମୁଦଲାଜ ହନୁମନ୍ତ ।
ସୁବଳାସୁ ପର୍ବତେ ହନୁ ବସରିଲା ତୁରିତ ॥ ୨୫ ॥

---

୧୬. ଗ୍ୟାନବନ୍ତ ମଣି—ଗ୍ୟାନମନ୍ତମଣି (କ), ଗ୍ୟାନବନ୍ତରାଣୀ ଙ୍କ ; ମନ୍ଦୋଦରୀ—ମନ୍ଦଦୋଶ । ୧୭-୧୮. ଖ ପୋଥିରେ ୧୭ ପଦର ଶେଷ ପାଦ ଓ ୧୮ ପଦ ବଦଳେ ପାଞ୍ଚ ପାଦ ପାଠ :—ହନୁମନ୍ତଙ୍କୁ ରାହୁଁ ବଚନ ବୋଇଲେ ॥ ଶ୍ରୀରାମ ହନୁମନ୍ତର କରେ ମଣିରତ୍ନ ଦେଇ । ହନୁମନ୍ତଙ୍କୁ ଆଶ୍ୱାସି କହନ୍ତି ରଘୁସାଇଁ ॥ ରାବଣର ଘରଯାକୁ ଗ୍ଲୁଡ଼ି ଆସ ଏହାର ପୁରେ । ଏମନ୍ତ ବୋଲି ଆଜ୍ଞା ଦେଲେ ଋଷିବର ସୁନ୍ଦରେ ॥ ୨୦. ହସ୍ତରେ—ରଥେ (ଙ) । ୨୪. ଦେଅ—ଦେସୁ । ୨୪-୨୫. ଖ ପୋଥିରେ ୨୪ ପଦ ଓ ୨୫ ପଦର ପ୍ରଥମ ପାଦ ବଦଳେ ପାଠ ଅଛି :—"ଶ୍ରୀରାମର ମୁଦ ଦେଲକ ସନ୍ଦେଶ । ତହୁଁ ବେଗେ ଆସଇ ପବନର ଶିଷ୍ୟ । ମୁଦ ଦେଖି ରାମ ହରଷ ହୋଇଲେ । ପୁଣିହି ବାହୁଡ଼ାଇ ସେ ମୁଦ ସୀତାକୁହି ଦେଲେ । ସୀତାକୁ ମୁଦ ଦେଇ ଅଇଲା ହନୁମନ୍ତ ॥"
୨୫. ଶିଳାକଇ—ସିତାକଇ ।

ଗୋଲକ ନାମେ ରାକ୍ଷସ ଦ୍ୱାରେ ରହିଥିଲା
ସେ ଆସି ରାବଣର ଆଗରେ କହିଲା ॥ ୧୬ ॥
ଶ୍ୱେତ ଦେବ ଲଙ୍କା ଦହିଲା ଯେବଣ ବାନର ।
ସେ ଏକା ପଶିଲା ପାତାଳ ବିବର ॥ ୧୭ ॥
ସୀତାଙ୍କର ତୁଲେ ସେ ହୋଇଥିଲା କଥା ।
ଶୁଣିଣ ମହାଭୟେ କଲକ ଦଶମଥା ॥ ୧୮ ॥
ମନେ ମନେ ଭାଳଇ ଅସୁର ନୃପତି ।
ଭଲା ହନୁମନ୍ତ ଯେଣ ନ ଗଲା ମହାସତୀ ॥ ୧୯ ॥
ପାତାଳ ବିବରେ ସେ ରାବଣ ପଶିଲା ।
ପୁଣ ଆଣି ସିତାଙ୍କୁ ଅଶୋକ ବନେ ଥୋଇଲା ॥ ୨୦ ॥

## ଲକ୍ଷ୍ମଣ ଶକ୍ତିଭେଦ

କୋପେ ରାବ ଡାଅଇ ଅସୁର ବୀର ରାୟେ ।
ବେଲବନେ ପଶି ଦୁସହ ସମର କଏ ॥ ୧ ॥
କପି ଋକ୍ଷ ସଇନ୍ୟ ମାଇଲକ ଯହିଁ ।
ସୁମିତ୍ରାର ତନୟେ ଆଗେ ଓଗାଳିଲା ତହିଁ ॥ ୨ ॥
ଯୁଦ୍ଧକଇ ରାବଣ ମହାଶ୍ରମ ପାଇଲା ।
ମନ୍ତ୍ର ସୁମରି ବ୍ରହ୍ମଶକତି ମାଇଲା ॥ ୩ ॥
ଲକ୍ଷ୍ମଣର ହୃଦରେ ପଡ଼ିଲା ବ୍ରହ୍ମଶକତି ।
ଘାଏଣ ଘୂମାଇ ପଡ଼ିଲା ସଉମିତ୍ରି ॥ ୪ ॥
ଲକ୍ଷ୍ମଣର ବିଘାତ ଶ୍ରୀରାମ ଦେଖିଲେ ।
ରାବଣର ତୁଲରେ ଦୁସହ ସମର କଲେ ॥ ୫ ॥
ରଥ ଗଜ ଅଶ୍ୱ ବିନାଶିଲେ ଅନେକ ସନ୍ୟ ।
ସଂଗ୍ରାମେ ରହି ନ ପାରିଲା ଦଶାନନ ॥ ୬ ॥
କେଶ ମୁକୁଳା ଉଲଗ୍ନ ହୋଇ ପଳାଇଲା ।
ତେତେଣେ ସେ ରଘୁପତି ପ୍ରାଣେ ନ ମାଇଲା ॥ ୭ ॥
ସଂଗ୍ରାମରୁ ବାହୁଡ଼ି ଶ୍ରୀରାମ ଅଇଲେ ।
ଲକ୍ଷ୍ମଣଙ୍କୁ କୋଳେ ଧରି ଅନେକ ରୋଦନ କଲେ ॥ ୮ ॥

---

୧୬. ଗୋଲକ— କୋଳେକ (ଖ) । ୧୯. ଏହାର ଦ୍ୱିତୀୟ ପାଦର ପାଠ କ ପୋଥିରେ :—ଭୟେତ ହନୁମନ୍ତ ଆଗେ ନ ଗଲା ଦେହ କତ । ୨୦. ଅଶୋକ ଉଦ୍ୟାନ (ଖ) । ୪. ଘୂମାଇ ପଡ଼ିଲା—ମୂର୍ଚ୍ଛାଗଲେ (କ) ।

ଜାମ୍ବେବ କହନ୍ତି ଶୁଣ ଋଷି ବର ସୁନ୍ଦର ।
ଶକଠ ଫୁଟି ଅଛୁ ଯେ ଲକ୍ଷ୍ମଣର ହୃଦର ॥ ୯ ॥
ସମସ୍ତ ଯୂଥ ପତି ଦେକ୍ଷିଣ ଧଇଲେ ।
କେହ୍ନ ସେ ଶକଠ କାଢ଼ି ନୋଆରଲେ ॥ ୧୦ ॥
ଦେହେ ଶକଠ ଥଲେ ଔଷଧ ଲଗତ ନପାର ।
ଜାମ୍ବେବର ବଚନ ଶୁଣିଣ ରଘୁଧାଙ୍ଗ ॥ ୧୧ ॥
ବାମ ହସ୍ତେ ରାମ ଶକଠ ଧଇଲେ ।
ଶକଠ କାଢ଼ିଣ ଗଗନକୁ ଫିଙ୍ଗି ଦେଲେ ॥ ୧୨ ॥
ବ୍ରହ୍ମଶକଠ ଯହୁଂ ଲକ୍ଷ୍ମଣ ହୃଦରୁ ଗଲା ।
ବାନ୍ଧର ପ୍ରାୟେ ତାହାର ହୃଦସ୍ତ ଦଶିଲା ॥ ୧୩ ॥
ଦେଖିଣ ଶ୍ରୀରାମ ରୋଦନ କଲେ ଯେତେ ।
ସଭାରେ ଲବକୁଶେ ଗାବନ୍ତି ତାହା ଗୀତେ ॥ ୧୪ ॥
ଜାମ୍ବେବ କହଇ ଶୁଣସି ରଘୁମଣି ।
ଗରଶୃଙ୍ଗ ପର୍ବତେ ଅଛୁ ବିଶଲ୍ୟକରଣୀ ॥ ୧୫ ॥
ଔଷଧ ଘାଏ ଲଗାଇବ ଯେବେ ।
ତେବେ ସେ ଶକଠଘାଆ ଭଲ ହୋଇବେ ॥ ୧୬ ॥
ଜାମ୍ବେବର କଥା ଯହୁଂ ରାମଚନ୍ଦ୍ର ଶୁଣିଲେ ।
ବିଶଲ୍ୟକରଣୀକି ଯାଅ ବୋଲି ହନୁମନ୍ତକୁ ପଠିଆଇଲେ ॥୧୭॥
ହନୁମନ୍ତ ଯିବାର ଯହୁଂ ରାବଣ ଜାଣିଲା ।
ନି କଣ୍ଠା ଅସୁରକଇ ବାଣ୍ଟକଇ ପେଷିଲା ॥ ୧୮ ॥
ରାବଣର ଆଗ୍ୟାଂରେ ନି କଣ୍ଠା ଅସୁର ଯାଇ ।
ମାୟା ଲିଙ୍ଗେକ ଥାପି ଅସୁର ହନୁମନ୍ତକୁ ଡାକ ଦଅଇ ॥ ୧୯॥
ହନୁମନ୍ତ ତାହାର ସନ୍ନିଧକୁ ଗଲା ।
ଯତି ପ୍ରାୟେ ବୁଝି ନମସ୍କାର କଲା ॥ ୨୦ ॥
ହନୁମନ୍ତ ନି କଣ୍ଠାର ଯେବଣ ଯେବଣ ସିଦ୍ଧାନ୍ତ ।
ଶ୍ରୀରାମର ଆଗେ କହ(ନ୍ତ) ସୀତସ୍ୱାର ବେଦ ସୂତ ॥ ୨୧ ॥
ଋଷି ପ୍ରାୟେ ବୁଝି ପବନ କୁମର ।
ସ୍ନାହାନ ସାର ତପ କଲା ଗଣ୍ଡକୀ ଭିତର ॥ ୨୨ ॥
ସେ ଜଳ ଭିତରେ କୁମ୍ଭୀର ଏକ ଥିଲା ।
ହନୁମନ୍ତକୁ ଧରି ସେ ଗଣ୍ଡରେ ବୁଡ଼ିଲା ॥ ୨୩ ॥

---

୧୬. ଶକଠଘାଆ—ଶକ୍ତିଘାତ (ଖ) । ୨୨. ଗଣ୍ଡକୀ—ଜଳର (ଖ)
୨୩-୨୫: କ ପୋଥିରେ ୨୩ ପଦର ପ୍ରଥମ ପାଦ ପରେ ୨୫ ପଦର ଶେଷ ପାଦ ଅଛୁ, ମଧ୍ୟର ଚାରିପାଦ ନାହିଁ ।

ତାହାକୁ ହନୁମନ୍ତ ଅଣିଲାକ ଟେକି ।
କୂଳରେ ପକାଇ କୁମ୍ଭୀରୀ ବୁକୁ ଧରି ବିଦାରି ॥ ୧୪ ॥
ସେ କୁମ୍ଭୀରୀ ଦେହରୁ ପୁରୁଷେକ ବାହାର ହେଲେକ ।
ଇନ୍ଦ୍ର ଅପସ୍ୱରୀ ବୋଲନ୍ତି ସେ କହିଲ ॥ ୧୫ ॥
ପୂର୍ବର ଶାପ ଯେସନେକ ବିଧାନ ।
ବିସ୍ତାରି କହନ୍ତି ତାହା ସୀତାଙ୍କର ବେନି ନନ୍ଦନ ॥ ୧୬ ॥
ଅପସ୍ୱରୀ କହିଲ ସେ ନୁହଇ ତପସ୍ୱୀ ।
ରାବଣର ଲୋକ ଅଟଇ ତପସ୍ୱୀ ରୂପ ଧରି ॥ ୧୭ ॥
ଏସନେକ କହି ସେ ସ୍ୱର୍ଗକୁ ଗଲା ।
ଶୁଣି ହନୁମନ୍ତ ନିକଟାକୁ ଧଇଲ ॥ ୧୮ ॥
ଲାଙ୍ଗୁଳବନ୍ଧ ଗୋଟେ ବାନ୍ଧିଲ ବଳେ ।
ଧର୍ମରଡ଼ି ଛାଡ଼ଇ ଅସୁର ପ୍ରାଣେ ବିକଳେ ॥ ୧୯ ॥
ମୋଥେକ ମାରିଲା ତାହାର ମୁଣ୍ଡ କଲା ଚୂର ।
ପ୍ରାଣନାଶ ହୋଇଲା ସେ ନିକଟା ଅସୁର ॥ ୨୦ ॥
ଶୁଣିଣ ଶ୍ରୀରାମ ହରଷ ହୋଇଲେ ।
ବଶିଷ୍ଠ ମହାମୁନିଙ୍କର ମୁଖକୁ ଚାହିଁଲେ ॥ ୨୧ ॥
ଦେଖନ୍ତୁ ହନୁମନ୍ତ ମୋତେ ଏତେ ଉପକାରୀ ।
ତାହାର ଗୁଣ ମୁହିଁ କି ପାସୋରି ॥ ୨୨ ॥
ହନୁମନ୍ତ ଯେବେ ମୋ ଘର ପାଶେ ଥାନ୍ତା ।
ସେ କିମ୍ପା ସୀତାଙ୍କୁ ବନବାସ ପଠାନ୍ତା ॥ ୨୩ ॥
ଗୋଟେରଖ ହନୁମନ୍ତଙ୍କୁ କଦଳୀ ବନକୁ ନେଲେ ଯହୁଁ ।
ସକଳ ବିପତ୍ତି ମୋତେ ହୋଇଲାକ ତହୁଁ ॥ ୨୪ ॥
ବଶିଷ୍ଠେ କହନ୍ତି ଏବେ ସାବଧାନେ ଶୁଣ ।
ସେମନ୍ତ ନୁହଇ ଦଇବର ନିର୍ମାଣ ॥ ୨୫ ॥
ଲବକୁମର କହଇ ଅସୁରକୁ ମାରି ।
ଯାଇ ହୋଇଲା ବୀର ପର୍ବତ ଶୃଙ୍ଗେ ଗିରି ॥ ୨୬ ॥
ଇନ୍ଦ୍ର ଆଜ୍ଞାଂରେ ଯେ ପର୍ବତ ଗନ୍ଧର୍ବେ ରଖିଥିଲେ ।
ହନୁମନ୍ତର ତୁଲେ ସେ ଅନେକ ଯୁଦ୍ଧ କଲେ ॥ ୨୭ ॥
ସମସ୍ତ ଗନ୍ଧର୍ବଙ୍କୁ ମାରିଲା ହନୁମାନ ।
ଔଷଧର ପବନେ ସେ ପାଇଲେ ଚେତନ ॥ ୨୮ ॥

---

୧୮. ନିକଟାକୁ—ତାହାର ନିକଟ (ଖ) । ୨୪. ଏହାର ପ୍ରଥମ ପାଦର ପାଠ ଖ ପୋଥିରେ :—ହନୁମନ୍ତ କଦଳୀ ବନକୁ ଗଲା ଯହୁଁ ।

ଅଶି ସହସ୍ର ଗନ୍ଧର୍ବ ହନୁମନ୍ତ ଲାଙ୍ଗୁରେ ବାନ୍ଧିଲା ।
ଗୋଶୃଙ୍ଗ ପର୍ବତ ଉପାନ୍ତେ ଆଣିଲା ॥ ୩୯ ॥
ପୁଣି ଗନ୍ଧର୍ବଙ୍କୁ ପେଡ଼ିଲେ ସୁରପତି ।
ଲାଙ୍ଗୁରେ ଗନ୍ଧର୍ବଙ୍କୁ ଧରି ମାଇଲା ଅହଲ୍ୟାର ନାଥ ॥ ୪୦ ॥
ସମସ୍ତ ଗନ୍ଧର୍ବ ନମସ୍କରିଲେ ଜଳେ ।
ପର୍ବତ ଯେନ ଆସନ୍ତେ ଅନ୍ତର୍ଦ୍ଧାନ ହୋଇଲେ ॥ ୪୧ ॥
ରାବଣ ଜାଣି ପେଶିଲା ଅନେକ ଅସୁର ଦଳ ।
ସବୁହିଂ ମାଇଲା ତହିଂ ପବନର ବାଳ ॥ ୪୨ ॥
ତହୁଁତ ବନ ମାର୍ଗେ ଆସନ୍ତେ ହନୁମନ୍ତ ।
ସୁବାହୁ ବନେ ଥିଲା ଯେ କକସ୍ଥାର ସୁତ ॥ ୪୩ ॥
ଘୋର ଶବଦେକ ଶୃଙ୍ଖଳିକ ସହିଂ ।
ବାଟେ ତାଳ ଗୋଟାଏ ଭୂତ ମାଇଲାକ ତହିଂ ॥ ୪୪ ॥
ନେଲାଟେ ବାଜନ୍ତେ ହନୁମନ୍ତର ଆତ୍ମା ହରିଗଲା ।
ଅଚେତ ହୋଇ ହନୁମନ୍ତ ଭୂତର ଗ୍ରୀମୁରେ ପଡ଼ିଲା ॥ ୪୫ ॥
କ୍ଷଣକେ ଚେତନା ପାଇଣ ମାରୁତି ।
ଭୂତକୁ ପଚାରନ୍ତି ମହାତ୍ମା କେତେକ ଅଛୁ ରତି ॥ ୪୬ ॥
ଶୁଣିଣ ଭୂତର ଦୟା ବର୍ଷିଲା ।
ହନୁମନ୍ତର ସନ୍ନଖେ ଆସି ଉଭା ହୋଇଲା ॥ ୪୭ ॥
କପାଂ ହୋ ମର୍କଟ ଗୋଟି ରଜନୀ ପଚାରିଲୁ ।
ଆପଣେ ମଣଥିଲୁ ଏ କଥାକୁ ଭୟେ ନ କଲୁ ॥ ୪୮ ॥
ହନୁମନ୍ତ ବୋଲଇ ମୋହର ମରିବାକୁ ନାହିଂ ନାସ ।
ସ୍ୱାମୀର କାର୍ଯ୍ୟ ସେ କଲଇ ମୁହିଂ ନାଶ ॥ ୪୯ ॥
ମୁହିଂ ହନୁମା କପାଇଂ ଏ ବାଟେ ଅଇଲି ।
ସେ କହିଲା କର୍ମା ଔଷଧ ଯୋଗ୍ୟ ନ ମିଳା ॥ ୫୦ ॥
ଭୂତ କହଇ କପି କରନ୍ତୁ ଔଷଧ ।
ହେ କପି ଗୋଟା ତୁମ୍ଭ ମୋତେ କହ ସାଧ ॥ ୫୧ ॥
ହନୁମନ୍ତ କହଇ ଶୁଣସି ଭୋ ଯତି ।
ରାବଣର କୁଳେ ରାମ ଯୁଦ୍ଧ କରନ୍ତି ॥ ୫୨ ॥
ବନ୍ଧୁ ବର୍ଗ ରାବଣର ସହିଁ ଅନେକ ମଲା ।
ଶ୍ରୀରାମର ଭାଇକି ଦନୁଜ ଶକତି ମାଇଲା ॥ ୫୩ ॥

---

୪୦. ଅହଲ୍ୟାର ନାଥ—ବକୋଡ଼ (ଙ) । ୪୩. ଦ୍ୱିତୀୟ ପାଦଟି ଙ ପୋଥିରେ ନାହିଁ । ୪୮. କପାଂ—କି (ଙ) । ୪୯. ନାସ—ତ୍ରାସ । ୫୧. ସାଧ— ଏଥିର ସାଧ (ଙ) ।

ଗନ୍ଧର୍ବଙ୍କ ପର୍ବତକୁ ବଢ଼ିଗଲେ ରାମ ମୋତେ ।
ଔଷଧ ନେଇ ମୁହିଂ ଯିବଇ ତ୍ବରତେ ॥ ୫୪ ॥
ବାଟେ ଅନେକ ମୋତେ ପ୍ରମାଦ ପଡ଼ିଲା ।
ତେଣେ ସେ ଯିବାର ମୋହର ଉଛୁର ହୋଇଲା ॥ ୫୫ ॥
ରାତ୍ର ପାଇଲେ ସୂର୍ଯ୍ୟ ଉଦୟ ହୋଏ ଯେବେ ।
ହୃଦୟ ଫାଟି ଲକ୍ଷ୍ମଣ ମରିବନ୍ତି ତେବେ ॥ ୫୬ ॥
ଶୁଣିଣ ଭରଥ ପଡ଼ିଣ ମୋହ ଗଲା ।
ଆହା ଭାଇ ବୋଲି ଅନେକ ରୋଦନ କଲା ॥ ୫୭ ॥
ଯେବଣ କଥା ହନୁମନ୍ତ ଭରଥକୁ କହିଲେ ।
ଶ୍ରୀରାମର ଅଗେ ତାହା ଲବକୁଶେ ଗାଇଲେ ॥ ୫୮ ॥
ଭରଥ ମହାବୀର ହନୁମନ୍ତକୁ ବାଟୋଳି ମାରିବାର କଥା ।
ଶୁଣିଣ ରାମଚନ୍ଦ୍ର ପାଇଲେ ମହାବ୍ୟଥା ॥ ୫୯ ॥
ଭରଥର ମୁଖ ଚାହିଂ କହନ୍ତି ରଘୁନାଥ ।
ମୋହର ଆଗେ ହନୁମନ୍ତ ନ କହିଲ ତ ଏହା ॥ ୬୦ ॥
ଭରଥ କହଇ ଯୋଡ଼ିଣ ବେନି ହସ୍ତ ।
ହେ ଦେବ ବିଶଲ୍ୟକରଣୀ ନେଇ ଯାଉଣ ହନୁମନ୍ତ ॥ ୬୧ ॥
ହୁଂକାର ଶବଦ ମହୁଂ ଶୁଣିଲି ।
ଗଗନକଇ ମୁହିଂ ବାଟୋଳିଏ ମାରିଲି ॥ ୬୨ ॥
ମୋହର ଭୂମିରେ ସେ ଆସିଣ ପଡ଼ିଲା ।
ଲକ୍ଷ୍ମଣର ଶକତିଘାତ ମହୁଂ କହିଲା ॥ ୬୩ ॥
ଶୁଣିଣ ମୁହିଂ ଅନେକ ବିକଳ ହୋଇଲି ।
ହନୁମନ୍ତ(କୁ) ଅନେକ ଆଶ୍ବାସି କହିଲି ॥ ୬୪ ॥
ହେ ହନୁମନ୍ତ ତୋହର ଯେବେ ମୋତେ ଅଛୁ ଅନୁରାଗ ।
ଏ କଥା ନ କହିବୁ ଶ୍ରୀରାମଚନ୍ଦ୍ରଙ୍କର ଆଗ ॥ ୬୫ ॥
ତେଣେ ସେ ତୁମ୍ଭର ଆଗେ ନ କହିଲେ ହନୁମାନ ।
ଧନ୍ୟ ଧନ୍ୟ କହନ୍ତି ରାମ ପବନନନ୍ଦନ ॥ ୬୬ ॥
ମୋତେ ଯେବେକ ସ୍ନେହ ଉପେକ୍ଷି ।
ମୋହର ସାନ୍ନିଶେ ମୋହର ତନ ଭାଇ ଦେଖି ॥ ୬୭ ॥
ଶ୍ରୀରାମ ଭରଥର ତୁଲେ କଥା ହୁଅନ୍ତେ ।
ତୂନି ହୋଇ ବସିଲେ ଲବକୁଶ ବେନି ଭ୍ରାତେ ॥ ୬୮ ॥

---

୫୬. ପାଇଲେ—ପାଇଲେ ଯେବେ (କ) । ୬୨. ହୁଂକାର—ଝଙ୍କାର (କ) ।
୬୪. ଆଶ୍ବାସି—ନିଶ୍ବାସି (ଖ) । ୬୫. ନ କହିବୁ—କହିବୁ (କ)
୬୭. ସାନ୍ନିଶେ—ସାଧିସେ (କ) । ୬୮. କୁଶ—କୁମର ।

ଶ୍ରୀରାମ ପୁଚ୍ଛନ୍ତି ଗାଅ ପୁଣ୍ୟେଗୁଣୀର ପୁଣ୍ଡ ।
ତହୁଂ କେବଣ କୃତ୍ୟ କଲେ ପବନର ପୁତ୍ର ॥ ୬୯ ॥
ଲବକୁମର କହଇ ତୁମ୍ଭେ କସ କସ ଭାଲ ।
ଗାଇବା ଶୁଭଇ କା କରନ୍ତେ ଚହଲ ॥ ୭୦ ॥
ତଲ୍ଲସ୍ୱେ କର ଗ୍ରନ୍ଥ ଯେବେ ଶୁଣି ।
ତେବେ ସେ ଶାସ୍ତ୍ର ପାର ପରମାଣି ॥ ୭୧ ॥
ଶୁଣିଣ ସକଳ ଲୋକେ ହୋଇଲେ ମଉନ ।
ନାଦହୁଂକାର ଗାବନ୍ତି ସୀତସ୍ୱା(ର) ବେନି ସୂନ ॥ ୭୨ ॥
ଶ୍ରୀରାମ ଦୂତ ବୋଲ ଭଥ ଯହୁଂ ଶୁଣିଲ ।
କୋଳ କର ହନୁମନ୍ତକୁ ଶିରେ ଚୁମ୍ବନ ଦେଲ ॥ ୭୩ ॥

ବାଟୋଳର ଘାଏ ମେ ଶରୀର ହୋଇଥିଲ ବ୍ୟଥା ।
ହାତ ଲଗାଇଲ ଭଥ ମହାରଥା ॥ ୭୪ ॥
ଅମ୍ଭାକଇ ଉସ୍ୱାସ ପାଇଲ ହନୁମନ୍ତ ।
ତହୁଂ ବନ୍ଦମି ଅଇଲାକ ଭରତ ॥ ୭୫ ॥

ଶୂନ୍ୟ ମାର୍ଗରେ ଗିରିଶୃଙ୍ଗ ପର୍ବତ (ଧରି) ଆସଇ ।
ସୁବଳସ୍ଥା ପର୍ବତେ ହନୁମନ୍ତ ହୋଇଲ ପ୍ରବେଶଇ ॥ ୭୬ ॥
ଲକ୍ଷ୍ମଣକୁ ଶ୍ରୀରାମ ହୃଦରେ ପକାଇ ।
ବସିଛନ୍ତି ସୀତାପତି ବସୁନ୍ଧେ ମୁଖ ହୋଇ ॥ ୭୭ ॥
ହନୁମନ୍ତକୁ ଦେଖି ଆନନ୍ଦ ରଘୁନାନ ।
ଅନ୍ଧ ଚକ୍ଷୁ ପାଇଲ କି ନିଧନ ଲୋକକୁ ଧନ ॥ ୭୮ ॥
ଶ୍ରୀରାମ ପୁଛନ୍ତି ଶୁଣସି ହନୁମନ୍ତ ।
ଆଣି ନ ପାରିଲୁ କି ମଉଷୋଧି ପଦାର୍ଥ ॥ ୭୯ ॥
ହନୁମନ୍ତ କହଇ ଶୁଣସି ରଘୁସାଇଂ ।
ଏ ବିଶଲ୍ୟକରଣୀ ନ ଚହ୍ନଇ ମୁହିଂ ॥ ୮୦ ॥
ପର୍ବତ ଆଣିଲି ଦେବ ତୋହର ସନ୍ନିଧାନ ।
ଜମ୍ବେବକଇ ଦେବ (ପରୁରନ୍ତି) ମଉଷୋଧି ଚହ୍ନି ॥ ୮୧ ॥
ଏସନେକ କଥା ଶୁଣି ଗିରିଶୃଙ୍ଗ ପର୍ବତ ।
ଶ୍ରୀରାମର କରେ ଦେଲି ବିଶଲ୍ୟକରଣୀ ପଦାର୍ଥ ॥ ୮୨ ॥

---

୬୯. ଦ୍ୱିତୀୟ ପାଦର ପାଠ ଖ ପୋଥିରେ : 'ତାହା ଶୁଣି ବୋଲି ଯେ ସୀତାର ଜ୍ୟେଷ୍ଠସୁତ ।' ୭୧. ପାର ପରମାଣି—ପାରିବା ବଖାଣି (ଖ) । ୭୫. ଉସ୍ୱାସ—ସୁନ୍ଥ (ଖ) । ୭୮. ଅନ୍ଧ—ଅନ୍ଧ (କ) । ୮୧. ଦ୍ୱିତୀୟ ପାଦର ପାଠ ଖ ପୋଥିରେ :—ଜମ୍ବେବକୁ ପରୁରନ୍ତି ଔଷଧ ବିଧାନ ।

ଏବଂତ କହଇ ଶ୍ରୁତିସିଂ ରଘୁବୀର ।
ପୂର୍ବେ ଅଗ୍ନ୍ୟାଂ ଦେଇ ଅଛଇ ସୁନାସୀର ॥ ୬୩ ॥
ଏ ବିଶଲ୍ୟକରଣୀ ଭୂ ସଂଗ୍ରହ ଥିବୁ ।
ଆନ କାହାର ହାତେ ତୁ ନ ଦେବୁ ॥ ୬୪ ॥
ଯେ କରେ ଧରିବ ସେ ହୋଇବ ପ୍ରାଣନାଶ ।
ଶ୍ରୀରାମ ନାମେ ଉପୁଜିବ ସେ ବଣ୍ଟୁ ପୁରୁଷ ॥ ୬୫ ॥
ତାହାର ମୁଖ ଦେଖି ଔଷଧ ତାହାର ହାତେ ଦେବୁ ।
ଶ୍ରୀରାମ ମୁଖ ଦେଖି ସକଳ ପାପ ଛିପେଖିବୁ ॥ ୬୬ ॥
ତେଣୁ ସେ ହନୁମନ୍ତର ହାଥରେ ନ ଦେଲ ।
ତୋହର ମୁଖ ଗୃହ୍ନଂ ଏବେ ପାପ ଛିପେଖିଲ ॥ ୬୭ ॥
ଏମନେକ କହି ଗିରି ଶୃଙ୍ଗ ଗଲ ।
ନିଜ ଥାନେ ସେ ପ୍ରବେଶ ହୋଇଲ ॥ ୬୮ ॥
ଔଷଧ କରେ ଘେନଣ ରଘୁପତି ।
ଜାମ୍ବୁବ ହକାରି ବିଶଲ୍ୟକରଣୀ ଚହ୍ଲାନ୍ତି ॥ ୬୯ ॥
ଜାମ୍ବୁକ କହଇ ଦେବ ଔଷଧ ଅଟଇ ।
ଆବର କଥାଏ ଶୁଣ ରଘୁବୃଟଇ ॥ ୧୦ ॥
ତାରାକନ୍ୟା ରାବଣପୁରେ ଅଛି ।
ତାହାକୁ ଘେନ ଆସୁ ପବନର ବଚ୍ଛ ॥ ୧୧ ॥
ଅନୁ କ୍ଷୀର ଦେଇ ଔଷଧ ବାଟିବ ।
ତାହାର କରେଣ ସେ ଘାଏଣ ଲଗାଇବ ॥ ୧୨ ॥
ତେତେଣେ ସେ ଶକତି ଘାତେ ହୋଇବ ଏଢ଼ାଇଣି ଭଲ ।
ଲକ୍ଷିଣ ହରଷ ହୋଇଲେ ରାଘବ କୁଳ ମଲ୍ଲ ॥ ୧୩ ॥
ହନୁମନ୍ତକୁ ବରଗିଲେ ସୀତସ୍ବାର ସଙ୍ଗ ।
ତାରାକନ୍ୟାକୁ ଆଣିଲ ହନୁ କାନ୍ଧରେ ବସାଇ ॥ ୧୪ ॥
ଶ୍ରୀରାମର ପଦୃରେ ତାର କରଇ ପ୍ରଣମିତ ।
ବିଶଲ୍ୟକରଣୀ ତାହାର ହାଥେ ନେଇ ଦେଲେ ରଘୁନାଥ ॥୧୫
ଅନୁ କ୍ଷୀର ଘେନ ଔଷଧ ବାଟିଲ ।
ଲକ୍ଷ୍ମଣର ଶକତିଘାତେ ତାର ଲଗାଇଲ ॥ ୧୬ ॥
ଅମୃତପାନେ ଯେସନେକ ଶରୀରଇ ।
ଚେନତା ପାଇଲ ସୁମିତ୍ରାର ତନସ୍ତି ॥ ୧୭ ॥

---

୮୫. ବଣ୍ଟୁ ପୁରୁଷ—ପ୍ରତକ୍ଷେ ଶ୍ରୀନିବାସ (ଖ) । ୮୭. ମୁଖ ଗୃହ୍ନଂ—ମୁଖ (କ) ।
୧୦. କହଇ—କଇ (କ) । ୧୭. ତନସ୍ତି—ତନଇ ।

ଶ୍ରୀରାମର ମୁଖ ସନ୍ମୁଖ ଚାହିଁ ଦେଖିଲ ।
ଶାପ ମୁକତ ହୋଇ ନିଜ ଭୁବନକଇ ଗଲା ॥ ୯୮ ॥
ଶ୍ରୀରାମଙ୍କ ଲକ୍ଷ୍ମଣ ଚିତ୍ର କଥା କହିଲ ।
ଅଯୋଧ୍ୟରେ ବସି ତାହା ଲବକୁମର ଗାଇଲ ॥ ୯୯ ॥
ଯେବଣ ପଦ ଅବା ଅଳାପ ଅନ୍ତର ହୁଅଇ ।
କୃଷ୍ଣକୁମରି ତାହା ଅର୍ଥ ଭଣେ କହଇ ॥ ୧୦୦ ॥

## ମହୀରାବଣ ବଧ

ଏଥୁ ଅନନ୍ତରେ ଯେ ରାବଣର ଘର ।
ସଂଗ୍ରାମେ ଥିଲ ଯେ ବହଡ଼ା ଅସୁର ॥ ୧ ॥
ଶରବନ୍ଧଘାତ ଭଲ ହୋଇଲା ଯେବଣ ହି ମତେ ।
ରାବଣ ଆଗେ ଯାଇ କହଇ ତ୍ୱରିତେ ॥ ୨ ॥
ଶୁଣିଣ ଦଶଶିର ଚାହାଁଇ କୋପ କଲା ।
ବହଡ଼ା ବୁଦ୍ଧି କହିଲ ସେ ଶୂନ୍ୟମାର୍ଗକଇ ଗଲା ॥ ୩ ॥
ପୁଣି ସଂଗ୍ରାମକୁ ଯାନ୍ତେ ଦଶମାଥ ।
ମହୀରାବଣ କହ୍ନ ଆଗ୍ୟାଂ ଦେଇ ତାତ ॥ ୪ ॥
ଶୁଣିଣ ଦଶାନନ ହରଷ ହୋଇଲା ।
ମନ୍ତ୍ରୀ ବାନ୍ଧି ମହୀରାବଣକୁ ପଠିଆଇଲା ॥ ୫ ॥
ପିତାର ଆଗ୍ୟାଂରେ ମହୀରାବଣ ବୀର ।
ମାତ ଅସୁର ବେନ ହୋଇଲେ ଋଷିଙ୍କ ଆକାର ॥ ୬ ॥
ଦଣ୍ଡକମଣ୍ଡଳ ହସ୍ତରେ ତା ଧରି ।
ରୁଦ୍ରାକ୍ଷମାଳ ଲୁଳଇ କପୋଳେ ବିଭୂତି ॥ ୭ ॥
ସପତ ଋଷିଙ୍କର ଆକାର ହୋଇଲ ।
ଶ୍ରୀରାମ ସନ୍ନିଧେ ତକ୍ଷଣେ ମିଳିଲ ॥ ୮ ॥
ଅନେକ ମାୟା ସେ କହିଲ ନାନା ଚରିତ ।
ପ୍ରୀତି କଥାକୁ ସେ ମୋହି ହୋଇଲ ରଘୁନାଥ ॥ ୯ ॥
ବିଭୂତି ଦେଇଣ କହଇ ପାପଆଶୀ ।
ଏ ବିଭୂତି ସମସ୍ତ କପୋଳରେ ଲେପନ କରସି ॥ ୧୦ ॥
କାଣ୍ଡଖଣ୍ଡା ତୁମ୍ଭର ଦେହରେ ନ ଭେଦିବ ।
ସବୁର ଶରୀର ବଜ୍ର ହୋଇଥିବ ॥ ୧୧ ॥

---

୧. ବହଡ଼ା—ବହଡ଼ଦାଢ଼ (ଖ) । ୩. ବହଡ଼ା—ବହୁତ ; ଦ୍ୱିତୀୟ ପାଦର ପାଠ ଖ ପୋଥିରେ :—'ବହଡ଼ଦାଢ଼ କଇ ସେ ସ୍ୱର୍ଗକଇ ଗଲା' । ୪. କହ୍ନ—କହ । ୯. ମାୟା—ମାର୍ଗେ (ଖ) ।

ଶୁଣିଣ ଶ୍ରୀରାମଚନ୍ଦ୍ର ବିଭୂତି ଯୂଥପତିଙ୍କି ଦେଲେ ।
ଦୁଇ ଭାଇ ବିଭୂତି କପୋଳେ ଲେପନ କଲେ ॥ ୧୨ ॥
କମ୍ଭେବ ଶତବାଳ ରାମର ଭାଇ ସହିତେ ।
ଏକର ହାତରେ ଆରକେ ଯୋନନ୍ତି ରୁଚିତେ ॥ ୧୩ ॥
ଋକ୍ଷବାନର ଶ୍ରୀରାମର ଯେତେ ସୈନ୍ୟ ।
ସମସ୍ତେ ବିଭୂତି ହୋଇଲେ ଲେପନ ॥ ୧୪ ॥
ବିଭୂତି ଲେପନେ ଚେତନା ହାରିଲେ ।
ଏକ ଆରକକୁ ଚିହ୍ନି ନ ପାରିଲେ ॥ ୧୫ ॥
ଶ୍ରୀରାମକୁ ଯେନ ମହୀରାବଣ ଗଲା ।
ପାତାଳ ବିମ୍ବରେ ନେଇଣ ଲୁଗୃଇଲା ॥ ୧୬ ॥
ଶ୍ରୀରାମର ତେଜେ ମାରିତ ନୋଆରଇ ।
ମୂର୍ଚ୍ଛ ବୃହିଂଲେ ମହାଭୟେ କରଇ ॥ ୧୭ ॥
ଶ୍ରୀରାମ ସମରେ ନାହିଂ ବୋଲି ଯହିଂ ରାବଣ ଜାଣିଲା ।
ରାମର ରୂପ ଧରି ସଂଗ୍ରାମେ ପଶିଲା ॥ ୧୮ ॥
ଅନେକ ମର୍କଟ ଧରିଣ ନାଶ କରଇ ।
ଶ୍ରୀରାମର ମୁଖ ଦେଖି କେହି ଶସ୍ତ୍ର ନ ପେଷଇ ॥ ୧୯ ॥
ଦେଖି ଦେବଗଣେ ବିଷାଦ ହୋଇଲେ ।
ବିଭୀଷଣ ନାମ ଧରି ଉଚେ ଡାକ ଦେଲେ ॥ ୨୦ ॥
ଆହୋ ବାନର ବିଭୂତି ପୋଛିବ ।
ସମସ୍ତେ ପ୍ରାଣ ପାଇବଟି ଏବ ॥ ୨୧ ॥
ଦେବଙ୍କର ବଚନ ବିଭୀଷେଣ ଶୁଣିଲାକ ଯହିଂ ।
ବିଭୂତି ପୋଛିଣ ଜାଣିଲାକ ତହିଂ ॥ ୨୨ ॥
ଯୂଥପତି କପିବଳେ ବିଭୂତି ପୋଛିଲେ ।
ଅସୁର ବାନର ବୋଲି ତେବେ ସେ ଜାଣିଲେ ॥ ୨୩ ॥
ରାବଣକଇ ସଂଗ୍ରାମେ ଲକ୍ଷ୍ମଣ ଜାଣିଲା ।
ହନୁମନ୍ତକଇ ଯେନ ସେ କୋପେଣ ଧାଇଂଲା ॥ ୨୪ ॥
ଲକ୍ଷ୍ମଣର ତେଜ ଦଶାନନ ଦେଖି ।
ପ୍ରାଣ ଯେନ ପଳାଇଲା ସଂଗ୍ରାମ ଉପେକ୍ଷି ॥ ୨୫ ॥
ଯେତେକ ଅସୁର ଯୁଦ୍ଧ କରୁଥିଲେ ।
ଯୂଥପତି ତାହାନ୍ତ ସମସ୍ତ ନାଶିଲେ ॥ ୨୬ ॥

---

୧୭. ତେଜେ—ଜେତେ । ୨୦. ବିଷାଦ—ବିଦୁଷେ (ଙ) ; ବିଭୀଷଣେ—ଲକ୍ଷ୍ମଣ (କ) (ଖ) । ୨୧. ପୋଛିବ—ପୋଛି ବେଗ ; ପାଇବଟି ଏବ—ନାଶ ଯାଉଅଛ ଆଗ (ଙ) । ୨୪. ଜାଣିଲା—ଦେଖିଲା (କ) । ୨୬. ଯୁଦ୍ଧ କରୁଥିଲେ—ଯୁଦ୍ଧେ ମରିଥିଲେ ।

ଶ୍ରୀରାମ ନ ଦେଖି ଲକ୍ଷ୍ମଣ ଝୁରଇ ।
ବିଭୀଷଣ କହଇ ଶୁଣିପି ମହାବୀରଇ ॥ ୨୭ ॥
ମହୀରାବଣ ନାମେ ସେ ଦଶାନନର ସୁତ ।
ମହା କପଟୀ ସେ ଅତି ପାପଚିତ୍ତ ॥ ୨୮ ॥
କପଟେ ବିଭୀଷଙ୍କର ରୂପ ଧଇଲା ।
ମାୟା ବିଭୂତି ସେ ସମସ୍ତଙ୍କୁ ଦେଲା ॥ ୨୯ ॥
ଏବେ ଶ୍ରୀରାମଙ୍କୁ ନେଇଗଲା ହରି ।
ପାତାଳ ବିବରେ ଥୋଇଛି ଗୁପତ କରି ॥ ୩୦ ॥
ଶୁଣିଣ ଲକ୍ଷ୍ମଣ ମନେ ମନେ ଭାଳଇ ।
କର ଯୋଡ଼ି ପୁଚ୍ଛଇ ଅଞ୍ଜନାର ଦୁଲାଳଇ ॥ ୩୧ ॥
ମୋତେ ଆଜ୍ଞା ଦିଅନ୍ତି ସୁମିତ୍ରାର ସୁତ ।
ଯେହ୍ନେ ଯାଇ ନେଇ ଆସଇ ରଘୁନାଥ ॥ ୩୨ ॥
ଲକ୍ଷ୍ମଣ କହଇ ବୀର ବେଗ ଯାଇ ।
ଅନୁକୂଳ ବନାଇ ଶ୍ରୀରାମଙ୍କଇ ନେଇ ବେଗେ ଆସଇ ॥ ୩୩ ॥
ଲକ୍ଷ୍ମଣେ ବଚନେ ହନୁ ବିବରେ ପଶିଲା ।
ଲୋହପାଦ ମାରି ଶ୍ରୀରାମ ସନ୍ନିଧିକୁ ଗଲା ॥ ୩୪ ॥
ହନୁମନ୍ତର ତେଜ ସେ ଦେଖିଲେକ ଯହୁଁ ।
ସମସ୍ତେ ଶ୍ରୀରାମର ରୂପ ଧଇଲେକ ତହୁଁ ॥ ୩୫ ॥
ଗ୍ୟାନବନ୍ତ ମଣିର ତେଜେ ହନୁମାନ ।
ଯାଇ ହୋଇଲା ଶ୍ରୀରାମର ସନ୍ନିଧାନ । ୩୬ ॥
ଶ୍ରୀରାମର ଶ୍ରୀମୁଖ ଦେଖିଲେ ସେ ଯେବେ ।
କପଟ କଥା ସେ କହିଲେକ ତେବେ ॥ ୩୭ ॥
ମହୀରାବଣକୁ ଯେମନ୍ତେ କଲେ ପ୍ରାଣ ନାଶ ।
ସେବେ ଅନ୍ତର ନାହିଁ କହନ୍ତି ଲବକୁଶ ॥ ୩୮ ॥
ମହୀରାବଣ ମାରି ଷଟ୍ଟିବର ସୁନ୍ଦର ।
ପାତାଳ ବିବରୁ ସେ ହୋଇଲେ ବାହାର ॥ ୩୯ ॥
ସୂଚୀମୁଖା ଅସୁର ଯେ ସଂଗ୍ରାମେଣ ଥିଲା ।
ମହୀରାବଣ ମଲା ବୋଲି ରାବଣକୁ କହିଲା ॥ ୪୦ ॥

---

୩୫, ଦେଖିଲେକ—ଦେଖିଲାକ (ଙ) ; ସମସ୍ତେ—ସମସ୍ତ (ଙ) ; ଧଇଲେକ ତହୁଁ—ଧଇଲାକ ଜହୁଁ (କ) । ୩୬. ଗ୍ୟାନବନ୍ତ ମଣିର ତେଜେ—ଗ୍ୟାନବନ୍ତ ମଣିର ତେଜ (କ) !

## ଜାମ୍ବୋମାଳି ଯୁଦ୍ଧ

ଶୁଣିଣ ରୋଦନ କଲେକ ଲଙ୍କସାଇଁ ।
ଜାମ୍ବୋମାଳିକି କହଇ ସନ୍ନିଧେଣ ବସାଇ ॥ ୧ ॥
ହେ ମାତୁଳ ଏ ମୋହର ନିଜ ଦେଶ ।
ଋକ୍ଷ ବାନରନ୍ତ ଏବେ କର ପ୍ରାଣ ନାଶ ॥ ୨ ॥
ରାବଣର ବଚନ ଶୁଣି ଜାମ୍ବୋମାଳି ବୀର ।
ସଂଗ୍ରାମେ ପଶି କରଇ ଦୁସହ ସମର ॥ ୩ ॥
ହନୁମନ୍ତକୁ ଧରି ମାଡ଼ି ବସିଲା ।
ସୁଗ୍ରୀବର ଜାମ୍ବୋମାଳିକି ସମୁଦ୍ରେ ପକାଇଲା ॥ ୪ ॥
ଲବଣ ଜଳେ ପଡ଼ନ୍ତେ ନ ଛନ୍ତିଲା ତାହାର କାୟେ ।
ପୁଣି ସମରେ ପଶି ଅନେକ ବାନର କଲ କ୍ଷୟେ ॥ ୫ ॥
ସୁଗ୍ରୀବର ଜାମ୍ବୋମାଳିକି ଲଙ୍ଗେ ବାନ୍ଧିଲା ।
ବଂଶଗିରି ବନକରି ପୋଟନ୍ତେ ତାହାକୁ ଗଲା ॥ ୬ ॥
ସୁଗ୍ରୀବର ନ ଦେଖି ଶ୍ରୀରାମ ବିସ୍ମୟେ ହୋଇଲେ ।
ହନୁମନ୍ତକଇ ସୁଗ୍ରୀବର ତହିଁକି ବରଗିଲେ ॥ ୭ ॥
ସୁଗ୍ରୀବର ଜାମ୍ବୋମାଳିକି ନୁଆଚଇ ମାରି ।
ସନ୍ନିଧେଣ ମିଳି ହନୁମନ୍ତ ପଗ୍ରର ॥ ୮ ॥
ତୋତେ ନ ଦେଖି ରାମ ବିଷାଦ ହୋଇଲେ ।
ତୋହର ତହିଁକି ମୋତେ ଲେଡ଼ି ବରଗିଲେ ॥ ୯ ॥
ସୁଗ୍ରୀବର କହ୍ନ କିସ ବୁଧି କରିବା ।
କେବଣମତେ ଅସୁରକଇ ମାରିବା ॥ ୧୦ ॥
ହନୁମନ୍ତ କହଇ ନ ମରଇ ଯେବେ ।
ପର୍ବତ ଲଦ୍ଧ ଏହାକଇ ପୋଢବାକ ତେବେ ॥ ୧୧ ॥
ପର୍ବତ ଲଦ୍ଧ ଜାମ୍ବୋମାଳିକି ପୋଢଲେ ।
ତହୁଁ ଯାଇ ଶ୍ରୀରାମର ଆଗରେ କହିଲେ ॥ ୧୨ ॥
ଶୁଣିଣ ଶ୍ରୀରାମ ହୋଇଲେ ହରଷ ।
ବିସ୍ତାର କହନ୍ତ କୁମର ଲବକୁଶ ॥ ୧୩ ॥
ଜାମ୍ବୋମାଳିର ଚରିତ ଯହୁଁ ରାବଣ ଶୁଣିଲା ।
ଦୁଇ ପୁତ୍ରନ୍ତ ତାହାର ହକାରିଣ କହିଲା ॥ ୧୪ ॥

---

୫. ନ ଛନ୍ତିଲା—ଛନ୍ତିଲା (କ) । ୮-୯. ଏ ଦୁଇ ପଦ ଖ ପୋଥିରେ ନାହିଁ ।
୧୦. କହ୍ନ—କଇ ।

ପିତାର ସନ୍ନିଧିକୁ ବେଗେ ତୁମ୍ଭେ ଯାଅ ।
କାହିଂ ଅଛୁ ମହିଳା ମୋହର ବେଗେଣ ଲୋଡ଼ହ ॥ ୧୫ ॥
ରାବଣର ଆଗ୍ୟାଂ ପାଇ ମୁଖା ଦୁମୁଖା ବେଗେ ଗଲେ ।
ବାଂଝଗିରି ବନେ ପଶି ସାର୍ଦ୍ଧ ଡ଼ାକ ଦେଲେ ॥ ୧୬ ॥

ଯେବଣ ଠାବେ ଜାମ୍ବୋମାଳୀକି ପୋତିଲ ସୁଗ୍ରୀବର ।
ତହିଂର ଉପରେ ଉଠି ଡାକ ଦିଅନ୍ତି କୁମର ॥ ୧୭ ॥

ମହାଘୋର ଯହୁଂ ଅସୁର ପାଇଲ ।
ଅଙ୍ଗ ମୋଡ଼ି ଦଇତ୍ୟ ରନ୍ଧ୍ରଏକ ଦେଲ ॥ ୧୮ ॥
ପିତାର ବଚନ ଯହୁଂ ପୁତ୍ରେ ଶୁଣିଲେ ।
ପର୍ବତମାନ ସବୁ କାଢ଼ି ପକାଇଲେ ॥ ୧୯ ॥

ତହୁଂ ଜାମ୍ବୋମାଳୀ ବାହାର ହୋଇଲ ।
ଦୁଇ ପୁତ୍ର ଘେନି ରାମ ତହିଂକି ଅଇଲ ॥ ୨୦ ॥

ଦୁଇ ପୁତ୍ର ତାହାର ସନ୍ନିଧେଣ ଅଛନ୍ତି ।
ବାନର ବଳେ ପଶି ଅନେକ ସୈନ୍ୟ ମାରନ୍ତି ॥ ୨୧ ॥

ରୁକ୍ଷ ମର୍କଟ ବିକଳ ଯହୁଂ ରାମଚନ୍ଦ୍ର ଶୁଣିଲେ ।
କୋଦଣ୍ଡ ଆମନ୍ତ୍ରି ନାରାଚ ସନ୍ଧିଲେ ॥ ୨୨ ॥

ଦେଖିଣ ବିଷ୍ୱାକ୍ଷେଣ ମହାଭୟେ କଲି ।
ପାଦ୍ମରେ ଲୋଟିଣ କରଯୋଡ଼ି କହିଲ ॥ ୨୩ ॥
ହେ ଦେବ ଜାମ୍ବୋମାଳୀ ମୋହର ଶଶୁରଇ ।
ତାହାର ମରନ୍ତେ ମୁହିଂ ସେ ମରଇ ॥ ୨୪ ॥

ଜାମ୍ବୋମାଳୀକି ବିନାଶିବୁ ଯେବେ ।
ମୋହର ଜୀବନ ରହିଇ କି ତେବେ ॥ ୨୫ ॥
ଶୁଣିଣ କ୍ଷତ୍ରିବର ବିରସ ହୋଇଲେ ।
ଜାମ୍ବୋମାଳୀକି ଅନେକ ପ୍ରବୋଧି କହିଲେ ॥ ୨୬ ॥
ଶ୍ରୀରାମ ବଚନେ ଜାମ୍ବୋମାଳୀ ପ୍ରବୋଧ ହୋଇଲା ।
ଦୁଇ ପୁତ୍ର ଘେନି ସଂଗ୍ରାମେ ନ ପଶିଲ ॥ ୨୭ ॥
ଜାମ୍ବୋମାଳୀର ବିଶ୍ୱକ୍ଷେଣ ଯେବଣ ସିଂକାନ୍ତ ।
ବିସ୍ତାରି କହନ୍ତି ତାହା ସୀତସ୍ବାର ଦେବି ସୁତ ॥ ୨୮ ॥

---

୧୫. ବେଗେଣ ଲୋଡ଼ହ—ବେଗେ ଯାଇ କହ(ଖ) । ୧୬. ମୁଖା—ସୁଖା(କ) । ୧୮. ଅସୁର—ଈଶ୍ୱର(କ) । ୨୨, ଶୁଣିଲେ—ଦେଖିଲେ (ଖ) । ୨୬. ବିରସ—ହରଷ(ଖ) ।

## ରାବଣ ବଧ

ଏସନେକ କଥା ଶୁଣିଣ ଲଙ୍କପତ୍ତି ।
ପଉଲସ୍ତି ଙ୍କ ଆଶ୍ରମକୁ ଗଲାକ ତତ୍ତ୍ୱ ॥ ୧ ॥
ପ୍ରଣମ୍ୟ ହୋଇ କହଇ ବସବାର ସୁତ ।
ଶୁଣ ମୁନି ସଂଗ୍ରାମେ ମଲେ ମୋହର ସକଳ ପୁତ୍ରଭ୍ରାତ ॥ ୨ ॥
ଏକା ମଉଳା ମୋତେ ସାହା ହୋଇଥିଲା ।
ସେହି ଏବେ ରାମର ବୋଲେ ସମର ଗ୍ରୁଡ଼ିଲା ॥ ୩ ॥
ମୁହିଂ ଏବେ କେବଣ ଉପାୟ କରିବି ।
ରାମଲକ୍ଷ୍ମଣ ବାନରନ୍ତ କେମନ୍ତେ ମାରିବି ॥ ୪ ॥
ତୋହର ମତେ ମୋହର ଶିଘ୍ର ସମ୍ପତ୍ତି ।
ବଶ୍ୟରଣ ଆଗ୍ୟାଂ ମତେ ଦେଥି ମହାପତି ॥ ୫ ॥
ପଉଲସ୍ତି କହନ୍ତି ଶୁଣରେ ଦଶଗିରି ।
ଅନନ୍ତ କୋଟି ବ୍ରହ୍ମାଣ୍ଡେ ରାମଙ୍କ ନାହିଂ ସରି ॥ ୬ ॥
ବାନରଙ୍କ ଭୁଲେ ନ କର ତୁହି ଦ୍ୱନ୍ଦ ।
ସମସ୍ତ ମର୍କଟେ ଦେବଗଣବୃନ୍ଦ ॥ ୭ ॥
ତୁହି ମୋହର ବଚନ ପ୍ରତିପାଳୁ ଯେବେ ।
ଲଙ୍କପୁର ରାଜ୍ୟ ଏବେ ଭୋଗ ପାଇବୁଟି ତେବେ ॥ ୮ ॥
ଶିଘ୍ର ସମ୍ପତ୍ତି ତୋହର ନାଶ ନୋହିବ ।
କଦଳୀ ବୃକ୍ଷ ଜାଣି ପୁତ୍ରନାତି ଉପୁଜିବ ॥ ୯ ॥
ସୀତାକଇ ସମର୍ପି ନେଇ ଶ୍ରୀରାମର ପାଶ ।
ତେବେ ସେ କ୍ଷତ୍ରିବର ଗ୍ରୁଡ଼ିବ ତୋତେ ରୋଷ ॥ ୧୦ ॥
ତୁହି ଅବା ସଂକୁଚ କରୁ ଲଙ୍କପତି ।
ମୁହିଂ ତୋତେ ରାମର ଭୁଲେ କରାଇବି ପ୍ରୀତି ॥ ୧୧ ॥
ସୀତାକଇ ଘେନ ରାମର ତହିଂକ ଗୃହ ଯିବା ।
ମନେଣ ଆନ କିଛି ବୁଦ୍ଧି ନ ଭାଳିବା ॥ ୧୨ ॥
ଶୁଣିଣ କୋପେ କହଇ ଦଶଶିର ।
ଏହା ସେ ପୁଚ୍ଛି ଅଇଲି ମୁନିବର ॥ ୧୩ ॥
ରାମର ତହିଂ ମୁହିଂ ଶରଣ ପଶଇ ।
କ୍ଷତ୍ରିପଣ ମୋହର ହୋଇବ ବିନାଶଇ ॥ ୧୪ ॥

୫. ମତେ—ମନ୍ତ୍ରେ (ଖ) । ୮. ଏହାର ଶେଷ ପାଦର ପାଠ ଖ ପୋଥିରେ :—
ଏ ତୋହର ସମ୍ପଦ ନାଶ ନ ଯିବ ତେବେ । ୯, ଏ ପଦଟି ଖ ପୋଥିରେ
ନାହିଁ । ୧୪. ତହିଂ ମୁବ୍ରିଂ—ମୁହିଂ ତହିଂ ।

ଏତେ କଥା ପୌଲସ୍ତିଙ୍କର ଆଗରେ କହିଲା ।
ଲବକୁମର ସେ କଥା ଗୀତେଣ ଗାଇଲା ॥ ୧୫ ॥
ପୌଲସ୍ତିଙ୍କର ଆଗେ ଯିସ କହିଲେ ଦଣଗିର ।
କୁଶକୁମର କହଇ ତାହା ଅର୍ଥ କରି ॥ ୧୬ ॥
ଯହୁଂ ଆସି ଅନ୍ତଃପୁରେ ପଶଇ ଦଣ୍ଡଗିରଇ ।
ମାତା ମାଣ୍ଡଂସୀନ୍ତ ହକାରି ପାଶଇ ॥ ୧୭ ॥
ମାତାକଇ କହଇ ଦନୁଜ ନୃପତି ।
ଧୂମ୍ରର ଖଇ ଗୋ କଲେ ଅଗାଧ ॥ ୧୮ ॥
ନଉକେଶୀ କହଇ ଶୁଣସିରେ ସୁତ ।
ରାମର ଆଗେ ସମର୍ପିବା ଜନେକର ଦୋହିତ ॥ ୧୯ ॥
କାହାର କଥା ଶ୍ରବଣ ନ ଶୁଣିଲା ।
ମୁକ୍ତ କରିବାକୁ ରଣଯାଗ କଲା ॥ ୨୦ ॥
ନିକୁମ୍ଭିଲ ବଟତଳେ ଯାଗ କରନ୍ତେ ।
ମୁଗଳ ମହର୍ଷି କୁକୁଟ ବଳି ଦିଅନ୍ତେ ॥ ୨୧ ॥
ଧୂମର ତେଜେ ଯେ ମେଘ ଗରଜିଲା ।
ଶ୍ରୀରାମର ଆଟରେ ଅଗ୍ନି ପଥର ବରଷିଲା ॥ ୨୨ ॥
ତହୁଂ ରାମଚନ୍ଦ୍ର ଯୂଥପତିଙ୍କ ପେଷିଲେ ।
ଜଗ୍ନ ନାଶି ବ୍ରାହ୍ମଣନ୍ତ ଅଣାଇଲେ ॥ ୨୩ ॥
ନିକୁମ୍ଭିଲ ବଟ ହନୁମନ୍ତ ଉପାଡ଼ିଲା ।
ଶ୍ରୀରାମର ସନ୍ନିଧେ ସେ ବଟ ନେଇ କଲା ॥ ୨୪ ॥
ନିକୁମ୍ଭିଲ ବଟ ରାମକୁ କହିଲେ ଯେବଣ ବଚନ ।
ଗୀତେଣ ଗାଇଲେ ତାହା ସୀତସ୍ଥାର ବେଣ୍ଣ ସୂନ ॥ ୨୫ ॥
ବ୍ରହ୍ମା ଦୂତ ପେଷିଲ ଗନ୍ଧର୍ବନ୍ତ ରାଇ ।
ମୋହର କଥା ରାମର ଆଗେ କହସି ବେଗ ଯାଇ ॥ ୨୬ ॥
ସେ ବଟ ରାମ ବିନାଶ ନ କରୁ ।
ଗୋମନ୍ତ ପର୍ବତେ ହନୁମନ୍ତ ଥୋଇ ଆସୁ ସେ ତରୁ ॥ ୨୭ ॥
ବ୍ରହ୍ମାର ବଚନେ ଗନ୍ଧର୍ବ ଅଇଲା ।
ଶ୍ରୀରାମର ଆଗେ ସେ ସକଳ କଥା କହିଲା ॥ ୨୮ ॥
ଗୋମନ୍ତ ପର୍ବତେ ଏ ତରୁବର ଥିବ ।
ଦ୍ୱାପର ଯୁଗକୁ ତୋର କଥା ରହିଥିବ ॥ ୨୯ ॥

---

୧୬. ପଦଟି ଖ ପୋଥିରେ ନାହିଁ । ୨୨. ଧୂମର ତେଜେ—ଦୁର୍ଦ୍ଦମତ୍ରିତେଜେ (କ), ଧୂମରତେଜଘାତେ (ଖ) ; ଅଗ୍ନି ପଥର—ଶିଳପାଣି (ଖ) । ୨୩. ତହୁଂ—ରଘୁ (କ) ; ଜଗ୍ନ—ଜଗ୍ନି (କ) ; ଅଣାଇଲେ—ଧରନେଲେ (ଖ) ।

ଶୁଣିଣ ଶ୍ରୀରାମ ହରଷ ହୋଇଲେ ।
ହନୁମନ୍ତ ମୁଖ ଗୃହ୍ନଂ ଷଡ଼ିବର କହିଲେ ॥ ୩୦ ॥
ହାକୁମ୍ଭିଲ ବଟ ଘେନଣ ରୁ ଯିବୁ ।
ଗୋମନ୍ତ ପର୍ବତେ ତ୍ରାଣ ଆସିବୁ ॥ ୩୧ ॥
ଶ୍ରୀରାମର ବାକ୍ୟ ଉଚ୍ଚରିଲ ଯହୁଂ ।
ବଟ ଘେନ ମାରୁତ ବାହମି ଗଲା ତହୁଂ ॥ ୩୨ ॥
ପୂର୍ବେ ବର ପାଇଅଛୁ ହନୁମାନ ।
ମନେ ଯାହା ଧରଇ ତହିଂକି କରଇ ଗବନ ॥ ୩୩ ॥
ଗୋମନ୍ତ ପର୍ବତ ତଳେ ହାମପକେ ମିଳିଲ ।
ହାକୁମ୍ଭିଲ ବଟ ଥୋଇ ରାମର ସନଧେ ଭୂରତେ ମିଳିଲ ॥ ୩୪ ॥
ବଟ ଯାନ୍ତେ ଦେଖିଲ ପୌଲସ୍ତିର ନାଥ ।
ଯୁଦ୍ଧକୁ ସଜ ହୋଇଲ ଦନୁଜ ନୃପତ ॥ ୩୫ ॥
ପଞ୍ଚାଶ କୋଟି ମର୍କଟଯୋଦ୍ଧା ହକରାଇ ।
ପୁଷ୍ପ ଚନ୍ଦନ ଦେଇ କହଇ ଦଶଶିରଇ ॥ ୩୬ ॥
ମୋହର ସମାନେ ଭାଗ୍ୟ ତୁମ୍ଭେ ଭୁଞ୍ଜ ।
ପାରତ ମୋହର ବଇର ତେଜ ଗଞ୍ଜ ॥ ୩୭ ॥
ନଉଚେତ ସଂଗ୍ରାମ ଭୂମିରେ ପଶି ମରିବା ।
ଦୋଷ ବନାଶି ସରଗ ସର୍ବରେ ବସିବା ॥ ୩୮ ॥
ଶୁଣିଣ ଯୋଦ୍ଧାଏ ହରଷ ହୋଇଲେ ।
ଯେ ଯାହାର ଯାନ ରଥ ସଜ କଲେ ॥ ୩୯ ॥
ପୁଷ୍ପକ ରଥ ଚଢ଼ଇ ଦଶମାଥ ।
ସଙ୍ଗେଣ ଅଛନ୍ତି କୁମ୍ଭକର୍ଣ୍ଣର ବେନସୁତ ॥ ୪୦ ॥
ପଞ୍ଚାଶ କୋଟି ଯୋଦ୍ଧା ରାବଣର ଆଗେ ଯୁଦ୍ଧ କଲେ ।
ବାନରଙ୍କ ହାଥେ ସେ ସମସ୍ତ ହେ ମଲେ ॥ ୪୧ ॥
ରାମ ରାବଣର ସମର ମହାଘୋର ।
ବାଣର ଆଦ୍ୟାନେ ନ ଦିଶେ ଦନଙ୍କର ॥ ୪୨ ॥
ଗୁଣ ଟଙ୍କାରେ ପୃଥିବୀ କମ୍ପଇ ।
ସମର କରୁଛନ୍ତି ଷଡ଼ିବର ସୁନ୍ଦରଇ ॥ ୪୩ ॥
ଘନ ଘନ ଷଡ଼ିବର ଧନୁ ଆମନ୍ଥିଲ ।
ଶ୍ରୀରାମର ତେଜ ଯହୁଂ ରାବଣ ଦେଖିଲ ॥ ୪୪ ॥

---

୩୦. ଷଡ଼ିବର—ଷଡ଼୍ଭୀଶ୍ୱର । ୩୮. ସଂଗ୍ରାମ—ସଂଗ୍ରାମେ ; ସରଗ—ସରଗ୍ଗ(କ)
୩୯. ଯାନ ରଥ—ରଥଗଜ ଅଶ୍ୱନ୍ତ (ଖ) । ୪୨. ବାଣର ଆଦ୍ୟାନେ—
ରାବଣ ଛନ୍ଦଗ୍ରସ୍ଥାରେ (ଖ)। ୪୩. ଦ୍ୱିତୀୟ ପାଦଟି ଖ ପୋଥିରେ ନାହିଁ ।
୪୪. ଧନୁ ଆମନ୍ଥିଲ—ଗୁଣ ଆମନ୍ଥଇ (ଖ) ।

ସ୍ୱର୍ଗେ ବିମାନ ଯେନ ଶୂନ୍ୟେଣ ସମ୍ଭାଇଲେ ।
ଯେତେକ ସଇନ ସଂଗ୍ରାମରେ ଥିଲେ ॥ ୪୫ ॥
ରଘୁ ନନ୍ଦନ ନାରାୟଣ ଯେନ ମାଇଲେ ।
ସୁର ସିଦ୍ଧ ଗଣେ ସହୁଂ ରାବଣର ରଥ ଶୂନ୍ୟେ ଦେଖିଲେ ॥ ୪୬ ॥
ଦେବଙ୍କର ରଥ ଦେଇ ମାତଳୀକି କହିଲେ ।
ସୁରସିଦ୍ଧ ଦେବଗଣେ ଜୟ ଜୟ କଲେ ॥ ୪୭ ॥
ରାମ ଲକ୍ଷ୍ମଣଙ୍କୁ ରହୁବର ଦେଖି ।
ଶ୍ରୀରାମର ରଥେ ସାରଥି ହୋଇ ଆସି ॥ ୪୮ ॥
ଇନ୍ଦ୍ରର ବଚନେ ମାତଳି ରଥ ଯେନ ଗଲା ।
ରାମ ଲକ୍ଷ୍ମଣକଇ ରଥ ନେଇ ଦେଲା ॥ ୪୯ ॥
ନନ୍ଦୀଘୋଷ ରଥରେ ବିଜୟେ କଲେ କ୍ଷତ୍ରିବର ସୁନ୍ଦର ।
ମଙ୍ଗଳ ଯାନ ଆରୋହିଲା ସୁମିତ୍ରା କୁମର ॥ ୫୦ ॥
କୁମ୍ଭ ନିକୁମ୍ଭ ଯୁଦ୍ଧ କରନ୍ତେ ।
ମାତଳୀକି ପୁଚ୍ଛିଲେ ସୀତାସ୍ୱାମୀ କାନ୍ତେ ॥ ୫୧ ॥
ଏ ଦୁଇ ଅସୁରଙ୍କର କିସ କିସ ନାମ ।
ମୁହିଂ ନ ଜାଣଇ ଏହାଙ୍କରେ କିସ ସଂଗ୍ରାମ ॥ ୫୨ ॥
ବିଭୀଷଣକଇ ଏ ରଥେ ବସାଇବ ।
ସେହି ସେ ମୋହର ପ୍ରାଣର ସଦାଭିବ ॥ ୫୩ ॥
ମାତଳି କହଇ ଏ ଦେବତାଙ୍କର ରଥ ।
ଅସୁରକୁଳେ ଜନ୍ମି କେସନେକ ବସିବ ଏଥ ॥ ୫୪ ॥
ଶ୍ରୀରାମ କହନ୍ତି ଶୁଣ ହୋ ମାତଳି ।
ମୋହର ଆତ୍ମାରୁ ସେ ହୋଇଲାନ ଅଗୁଳି ॥ ୫୫ ॥
ଯେତେବେଳହୁଂ ମୋହରେ ପଶିଲା ଶରଣ ।
କଂଠେ ବସାଇ ବିଭୀଷଣକୁ କଲି ଆଲିଙ୍ଗନ ॥ ୫୬ ॥
ରାବଣକୁ ମାରି ବିଭୀଷଣକୁ ରାଜା କରିବ ।
ଯାବତ କାଳକୁ କଥା ରହାଇବ ॥ ୫୭ ॥

---

୪୫. ସମ୍ଭାଇଲେ—ସମ୍ଭାଇଲା (ଖ) ; ସଇନ—ସନ୍ୟ (କ) । ୪୬. ନାରାୟଣ ଯେନ— ନାରାୟେ ତାହାନ୍ତ (ଖ) ; ସୁରସିଦ୍ଧ—ସିଦ୍ଧ (ଖ) ; ସେ ରାବଣର ରଥ—ସହୁଂ ରାବଣର ରଥ ଶୂନ୍ୟେ । ୪୭. ଦ୍ୱିତୀୟ ପାଦଟି ଖ ପୋଥିରେ ନାହିଁ । ୫୧. ମାତଳୀକି—ମାତଳି (କ) । ୫୨. ଏହାଙ୍କରେ—ଏହାଙ୍କର । ୫୪. ଦ୍ୱିତୀୟ ପାଦର ପାଠ କ ପୋଥିରେ : ଦେବଙ୍କର ଉଦନ୍ତ କହିଲା ମାତଳି ସିଦ୍ଧାନ୍ତ ।

ଶୁଣିଣ ମାତଳି ହରଷ ହୋଇଲା ।
ବିଭୀଷଣଙ୍କର ପାଖେ ବସାଇଲା ॥ ୫୮ ॥
ଶ୍ରୀରାମ ପଚାରନ୍ତି ଶୁଣ ବିଭୀଷଣ ବୀର ।
ଏ ଦୁଇ ଦଇତ୍ୟ ଯେ କରନ୍ତି ସମର ॥ ୫୯ ॥
ଏ ଦୁହିଙ୍କର ନାମ କସ କସ ।
କରଯୋଡ଼ି କହଇ ବିଭୀଷଣ ଶ୍ରୀରାମର ପାଶ ॥ ୬୦ ॥
ହେ ଦେବ ଏ ଦୁଇ ବୀର କୁମ୍ଭକର୍ଣ୍ଣର ସୁତ ।
କୁମ୍ଭ ନିକୁମ୍ଭ ଏହାଙ୍କର ନାମ ବିଖ୍ୟାତ ॥ ୬୧ ॥
ପିତାର ସମାନେ ସମରେ ଶକତ ।
ହେଳେ ଯୁଦ୍ଧ ଏହାଙ୍କୁ ନ କର ରଘୁନାଥ ॥ ୬୨ ॥
ବିଭୀଷଣର ବଚନ ଶୁଣି ଷଡ଼ି ବିର ସୁନ୍ଦର ।
ବାହିଲ ଶର ପେଷି କର ଦୁହିଙ୍କର କାଟିଲେକ ଶିର ॥ ୬୩ ॥
କୁମ୍ଭ ନିକୁମ୍ଭର ମରଣ ଦେଖିଲା ଦଶମାଥ ।
ଶ୍ରୀରାମର ସନ୍ମୁଖେ ଆଣି କଲା ତତକ୍ଷଣେ ରଥ ॥ ୬୪ ॥
ରାମ ରାବଣ ଏକ ମୁଖ ହୋଇଲେ ।
କୁଳ ଉଦଘାଟି ମର୍ମକଥା କହିଲେ ॥ ୬୫ ॥
ତହିଁ ବାଣେ ଘୋର ସମର କରନ୍ତି ।
ଓହୋବଲ ସଂଗ୍ରାମ ଯୁଦ୍ଧ ଦେଖନ୍ତି ॥ ୬୬ ॥
ନବ ବାର ରାବଣର ଛେଦିଲେ ରାମ ଶିର ।
କନ୍ଧରୁ ଆନ ମୁଣ୍ଡ ହୋଇଲା ବାହାର ॥ ୬୭ ॥
ବିଷାଦ ହୋଇ ରାମ ଧନୁଶର ଛାଡ଼ନ୍ତେ ।
ବିଭୀଷଣ କହଇ ଶ୍ରୀରାମ ଅଗ୍ରତେ ॥ ୬୮ ॥
ହେ ଦେବ ହୃଦରେ ତାର ଅକ୍ଷୟେ କୁଣ୍ଡ ଅଛି ।
ହୃଦୟକୁ ବାଣ ବିନ୍ଧ ରଘୁବଚ୍ଛ ॥ ୬୯ ॥
ଦଶ ମୁଣ୍ଡକୁ ବିନ୍ଧିବ ଦଶ ବାଣ ।
ତେବେ ସେ ମରଇ ନିଶାଚର ରାବଣ ॥ ୭୦ ॥
ବିଭୀଷଣର ବଚନ ଯହୁଁ ଶ୍ରୀରାମଚନ୍ଦ୍ର ଶୁଣିଲେ ।
ଏଗାର ନାରାଚ ଧନୁଗୁଣରେ ବସାଇଲେ ।
ବ୍ରହ୍ମଶର ଯାଇ ହୃଦରେ ଫୁଟିଲା ।
ଦଶ ନାରାଚ ଦଶମୁଣ୍ଡ ଛେଦିଲା ॥ ୭୧ ॥

---

୬୧. ବିଖ୍ୟାତ—ବିକ୍ଷାତ । ୬୨. ସମାନେ—ସମାନ୍ୟେ(କ) । ୬୩. ଶରପେଷି—ସନ୍ଧି (କ) । ୬୬. ସମର—ସନ୍ଧାନ (କ) । ୬୯. ଅକ୍ଷୟେ—ଅମୃତ (ଖ) ।
୭୧. ଯାଇ—ଯାର ।

ଦେଖି ଦେବଗଣେ ଜୟେ ଜୟେ କଲେ ।
ସ୍ୱର୍ଗ ଅପଛରୀ ହୁଳହୁଳି ଦେଲେ ॥ ୭୩ ॥
ଶ୍ରୀରାମର ଶିରେ କୁସୁମ ବୃଷ୍ଟି କରନ୍ତି ।
ଦଣ୍ଡ ବୁଲାଇ ନାଚଇ ନାରଦ ବ୍ରହ୍ମସୁତ ॥ ୭୪ ॥

ବ୍ରହ୍ମା ପୁରନ୍ଦର ଦଶ ଦିଗପାଳେ ।
ସିଦ୍ଧ ସାଧ୍ୟ ଆନନ୍ଦ ସକଳେ ॥ ୭୫ ॥

ଏଥୁ ଅନନ୍ତରେ ଶୁଣ ମୁଧିଷ୍ଠି ରାଜନ ।
ରାମର ଆଗେ ଗୀତ ଗାଅନ୍ତି ସୀତାଙ୍କର ବେନି ନନ୍ଦନ ॥ ୭୬॥
ରାବଣର ଶିର ଛିଡ଼ି ରଥରେ ଯହୁଁ ପଡ଼ିଲା ।
ସେ ହି ସାକ୍ଷାତ ଅମରପୁରକୁ ଗଲା ॥ ୭୭ ॥
ଅପଛରୀ ନୃତ୍ୟ କରନ୍ତି ତାହାର ଆଗେ ।
ତାଳ ମୃଦଙ୍ଗ ବିବିଧ ବାଦ୍ୟ ବାଜଇ ସୁବାଗେ ॥ ୭୮ ॥
ଗନ୍ଧର୍ବମାନେ ଘେନି ଦେବରାଜା ଅଇଲା ।
ରାବଣକୁ ନେଇ ସୁରସଭାରେ ବସାଇଲା ॥ ୭୯ ॥
ରାବଣ ଦଶରଥ ଯେବଣ ବଚନ ।
ବିସ୍ତାରି କହନ୍ତି ସୀତାଙ୍କର ବେନି ନନ୍ଦନ ॥ ୮୦ ॥
ଶୁଣିଣ ସଭାଲୋକେ ହୃଦୟେ ବିଚାରି ।
ଧନ୍ୟ ଧନ୍ୟ କରନ୍ତି ବଶିଷ୍ଠ ମହର୍ଷି ॥ ୮୧ ॥
ଶ୍ରୀରାମ କହନ୍ତି ଶୁଣସି ବ୍ରହ୍ମସୁତ ।
ଯେମନେକେ ରାବଣର ଛେଦିଲି ଦଶମାଥ ॥ ୮୨ ॥
ଯେତେ କହିଲେ ଏ ଦୁଇଭାଇ ।
ଏ ପଦ କହିବା ଭଲ ଏଥେ ଅଭ୍ୟାନ୍ତର ନାହିଁ ॥ ୮୩ ॥
ଯେବଣ ପୁରୁଷ ହସ୍ତେ ଏହାଙ୍କୁ ଶାସ୍ତ୍ର ପଢ଼ାଇଲା ।
କି ଅବା ସେ ମହାତ୍ମା ଯୁଦ୍ଧର ବେଳେ ଥିଲା ॥ ୮୪ ॥
କି ଅବା ଭବିଷ୍ୟଗ୍ୟାତା ସେ ଯତି ।
କି ଅବା ବ୍ରହ୍ମା କି ପ୍ରତକ୍ଷେ ସରସ୍ୱତୀ ॥ ୮୫ ॥

ବଶିଷ୍ଠେ କହନ୍ତି ଗୁରୁ ସବୁନ୍ତିକି କହନ୍ତି ଶାସ୍ତ୍ର ।
ପୂର୍ବକୃତ ନ ଥିଲେ ବିଦ୍ୟା ନୁହୋଇ ପ୍ରାପତ ॥ ୮୬ ॥

---

୭୪. ନାରଦ ବ୍ରହ୍ମସୁତ—ବ୍ରହ୍ମଜାତ (କ) । ୭୭. ସାକ୍ଷାତ—ଶୁଣ୍ଠୀରେ (କ) ।
୮୦. ରାବଣ—ରାମ । ୮୨. ଛେଦିଲି—ଛେଦିଲ । ୮୩. ଅଭ୍ୟାନ୍ତର ନାହିଁ—
ନାହିଁ (କ) । ୮୪. ପୁରୁଷ ହସ୍ତେ—ପୁରୁଷ (ଖ) । ୮୬. ବିଦ୍ୟା—ବିଦା ;
ଦ୍ୱିତୀୟ ପାଦଟି ଖ ପୋଥିରେ ନାହିଁ ।

ଲଇ ଉତପନେ ଯେ ମାହେନ୍ଦ୍ର ବେଳେ ହୁଅନ୍ତି ଜାତ ।
ସେ ସେ ବାକ୍ୟ ବଖାଣ କରନ୍ତି ବହୁତ ॥ ୮୭ ॥
ମହତ କୁଳେ ଏ ଦୁଇଭାଇ ଉତପତ୍ତ ।
ଶୁଣନ୍ତି ରଘୁନାଥ କଉଶୁଲ୍ୟା ସମ୍ଭତ ॥ ୮୮ ॥
ବାକ୍ୟ ସମାପତ ହୋଇଲେ ଏହାଙ୍କୁ ପୁଚ୍ଛିବା ।
କେ ପିତା କେ ମାତା ସ୍ୱରୂପ ବୁଝିବା ॥ ୮୯ ॥
ଶୁଣିଣ ଶ୍ରୀରାମ ହରଷ ହୋଇଲେ ।
ଦୁଇ କୁମରନ୍ତ କୋଳ କରି ଶିରେ ଚୁମ୍ବନ ଦେଲେ ॥୯୦ ॥

## ସୀତାଙ୍କ ଅଗ୍ନିପରୀକ୍ଷା

ବଶିଷ୍ଠେ କହନ୍ତି ଶୁଣ ଦୁଇଭାଇ ।
ରାବଣେଶ୍ୱର ରାଜା ଯେବେ ପ୍ରାଣନାଶ ହୋଇ ॥ ୧ ॥
ତହୁଂ କସ କଲେ ଦଶରଥର ସୁତ ।
କହସି ବନ୍ତାର ଶୁଣନ୍ତୁ ସମସ୍ତ ॥ ୨ ॥
ଲବକୁମର କହଇ ରାବଣ ସହୁଂ ମଲା ।
ଦେଖିଣ ବିଭୀଷେଣ ଅନେକ ରୋଦନ କଲା ॥ ୩ ॥
କପାଇଂ ଭ୍ରାଥ ସୀତସ୍ତାକଇ ହରିଲୁ ।
କଲପ ବରଷ ସରିଲା ପୁଥନାଥ ମରାଇଲୁ ॥ ୪ ॥
ବିଭୀଷେଣର ବଚନ ସହୁଂ ରାମଚନ୍ଦ୍ର ଶୁଣିଲେ ।
ଶରୀର ଆଶ୍ୱାସି କୋଳରେ ବସାଇଲେ ॥ ୫ ॥
ଗ୍ଲୁଡ଼ ଗ୍ଲୁଡ଼ ଶୋକ ବାବୁ ନ କର ରୋଦନ ।
ତୋହର କାନ୍ଦନ୍ତେ କ୍ରୋଧ ବସଇ ମୋହର ମନ ॥ ୬ ॥
ଶ୍ରୀରାମର ବଚନ ସହୁଂ ବିଭୀଷେଣ ଶୁଣିଲା ।
କୋଳୁ ଓହ୍ଲାଇ ଗଡ଼ଘାଲି ସୁତିଲା ॥ ୭ ॥
ଶ୍ରୀକରେ ଶ୍ରୀରାମ ବିଭୀଷେଣଙ୍କୁ ତୋଳିଲେ ।
ସୁଗ୍ରୀବ ହକାରି ଶ୍ରୀରାମ ଆଗ୍ୟାଂ ଦେଲେ ॥ ୮ ॥
ଯେତେକ ଅସୁର ପଳାଇ ଆଛନ୍ତି ।
ତାହାଙ୍କୁ ସମ୍ଭାଳଣ କର ମୈନ ନ ଦଅ ଶାନ୍ତି ॥ ୯ ॥

---

୮୭. ଖ ପୋଥିର ପାଠ : ମହତକୁଳେ ଜାତ ମାହେନ୍ଦ୍ର ବେଳେ ଜାତ ॥ ସେ ସେ କାବ୍ୟ ବଖାଣ କରନ୍ତି । ୮୮. ଦ୍ୱିତୀୟ ପାଦଟି ଖ ପୋଥିରେ ନାହିଁ । ୮୯. ବାକ୍ୟ—କାବ୍ୟ (ଖ) । ୩. ରୋଦନ—କ୍ରୋଧ (ଖ) । ୫. ଶରୀର—ଶିର (ଖ) । ୯. ଦଅ ଶାନ୍ତି—କର ପ୍ରାଣଶାନ୍ତି (କ) ।

ତିଥି ଆତ୍ମଙ୍କୁ କରିବେ ପୁଣି କଷ ।
ଯେ ମୋହର ବଇରି ତାହା ତ କଲି ପ୍ରାଣନାଶ ॥ ୧୦ ॥
ଶ୍ରୀରାମର ବଚନ ଶୁଣି କପି ନୃପତି ।
ଶୁକ ସାରଙ୍କୁ ହକାରି ଆଣଇ ରାମ କତି ॥ ୧୧ ॥
ଯେତେକ ଦନୁଜ ପଳାଇଣ ଥିଲେ ।
ସମସ୍ତେ ବିଭୀଷଣର କଟକେ ଆଇଲେ ॥ ୧୨ ॥
ଶ୍ରୀରାମ କହନ୍ତି ବିଭୀଷଣର ମୁଖ ଚାହିଁ ।
ରାବଣକୁ ଦହନ କର ସମସ୍ଥାନେ ନେଇ ॥ ୧୩ ॥
ଷଣ୍ଠି ବର ସୁନ୍ଦର ବଚନ ପ୍ରମାଣେ ।
ରାବଣର ଶରୀର ଦହନ କରନ୍ତି ତତକ୍ଷଣେ ॥ ୧୪ ॥
ତଦଅନ୍ତରେ ସୀତାଙ୍କର ପତି ।
ବିଭୀଷଣଙ୍କୁ ଲଙ୍କାରେ ଅଭିଷେକ କରନ୍ତି ॥ ୧୫ ॥
ମନ୍ଦୋଦରୀଙ୍କ ପାଟମହାଦେଈ କଲେ ।
କନକଦଣ୍ଡ ଛତ୍ର ଶୁକସାରଣ ଧରିଲେ ॥ ୧୬ ॥
ନରନାଥ ବୁଲି ବିଭୀଷଣ ଅଇଲା ।
ଶ୍ରୀରାମର ପୟର ଧରି ଅକ୍ଷୟ ବିନୋଦି କହିଲା ॥ ୧୭ ॥
ଶତ୍ରୁ ମାରି ମୋତେ କଲୁ ନୃପତି ।
ଏବେ ତୋହର ନାରୀକି ଆଣାଇବା ସତୀ ॥ ୧୮ ॥
ଶ୍ରୀରାମ କହନ୍ତି ତାହାର ମୁଖ ନ ଚାହିଁ ।
ଦୋଷବନ୍ତୀ ଯୁବତୀ ସେ ଜଗତେ ମହାଦ୍ରୋହୀ ।
ଲୋକଙ୍କ ଅପବାଦକୁ ସିନା ରାବଣ ମାରିଲଇ ॥ ୧୯ ॥
ତାହାରେ ତ ମୁହିଂ ପାଇଲଇ ଦୁଃଖ ।
ଅନେକ ଅସୁର ମାରି ହୋଇଲି ବିମୁଖ ॥ ୨୦ ॥
ବିଭୀଷଣ କହଇ ସତୀର ଦୋଷ ନାହିଂ ।
ବିଧାତା ପୁରୁଷ ରାବଣକୁ ହୋଇଲା ଅସାହ ॥ ୨୧ ॥
ତେଣୁ ସେ ମହାସତୀକି ହରଣ ଆଣିଲା ।
ଏଣୁ ସେ ରାବଣର ସ୍କନ୍ଧରୁ ଲକ୍ଷ୍ମୀ ଛାଡ଼ିଲା ॥ ୨୨ ॥
ସୀତାକୁ ଭେଟି ଦେବ ଅଶୋକ ବନୁ ଅଣାଇବା ।
ଦୋଷ ଉପେଖି ଗୁଣ ଯେ ଦେନମା ॥ ୨୩ ॥

---

୧୩. ସମସ୍ଥାନେ—ଶ୍ମଶାନ ଭୂମିରେ (ଖ) । ୧୫. ଅଭିଷେକ—ଅଭିସେକ(ଖ) ।
୧୭. ଅକ୍ଷୟ ବିନୋଦି—ଅକ୍ଷୟ ବିନଇ (କ) ବିନୋଦି (ଖ) । ୧୯. ଦ୍ୱିତୀୟ ପାଦଟି ଖ ପୋଥିରେ ନାହିଁ ଓ ତୃତୀୟ ପାଦଟି କ ପୋଥିରେ ନାହିଁ ।
୨୨. ଦ୍ୱିତୀୟ ପାଦଟି ଖ ପୋଥିରେ ନାହିଁ ।

ଏହନେକ କହି ବିଭୀଷଣ ମନ୍ଦୋଦରୀ
ପଦ୍ମରେ ତଳେ ପଡ଼ନ୍ତି ଦନ୍ତରେ ତୃଣ ଧରି ॥ ୨୪ ॥
ଯୂଥପତି ମାନେ ବିଭୀଷଣର ପ୍ରଣମ୍ୟ ଦେଖିଲେ ।
ସମସ୍ତେ ହେ ଗଡ଼ଧାଲି ପଦ୍ମର ତଳେ ପଡ଼ିଲେ ॥ ୨୫ ॥
ଶ୍ରୀରାମ ବୋଇଲେ ତୁମ୍ଭେ କିସ ବୋଲ ।
ଯୂଥପତି ବୋଲନ୍ତି ତୁମ୍ଭେ ଶୁଣ ରଘୁମଲ ॥ ୨୬ ॥
ହେ ଛନ୍ଦି ବର ଆମ୍ଭେ ସୀତମ୍ମାଙ୍କୁ ଦେଖିବୁ ।
ତେବେ ସେ ସମର କଷ୍ଟ ପାସୋରିବୁ ॥ ୨୭ ॥
ଯୂଥପତିର ବଚନେ ଶ୍ରୀରାମ ସନମତ କଲେ ।
ହନୁମନ୍ତଙ୍କୁ ପଠାଇ ସୀତମ୍ମାଙ୍କୁ ଅଣାଇଲେ ॥ ୨୮ ॥
ସୀତମ୍ମାଂକଇ ଶ୍ରୀରାମ କୋପେ ବୋଇଲେ ଯାହା ।
ସଭାରେ ଲବକୁଶେ ଗୀତେ ଗାଇଲେ ତାହା ॥ ୨୯ ॥
ଶ୍ରୀରାମ କହନ୍ତି ସୀତାର ମୁଖ ଚାହିଁ ।
ତୋହର ଗ୍ୟାନେ ଯେବେ ପାପ କଲୁ ନାହିଁ ॥ ୩୦ ॥
ଏତେ ଫଳ ତମ୍ବା ହସ୍ତରେ ଘେନିବୁ ତତାଇ ।
ତେବେ ସେ ଶରୀରୁ ପାତେକ ଛୁଡ଼ିବଇ ॥ ୩୧ ॥
ସୀତମ୍ମା କହନ୍ତି ମାଣ୍ଡୁରେ ଅର୍ଥ କିସ ।
ଅଗ୍ନିରେ ମୁହିଁ ହୋଇବି କିନା ପ୍ରବେଶ ॥ ୩୨ ॥
ଶୁଣିଣ ଶ୍ରୀରାମ ହରଷ ହୋଇଲେ ।
ସାତରାଜ ସାତଦବସ ଅନଳେ ଦହନ କଲେ ॥ ୩୩ ॥
ସତୀର ରୋମେକ ବିନାଶ ନୋହିଲା ।
ଓଦା ବସ୍ତ୍ରେ ସେ ପାଣି ନ ଶୁଖିଲା ॥ ୩୪ ॥
ତଦ୍ୟାପି ରାମଚନ୍ଦ୍ରେ ପ୍ରତେ ନ ଗଲେ ।
ପିତାର କହନ୍ତେ ସେ ପ୍ରବୋଧ ହୋଇଲେ ॥ ୩୫ ॥

## ମୃତ ସେନାଙ୍କ ପୁନର୍ଜୀବନ ଲାଭ

ତହୁଂଣ ରାମଚନ୍ଦ୍ର ବିଭୀଷଣଙ୍କୁ ହକାରି ।
ମନ୍ଦୋଦରୀଙ୍କ ଘେନ ତୁହି ରହସି ତୋର ପୁରୀ ॥ ୧ ॥
ବିଭୀଷଣ କହଇ ଶୁଣସି ହେ ନାଥ ।
କାହା ଘେନ ରହିବି ମୁଂ ଏଥ ॥ ୨ ॥

---

୨୯. ସୀତମ୍ମାଂକଇ—ସିତମ୍ମା କହନ୍ତି । ୩୧. ଶରୀରୁ ପାତେକ ଛୁଡ଼ିବଇ—କଥା ମୋତେ ପ୍ରତେ ଲାଗଇ (ଖ) । ୩୪. ସତୀର—ସ୍ୟତିର ।

ଅନେକ ଅସୁର ଯେ ସଂଗ୍ରାମେଣ ମଲେ ।
ଶୂନ୍ୟ ହୋଇବ ଭୁବନ ମୋହର ଏଥୁ ଗଲେ ॥ ୩ ॥
ଅନେକ ଧନବସ୍ତ୍ର ପାଣିଦ୍ରବ୍ୟ ଅଛଇ ।
ଦେବଭୁବନ ନାହିଁ ସମକଛଇ ॥ ୪ ॥
ଅନ୍ୟ ନ ଥିଲେ ଭଣ୍ଡାର କାହାପେନ ରଖିବା ।
ବାସୃଣ ଆଗ୍ୟାଂ ଦେବା କସ ବୁଧି କରିବା ॥ ୫ ॥
ଶ୍ରୀରାମ କହନ୍ତି ତୁହି ଭୟ କଲୁ ଯେବେ ।
ଅସୁର ସଇନ୍ୟ ତୁମ୍ଭର ଜିଆଂଇବା ଏବେ ॥ ୬ ॥
ଶ୍ରୀରାମର ବଚନ ଯହୁଂ ସୁଗ୍ରୀବର ଶୁଣିଲା ।
ଶିରେ କର ଦେଇ ବନୋୟି କହିଲା ॥ ୭ ॥
ମୋ ଦେବ ବାବନ ବନସ୍ତୁରୁ ଯେ ବାନରେ ଅଇଲେ ।
ସଂଗ୍ରାମ କରି ଏଥେ ଅନେକ ମରକଟ ମଲେ ॥ ୮ ॥
କିଷ୍କିନ୍ଧା ନଗ୍ରକୁ ଯିବ ମୁହିଂ ଯେବେ ।
ସେ କପିଙ୍କର ଘରଯାଏ ରୋଦନ କରିବେ ॥ ୯ ॥
କେସନେକେ ତାହାଙ୍କର ଦୁଃଖ ଦେଖିବି ।
ରାଜ୍ୟ ନ କରିବ ମୁହିଂ ଦେଶାନ୍ତର କରିବି ॥ ୧୦ ॥
ଶ୍ରୀରାମ କହନ୍ତି ଶୁଣିସି ହୋ ମୈତ୍ର ।
ସମସ୍ତ ବାନରେ ପାଇବେ ଜୀବନ୍ତ ॥ ୧୧ ॥
ସୁଗ୍ରୀ କହନ୍ତେ ଶୁଣିଲେ ରିକ୍ଷପତି ।
ଶ୍ରୀରାମ ପୟର ତଳେ ଲୋଟିଲେ ତତ୍ତ୍ୱ ॥ ୧୨ ॥
ଉଠିଣ କହଇ ଶିରେ ଦେଇ କର ।
ଶୁଣସି ରସ୍ତ୍ରାଣ ମୋର ଅଯୋଧ୍ୟାଠାକୁର ॥ ୧୩ ॥
ସତସଠି କୋଟି ସେନ ମୋହର ଘଇ ଡ଼ାକାନ୍ତ ଅଇଲା ।
ସମସ୍ତ ରିକ୍ଷ ସେନସେ ସଂଗ୍ରାମେ ପଡ଼ିଲା ॥ ୧୪ ॥
ସେ ଯେମନ୍ତେ ଜୀବନ ପାବନ୍ତି ମୋ ନାଥ ।
ଏତେ ବୋଲି ଜମ୍ବେବ ଶିରେ ଦେଲା ହସ୍ତ ॥ ୧୫ ॥
ଶ୍ରୀରାମ କହନ୍ତି ସେ ଜମ୍ବେବ ମୁଖ ଚାହିଂ ।
ଯେତେକ ସାଂଗ୍ରାମେ ମଲେ ସବୃନ୍ତ ଦେବ ଜୀଆଇଂ ॥୧୬॥
ଏସନେକ କହି ସୀତାସ୍ୱାର ପତି ।
ଉର୍ଧକଇ ଚାହିଂ ଶ୍ରୀରାମ ଇନ୍ଦ୍ର କଇ କଲେ ସ୍ତୁତି ॥ ୧୭ ॥

---

୭. ବନୋୟି—ବନୋଇ । ୮. ବାବନ—ନାନା (?) ।

ସ୍ୱେ ମନ୍ଦରା ମୋତେ ଦୟା କରଛି ।
ସଗ୍ରାମେଣ ଯେତେ ମଲେ ଜୀଆଇଂଣ ଦେସି ॥ ୧୮ ॥
ଶ୍ରୀରାମର ସ୍ତୁତି ଶୁଣିଣ ପୁରୁହୂତ ।
ଅମୃତ ବୃଷ୍ଟି କରାଇଲେ ତୁରିତ ॥ ୧୯ ॥
ରାବଣ ପୁତ ନାତି ମର୍କଟଯୋଦ୍ଧାମାନେ ।
ସଗ୍ରାମେ ପଡ଼ିଲେ ସେ ଅସୁର ସିନ୍ଧୁସ୍ନାନେ ॥ ୨୦ ॥
ସଂଗ୍ରାମେ ଭୂମିରେ ଯେତେ ଅଦ୍ଭବଳ ମଲେ ।
ଅମୃତ ବରଷିଲ ସେ ସକଳେ ଜୀଇଲେ ॥ ୨୧ ॥
ବିଭୀଷଣ ହକାରି କହନ୍ତି ସୀତାପତି ।
ଧନ୍ୟ ଯେନ୍ନ ଏବେ ରହସି ତୋର ଖିତି ॥ ୨୨ ॥
ବିଭୀଷଣେ କହଇ ତୋହର ତୁଟିଲ ଯିବ ।
ଅଯୋଧ୍ୟା ନଗରେ ତୋହର ଗର୍ଭଧାନ୍ତ ଦେଖିବ ॥ ୨୩ ॥
ମନ୍ଦୋଦରୀ କହଇ ଯୋଡ଼ିଣ ବେନି କର ।
ଶୁଣ ଦେବ ଶ୍ରୀରାମ ଅଯୋଧ୍ୟାଠାକୁର ॥ ୨୪ ॥
ସୀତାର ପଦେଣ ହୋଇଥିବ ଭଗତି ।
ଏସନେକ ଆଜ୍ଞା ମୋତେ ଦେବାକ ରଘୁପତି ॥ ୨୫ ॥
ମନ୍ଦୋଦରୀ କି ରାମ ଯେମନ୍ତେ ପ୍ରବୋଧିଲେ ।
ଶ୍ରୀରାମର ଆଗେ ତାହା ଲବକୁଶେ କହିଲେ ॥ ୨୬ ॥
ଜାମ୍ବୋମାଳୀ ପୁତ ନ ଦେଖି ପ୍ରାଣ ଗୁଡ଼ିଥିଲା ।
ବ୍ରହ୍ମାକୁ ସ୍ତୁତି କରି ରାମ ପୁଅକୁ ଜୀଆଇଂଲ ॥ ୨୭ ॥

## ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ

ତଦଅନ୍ତରେ କପି ଋକ୍ଷ ସନ୍ୟର ତୁଟେ ।
ପୁଷ୍ପକ ରଥେ ସୀତସ୍ଥାକୁ ଘେନିଣ ବସିଲେ ॥ ୧ ॥
ରଥ ତୋଳି ଲଙ୍କାର ଉପରେ ସମସ୍ତେ ଦେଖନ୍ତି ।
ବନ୍ଦୀ ବନ୍ଧନେ ଯେତେକ ଥିଲେ ମୁକତ କରି ଦଅନ୍ତି ॥ ୨ ॥

---

୨୦. ମର୍କଟ—କୁଟମ୍ବ ଗୁଡ଼ି ଆବର(ଖ) ; ଦ୍ୱିତୀୟ ପାଦର ପାଠ ଖ ପୋଥିରେ : ସାଂଗ୍ରାମେ ପଡ଼ିଲେ ସେ ଉଭୟ ବଳମାନେ । ୨୧. ଖ ପୋଥିର ପାଠ :— ଅମୃତ ବରଷିଲେ ସେ ଜୀଇଲେ ଯୋଦ୍ଧାମାନେ । ଶ୍ରୀରାମଙ୍କୁ ସାଧୁ ସାଧୁ କରନ୍ତି ଯୋଦ୍ଧାମାନେ ॥ ୨୪-୨୫. ଏ ଦୁଇପଦ ବଦଳେ କ ପୋଥିରେ ପଦେ :— ମନ୍ଦୋଦରୀ କହଇ ଯୋଡ଼ିଣ ଦୁଇ ହସ୍ତ । ସୀତସ୍ଥାର ପାଦେ ମୁହିଂ ହୋଇଥିବ ଭଗତ ॥ ୨୭. ନ ଦେଖି—ନା ଦେଖି କା ; ରାମ ପୁଅକୁ—ପୁଅକୁ (କ) ।

ଲଙ୍କାରୁ ବରୁଣ କନେକଦଣ୍ଡ ଆଣିଲେ ।
ଲକ୍ଷ୍ମଣର ମୁଖ ଚାହିଁ ଶ୍ରୀରାମ କହିଲେ ॥ ୩ ॥
ସେତୁ ବନ୍ଧ ବାନ୍ଧି ଲଙ୍କାଗଡ଼େ ପଶିଲୁ ।
ଅସୁର ବଳ ବିନାଶି ରାବଣ ବଳ ଛେଦିଲୁ ॥ ୪ ॥
ଏବେ ବନ୍ଧ ଛେଦ ତୁହି କର ।
ଶ୍ରୀରାମର ଆଦେଶରେ ଦଶରଥ କୁମର ॥ ୫ ॥
କନେକ ଦଣ୍ଡ ଯେ ଦୁହ୍ନ କରେ ଦେଇଥିଲା ।
କାଖେ ଦଣ୍ଡ ଚାପି ଧନୁ କରେ ଧଇଲା ॥ ୬ ॥
ଛନ ବାଣ ପେଷି ଛନ ଖଣ୍ଡ କରଇ ।
ତହୁଂ ବକସ୍ତେ କର ଅଇଲେ କୋଟି ବର ସୁନ୍ଦରଇ ॥ ୭ ॥
ବାନର ସୈନ୍ୟଙ୍କୁ ବନକୁ ପଠାଇଲେ ।
ଯୂଥପତିମାନଙ୍କୁ ଘେନଣ ଅଇଲେ ॥ ୮ ॥
ମଣି ଦେଇ ଲକ୍ଷ୍ମଣ ତନ କରକ ଦୁଧ ନେଇଥିଲେ ।
ସେ ଗୋପାଳକଇ ରାମ ସନ୍ତୋଷ ମଣିଲେ ॥ ୯ ॥
ସେ ଗୋଷ୍ଠେ ରାମ ଅନେକ ବିଶ୍ରାମିଲେ ।
ସେହୁ ଗୋପାଳଙ୍କୁ ରାମ ରଥରେ ବସାଇଲେ ॥ ୧୦ ॥
ନନ୍ଦୀଗ୍ରାମେ ରାମ ପ୍ରବେଶ ହୋଇଲେ ଯାଇ ।
ତହୁଂ ଭରଥକଇ ଘେନଣ ଆସଇ ॥ ୧୧ ॥
ଭରଥକଇ ରାମ ଅନେକ ପ୍ରଶଂସିଲେ ।
ନନ୍ଦକ ବନେ ଶତ୍ରୁଘନର ସନଧେ ମିଳିଲେ ॥ ୧୨ ॥
ଅନଳେ ଦୁଇଭାଇ ହୋଉଥିଲେ ପ୍ରବେଶ ।
ତାହାନ୍ତ ଦେନ ରାମ ଅଯୋଧାରେ ପ୍ରବେଶ ॥ ୧୩ ॥
ନବର ଭିତରେ ଯେ ପ୍ରବେଶ ଚାପଧାରୀ ।
ଗନ୍ଧମସ୍ତେଣ ଭବେମୀ କଲକ ଚାହାରି ॥ ୧୪ ॥
ଶ୍ରୀରାମ ମଧୁବତୀକ ଯାହା କହିଲେ !
ଲବ କୁଶେ ତାହା ଗୀତରେ ଗାଇଲେ ॥ ୧୫ ॥

---

୫. ଆଦେଶରେ—ଆଦେଶ (କ) । ୬. ଧନୁ—ଦୁହ୍ନ (କ) । ୯. କରକ—କଙ୍କର (କ), କଣଙ୍କ (ଖ) ; ଦ୍ୱିତୀୟ ପାଦଟି ଖ ପୋଥିରେ ନାହିଁ । ୧୧. ନନ୍ଦୀଗ୍ରାମେ—ସୁରବନେ (ଖ) । ୧୨. ପ୍ରଥମ ପାଦଟି ଖ ପୋଥିରେ ନାହିଁ ; ନନ୍ଦକ—ନନ୍ଦୀ (ଖ) । ୧୪. ଦ୍ୱିତୀୟ ପାଦଟି ଖ ପୋଥିରେ :— ଖଧ୍ୱମସୁର ଯୁବତୀ କଲକ ନଉଛୁଳ । ୧୫. ମଧୁବତୀକ—ଗନ୍ଧମସୁଣଙ୍କୁ (କ) ।

ତହିଁ ଅନ୍ତରେ ରାମ ନବରେ ପଶନ୍ତି ।
ମାତାର ପଦ୍ମରେ ରାମ ପ୍ରଣମ୍ୟ କରନ୍ତି ।। ୧୬ ।।
ଅଭିଷେକ ହୋଇବାକୁ ଅନୁକୂଳ ଯେନଲେ ।
ସପତ ଋଷି ରାମଙ୍କୁ ଅଭିଷେକ କଲେ ।। ୧୭ ।।
ସୁଗ୍ରୀବ ବିଭୀଷେଣ ଯୂଥପତିମାନ ।
ଜମ୍ବେବ ଶତବାଳି ସବୁଙ୍କୁହି କଲେ ସନମାନ ।। ୧୮ ।।
ଯେ ଯାହାର ସ୍ଥାନକଇ ସମସ୍ତେ ହେ ଗଲେ ।
ହନୁମନ୍ତକଇ ରାମେ ଅଯୋଧ୍ୟାରେ ରହାଇଲେ ।। ୧୯ ।।
ମାନଧାତା କାଳର ସାତ ମଣି ଭଣ୍ଡାରେ ଥିଲା ।
ସେ ମଣି ରାମ ହନୁମନ୍ତ ଲଲାଟେ ବାନ୍ଧିଲା ।। ୨୦ ।।
ସେ ମଣି ପାଇ ହନୁମନ୍ତ ହୋଇଲା ହରଷର ।
ସମୁଦ୍ର ତୀରେ ବଟବୃକ୍ଷ ଉପରେ ବସଇ ।। ୨୧ ।।
ଲଙ୍କାର ଯୁଦ୍ଧ ସୁମରି ହନୁମନ୍ତେ ।
ବଟର ତଳେ ଜୁଆର ପାଣି ପୂରିଲା ଉରତେ ।। ୨୨ ।।
ସମୁଦ୍ର ମାଛେ ବାହାର ହୋଇଲେ ।
ସେ ବଟର ତଳେ ଆସି ଆହାର ଚରଲେ ।। ୨୩ ।।
ମାଛଙ୍କର ଚହଟ ଦେଖି ପବନ ତନୟେ ।
ବଟର ଫଳ ତୋଳି ପାଣିକି ପକାଏ ।। ୨୪ ।।
ସେ ଫଳ ମାଛେ ଯେନଗଲେ ତହୁଂ ।
ଫଳପତ୍ର ସବୁ ଛିନାଇ ପକାଇଲେ ତହୁଂ ।। ୨୫ ।।
ଅନେକ ମାଛ ଯେ ଦଶିଲେ ଦ୍ରବ୍ୟ ସାଧି ।
ଦେଖି ଖେଳି ହୋଇଲାକ ମାରୁତି ।। ୨୬ ।।
ବଟର ଫଳ ପତ୍ର ତହୁଂ ଛନାଇ ପକାଇଲା ।
ଆବର ଦେବାକୁ କିଛି ହି ନ ପାଇଲା ।। ୨୭ ।।
ମାଛଙ୍କର କଉତୁକ ଯତ୍ନୁଂଣ ଦେଖିଲା ।
କପାଳୁ କାଢ଼ି ସାତ ମଣି ପକାଇଲା ।। ୨୮ ।।
ସପତ ମଣି ମାଛେ ଗିଳିଲେ ।
ଜୁଆର ଗୁଡ଼ିଲା ମାଛେ ସମୁଦ୍ରେ ପଶିଲେ ।। ୨୯ ।।
ମଥା ଆଉଂସିଲା ହନୁ ମଣିରତ୍ନ ନାହିଁ ।
ମନେ ମନେ ଭାଳଇ ଦଶଦିଗ ଚାହିଁ ।। ୩୦ ।।

---

୨୩. ସମୁଦ୍ର—ସମୁଦ୍ର (କ) । ୨୪. ଦେଖି—ଶୁଣିଣ (କ) । ୨୭-୨୮. ଖ ପୋଥିରେ ୨୭ ପଦର ଶେଷ ପାଦ ଓ ୨୮ ପଦର ପ୍ରଥମ ପାଦ ନାହିଁ । ୨୮. କପାଳୁ—କପାଳ । ୨୯. ସପତ—ସେପତ୍ର (କ) ; ଗୁଡ଼ିଲା—ଗୁଡ଼ି (କ) ।

ଶ୍ରୀରାମର ସନ୍ନଧକୁ କେବଣ ମତେ ଯିବ ।
ସୀତାପତିର ମୁଖ କେମନ୍ତେ ଗୃହିଂବ ।। ୩୧ ।।
ଏସନେକ କହି ହନୁମନ୍ତ ମନେ ବିଚାରିଲା ।
ବୃକ୍ଷରୁ ଓହ୍ଲାଇ ବନସ୍ତେ ଲୁଚିଲା ।। ୩୨ ।।
ହନୁମନ୍ତକଇ ରାମ ସନ୍ନଧେ ନ ଦେଖିଲେ ।
ବଶିଷ୍ଠ ଋଷିଙ୍କି ଗୃହିଂ ପଚାରିଲେ ।। ୩୩ ।।
ଭୋ ମୁନି ହନୁମନ୍ତ ନାହିଂ ଅଯୋଧ୍ୟା ଭୁବନେ ।
ବଶିଷ୍ଠେ କହନ୍ତ ଯେ ଶ୍ରୀରାମ ସନ୍ନଧାନେ ।। ୩୪ ।।
ସାତ ମଣି ହନୁମନ୍ତ ପାଣିରେ ପକାଇଲା ।
ତେଣୁ ସେ ହନୁମନ୍ତ ଲାଜେ ବନରେ ଲୁଚିଲା ।। ୩୫ ।।
ଶୁଣିଣ ଶ୍ରୀରାମଚନ୍ଦ୍ରେ ତିନି ଭାଇଙ୍କି ପଠିଆଇଲେ ।
ପବନର ତନୟକୁ ହକାରି ଆଣିଲେ ।। ୩୬ ।।
ଶ୍ରୀରାମଙ୍କୁ ଯିସ କହିଲେ ମାରୁତ ।
ସଭାରେ ବସି ଲବକୁଶେ ଗୀତେଣ ଗାବନ୍ତ ।। ୩୭ ।।
ଭୋଜନ ସାରି ରାମ ପୁଷ୍ପକେ ଆରୋହିଲେ ।
ହନୁମନ୍ତକୁ ଘେନି ବରୁଣ ତହିଁକି ଗଲେ ।। ୩୮ ।।
ଅଗ୍ନି ବାଣ କୋଦଣ୍ଡେ ବସାଇଲେ ଯହିଂ ।
ଦେଖିଣ ବରୁଣ ଭୟେ କମ୍ପିଲା ତହିଂ ।। ୩୯ ।।
ସାତମଣି ସଙ୍ଗତେ ଲକ୍ଷେ ରତ୍ନ ।
ଘେନି ରାମକଇ ପୂଜା କଲେକ ବରୁଣ ।। ୪୦ ।।
ରତ୍ନ ଘେନି ରାମ ଅଯୋଧ୍ୟାକୁ ଅଇଲେ ।
ଲକ୍ଷେ ମଣିରତ୍ନ ସବୁ ହନୁମନ୍ତକୁ ଅଲଂକାର କରାଇଲେ ।। ୪୧ ।।
ସେ ସାତମଣି ଭଣ୍ଡାରେ ଥୋଅନ୍ତ ।
ପୃଥ୍ୱୀ ଅଭିଷେକକୁ ଅନକୂଳ ଖୋଜନ୍ତ ।। ୪୨ ।।
ସହସ୍ରେକ ମୁନି ମିଳି ଅଭିଷେକ କଲେ ।
ଅଶ୍ୱମେଧ ଯାଗକୁ ମନେ ବିଚାରିଲେ ।। ୪୩ ।।

## ରାମଙ୍କ କୀର୍ତ୍ତି

ସେ କଥା ଶୁଣି ଲବଣ ବାହିଲା ।
ରାବଣକଇ ମାରିବା ଶୁଣି ମନେ କୋପ କଲା ।। ୧ ।।

---

୩୩—୩୫. ଏ ତିନି ପଦ କ ପୋଥିରେ ନାହିଁ । ୪୩. ପ୍ରଥମ ପାଦଟି ଖ ପୋଥିରେ ନାହିଁ ।

ଲବଣେର ପ୍ରତାପ ଯହୁଁ ରାମଚନ୍ଦ୍ର ଶୁଣିଲେ ।
ପଞ୍ଚରତ୍ନ ଦେଇ ନବେଶି ହୋଇଲେ ॥ ୨ ॥
ଉଗର ବାରତା ଲବଣ ଶୁଣିଲା ।
ପାଞ୍ଚ ରତ୍ନ ଦେନ ସେ ହରଷ ହୋଇଲା ॥ ୩ ॥
ଚହୁଁଣ ରାମକଇ କୋପ ଛୁଡ଼ିଲା ଲବଣ ।
ନିଜ ରାଜ୍ୟକୁ ବାହୁଡ଼ି ଗଲା ତତକ୍ଷଣ ॥ ୪ ॥
ତଦଅନ୍ତରେ ରାମ ଶତ୍ରୁଘନକୁ ପେଷି ।
ବନସ୍ତେ ଶତ୍ରୁଘନ ଥାଇ ଅହୋନିଶି ॥ ୫ ॥
ଶୂଳ ଛୁଡ଼ି ଲବଣ ମୃଗୟା ଯହୁଁ ଗଲା ।
ତେବେ ସେ ଶତ୍ରୁଘନ ତାହାର ଠୂଲେ ଯୁଦ୍ଧ କଲା ॥ ୬ ॥
ଶତ୍ରୁଘନର ଲବଣର ଯେବଣ ଯେବଣ ସିଦ୍ଧାନ୍ତ ।
ଗୀତେ ଗାଇଲେ ତାହା ଲବକୁଶ ବେନି ଭ୍ରାଥ ॥ ୭ ॥
ମଲ୍ଲଯୁଦ୍ଧେ ଲବଣ ଶତ୍ରୁଘନକଇ ଜିଣିଲା ।
କାଖେ ରୁପି ନଗରକଇ ଘେନିଗଲା ॥ ୮ ॥
ସିଂଘଦ୍ୱାରେ ପ୍ରବେଶ ହୋଇଲାକ ସେ ଯେବେ ।
ଶତ୍ରୁଘନର ଦେହେ ଚେତନା ପଶିଲାକ ତେବେ ॥ ୯ ॥
କରପଲ୍ଲବରେ ଲବଣର ମୁଣ୍ଡ ମୋଡ଼ିଲା ଶତ୍ରୁଘନ ।
ଶିର ଛୁଡ଼ି ପଡ଼ିଲା ଲବଣ ରାଜନ ॥ ୧୦ ॥
ଲବଣର ବଧ କଥା ଯହୁଁ ରାମଚନ୍ଦ୍ର ଶୁଣିଲେ ।
ଧନ୍ୟରେ ଭ୍ରାଥ ବୋଲି ଧନ୍ୟ ଧନ୍ୟ କଲେ ॥ ୧୧ ॥

ଲବକୁମର କହଇ ଅମୃତମୟେ ବଚନ ।
ଶୁଣିଣ ହରଷ ହୋଇଲେ ସଭାର ସର୍ବଜନ ॥ ୧୨ ॥
ମଧୁବନ ରାଜ୍ୟ କଲାକ ରାମର ସାନ ଭାଇ ।
ଲକ୍ଷେକ ବ୍ରାହ୍ମଣକଇ ଶାସନ ବସାଇ ॥ ୧୩ ॥

ଉଗର କହନ୍ତେ ରାମ ହରଷ ହୋଇଲେ ।
ଶାସନ ଦେଖିବାକଇ ମଧୁବନକୁ ଗଲେ ॥ ୧୪ ॥
ଭାଇକ ମଧୁବନେ ଅଭିଷେକ କରି ।
ମଧୁବନ ତେଜି ଅଇଲେ ନିଜପୁରୀ ॥ ୧୫ ॥

ତଦଅନ୍ତରେ ରାମ ଅଶ୍ୱମେଧଯାଗ କଲେ ।
ଶୂଦ୍ର ତପୀଙ୍କର ଯେସନେକେ ଶିର ଛେଦିଲେ ॥ ୧୬ ॥

---

୬. ଶୂଳ—ସ୍ଥଳ (କ) । ୮. ମଲ—ମାଲ (ଖ) । ୯. ପଶିଲାକ – ବସିଲାକ(କ)
୧୦. ଲବଣର ମୁଣ୍ଡ ମୋଡିଲା—ହାଣିଲା (କ) ।

ବ୍ରାହ୍ମଣ ପୁତ୍ରକଇ ରାମ ଜୀଆଂଇଲେ ଯେବଣ ମତେ ।
ସମ୍ପାତ ସ୍ୱରୂପେ କହନ୍ତି ସୀତସ୍ୱାର ବେଦସୁତେ ।। ୧୭ ।।
ବ୍ରାହ୍ମଣ କୁକୁରକୁ ଲଡେକ ମାଇଲା ଯେବେ ।
ଶ୍ରୀରାମ ଆଗେ ଗୁହ୍ରାରି କଲାକ ସେ ତେବେ ।। ୧୮ ।।
ତାହାଙ୍କୁ ରାମଚନ୍ଦ୍ର ଯାହା କହିଲେ ।
ସଭାରେ ଲବକୁଶେ ଗୀତରେ ଗାଇଲେ ।। ୧୯ ।।
ପୃଙ୍ଗର କଥା କୁକୁର ମୁଖେ ଶୁଣି ।
ହରଷ ହୋଇଲେ କୋଦଣ୍ଡ ରୂପପାଣି ।। ୨୦ ।।
ବଣିଷ୍ଠକଇ ଯେନ୍ନ ଯଥପନ୍ଥ ସହିତେ ।
ରାମଲକ୍ଷ୍ମଣ ଯେ ସୀତାଙ୍କ ସମେତେ ।। ୨୧ ।।
ପ୍ରୟାଗ ଗଙ୍ଗା ବାଣରାସୀକି ଯେ ଗଲେ ।
ନାନା ତୀର୍ଥେ ପାପ ବିନାଶିଲେ ।। ୨୨ ।।
ସିଂଘନାଦର ରୂଲେ ଯେମନ୍ତେ କଲେ ସମର ।
ଗୀତେ ଗାଇଲେ ତାହା ଲବ ଯେ କୁମର ।। ୨୩ ।।
ଯେବଣ ପଦ ଲବକୁମର ବିସ୍ତରଇ ।
କୁଶକୁମର ତାହା ଅର୍ଥ କରି କହଇ ।। ୨୪ ।।
ଶ୍ରୀରାମକଇ ସିଂଘନାଦ କହିଲା ଯୋଗ ମାର୍ଗ ।
ରାମର ମୁଖ ଗୁହିଂ ଗଲାକ ସେ ସ୍ୱର୍ଗ ।। ୨୫ ।।
ବାଣରାସୀ ପୁରେ ଅଶ୍ୱମେଧ ଯାଗ କଲେ ।
ଅନେକ ଦାନ ଦକ୍ଷିଣା ତହିଂ ଦେଲେ ।। ୨୬ ।।
ତହିଂ ବାହୁଡ଼ି ଅଇଲେ କ୍ଷତ୍ରିବର ସୁନ୍ଦର ।
ପ୍ରବେଶ ହୋଇଲେ ଅଯୋଧ୍ୟା ନଗର ।। ୨୭ ।।
ଅମ୍ବର ବଚନେ ଅର୍ଘ୍ୟଦାନ ଦେଲେ ଯହିଂ ।
ଦଶଗୁଣେ ଧର୍ମ ବର୍ଦ୍ଧିତ ହୋଇଲାକ ଯହିଂ ।। ୨୮ ।।
ସମସ୍ତ ଲୋକେ ଦାନପୁଣ୍ୟ କରନ୍ତି ।
ଅକାଳେ ସେ କେହି ମରଣ ନ ପାବନ୍ତି ।। ୨୯ ।।
ଆୟୁଷ ପୂରିଲେ ଯେ ଅବା ନାଶ ଯାଇ ।
ଇନ୍ଦ୍ର ସ୍ଥାନରେ ବସଇ ସେ ଯାଇ ।। ୩୦ ।।
ଦେବ ସଭାରେ ଦସିତ ଠାବ ନୋହିଲା ।
ବୃହସ୍ପତିକ ହକାରି ପାକଶାସନ କହିଲା ।। ୩୧ ।।
କିସ ବୁଦ୍ଧି କରିବା କହସି ବିଗୁରି ।
ବୃହସ୍ପତି କହନ୍ତି ଶୁଣ ବଜ୍ରଧାରୀ ।। ୩୨ ।।

---

୨୦· ପୃଙ୍ଗର—ଶିବର । ୨୪· ପଦ—ପ । ୨୮· ଦଶଗୁଣେ—ଦଶମୁଖେ (କ) ।

ସୀତାଙ୍କୁ କରି ଶ୍ରୀରାମ ଉପେଖିବେ ଯେବେ ।
ଶ୍ରୀରାମ ସ୍କନ୍ଧୁ ଲକ୍ଷ୍ମୀ ଛାଡ଼ିବାକୁ ତେବେ ॥ ୩୩ ॥
ସୀତାର ବନ୍ଧନେ ରାମ ମନେ କରିବେ ବିରସ ।
ତେବେ ସେ ସକଳ ଧର୍ମ ହୋଇବ ବିନାଶ ॥ ୩୪ ॥
ମନ ବିରଙ୍ଗ କଲେ ଧର୍ମ ନୁହଇ କିଛି ।
ବଇରାଗ ହୋଇ ରାମ ସୀତାଙ୍କୁ ଉପେଖି ॥ ୩୫ ॥
ଗୁରୁଙ୍କ ବଚନ ଶୁଣି ବଜ୍ରଧର ।
ଦେବଗଣେନ୍ଦ୍ର ଘେନି ଗଲେ ବ୍ରହ୍ମାଙ୍କର ପୁର ॥ ୩୬ ॥
ବିଧାତା ଆଗରେ କହଇ ସୁରପତି ।
ଇନ୍ଦ୍ର ବଚନ ଶୁଣି ଧାତା ହକାରି ସରସ୍ୱତୀ ॥ ୩୭ ॥
ଅନେକ ଆଶ୍ୱାସି କହଇ ଚତୁରାନନ ।
ତୁ ଆଜି ଦେବଇନ୍ଦ୍ରଙ୍କୁ ହୋଇବୁ ପ୍ରସନ ॥ ୩୮ ॥
ଯିବି ଦଶଦେବଙ୍କର କାର୍ଯ୍ୟ କରିବୁ ।
ଅଯୋଧ୍ୟା ନରନାରୀଙ୍କର କଣ୍ଠରେ ବସିବୁ ॥ ୩୯ ॥
ସମସ୍ତେ ହେ ସୀତାଙ୍କୁ ଦୋଷୀ ବୋଲିବେ ।
ଦୟା ଓପ୍ରୋଧ କେହି ନ କରିବେ ॥ ୪୦ ॥
ସେ କଥା ରାମଚନ୍ଦ୍ର ଶୁଣୁଥିବ ।
ସୀତାକଇ ମନେ ବଇରାଗ ଧରିବ ॥ ୪୧ ॥
ଗୁଣ ଉପେଖି ସତୀର ଧରିବ ଦୋଷ ।
ବନେ ନେଇ କରାଇବ ନିବାସ ॥ ୪୨ ॥

## ସୀତାଙ୍କ ନିର୍ବାସନ

ବ୍ରହ୍ମାର ବଚନେ ଦେବୀ ସରସ୍ୱତୀ ।
ଅଯୋଧ୍ୟା ଲୋକଙ୍କର ହୃଦରେ ବସିଲା ତତକ୍ଷଣାନ୍ତ ॥ ୧ ॥
ଶ୍ରୀରାମଙ୍କ କଣ୍ଠରେ ବସି ବିକାର କରାଇଲା ।
ତେଣେ ରାମ ମନେ ଅନ୍ତର ଧଇଲା ॥ ୨ ॥
ଓପ୍ରୋଧେ ସୀତାଙ୍କୁ କିଛିହି ନ ବୋଲଇ ।
ଅହୋନିଶି ମନେ ଛିଦ୍ର ବୁଧି ଧରଇ ॥ ୩ ॥
ଗୋରଖନାଥେ ଗ୍ୟାନ ଯେମନ୍ତେ କହିଲେ ।
କଦଳୀବନକଇ ହନୁମନ୍ତକୁ ନେଲେ ॥ ୪ ॥
ସମସ୍ତ କଥା କହନ୍ତି ସୀତାଙ୍କର ବେଣିସୁତ ।
ଶୁଣିଣ ଚକିତ ହୋଇ ଭାଳନ୍ତି ରଘୁନାଥ ॥ ୫ ॥

---

୩୪. ବିରସ—ତୋଷ (କ) । ୩୭–୩୮. ଏ ଦୁଇପଦ ଖ ପୋଥିରେ ନାହିଁ ।

ସ୍ନେହଂତ ହୋଇଲ ଦେବତାଙ୍କର ବଇରି ।
ତାହାଙ୍କର କପଟେ ସେ ଉପେଖିଲ ମୋହର ନାରୀ ॥ ୬ ॥
ତ୍ରିଭୁବନ ପ୍ରତାପୀ ରାବଣ ଚଣ୍ଡବୃତ୍ତି ।
ଦେବଦଳଣ ସାରଥି ପୌଲସ୍ତିର ନାତି ॥ ୭ ॥
ତାହାର ମନ ହରି ସେବା କରିଥିଲେ ।
ସେ କଥା ପାସୋରିଲେ ମୋତେ ସ୍ୱପ୍ନ ସେ ଚିନ୍ତିଲେ ॥ ୮ ॥
ଦେବତାଙ୍କର ଛଳେ ରାବଣକଇ ମାଇଲ ।
ଏହାଙ୍କର ବୁଦ୍ଧିରେ ସେ ଖଣ୍ଡଯା ଉପେଖିଲ ॥ ୯ ॥
ମନ ବିରଙ୍ଗ କରି ରାମଚନ୍ଦ୍ର ଶୁଣିଲେ ।
ଶ୍ରୀରାମର ବିରଙ୍ଗ ବଶିଷ୍ଠେ ଜାଣିଲେ ॥ ୧୦ ॥
ଲବକୁମରଙ୍କର ମୁଖ ଚାହିଂ ପୁଛନ୍ତି ବ୍ରହ୍ମସୁତ ।
ବିସ୍ତାରି ଗାଅ ବାବୁ ଶୁଣନ୍ତୁ ସମସ୍ତ ॥ ୧୧ ॥
ଲବକୁଶେ କହନ୍ତି ସାବଧାନେ ଶୁଣ ।
ଏସନେକେ ରାଜ୍ୟରେ ଥାଆନ୍ତେ ରଘୁନାନ ॥ ୧୨ ॥
ଯହୁଂ ଶ୍ରୀରାମର ହୃଦରେ ଶାରଦା ସମ୍ଭାଇଲ ।
ମନେ ମନେ ଷଣ୍ଡି ବର ବକୁଟ ଧଇଲ ।
ନଗ୍ର ଭିତରେ ରାମ ଅନ୍ଧାରି ବଜେ କଲ ॥ ୧୩ ॥
ଭଲଇ ସୀତୟା ବୋଲବଇ ସତି ।
ମୋହର ନଗ୍ରେ ଏହାକଇ କେ କସ ବୋଲନ୍ତି ॥ ୧୪ ॥
ଆଜ ମୁଂ ଏହି ରାଜ୍ୟେ ନିର୍ଜନେ ବୁଲିବି ।
ଜନଙ୍କର କଥା ତଥ୍ୟ କରି ବୁଝିବି ॥ ୧୫ ॥
ଏସନେକ ଛନ୍ଦ କଥା ରାମ ମନରେ ଧଇଲେ ।
ନବରୁ ବାହାର ହୋଇ ଶ୍ରୀପସ୍ତରେ ବଜେ କଲେ ॥ ୧୬ ॥
ନିବଡ଼ ଅନ୍ଧାର ତୁଲେଣ କେହି ନାହିଁ ।
କୋଦଣ୍ଡ କରେ ଧରି ଗମନ୍ତି ରଘୁସାଇଂ ॥ ୧୭ ॥
ଏମନ୍ତେ କିଛି ଧୂର ରାମ ଗଲେ ।
ସୁକେଶୀ ଗୋପାଳୁଣୀ ମନ୍ଦିର ସନ୍ନିଧେ ମିଳିଲେ ॥ ୧୮ ॥
ସୁବେଶ ସୁନ୍ଦର ଗୋପାଳଇ ।
ଦୁଧ ଆଣିବାକୁ ସେ ଗୋଗୋଷ୍ଠକୁ ଚଳଇ ॥ ୧୯ ॥

---

୭· ସାରଥି—ସାରବଧି (ଖ) । ୧୩· ତୃତୀୟ ପାଦଟି କ ପୋଥିରେ ନାହିଁ ।
୧୫· ନିର୍ଜନେ—ନିଶାରେ (ଖ । ୧୬· ଦ୍ୱିତୀୟ ପାଦଟି ଖ ପୋଥିରେ ନାହିଁ ।
୧୯· ଗୋଗୋଷ୍ଠ—ଗୋଗଷ୍ଠ ।

ଗୋଗୋଷ୍ଠେ ଗୋପାଳ ଅଛଇ ତାର ରହି ।
ପରପୁରୁଷେକ ଗୋପାଳୁଣୀ ଘେନ ମଧ୍ୟରେ ଅଛୁ ଶୋଇ ॥୨୦॥
ନାନା ବିନୋଦ ଶୃଙ୍ଗାରକଥା ଯହୁଂ ଶୁଣିଲେ ।
କୋଦଣ୍ଡ ଘେନ ଗ୍ରାମ ଅନ୍ତରେ ରହିଲେ ॥ ୨୧ ॥
ଏସନେକ ସମୟେ ହରଷା ଗୋପାଳଇ ।
ଦୁଧଘର ଘେନ ଯାଇ ଦ୍ୱାରେଣ ମିଳଇ ॥ ୨୨ ॥
ସ୍ତ୍ରୀଯା ନାମ ଧରି ଅନେକ ଡାକ ଦେଲା ।
ନିଦ୍ରାଗଲା ଗୋପାଳୁଣୀ ସେ ବଚନ ନ ଶୁଣିଲା ॥ ୨୩ ॥
କବାଟ ଫେଡ଼ିଣ ଭିତରେ ପଶଇ ।
ଅଗ୍ୟାନେ ଶୋଇଅଛୁ ଝରତର ନିଶ୍ବାସଇ ॥ ୨୪ ॥
ଅଗ୍ନି ଆଣି ତତକ୍ଷଣେ ଦୀପେକ ତୋଳିଲା ।
ନିର୍ଭରେ ଶୋଇଅଛୁ ସେ ପ୍ରତକ୍ଷେ ଦେଖିଲା ॥ ୨୫ ॥
ରତିକ୍ରମେ ଦୁହିଙ୍କର ଅଚେତନ ଅଙ୍ଗ ।
ଦେଖି ହରଷା ଗୋପାଳ ମନେ କଲା ବିରଙ୍ଗ ॥ ୨୬ ॥
ବେନି କରେ ଧଇଲା ଦୁହିଙ୍କର କେଶ ।
ଚେତଣ ଗଉଡ଼ୁଣୀ କରଇ ମହାରୋଷ ॥ ୨୭ ॥
ଆପଣାର ବାଳ ଝାଡ଼କାରେ ଛଡ଼ାଇଲା ।
ଭିଥାକଇ ତତକ୍ଷଣେ ପେଲି ପକାଇଲା ॥ ୨୮ ॥
ସାଧୁପୁରୁଷଙ୍କାର ବାହାର କରି ଦିଅଇ ।
ସ୍ୱାମୀକି ଅନେକ ଝିଂଘାସି କଥା କହଇ ॥ ୨୯ ॥
ତୁହି ରେ ନିଲକ୍ଷଣ ହୀନ ଗଉଡ଼ ଜାତି ।
ବେଶ୍ୟାର ସଙ୍ଗେ ତ ଗଉଡ଼ୁଣୀ ଯୁବତୀ ॥ ୩୦ ॥
ଦଧି ଦୁଧ ବିକୁ ଦ୍ୱାରେ ଦ୍ୱାରେ ବୁଲୁ ନିତି ।
ପୁରୁଷେ ଆମ୍ଭଙ୍କୁ ଦେଖି କାମଇଛା କରନ୍ତି ॥ ୩୧ ॥
ସଭିବେ ଯୁବତୀଙ୍କି ପୀଡ଼ଇ ମଦନ ।
ପୁରୁଷକୁ ଦେଖିଲେ ଅଧିକ ବଳଇ ମନ ॥ ୩୨ ॥
ତେଣୁ ସେ ଯୁବତୀକ ଘରୁ ନ କରି ବାହାର ।
ତୁହି କସ ଜାଣୁ ମୂର୍ଖ ପଶୁ ତୁର ॥ ୩୩ ॥
ଏତେ କଥାକଇ ସହିତ ନୋଆରିଲୁ ।
କିସ ନିମନ୍ତେ ଏତେକ ଚହଲ ତୁହି କଲୁ ॥ ୩୪ ॥

---

ଗୋଗୋଷ୍ଠ—ଗୋଗଷ୍ଟ । ୨୨. ହରିଷା—ପ୍ରବେଶ (ଖ) । ୨୬. ହରିଷା ଗୋପାଳ-ଗୋପାଳ (ଖ) । ୨୯. ଝିଂଘାସି—ଝଂଘାସି (ଖ) । ୩୧. ବିକୁ—ବିକି (ଖ) । ୩୩. ଯୁବତୀଙ୍କ—ଯୁବତୀ (କ) । ୩୪. କଥାକଇ ସହିତ—କଥାକହି ସଇତ ।

ଯେ ସେ କୁଳଶୀଳ ଧାର୍ମିକ ପୁରୁଷ ।
ସେ ସେ ଯହନ୍ତୁ ନା ସ୍ତ୍ରୀଙ୍କର ଦୋଷ ॥ ୩୫ ॥
ଜଗତେ ବିଖ୍ୟାତ ସେ ଶ୍ରୀରାମ ନୃପତି ।
ତାହାର ଭାରଯାକୁ ହରି ନେଲା ଲଙ୍କପତି ॥ ୩୬ ॥
ଚଉଦ ମାସ ସୀତା ଅସୁର ପୁରେ ଥିଲା ।
କେସନେ ଜାନକୀ ସତୀପଣ ରଖିଲା ॥ ୩୭ ॥
ଏକ ସ୍ତ୍ରୀ ସେ ସୁନ୍ଦର ଯୁବତୀ ।
ତାହାକୁ କେମନ୍ତେ ରମଣ (ନା) କଲା ଲଙ୍କପତି ॥ ୩୮ ॥
କାହାର ଶକ୍ୟେ ନରୋଧଇ ମଦନ ।
ସୀତାକଇ ମୁହାସ କଉଶୁଲ୍ୟାର ନନ୍ଦନ ॥ ୩୯ ॥
ସାହେର ବାନ୍ଧି ରାମ ଋକ୍ଷ କପିଙ୍କର ମେଳେ ।
ଲଙ୍କାରେ ଅସୁରନ୍ତ ନାଶିଲେ ଅବହେଳେ ॥ ୪୦ ॥
ଦଶଶିର ଛେଦି ସୀତସ୍ୟାକୁ ଆଣିଲା ।
ସେ କାମେମାକ ଯେନ ଅଭିଷେକ ହୋଇଲା ॥ ୪୧ ॥
ଶ୍ରୀରାମ ନ ଜାଣଇ କି ସୀତସ୍ୟାର ଚରିଥ ।
ଗୁପତ କଥା ଗୋପ୍ୟ କଲେ ରଘୁନାଥ ॥ ୪୨ ॥
ଏସନେକ କଥା ଯହୁଂ ରାମଚନ୍ଦ୍ର ଶୁଣିଲେ ।
ମାନଭଗ୍ନ ହୋଇ ବାହୁଡ଼ି ଅଇଲେ ॥ ୪୩ ॥
ନିଜ ପଲଙ୍କେଣ ଉତ୍ୟାନେଣ ଶୋଇ ।
ଉଜାଗରେ ଷଦ ବିର ରସୃଣୀ ପୁହାଇ ॥ ୪୪ ॥
ଦୁଇ ଭାଇନ୍ତ ରାମ ସନଧେ ହକାରଲେ ।
ଆବର ମନ୍ତ୍ରୀ ପ୍ରୋହିତ ବସାଇଣ କହିଲେ ॥ ୪୫ ॥
ସୀତସ୍ୟାର ଅବଗୁଣ କହିଲେ ଦାଶରଥି ।
ସକଳ ଲୋକର ମୁଖୁ ଶୁଣିଲି ବିକୃତି ॥ ୪୬ ॥
ଦୋସାଧୁ ରାଇ ରାମ ଯାହା ଯାହା ପଗ୍ଭରଲେ ।
ସଭାରେ ଲବକୁଶେ ତାହା ଗୀତରେ ଗାଇଲେ ॥ ୪୭ ॥
ଏସନେକ ବଗ୍ଭରନ୍ତେ କେତେହେକ କାଳ ଯାନ୍ତେ ।
ରଜକୀର ମୁଖେ ମନ୍ଦକଥା ଶୁଣିଲେ ସୀତାକାନ୍ତେ ॥ ୪୮ ॥
ତଦଅନ୍ତରେ ରାମ ବଶିଷ୍ଟଙ୍କୁ ପଗ୍ଭରି ।
ରାମକଇ ପ୍ରବୋଧି କହିଲେ ତପସ୍ୱୀ ॥ ୪୯ ॥

---

୩୬. ବିଖ୍ୟାତ—ବିକ୍ଷାତ ; ନୃପତି—ଙ୍କ ଯୁବତୀ (କ) । ୪୦. ଅବହେଳେ—ଅବଳେ (କ) । ୪୮. ରଜକୀର—ରଜକାଣୀ (ଖ), ଶୁଣିଲେ—କହିଲେ (କ) ।

ସୀତାକଇ ଓପ୍ରୋଧେ ବାହାର କର ନ ପାରନ୍ତି ।
ନିଦ୍ରା ନ ମାଡ଼ଇ ଉଗ୍ରତେ ଗଳନ୍ତି ॥ ୫୦ ॥
କେବଣହ୍ନ ଦିନେ ପଲଙ୍କେ ଶୋଇ ଥାନ୍ତେ ।
ଶେଯ୍ୟାରେ ବସି ସୀତୟ୍ୟା ପାଦ ମଞ୍ଜାଳନ୍ତେ ॥ ୫୧ ॥
ଶ୍ରୀରାମ ଧାର୍ମି ନିଶ୍ୱାସ ଛାଡ଼ିଲେକ ଯହୁଁ ।
କରଯୋଡ଼ି ଜାନକୀ ପଚାରନ୍ତି ତହୁଁ ॥ ୫୨ ॥
କିପାଇଁ ହେ ନାଥ ନିଶ୍ୱାସ ଛାଡ଼ିଲ ।
କେବଣ କଥାକୁ ମନେ ବଇରାଗ ପାଇଲ ॥ ୫୩ ॥
[ପୃଥିବୀ ଭିତରେ ତୁମ୍ଭଙ୍କୁ ଷନି ନାହିଁ ସରି ।
ତୁମ୍ଭ ନାମ ଧରନ୍ତେ ଯମଦଣ୍ଡରୁ ତରି ॥ ୫୪ ॥
ପୁତ୍ର ନୋହିଲ ବୋଲି କଲ ବିସ୍ମୟେ ମନ ।
ଶୁଣସି ହେ ନାଥ ମୋହର ବଚନ ] ॥ ୫୫ ॥
ଏବେ ମୋହର ଗର୍ଭେ ହୋଇଛି ଉନମାସ ।
ଛାଡ଼ସି ହେ ନାଥ ମନର ବିରସ ॥ ୫୬ ॥
ଶୁଣିଣ ଶ୍ରୀରାମ ହରଷ ହୋଇଲେ ।
ପ୍ରସାଦ ମାଗ ବୋଲି ଦୟ୍ୟା ଭଣ କହିଲେ ॥ ୫୭ ॥
ସୀତେୟ୍ୟା ବୋଇଲେ ଧନରନୁ କିସ କରିବ ।
ଆନ୍ୟାଂ ଦେବା ଦେବ ବନକୁ ମୁହିଁ ଯିବ ॥ ୫୮ ॥
ସୀତୟ୍ୟାର ବଚନ ଶୁଣିଣ ରଘୁମଣି ।
ମନେ ମନେ ବିଚାର କରନ୍ତି ଚକ୍ରପାଣି ॥ ୫୯ ॥
ଦେଖ ହୋ ପାପ ପାଶ କଇତବ ଯୁବତୀ ।
ବନକଇ ସେ ଇଚ୍ଛା କଲା ଏହାର ମତି ॥ ୬୦ ॥
ଏହାର ଇଚ୍ଛାରେ ସେ ମାଗିଲାକ ଯାହା ।
କର୍ମ ଲିଖ ଲେଖନ ଲଙ୍ଘିବଇ ତାହା ॥ ୬୧ ॥
ଲକ୍ଷ୍ମଣ ହକାର କହନ୍ତି ରଘୁମଣି ।
ସୀତୟ୍ୟାକୁ ଘେନି ବନସ୍ତକୁ ଯାଅ ଏହିକ୍ଷଣି ॥ ୬୨ ॥
ଅମ୍ଭେ ବନସ୍ତରେ ଛାଡ଼ିଣ ଆସିବୁ ।
ଦୟ୍ୟା ଓପ୍ରୋଧ କଛୁ ହି ନ କରିବୁ ॥ ୬୩ ॥
ଶ୍ରୀରାମର ବଚନ ଯହୁଁ ଲକ୍ଷ୍ମଣ ଶୁଣିଲା ।
ସୀତୟ୍ୟାକୁ ଘେନି ସେ ବନସ୍ତକୁ ଗଲା ॥ ୬୪ ॥

୫୨. କର—କରଧର (କ) । ୫୬. ଉନ—ଦେନ (କ) । ୬୦. କଇତବ—କଇତବ । ୬୨. ରଘୁମଣି—ରଘୁମଣ (କ), ଏହିକ୍ଷଣି—ଏହିକ୍ଷଣ (କ) ।

ଦାଣ୍ଡ ଗୃହ୍ଲ ସତ୍ତା ପାଇଲେକ ବ୍ୟଥା ।
ଗୀତେଣ ଲବକୁଶର ଗାଇଲେ ସେ କଥା ।। ୬୫ ।।
ସୀତାଙ୍କୁ ଘେନି ଲକ୍ଷ୍ମଣ ଯାନ୍ତେ ।
ଧୀରେଣ ଅରଣ୍ୟ ଗମଇ ଶୂନ୍ୟ ପଥେ ।। ୬୬ ।।
ଏକ ଦ୍ୱଦଶେନ ସଣ ଏକ ଦଣ୍ଡ ହୋଇଲ ।
ସୀତା କଷ୍ଟ ଦେଖି ଦିବାକର ଯାଇତ ନ ପାରିଲ ।। ୬୭ ।।
ବାହାଡ଼ା ବୃକ୍ଷ ତଳେ ବସିଲେକ ଯାଇ ।
ନିଦ୍ରାଗଲେ ସତ୍ତା ଶରୀର ଶର୍ମ ପାଇ ।। ୬୮ ।।
ସୀତାଙ୍କୁ ନିଦ୍ରା ଗଲେ ଯହୁଁ ଲକ୍ଷ୍ମଣ ଦେଖିଲ ।
ଲେଖରେ ସୀତାଙ୍କର ବଇଗୁଣ ଲେଖିଲ ।। ୬୯ ।।
ଗଛର ଡାଳେ ପତ୍ର ଲମ୍ବାଇଲ ।
ତହୁଁଣ ଲକ୍ଷ୍ମଣ ପ୍ରବେଶ ହୋଇଲ ।
ସେବଣ କଥା ଲକ୍ଷ୍ମଣ ମନେଣ ଭାଳିଲ ।
ଲବକୁଶର ତାହା ଗୀତେଣ ଗାଇଲ ।। ୭୧ ।।
ଶୁଣିଣ ସକଳ ଲୋକେ ଲକ୍ଷ୍ମଣର ମୁଖ ଚାହିଁ ।
ମଥାପୋତି ବସିଲେ ସୁମିତ୍ରାନନ୍ଦନ ନୟନୁ ଲୁହ ବହି ।। ୭୨ ।।
ବଶିଷ୍ଠଙ୍କର ମୁଖ ଚାହିଁ କହନ୍ତି ସୁମିତ୍ରାର ସୁତ ।
ଯାହା ଗାବନ୍ତି ଏ କଥା ସ୍ୱରୂପ ସିଦ୍ଧାନ୍ତ ।। ୭୩ ।।
ବଶିଷ୍ଠେ କହନ୍ତି ତୁହି ଯାହା କଲୁ ।
ଏବେ ସେ କଥା ତଥ୍ୟ କରି ଶୁଣିଲୁ ।। ୭୪ ।।
କେହି ନ କରଇ ନା ଏସନେକ କୃତ୍ୟ ।
ଅନ୍ତ ନର୍ଦ୍ଦ୍ୱାରେ ଯାହା କଲୁ ନଷ୍ଟ ର ପାପଚିତ ।। ୭୫ ।।
ଲକ୍ଷ୍ମଣ କହଇ ତୁ ଶୁଣସି ମହାମୁନ୍ୟ ।
ସ୍ୱାମୀର ବଚନ କେସନେ କରିବି ମୁହିଁ ଆନ ।। ୭୬ ।।
ତେଣୁ ସେ ବନସ୍ତେ ଛାଡ଼ିଣ ଅଇଲି ।
କୁମାରଙ୍କର କଥା କହନ୍ତେ ବଡ ବ୍ୟଥା ପାଇଲି ।। ୭୭ ।।

## ବାଲ୍ମୀକି ଆଶ୍ରମରେ ସୀତା

ବଶିଷ୍ଠେ ପଚାରନ୍ତି ଶୁଣ ବେନି ଭ୍ରାତ ।
ବ୍ୟାସାରଣ ଗାଅ ଏବେ ଦିବ୍ୟ ଗୀତ ।। ୧ ।।

---

୬୯· ବଇଗୁଣ—ବଇଗୁନ । ୭୩. ସିଦ୍ଧାନ୍ତ—ସଜ୍ଞାତ (କ) । ୭୫ ଅନ୍ତ-ନର୍ଦ୍ଦ୍ୱାରେ—ଅନ୍ତଦ୍ୱାରେ (କ) ।

କୀର୍ତ୍ତିକୁମର କହଇ ଶୁଣ ସାବଧାନ ।
ତହୁଁ ଲକ୍ଷ୍ମଣ ଗୁଡ଼ି ଅଇଲେ ବନ ॥ ୨ ॥
ଅନ୍ତରେ ଯେ ଘନ ତୃଣର ହୋଇଥିଲା ।
ସେହିଠାରେ ଢବାଳର ଥିର ହୋଇ ରହିଲା ॥ ୩ ॥
ମନେ ବିଚାରନ୍ତି ଗୁସ୍ୱାଦେବଙ୍କର କାନ୍ତ ।
ଦସ୍ୟା କରି ସୀତାଙ୍କୁ କଅଇ ଅବା ରଘୁନାଥ ॥ ୪ ॥
ଲକ୍ଷ୍ମଣ କହିବା ଯାଏ ଏହିଠାରେ ଥିବା ।
ତେବେ ସେ ମେରୁ ପୃଷ୍ଠକର ଦିବା ॥ ୫ ॥
ତହୁଁ ଲକ୍ଷ୍ମଣ ସୀତାଙ୍କୁ ନବାସି ଅଇଲେ ।
ଶ୍ରୀରାମର ଆଗେ ସେ ଆସିଣ କହିଲେ ॥ ୬ ॥
ସ୍ୱାମୀଦେବ ତୋହର ବଚନ ପ୍ରମାଣେ ଯେ ମୁହିଁ ଗଲି ।
ଅରଣ୍ୟେ ସୀତାଙ୍କର ଗୁଡ଼ିଣ ଅଇଲି ॥ ୭ ॥
ଶ୍ରୀରାମ ଶୁଣିଣ ଅନେକ ଶୋକ କଲେ ।
ମନ୍ତ୍ରୀ ଅମାତ୍ୟେ ମାତୃଗଣେ ଶ୍ରୀରାମର ସନ୍ନିଧେ ମିଳିଲେ ॥ ୮ ॥
ବଶିଷ୍ଠ ମହାମୁନି ବୋଲନ୍ତି ଶ୍ରୀରାମର ପୁରୋହିତ ।
ଅନେକ ପ୍ରବୋଧି କହିଲେ ବ୍ରହ୍ମାସୁତ ॥ ୯ ॥
ଶୁଦ୍ଧ ସୁବର୍ଣ୍ଣ ତୁଳ ପାଞ୍ଚ ବିଶା ।
ଜନେକ ପ୍ରତିମା ଏକ କରାଇଲେ ସୀତାଙ୍କର ସାଦୃଶା ॥ ୧୦ ॥
ଲବକୁଶେ ଶ୍ରୀରାମର ଆଗେ ଗୀତେଣ ଗାବନ୍ତି ।
ସ୍ୱରୂପ କଥା ନଗ୍ରଲୋକେ ଶୁଣନ୍ତି ॥ ୧୧ ॥
ବ୍ରହ୍ମାର ନନ୍ଦିନୀ କଣ୍ଠେ ବସିଅଛୁ ।
ଗୀତ ଗାବନ୍ତି କ୍ରମରେ ନ ଜାଣନ୍ତି କିଛୁ ॥ ୧୨ ॥
କେହୁଣ ବଶିଷ୍ଠ କେହୁଣ ବାଲ୍ମୀକ ।
କେ ସେ ସୀତା-ସତୀ କେ ଏବେ ଜନେକ ॥ ୧୩ ॥
କେବଣ ଶ୍ରୀରାମ କେ ସେ ଦଶରଥ ।
କେବଣ କାଳର କଥା ଏ ନ ଜାଣନ୍ତି ଲବକୁଶ ବେନିଭ୍ରାଥ ॥୧୪
ଲବକୁଶେ ନ ଜାଣନ୍ତି [କେ] ଆପଣା କେ ପର ।
ବିସ୍ତାରି କହନ୍ତି ସୀତାଙ୍କର ବେନି କୁମର ॥ ୧୫ ॥
ଶୁଣିଣ ଶ୍ରୀରାମ ଅଥିର ପଞ୍ଚୁମତ ।
ଲବକୁମର ମୁଖ ଚାହିଁ ପଚାରନ୍ତି ଦାଶରଥ ॥ ୧୬ ॥
ବନସ୍ତେ ଲକ୍ଷ୍ମଣ ଗୁଡ଼ିଣ ଅଇଲେ ।
ତହୁଁଣ ଜାନେକୀ କେବଣ କଥକୁ ଗଲେ ॥ ୧୭ ॥

୭. ଦ୍ୱିତୀୟ ପାଦଟି ଖ ପୋଥିରେ ନାହିଁ । ୧୩. ସୀତାସତୀ—ସୀତାସତ (ଖ) ।

ଲବକୁଶେ କହନ୍ତି ଶୁଣ ସାବଧାନେ ।
ନିଦ୍ରା ଗଲେ ଜାନେକୀ ଶରୀର ବଥା ମାନେ ॥ ୧୮ ॥
ଏଣେ ଶ୍ରୀରାମ କନେକର ସୀତା କରାଇଲା ଯହିଂ ।
ବ୍ରମନେ ଆଦିତ୍ୟ ଚଳିଗଲେ ତହିଂ ॥ ୧୯ ॥
ବନସ୍ତେ ସୀତା ଯେ ଶୋଇଣ ଥିଲେ ।
ନିଦ୍ରାଭଙ୍ଗ ହୋଇ ଚଉକଥ ଗୃହିଂଲେ ॥ ୨୦ ॥
ଯେବଣ ଠାବରେ ଲକ୍ଷ୍ମଣ ଥିଲା ବସି ।
ନ ଦେଖି ଉଚେ ଡାକ ଦେଲାକ ଶୁଭ୍ରକେଶୀ ॥ ୨୧ ॥
କେଣେ ଗଲୁ ଲକ୍ଷ୍ମଣ ମୋତେ ଉପେକ୍ଷି ।
ଭୂମିରେ ପଡ଼ି ଲୋଟଇ ଚନ୍ଦ୍ରମୁଖୀ ॥ ୨୨ ॥
ମୁହିଂ ଏକାଳୀ ସ୍ତ୍ରୀ ଯିବ ଏବେ କାହିଂ ।
ତୋ ·ତହିଂ ସାହାପକ୍ଷ ମୋତେ ଆନ ନାହିଂ ॥ ୨୩ ॥
ସ୍ୱାମୀର ବଚନେ ମୋତେ ବନକଇ ଘେନ ଅଇଲୁ ।
ଏବେ ବନସ୍ତେ କପାଇଂ ପ୍ରାଣ ଗ୍ରୁଡ଼ିଲୁ ॥ ୨୪ ॥
କି ଅବା ବନଜୀବେ ତୋତେ କଲେ ପ୍ରାଣ ନାଶ ।
ତୋତେ ନ ଦେଖି ମୋତେ ନ ଦିଶଇ ଦଶଦିଶ ॥ ୨୫ ॥
ଯେତେକ ବେଦନ କଲେକ ମହାସତୀ ।
ଲବକୁଶେ ତାହା ଗୀତେଣ ଗାବନ୍ତି ॥ ୨୬ ॥
ଯେବଣ ପଦ ଲକ୍ଷ୍ମଣ ତାଳେ ଲମ୍ବାଇ ଅଇଲା ।
ସେ ଲେଖ ପଢ଼ି ସୀତାସ୍ତ୍ରୀ ବେଦନ ଗ୍ରୁଡ଼ିଲା ॥ ୨୭ ॥
ବନଜୀବେ ଯହିଂ ସତୀକ ଦେଖିଲେ ।
ଆଧାର କରିବା ବୋଲି ଧାଇଂଣ ଅଇଲେ ॥ ୨୮ ॥
ସୀତାସ୍ତ୍ରୀର ସ୍ୱରୂପ ଦେଖି ହୋଇଲେ ମୋହି ।
କାହାର ଘରଣୀ ବୋଲି ପୁଚ୍ଛିଲେ ସନଧ୍ୟେଣ ଯାଇ ॥ ୨୯ ॥
ବନ ଜୀବ ଦେଖି ସତୀ ମନେ ଭୟ କଲା ।
ଶ୍ରୀରାମର ଘରଣୀ ବୋଲିଣ ସେ କହିଲା ॥ ୩୦ ॥
ରାମର ଘରଣୀ ବୋଲି ଯହିଂ ବନଜୀବେ ଶୁଣିଲେ ।
ରାଜେକ ପାହାଣ୍ଟ ହୋଇ ବେଢ଼ିଣ ବସିଲେ ॥ ୩୧ ॥
ରଜନୀ ପ୍ରଭାତ ହୋଇଲାକ ଯହିଂ ।
ବନଜୀବେ ବାଟ କଢ଼ାଇ ନେଲେ ତହିଂ ॥ ୩୨ ॥

---

୨୨· ଲୋଟଇ—ରୋବଇ (ଖ) ।   ୨୩· ଏକାଳୀ—ଏକଇ (ଖ) ।
୨୫· ଦଶଦିଶ—ଦଶ ଦିବସ ।

ଦୁଃଖ ପାଇ ଜାନକୀ ଗୃଶମାସ ବୁଲିଲି ।
ବାଲ୍ମୀକ ମହର୍ଷିଙ୍କର ଆଶ୍ରମେ ମିଳିଲି ॥ ୩୩ ॥
ସୀତାଙ୍କୁ ଦେଖି ବାଲ୍ମୀକ ଝିସ ବୋଇଲେ ।
ଲବକୁଶ ତାହା ଗୀତେଣ ଗାଇଲେ ॥ ୩୪ ॥
ବାଲ୍ମୀକ ବନଜୀବଙ୍କୁ ବାହୁଡ଼ାଇ ।
ସୀତାଙ୍କୁ ପଚାରଇ ସନ୍ଧ୍ୟେ ବସାଇ ॥ ୩୫ ॥
କିପାଇଁ ଆଣି ତୋତେ ଶ୍ରୀରାମ କୋପ କଲି ।
ଏ ବନସ୍ତେଣ ତୋତେ କିପାଇଁ ଛାଡ଼ିଲି ॥ ୩୬ ॥
ସୀତାୟା କହଇ ନାହିଁ ମୋହର ଦୋଷ ।
ଧ୍ୟାସ୍ତେ କରି ଜାଣିଲେ ପିତାମହର ଶିଷ ॥ ୩୭ ॥
ସୀତାଙ୍କାକଇ ଆଶ୍ରମେ ଦଶ ଦିବସ ରୁହାଇଲେ ।
ତଦଅନ୍ତରେ କଟକେକ ଆଶ୍ରମକୁ ନେଲେ ॥ ୩୮ ॥

## ଲବକୁଶ ଜନ୍ମ

ବାଲ୍ମୀକ ମହର୍ଷି ବାଟ କଢ଼ାଇ ନିଅନ୍ତି ।
ପଛେଣ ମହାସତୀ ଧୀରେ ଧୀରେଣ ଚାଲନ୍ତି ॥ ୧ ॥
ଅଷ୍ଟି ଏ ଦିବସ ବାଟେ ଚାଲନ୍ତେ ।
ବଇଦେହୀ ମଣ୍ଡଳ ସନ୍ଧ୍ୟେ ହୋଇଲେ ॥ ୨ ॥
ବାଟ ଚାଲିବାକୁ କୋଣେ ମାନ୍ଦ ଅଛୁ ।
ଶାଳ ବୃକ୍ଷର ତଳେ ଫୁଟି ବସିଲେ ଶୁଭ୍ରକେଶୀ ॥ ୩ ॥
ପେଟ ବଥାଇ ବକଲେ କାନ୍ଦଇ ସୀତା ।
ଦେଖିଣ ବାଲ୍ମୀକ ମନେଣ ମହାଚିନ୍ତା ॥ ୪ ॥
କଷ୍ଟ ପାଇ ଜାନକୀ ରାମ ରାମ ସୁମରଇ ।
ଦୁଇ ନୟନରୁ ଲୁହ ଝରି ଝରି ବହଇ ॥ ୫ ॥
ସୀତାର ଦୁଃଖ ଯହୁଁ ରାମଚନ୍ଦ୍ର ଶୁଣିଲେ ।
ଆପଣାର ଶିରେ ନେଇ କରି ବେକ ଛାଡ଼ିଲେ ॥ ୬ ॥
ସଭାରେ ଲୋକେ ସମସ୍ତେ କାନ୍ଦନ୍ତି ।
ଲବକୁଶ ଦୁଇଭାଇ ଗୀତେଣ ଗାବନ୍ତି ॥ ୭ ॥
ସୀତାର ରୋଦନ ଯହୁଁ ବାଲ୍ମୀକ ଶୁଣିଲେ ।
ମଥା ଆଉଂଚି ମହର୍ଷି କହିଲେ ॥ ୮ ॥

୩୪. ଝିସ—କିସ ।

କାପା ବକଲେ ଗୋ ରୋଦନ କରସି ।
ଏ ସିଆଡ଼ି ଲତା ଦୁଇ କରେ ଦୃଢ଼ କର ଧରସି ॥ ୯ ॥
ମୁନିବର ବଚନ ଯହୁଂ ସତୀ ଶୁଣିଲ ।
ଆନନ୍ଦି ଦୁଇ ହସ୍ତେ ସିଆଡ଼ି ଲତା ଧଇଲ ॥ ୧୦ ॥
ତତକ୍ଷଣେ କୁମରେ ହୋଇଲାକ ଜାତ ।
ଯେସନେକ ଦଶଇ ଅବା ବାଳ ଆଦିତ୍ୟ ॥ ୧୧ ॥
ପୁଣ ମହାସତୀର ପେଟ ବଥାନ୍ତେ ।
କୁଶବଟୁ ମନ୍ତ୍ରୀ ଦେଲେ ମୁନି ସୀତୟାର ଅଗ୍ରତେ ॥ ୧୨ ॥

ଏ କୁଶବଟୁ ତୋହର ପେଟରେ ପଖ ।
ଏହାକ୍ଷଣି ବଥା ହୋଇବ ଉସ୍ୱାସ ॥ ୧୩ ॥
ବାଲମୀକଙ୍କର କଥା ଯହୁଂ ସୀତୟା ଶୁଣିଲ ।
କୁଶବଟୁ ନେଇ ପେଟରେ ପଂଖିଲ ॥ ୧୪ ॥
ତତକ୍ଷଣେ ପୁଣି ପୁଏକ ଉପୁଜିଲେ ।
ଏକ ସାଦୃଶ ଦଶନ୍ତି ଦୁଇ ତନୁଜ ଭଲେ ॥ ୧୫ ॥
ଶୁଣିଣ ଶ୍ରୀରାମ ମନେଣ ଅଥିରଇ ।
ମାନେଣ ମଥା ପୋତ ଦସିଣ ଝୁରଇ ॥ ୧୬ ॥

ବଦନ ଦଶଇ ମହାଅନଲ ଜ୍ୟୋତ ।
ଦୁଇ ନୟନରୁ ଲୁହ ଗଳି ପଡ଼ଇ ଯାଇ କ୍ଷିତ ॥ ୧୭ ॥
ବଶିଷ୍ଠଙ୍କର ମୁଖ ଚାହିଂ କହନ୍ତି ରଘୁନାନ ।
ମୋହ ସର ପାପୀ ନାହିଂ ଅନ ଜନ ॥ ୧୮ ॥
ଶୁଣ ମୁନି ମୋହର ଦେହେଣ ଥାନ୍ତେ ଜୀବତ ।
ଏତେ କଷ୍ଟ ପାଇଲ ଜନେକର ଦୋହିତ ॥ ୧୯ ॥

ପଶୁଜନ୍ତୁ ଜାଣି ପୁଥନ୍ତି ଜନ୍ମ କଲ ।
ଅଛ ବଡ଼ କଷ୍ଟ ତ ମୋହରେ ପାଇଲ ॥ ୨୦ ॥

ଅଦୋଷେ ସୀତୟାକୁ ମୁ କଲି ଅପାଂଜ ।
କୁଳ ମଣ୍ଡନ ହୋଇଲ ମୋହର ବେନି ତନୁଜ ॥ ୨୧ ॥

---

୯· କରସି—କରୁଚ (ଖ) । ୧୩· ପଖ—ପଂଖସି (କ) ; ହୋଇବ ଉସ୍ୱାସ—ଉଶ୍ୱାସ ହୋଇବସି (କ) । ୧୪· ନେଇ—ନେନେଇ । ୧୬· ମାନେଣ—ମହନେ (ଖ) । ୧୭· ଜ୍ୟୋତ—ଯୋତ । ୧୯· ଜୀବତ—ଜୀବନ୍ତ (କ) ; ଦୋହିତ—ଦୋହିତା (କ) । ୨୦· ପଶୁଜନ୍ତୁ—ପୁଷ୍ପଜନ୍ମ (କ) ; ଅଛବଡ଼—ଅସହ୍ୟ (ଖ) । ୨୧· ଅପାଂଜ—ଅପାଦ (ଖ) ।

ତିନି ଭାଇଙ୍କର କୋଳେ ତିନି ତନୁଜ ଜାତ ।
ପଞ୍ଚ କୁମରେ ହୋଇଥାନ୍ତେ ବିଖ୍ୟାତ ॥ ୧୨ ॥
କେସନେକେ ମୁହିଂ ଦୁଇ ନନ୍ଦନଙ୍କୁ ଦେଖିବି ।
ଖେ ମହର୍ଷି କିସ ବୁଦ୍ଧି କରିବ ॥ ୧୩ ॥
ବଶିଷ୍ଠେ କହନ୍ତି ସେ କାଳେ ମୋହର ବୁଦ୍ଧି (ନ)କଲୁ ।
ଏବେ ଜମା ମନେ ବିକଳ ହୋଇଲୁ ॥ ୧୪ ॥
ଏବେ ଥିର ହୋଇ ଗ୍ରନ୍ଥ ଶୁଣିମା ।
ତଦଅନ୍ତ କରି ପରମାର୍ଥି ଜାଣିମା ॥ ୧୫ ॥
ବଶିଷ୍ଠଙ୍କର ବଚନ ଶୁଣି ପୁଛନ୍ତି ଦାଶରଥି ।
ଦୁଇ ପୁତ୍ରନ୍ତ ଦେଖି କିସ କଲେକ ସତୀ ॥ ୧୬ ॥

## ପିତ୍ରାଳୟରେ ସୀତା

ଲବକୁଶେ ଗାବନ୍ତି ସୁସ୍ୱରେଣ ଗୀତ ।
ଯହୁଁ ସେ ଦେଖିଲା ସୀତାୟୀ ଏକ ରୂପ ଦୁଇ ପୁତ୍ର ॥ ୧ ॥
ଶ୍ରୀରାମ ପ୍ରାୟେ ଦିଶନ୍ତି ଦୁଇ ମୂରତି ।
ସକଳ କଥା ଜାଣି ହରଷେ କଲା ମତି ॥ ୨ ॥
ଭୂମିରେ ପଡ଼ି କୁମାରେ କରନ୍ତି ରୋଦନ ।
ପୁତ୍ରନ୍ତି ଦେଖି ବାଲ୍ମୀକି ତପୋଧନ ॥ ୩ ॥
ବାଏଂଶ ବୃକ୍ଷର ପାଢଏ ଆଣିଲେ ।
ସୀତାୟାର ହାତେ ଦେଇ ମହର୍ଷି କହିଲେ ॥ ୪ ॥
ନାଭି କାଟ ସୀତା ଏବେ ବେଣୁ ପାଢଆ ଦେନ ।
ତୋ ତନୁଂ ଏଥେ ଆନ ନାହିଂ ନା କାମେନା ॥ ୫ ॥
ମୁନିବର ବଚନ ଯହୁଁ ସତୀ ଶୁଣିଲା ।
ଦୁଇ କୁମରଙ୍କର ନାଭି କାଟିଲା ॥ ୬ ॥
ନନା ତୀର୍ଥଜଳ କମଣ୍ଡଲେ ଭରିଥିଲେ ।
ତାହା ଆଣି କୁମରଙ୍କର ଶରୀର ପଖାଳିଲେ ॥ ୭ ॥
କୋମଳ ତରୁପତ୍ର ଦେଇ ପୁଛନ୍ତି ତପୋଧନ ।
ଏଥେ ଶୁଆ ତୋହର ବେନି ନନ୍ଦନ ॥ ୮ ॥

---

୧୨. ତିନି—ବେନି ବେନି (ଖ) ; ପଞ୍ଚ—ଏ (ଖ) ; ବିଖ୍ୟାତ—ବିକ୍ଷାତ ।
୧୩. ଦେଖିବି—ଦେଖିବ (କ) । ୧୫. ଖ ପୋଥିର ଦ୍ୱିତୀୟ ପାଦର ପାଠ :—
ତଦନ୍ତରେ ପୁସନ୍ତି କଥା ପଶୁରିବା । ୪. ପ୍ରଥମ ପାଦର ପାଠ କ ପୋଥିରେ :—
ବାଉଂଶ ପାଢ଼ଆ ଦେନ ନାଭି ଛେଦିଲେ । ୫. କାଟ—କାଟି (କ) ; ଆନ
ନାହିଂ—ନାହିଂ (କ) ।

ଏପତେ କଷ୍ଟ ତୁମ୍ଭ ବନସ୍ତେ ପାଇଲୁ ।
ରତ୍ନ ପ୍ରତିମା ଜାଣି ପୁଅ ଜାତ କଲୁ ॥ ୯ ॥
ତନୟନ୍ତ ଦେଖି ଦୁଃଖ ପାସୋର ।
ମନେଣ ବଥା ଆଉ ବଇରାଗ ନ କର ॥ ୧୦ ॥
ମୁନିଙ୍କର ବଚନ ଶୁଣି ଶ୍ରୀରାମର ରାଣୀ ।
ଶୀଳପଣ ଶୋଧ କଲେ ଜନେକ ଦୁଲଣୀ ॥ ୧୧ ॥
ଦୁଇ ପୁଅନ୍ତ ଶୁଆଇ ଉପରେ ପଣନ୍ତ ଘୋଡ଼ାଇଲା ।
ପୁଅନ୍ତ କୋଳେ ଲଇ ସତୀ ଆପଣେ ସୁତିଲା ॥ ୧୨ ।
ଶୁଣିଣ ଶ୍ରୀରାମ ଉପଚେଲ୍ଲୁ ଗୃହାନ୍ତ । . - -
କୋଟ ଅଗ୍ନି ଜାଣି ଶରୀର ଦହନ୍ତ ॥ ୧୩ ॥
ପାଟର ସୁପାଡ ହଂସୁଲୀର ତୂଳୀ ।
ତହିଂରେ ଶୟନ କରଇ ଜନେକର ଦୁଲାଳୀ ॥ ୧୪ ॥
ତାହାର ପୁଅକଇ ପନେଣ ଶୟନ ।
କେ ବିହ ବିଧାତା ତୁହି ସେ କରୁ ଏସନେକ ହୀନ ॥ ୧୫ ॥
ପୁଣ ସାଷ୍ଟାମ ହୋଇ ପୁଛନ୍ତି ଗୃପହସ୍ତ ।
ତହୁଂ କସ କଲ ଜନେକ ଦୋହିତ ॥ ୧୬ ॥
ଶ୍ରୀରାମର ବଚନ ଶୁଣି ଲବକୁମର ଗାବଇ ଗୀତ ।
ନିଦ୍ରା ଗଲା ସୀତାସ୍ୱା ସୁସ୍ଥ ହୋଇଣ ଚଉ ॥ ୧୭ ॥
ସନଧ୍ୟେ ବସିଛନ୍ତି ବାଲମୀକ ମହରିଷି ।
କନ୍ଦମୂଳ ନିମନ୍ତେ ବନକଇ କରାତେକ ଆସି ॥ ୧୮ ॥
ଜନେକ ରାଜ୍ୟର ଯେ ସୁରେଖା ନାମେ ଶବର ।
ତାହାକଇ ଦେଖିଲେ ବାଲମୀକ ମୁନିବର ॥ ୧୯ ॥
ସନଧ୍ୟକଇ ହକାଣ ପଚାରନ୍ତି ଯତ୍ନ ।
କି ରେ କରାତ କାହିଂ ତୋର ସ୍ଥିତି ॥ ୨୦ ॥
ଶବର କହଇ ଶୁଣସି ମୁନିବର ।
ବଇଦେହୀ ନଗରେ ଆମ୍ଭର ନିଜ ଘର ॥ ୨୧ ॥
ବାଲମୀକ ମହରିଷି ଶବରକୁ ବାଇ(ଲେ) ।
ବିଶ୍ୱାସ କଥା ଧୀର କରି କହିଲେ ॥ ୨୨ ॥
ମୋହର ବଚନ ଜନେକକୁ କହିବୁ ।
ଏହିକ୍ଷଣି ତାହାକୁ ଘେନିଣ ଆସିବୁ ॥ ୨୩ ॥
ବାଲମୀକ ବଚନେ ଶବର ବେଗେ ଗଲା ।
ଜନେକ ରାଜରିଷିର ଆଗେଣ କହିଲା ॥ ୨୪ ॥

---

୧୮· କରାତେକ—କରାନ୍ତେକ (କ)

ଭ୍ରମର ତହିଁଙ୍କ ବାଲମୀକ ଆସୁଥିଲେ ।
ଶ୍ରମ ପାଇ ସେ ଆସିତ ନ ପାରିଲେ ॥ ୨୫ ॥
ବାଟେଣ ଫୁଟି ସେ ଅଛନ୍ତି ବସି ।
ଶୁଣିଣ ହରଷ ହୋଇଲ୍ଲ ଜନେକ ରାଜର୍ଷି ॥ ୨୬ ॥
ଅନେକ ତପୋଧନ ସଙ୍ଗତରେ ଘେନ ।
ଶବର ପଛରେ ଆସନ୍ତି ଜନେକ ମହାମୁନ ॥ ୨୭ ॥
ଯେବଣ ତରୁତଳେ ବାଲମୀକେ ବସିଛନ୍ତି ।
ନଦ୍ୱାରେ ସୀତସ୍ୱୀ ଓହାଡ଼େ ଅଚେବନ ମଠ ।
ସେହି ତରୁତଳେ ବସାଇଲ ଜିରାଠ ॥ ୨୮ ॥
ବାଲମୀକକୁ ଜନେକ ସହୁଂ ଦେଖିଲ୍ଲ ।
ଚରଣ ଧରି ଭୂମିରେ ପ୍ରଣମିତ ହୋଇଲ୍ଲ ॥ ୨୯ ॥
ସମସ୍ତଙ୍କର ମହର୍ଷି କଲ୍ୟାଣ ବାଞ୍ଛିଲେ ।
ଜନେକର ହସ୍ତ ଧରି ନଢରେ ବସାଇଲେ ॥ ୩୦ ॥
ଜନେକ କହଇ ଶୁଣ ବ୍ରହ୍ମାର ନନ୍ଦନ ।
ତୋହର ମୁଖ ଦେଖି ମୋହର ସୁଫଳ ଜୀବନ ॥ ୩୧ ॥
ଦୁସହ ଅରଣ୍ୟରେ ଚଳି ନ ପାରିଲୁ ।
ତୋହର ଶରୀରକଇ ପ୍ରମାଦ ପାଇଲୁ ॥ ୩୨ ॥
ଆସ ଆସ ମହାଋଷି ମୋହର ପୁରକଇ ଯିବା ।
ତୋହର ଚରଣ ତଳେ ମୁଂ କରିଥିବ ସେବା ॥ ୩୩ ॥
ଜନେକର ମୁଖଁ ଶୁଣିଂ କହନ୍ତି ବ୍ରହ୍ମସୁତ ।
ଶୁଣସି ହେ ତପସ୍ୱୀ ରାଜା ମୋହର ବାରତ ॥ ୩୪ ॥
ଯେବଣ ଅର୍ଥେ ଅଇଲ ତୋହର ପୁର ।
ଦେଖିଣ ଶୋଚନା ନ ହୁଣ କରୁ ମୁନିବର ॥ ୩୫ ॥
ତୋହର ଦୋହିତା ଶ୍ରୀରାମର ଘରଣୀ ।
ବନସ୍ତେ ତାହାକୁ [ରାମ] ନବାସିଲ ଆଣି ॥ ୩୬ ॥
ବନସ୍ତେ ସୀତସ୍ୱା ବଡ଼ ଦୁଃଖୀ ହୋଇଲ ।
ଗର୍ଭବାସ ହୋଇ ଅନେକ କଷ୍ଟ ପାଇଲ ॥ ୩୭ ॥
ବନଜାବେ ବାଟ କଢ଼ାଇ ଆଣିଲେ ।
ମୋହର ଆଶ୍ରମେ ଛୁଡ଼ିଣ ସେ ଗଲେ ॥ ୩୮ ॥
ତୋହର ଆଶ୍ରମକୁ ନେଉଣ ମୁହିଂଥିଲ ।
ସୀତାର ପେଟ ବଥାଇଲ୍ଲ ନେଇ ନ ପାରିଲ ॥ ୩୯ ॥

---

୨୮. ଦ୍ୱିତୀୟ ପାଦଟି ଖ ପୋଥିରେ ନାହିଁ ଓ ଶେଷ ପାଦଟି କ ପୋଥିରେ ନାହିଁ
୩.୨. ଶରୀରକଇ ପ୍ରମାଦ—ସରିକଇ ପ୍ରସାଦ । ୩୫. ପୁଣ—ପୁଣି ।

ଦୁଇ ପୁତ୍ର ଏହିଠାରେ ହୋଇଲେକ ଜାତ ।
ତେଣେ ସେ ସୀତାଙ୍କୁ ଦେନ ବସିଅଛୁ ଏଥ ॥ ୪୦ ॥

ଶୁଣି ଜନେକ କହଇ ବାଲ୍ମୀକ ମୁଖ ଚାହିଁ ।
କେବଣ ଠାବରେ ଅଛୁ ମୋହର ତନୟୀ ॥ ୪୧ ॥

ବାଲ୍ମୀକ ମହର୍ଷି ଧରି ଜନେକର ହସ୍ତ ।
ନେଇଣ ଦେଖାଇଲେ ଦୁଇ ପୁତ୍ରଙ୍କର ମାତ ॥ ୪୨ ॥

ଦେଖିଣ ଜନେକ ଦୁଃଖେ ପଡ଼ିଲେକ ମୂର୍ଚ୍ଛା ।
ଶରୀର ଅଚେତନ ହୋଇଲା ନ ଜାଣଇ ଇଚ୍ଛା ॥ ୪୩ ॥

ମୁଣ୍ଡେ ପାଣି ସିଞ୍ଚିଲେ ବାଲ୍ମୀକ ମୁନିବର ।
କୋଳାଗ୍ରତ କରି ତୋଳିଲେ ସୁଧୀର ॥ ୪୪ ॥

କ୍ଷଣେକେ ଜନେକ ପାଇଲେ ଚେତନ ।
ମନ ଅଗ୍ନି ଜାଣି ଦହଇ ଘନ ଘନ ॥ ୪୫ ॥

ଶରୀର ଅଚେତନ ମୁନିର ହୋଇଲା କାୟେ ।
ଦେଖିଣ ରୋଦନ ସମସ୍ତ ଋଷି ଜାଏ ।
ପୁଣି ଚେତନା ଲଭି ରୋଦଇ ଜନେକ ମହାରାୟେ ॥ ୪୬ ॥

ଉଚେ ରୋଦନ ଦେଖି ଚେତିଲେକ ସୀତା ।
ମୁଖ ତୋଳି ଚାହିଁଲା କାନ୍ଦୁଅଛୁ ପିତା ॥ ୪୭ ॥

ଜନେକ ଦେଖି ସତୀଙ୍କର ରୋଦନ ।
ମଳୀଣ ଚନ୍ଦ୍ର ଜାଣି ଦିଶଇ ବଦନ ॥ ୪୮ ॥

ଭେ ତାତ ପଶୁଜୀବ ଜାଣି ହୋଇଲୁକ ମୋହର ଦେହ ।
ବନସ୍ତେ ବୁଲିଲି ସଙ୍ଗେ ନାହିଁ କେହି ॥ ୪୯ ॥

ମହତ ବିଚକ୍ଷଣ ଏ ବାଲ୍ମୀକ ତପୋଧନ ।
ଏହାର ପ୍ରସାଦେ ପାଇଲି ଜୀବନ ॥ ୫୦ ॥

ଶୁଣିଣ ଶ୍ରୀରାମ ବିକଳିତ ମନ ।
ସଭାର ଲୋକ ସମସ୍ତେ ରୋଦନ କରନ୍ତି ॥ ୫୧ ॥
ବିଷାଦ ହୋଇଲେ ବଶିଷ୍ଠ ମହାମୁନ୍ୟ ।
ଲୁହ ଗଳି ପଡ଼ଇ ସବୁରି ନୟନ ॥ ୫୨ ॥

---

୪୧. ତନୟୀ—ତନଇ । ୪୬. ଏହାର ଦ୍ୱିତୀୟ ପାଦଟି ଖ ପୋଥିରେ ନାହିଁ ଓ ଶେଷ ପାଦଟି କ ପୋଥିରେ ନାହିଁ । ୫୦. ବିଚକ୍ଷଣ—ବିବେକ (ଖ) ।

ଭୂଅ ଲକ୍ଷ୍ମଣ କାନ୍ଦନ୍ତି ମାନଭର ।
ସମସ୍ତ ଜନ ସହୁଂ ହୋଇଲେ କ୍ରୋଧଭର ।
କାବ୍ୟ ବିଶ୍ରାମିଲେ ଦୁଇ କୁମର ॥ ୫୩ ॥
ମନେ ମନେ ଝୁରଇ ଦଶରଥ କୁମର ।
ମୋ ତହୁଂ ନିର୍ଦ୍ଦୟ ନାହୁଂ ଆନ ନର ॥ ୫୪ ॥
ଏସନେକ ଚଣ୍ଡାଳ କୃତ ମୁହିଂ କଲି ।
ଲୋକଙ୍କର କଥା ଶୁଣି ଭରସା ଉପେଖିଲି ॥ ୫୫ ॥
ସାମାନ୍ୟ ଲୋକେହି ନ କରନ୍ତିନ ଏହା ।
କେବଣ ଦଇବ ମୋତେ ହୋଇଲାକ ଅସାହା ॥ ୫୬ ॥
ସୀତା ତହିଂ କଷ୍ଟୀ ମୁହିଂ ଏଣେ ଦୁଃଖୀ ।
ମୋହର କୃତେ ସୀତାୟା ମୋହର ନମାଂଖୀ ॥ ୫୭ ॥
ଶ୍ରୀରାମ ମନେ ଖେଦ ବଶିଷ୍ଟ ଜାଣିଲେ ।
ଲବକୁମର ମୁଖ ଗୃହୁଂ ସମାସ୍ୟା ଯେ ଦେଲେ ॥ ୫ ॥
ଜନେକ ରାଜ୍ୟ ଋଷି ଯେ ସୀତାୟାକୁ ଦେଖିଲା ।
ତଦଅନ୍ତରେ ସେ ପୁତ୍ର ଦୁହିଂଙ୍କି ଜସ କଲା ॥ ୫୯ ॥
ବସ୍ତାର କହ ଗ୍ରାମାୟେଣ ଚରିତ ।
ଅଢ଼ ପବିତ୍ର କଥା ଏ ପୁଣ୍ୟ ପବିତ୍ର ॥ ୬୦ ॥
ବଶିଷ୍ଠଙ୍କ ବଚନେ ଲବକୁମାରଇ ।
ସୁସ୍ୱରେ ହୁଂକାରନ୍ତି ରାଗ ମଲାରଇ ।
ଉଚେଣ ନାଦ କରଇ ପ୍ରକାଶଇ ॥ ୬୧ ॥
ଶୁଣିଣ ସଭାଲୋକେ ତବଦ ହୋଇଲେ ।
ଏକ ଆରେକକଇ ସମାସ୍ୟା ନ ଦେଲେ ॥ ୬୨ ॥
ଲବକୁଶେ କହନ୍ତି ଶୁଣ ସର୍ବଜନେ ।
ଜନେକ(ଙ୍କୁ) କହନ୍ତି ବାଲ୍ମୀକ ତପୋଧନେ ॥ ୬୩ ॥
ମୋହର କଥା ପରମାଣି ନ ପାରିଲୁ ।
ଦୋହିତାକୁ ଦେଖି ଶୋକଭର ହୋଇ(ଲୁ) ॥ ୬୪ ॥
ଏବେ ପୁତ୍ର ଦୁଇ ଗୋଟି ସୀତାୟା ସହିତେ ।
ତୋହର ଆଶ୍ରମକୁ ଗୃଲ ଯିବା ତୁରିତେ ॥ ୬୫ ॥

---

୫୩. ମାନଭର—ମାନଭରେ (କ) ; ଦ୍ୱିତୀୟ ପାଦଟି କ ପୋଥିରେ ନାହିଁ ; କୁମର—କୁମରେ (କ) । ୫୫. କୃତ ମୁହିଂ—ମୁହିଂ କୃତ । ୫୬. ଲୋକେହି—ଲୋକେହିନ ; ଅସାହା—ସାହା । ୫୮. ସେ—ନ । ୬୨. ଆରେକକଇ—ଆରେକଇ ।

ତୋହର ଭରଯାକୁ ସୀତସ୍ୟା ଦେଖି ।
ଯେତେ କଷ୍ଟ ପାଇଲା ସେ ଦୁଃଖ ଉପେକ୍ଷି ॥ ୬୬ ॥
ମାତାର କାନ୍ଦନ୍ତେ ପୁତ୍ରକଇ ପ୍ରୟାସ ।
ଏତେ ଯଶ ତୋହର ହୋଇବ ବିନାଶ ॥ ୬୭ ॥
ବାଲ୍ମୀକ କଥା ଶୁଣି ଜନେକ ମହାମୁନ୍ୟ ।
ସୀତସ୍ୟା ଦୁଇପୁତ୍ରନ୍ତ ଘେନ ଅଇଲ ନଜ ଭୁବନ ॥ ୬୮ ॥
ଅନ୍ତଃପୁରେ ନେଇ ପୁତ୍ରନ୍ତ ପ୍ରବେଶ କଲା ।
ଧାଈ ଲଗାଇ ସୀତସ୍ୟାର ଦୁଇ ପୁତ୍ରନ୍ତ ପ୍ରତପାଳିଲା ॥ ୬୯ ॥
ଅନ୍ତ ଓଗୁଇଲେ ନେତର ସୁପାତ ।
ବଂଶ ଘରେ ଦୁଇ କୁମାରନ୍ତ ଦୋଳ ଶୁଆବନ୍ତ ॥ ୭୦ ॥
ଋଷିଙ୍କର କାମେଣୀ ଜନେକର ନବରେ ମିଳିଲେ ।
ପାଟ ନେତଟରେ ଦୋଳ ମଣ୍ଡିଲେ ॥ ୭୧ ॥
ନାମ ସଙ୍କେତ ବଗ୍ଭର କରନ୍ତ ।
ଦୁଇ କୁମାରଙ୍କୁ ଲବ କୁଶ ନାମ ଦେନ୍ତ ॥ ୭୨ ॥
ଦନୁ ଦନୁ କ୍ରମରେ ହୋଇଲେ ବର୍ଦ୍ଧମାନ ।
ଶ୍ରୀରାମ ସଙ୍ଖାତ ଦଶନ୍ତ ସୀତସ୍ୟାର ବେନ ନନ୍ଦନ ॥ ୭୩ ॥
ଶୁଣିଣ ସଭ ଲୋକେ ଶ୍ରୀରାମ ମୁଖ ଗୃହାନ୍ତ ।
ଦୁଇ କୁମାରନ୍ତ ଉପଲେଖନ୍ତ ॥ ୭୪ ॥
ଏକ ଆରେକକୁ କହନ୍ତ ବଚନ ।
ହୃଦରେ ବଗ୍ଭରନ୍ତ ଅବା ଶ୍ରୀରାମ ନନ୍ଦନ ॥ ୭୫ ॥
ଏଇ ଦୁଇ ପୁତ୍ର ଅବା ସୀତସ୍ୟାର ସୁତ ।
ଶ୍ରୀରାମ ପଟାନ୍ତର ଏ ଦଶନ୍ତ ସଙ୍ଖାତ ॥ ୭୬ ॥
କେ କହଇ ଅବା କେମନ୍ତେ ବୁଝିବା ।
ଗାସ୍ୟେଣ ଦୁଇଗୋଟି କେମନ୍ତେ ରଜାର ପୁତ୍ରକଇ ପଟାନ୍ତର ଦେବା ॥ ୭୭ ॥
କେ କହଇ ରାମ ଯେବେ କଣଅଛ୍ଛ ପୁନ୍ୟ ।
ତେବେ ସେ ଏହାକଇ ପାଇବ ନା ନନ୍ଦନ ॥ ୭୮ ॥
ତନ ଭାଇଙ୍କର ଉପୁଜିଲା ତନ ନନ୍ଦନ ।
ରାମର ମନ୍ଦପଣେ ତନସ୍ୟ ନ ଦେଖିଲେ ବେନ ନୟନ ॥ ୭୯ ॥

---

୬୬. ଭରଯାକୁ ସୀତସ୍ୟା—ସୀତସ୍ୟା ଭରଯାକୁ । ୬୭. ପ୍ରୟାସ—ପ୍ରାସ (ଖ) । ୭୦. ବଂଶ—ଏକବଂଶ (କ) । ୭୨. ସଙ୍କେତ—ସକୋଂତେ । ୭୪. କୁମାରନ୍ତ ଉପଲେଖନ୍ତ—କୁମାରଙ୍କର ମୁଖକୁ ଅନାନ୍ତ (ଖ) । ୭୬. କହଇ ଅବା—କହିବ ଏହା (ଖ) । ୭୮. କହଇ—ହଇ (କ) । ୭୯. ତନୟନ—ତନୟନ୍ତ ।

ଏସନେକ ଜୀହ୍ନନ୍ତେ ହୋଇଲା ଚହଳ ।
ସବୁଙ୍କୁ ନଶୋଧ କଲେ ବ୍ରହ୍ମାର ଦୂଲାଳ ॥ ୮୦ ॥

## ଦ୍ୱିତୀୟ ଅଗ୍ନି ପରୀକ୍ଷା

ସଭାରେ ଲୋକେ ନଶବଦ ହୋଇଲେ ସହୁଁ ।
ଲବକୁମର ଗୀତ ବଖାଣ କରନ୍ତ ତହୁଁ ॥ ୧ ॥
ଏମନେକେ ଛତ୍ର ମାସ ସହୁଁ ହୋଇଲ ।
ଜନେକ ମହର୍ଷି ସୀତାକୁ ନକାଶ ପୁଚ୍ଛିଲ ॥ ୨ ॥
କେବଣ ଦୋଷ ରୁ ସ୍ୱାମୀଙ୍କ କଲୁ ।
ଶ୍ରୀରାମ ନବରୁ କେମନ୍ତେ ବାହାର ହୋଇଲୁ ॥ ୩ ॥
ଅମଳାଣ ସୂର୍ଯ୍ୟ ବଂଶ ସେ ଜଗତେ ବିଦିତ ।
ଶ୍ରୀରାମ ଧାର୍ମିକ ଅକୋପିତ ଚିତ୍ତ ॥ ୪ ॥
ନସ୍ୱତେ ଯୁବତୀ ହୁଅନ୍ତ ନା ଶଙ୍କସ୍ଥାନ ।
ତୋହର ଦୋଷ ନୋହିଲେଙ୍କ ଉପେକ୍ଷିବେ ରଘୁନାନ ॥୫॥
ସୀତସ୍ୱା କହଇ ସଲଜ୍ଜିତ ହୋଇ ।
ମୋହର ଗ୍ୟାନେ ତ ଦୋଷ କଲି ନାହିଁ ॥ ୬ ॥
ସ୍ୱାମୀର ପସ୍ୱୂରେ ମୁଁ ସେବା କରି ଥାଇ ।
ସର୍ବଦା ଗୁରୁଜନଙ୍କର ମନ ହରଇ ॥ ୭ ॥
କକସ୍ୱା ନାମେ ଯେ ଭରଥର ମାତ ।
ଦଶରଥ ନୃପତିଙ୍କ ମନାଇଲେ ସତ୍ୟ ॥ ୮ ॥
ଚଉଦ ବରଷ ରାମ ବନକଇ ଯିବ ।
ମୋହର ପୁତ୍ର ଏଥେ ରାଜ୍ୟଧର ହୋଇବ ॥ ୯ ॥
ଶୁଣିଣ ନୃପତି ପଡ଼ିଣ ମୋହ ଗଲେ ।
ମୋହର ସ୍ୱାମୀଙ୍କ ବନବାସ ପମନ୍ତ୍ରଲେ ॥ ୧୦ ॥
ପିତାର ବଚନେ ରାମ ବନକଇ ଗଲା ।
ଲକ୍ଷ୍ମଣ ଅଯୋଧ୍ୟା ନଗ୍ରରେ ନ ରହିଲ ॥ ୧୧ ॥
ପତି ଭଗତା ମୁହିଁ ମହାସତୀ ।
ସ୍ୱାମୀଙ୍କ ପାଦ ପୂଜି ଭୋଜନ କରଇ ନିତି ॥ ୧୨ ॥
ତିନି ଜଣ ଆମ୍ଭେ ବନକଇ ଗଲୁ ।
ନାନା ତୀର୍ଥେ ଦୁଃଖପଡ଼ି ବୁଲିଲୁ ॥ ୧୩ ॥

---

୮୦. ନଶୋଦ—ନଶବଦ । ୩. ନବରୁ—ମନରୁ (କ) । ୫. ନସ୍ୱତେ—ନଅନ୍ତେ (କ); ଶଙ୍କସ୍ଥାନ—ସଙ୍କଟସ୍ଥାନ (କ) । ୧୨. ପାଦପୂଜି—ପୁଚ୍ଛି (କ) ।

ଅଗସ୍ତି ମହାଋଷି ଆଜ୍ଞାକଲେ ଦେଖିଲେ ।
ପଞ୍ଚବଟୀ ବନେ ସେ ଗୁଣ୍ଡିଣ ଅଇଲେ ॥ ୧୪ ॥
ଶୁଷ୍ଟିଲ କାଠ ତ କାଟି ଲକ୍ଷ୍ମଣ ଗଲ
ରାବଣ ଭଣଜାକୁ ଝଡ଼ରେ ହାଣିଲ ॥ ୧୫ ॥
ସୁପନେଖୀ ନାମେ ଜପାସୁରର ଜନନୀ ।
ପୁତ୍ର ମରଣ ଶୁଣି କୋପ କଲ ସେ କାମେନୀ ॥ ୧୬ ॥
ଯୁବତୀ ରୂପେଣ ସେ ମୋତେ ସେ ମୋହିଲ ।
ଲକ୍ଷ୍ମଣ ଭାରଯା ହୋଇବ ବୋଲି ସେ ମୋହର ତୁଲେ ଅଇଲ ॥ ୧୭ ॥
ତାହାର ବଚନକୁ ଲକ୍ଷ୍ମଣ ନୋହିଲେକ ବଶ୍ୟ ।
ଛଦ୍ମ ଚନ୍ଦ୍ର କାଣି ଛେଦିଲ ନାସା ଶ୍ରବଣ କଲ ନାଶ ॥ ୧୮ ॥
ତହୁଂ ସୁପନେଖୀ ପଦ୍ମଜ କରି ଗଲା ।
ଯେ ଶିର ଆଗେ ଗୁହାରି ଯାଇ ସେ କଲ ॥ ୧୯ ॥
ଖର ଦୂଷଣ ତଉଦ ସେନାପତିର ତୁଲେ ।
ଅନେକ ସୈନ୍ୟ ଘେନ ଯୁଦ୍ଧ କରିତ ଅଇଲେ ॥ ୨୦ ॥
ସବୁନ୍ତ ଶ୍ରୀରାମ ପ୍ରାଣେ ନାଶ କଲ ।
ନାସା ଛେଦନ ହୋଇ ସୁପନେଖୀ ରାବଣକୁ କହିଲ ॥ ୨୧ ॥
କୋପେଣ ଅଇଲ ଅସୁର ଦଶଗିରି ।
ମାରୁଚ କ କପଟେ ଦୁଇ ମୁଣ୍ଡ ମୃଗ କରି ॥ ୨୨ ॥
ମୃଗଦେଖି ମୁହିଂ ହରଷ ହୋଇଲି ।
ମୃଗ ଧରିବାକୁ ସ୍ୱାମୀକ ପଠିଆଇଲି ॥ ୨୩ ॥
ଅନେକ ମୃଗ ଧରିବାକୁ ରାମ ଗଲେ ।
ଦୂରକୁ ପଳାନ୍ତେ ଦୁଇ ମୁଣ୍ଡ ଛେଦିଲେ ॥ ୨୪ ॥
ପ୍ରତିକାର ଲକ୍ଷ୍ମଣ ବୋଲି ଶୂନ୍ୟେଣ ଡାକ ଦେଲ ।
ସେ ବଚ୍ୟାଣ ମୋହର କର୍ଣ୍ଣରେ ପଡ଼ିଲ ।
ମୋହର ବଚନେ ଲକ୍ଷ୍ମଣ ଶ୍ରୀରାମର ଭହୁଂ ଗଲ ॥ ୨୫ ॥
ତହୁଂ ରାବଣ ଋଷିରୂପେ କପଟେ ଭିକ୍ଷା ମାଗିଲେକ ମୋତେ ।
ପର୍ଣ୍ଣ କୁଟୀରୁ ମୁଂ ବାହାର ନୋହିଲି କଦାଚତେ ॥ ୨୬ ॥
ନଷ୍ଟଯେ ପ୍ରାଣ ଗୁଡ଼ି ଲେଉଡ଼ିଲେକ ଯେବେ ।
କନ୍ଦମୂଳ ଭିକ୍ଷା ଦେଲଇ ମୁହିଂ ତେବେ ॥ ୨୭ ॥

---

୧୬. ଜପାସୁର—ଜଟାସୁର । ୧୮. ଛେଦିଲ ନାସା—ନାସା (ଗ) । ୧୯. ପଦ୍ମଜ—ପଦ୍ମଯ୍ୟ । ୨୭. ପ୍ରଥମ ପାଦର ପାଠ ଖ ପୋଥିରେ:—ମିଛେ ହେ ପ୍ରାଣ ସେ ଗୁଡ଼ିଲେକ ଯେବେ ।

ତହୁଂ ରାବଣ ପର୍ଯ୍ୟନ୍ତ ଧଇଲା ମୋହର ।
ଲଙ୍କାକଇ ନେଲା ମୋତେ ବସାଇ ରଥର ॥ ୨୮ ॥
ଅଶୋକବନେ ଥୋଇଲାକ ନେଇ ।
ସହସ୍ରେ ଅସୁରୀ ଚୂଳେଣ ରଖାଇ ॥ ୨୯ ॥
କନେକ ମୃଗ ମାରି ରାମ ବାହୁଡ଼ି ଅଇଲେ ।
ବାଟେ ଆସନ୍ତେ ଲକ୍ଷ୍ମଣଙ୍କୁ ଦେଖିଲେ ॥ ୩୦ ॥
ଆଶ୍ରମେ ମୋତେ ନ ଦେଖିଲେ ଯହୁଂ ।
ଅନେକ ବନ କନ୍ଦରେ ଲୋଡ଼ିଲେକ ତହୁଂ ॥ ୩୧ ॥
ସୁଗ୍ରୀବର ତୁଲେ ମଇତ୍ର ହୋଇଲେ ।
ବନପତ୍ତି ବାଳିକି ବାଣେକ ମାଇଲେ ॥ ୩୨ ॥
ବାଳିକି ମାରନ୍ତେ କପିକୁଳ ସାଧି ।
ମର୍କଟ ବଲ ଘେନି ରାମ ସେତୁବନ୍ଧ ବାନ୍ଧି ॥ ୩୩ ॥
ସମୁଦ୍ର ପାରି ହୋଇ ଲଙ୍କାଗଡ଼ ବେଢ଼ିଲେ ।
ଅସୁରନ୍ତ ବିନାଶି ଦଶକନ୍ଧ ଛେଦିଲେ ।
ଅଗ୍ନି ପରୀକ୍ଷ କଲେ ମୋତେ ସାତ ରାତ୍ର ସାତ ଦିନ ।
ତେବେ ସେ କୋପ ତେଜିଲେ ଦଶରଥନନ୍ଦନ ॥ ୩୫ ॥
ପୁଷ୍ପକ ଆରୋହି ଆଯୋଧ୍ୟାକୁ ଅଇଲୁ ।
ନିଜ ରାଜ୍ୟେ ପାଟେ ଅଭିଷେକ ହୋଇଲୁ ॥ ୩୬ ॥
ପୃଥିବୀ ରାଜାମାନେ ସମକକ୍ଷ ନୋହନ୍ତି ।
ଶ୍ରୀରାମ ଚରଣେ ଅହର୍ନିଶି ସେବା କରିଥାନ୍ତି ॥ ୩୭ ॥
ବଶିଷ୍ଠେ ଶିବର କଥା ଯହୁଂ କହିଲେ ।
ସେ ମୋତେ ଘେନି ବାଣରାସୀ ଗଲେ ॥ ୩୮ ॥
ତୀର୍ଥ ସାରି ନିଜ ରାଜ୍ୟକଇ ଗଲୁ ।
ନିଷ୍କଣ୍ଟକ ହୋଇ ସମରାଜ୍ୟ କଲୁ ॥ ୩୯ ॥
ଗର୍ଭେ ମୋହର ଛନ ମାସ ହୋଇଲାକ ଯହୁଂ ।
ଦୟା ଚଢ଼େ ସ୍ୱାମୀ ମୋତେ ପ୍ରସାଦ ଯାଚିଲେକ ତହୁଂ ॥ ୪୦ ॥
ମୁହିଁ ଚଣ୍ଡାଳୁଣୀ ମୋହିତ ହୋଇଲି ।
ବନକଇ ଯିବି ବୋଲି ପ୍ରସାଦ ମାଗିଲି ॥ ୪୧ ॥
ତହୁଂ ମୋତେ ଲକ୍ଷ୍ମଣ ବନକଇ ଆଣିଲା ।
ଅଗମ୍ୟ ବନେ ନ କହି ଛାଡ଼ିଗଲା ॥ ୪୨ ॥

---

୩୨. ବନପତ୍ତି—ବାନରପତ୍ତି (ଖ) । ୩୫. ପରୀକ୍ଷ—ପ୍ରଦକ୍ଷିଣ (କ) ।
୩୬-୩୯. କ ପୋଥିରେ ୩୬ ପଦର ଦ୍ୱିତୀୟ ପାଦ, ୩୭ ପଦ, ୩୮ ପଦ ଓ ୩୯ ପଦର ପ୍ରଥମ ପାଦ ନାହିଁ । ୪୦. ଛନ—ବେନି (କ) ।

ଜନେକର ଆଗେ କହିଲକ ସୀତା ।
ସୀତରେ ଲବକୁଶେ ଗାଇଲେ ସେ କଥା ॥ ୪୩ ॥
ଶୁଣିଣ ଜନେକ ମୁନି ମନରେ ବିଚାର ।
ତୁହି ଯେବେ ଦୋଷୀ ଗୋ ନୋହିଲୁ କୁମାରୀ ॥ ୪୪ ॥
ମନ ବଚନେ ବିକାର ନାହିଂ ଯେବେ ।
ତୁହି ଅଗ୍ନି ପରୀକ୍ଷା କର ଏବେ ॥ ୪୫ ॥
ତେବେ ସେ ମୁହିଂ ହୃଦେ ତେଜଇ ନା ଭ୍ରାନ୍ତି ।
ଶୁଣିଣ କହଇ ସୀତା ମହାସତୀ ॥ ୪୬ ॥
ମନେ ଅନ୍ତରେ ଯେବେ ଧଇଲ୍ ତପଶୀଳ ।
ଏହିକ୍ଷଣି ବେଗେ ଅଗ୍ନି ସଂଜାଳ ॥ ୪୭ ॥
ଜନେକ ଅଗ୍ନି କଲେକ ବହନ ।
ତୃନ ଉପର ତିନ ରାଶି କଲକ ଦହନ ।
ଜଳିତ କୁଣ୍ଡିଲ ଦାରୁ ପ୍ରଖର ହୁତାଶନ ॥ ୪୮ ॥
ଅନଳେ ଦହନ ନୋହିଲ ମହାସତୀ ।
ମନ ଭ୍ରାନ୍ତି ତେଜିଲ ଜନେକ ମହାମତି ॥ ୪୯ ॥
ସୀତାର ଘରେ ନିଷ୍ଟନ୍ତେ ବିଶ୍ରାମଇ ଜଗଂସେନା ।
ପ୍ରାଣ ଲଗାଇ ପାଳଇ ପୁତ୍ର ବେନି ॥ ୫୦ ॥

## ରାମାୟଣ ଗାନ ସମାପ୍ତି

ଏଥି ଅନନ୍ତରେ ଶୁଣ ହୋ ପଣ୍ଡମନ୍ତ ।
ରାମାୟେଣ ଗ୍ରନ୍ଥ ଯହୁଂ ହୋଇଲା ସମାପତ ॥ ୧ ॥
ଆଦିତ୍ୟ ଯେ ଶିଖେ ଦୁଇ ପ୍ରହର ହୋଇଥିଲା ।
ରାମାୟେଣ କହିବାର ତହୁଂ ସଂପୂର୍ଣ୍ଣ ହୋଇଲା ॥ ୨ ॥
ଶୀଘ୍ର ଯେ ଗଗନେ ଗମଇଂ ଅଂଶୁମାଳୀ ।
ଶୁଣିଣ ଶ୍ରୀରାମ ମନେ ମନେ ଭାଳି ॥ ୩ ॥
ଏହା ସେ ନିର୍ମିତ କଲୁ ହୋ ବିଧାତା ।
କେତେ ଦୁଃଖ ସହିବ ଜନେକ ଦୋହିତା ॥ ୪ ॥

---

୪୪. ଦୋଷୀ—ଦୋଷ । ୪୫. ପରୀକ୍ଷା—ପ୍ରଦକ୍ଷିଣ (କ) । ୪୮. ଏହାର ପ୍ରଥମ ପାଦଟି କ ପୋଥିରେ ନାହିଁ ଓ ତୃତୀୟ ପାଦଟି ଖ ପୋଥିରେ ନାହିଁ; ଉନରାଶ—ବେନିରାଶ (କ) । ୧. ରାମାୟେଣ—ରାମାୟଣ (ଖ) । ୨. ହୋଇଥିଲେ—ହୋଇଲା (କ); ରାମାୟେଣ—ରାମାୟଣ (ଖ) । ଅଂଶୁମାଳୀ—ଅଶ୍ୱମାଳୀ ।

ମନ୍ଦ ବୁଦ୍ଧିରେ ଭରସା ଉପେକ୍ଷିଲି ।
ସହାତେ ମୁଂ ସୀତାକୁ କଷ୍ଟ ଦେଲି ॥ ୫ ॥
ଯଦ୍ୟପି କ୍ଷତ୍ରିୟଂସେନା ଥାନ୍ତେ ମୋହର ପୁର ।
ଏହୁ ବୟସ ହୋଇଥାନ୍ତା ନାଂ ଦୁଇ କୁମର ॥ ୬ ॥
ଏହାବଇ ପଠିଅଛବି ଅନେକ ଭୁବନ ।
ହୃଷ୍ଟକେ ସଂକୁଚ କରଇ ମୋହର ମନ ॥ ୭ ॥
କୁମରଙ୍କ ମୁଖ ଚାହିଂ ପଚାରଇ ରଘୁନାଥ ।
ତୁମ୍ଭେ ଦୁଇ ଭାଇ ଅବା ସୀତାଙ୍କର ସୁତ ॥ ୮ ॥
ଏକ ରୂପ ଧଣ୍ଡ ଏକଇ ବୟସ ।
ଅନ୍ତମଧ୍ୟେ ବଚନ କର ପ୍ରକାଶ ॥ ୯ ॥
ଲବକୁଶର ମୁଖ ଚାହିଂ ପଚାରନ୍ତି ଦାଶରଥି ।
କେବଣ ଦେଶରେ ବାବୁହେ ତୁମ୍ଭର ନିଜ ସ୍ଥିତି ॥ ୧୦ ॥
କେ ତୁମ୍ଭର ପିତା କେ ତୁମ୍ଭର ମାତ ।
କେବଣ ଦେଶରେ ତୁମ୍ଭେ ହୋଇଲ ଉଦତ ॥ ୧୧ ॥
କେବଣ ଗୁରୁ ତୁମ୍ଭଙ୍କୁ ପଢ଼ାଇଲେ ଏହା ।
ମୋହର ଆଗେ ସ୍ୱରୂପ ପ୍ରକାଶିବ ତାହା ॥ ୧୨ ॥
ଲବକୁମର ବୋଇଲେ ଆମ୍ଭେ ନିତ୍ୟେହେ ଗୀତ ଗାଉ ।
ଟିମ୍ବ ପାଉ ତାହା ଗୁରୁଙ୍କୁ ନେଇ ଦେଉ ॥ ୧୩ ॥
ଛନ୍ଦ ବରଣ କରି ଶୁଣିଲ ତୁମ୍ଭେ ଯେବେ ।
ସମ୍ପୂର୍ଣ୍ଣ କରି ତୁମ୍ଭଙ୍କୁ ଶୁଣାଇଲୁ ଏବେ ॥ ୧୪ ॥
ଏହୁକ୍ଷଣି ଦିବାକର ଗଗନରେ ଥିଲ ।
ଦେଖୁ ଦେଖୁ ଆଦିତ୍ୟ ବଜମିଣ ଗଲା ॥ ୧୫ ॥
ତୁମ୍ଭର ଆଗେ କହନ୍ତେ ହୋଇବ ଉଚ୍ଛର ।
କହୁ ନ ପାରୁ ଆମ୍ଭେ ଫିରୁ ନିଜ ପୁର ॥ ୧୬ ॥
ପାର ଯେବେ ପୁରଣ ଦକ୍ଷିଣା ଦିଅ ।
ନଇତେବେ ଆମ୍ଭଙ୍କୁ ଯାଅ ବୋଲିଣ କହ ॥ ୧୭ ॥
ଶୁଣିଣ ଶ୍ରୀରାମ ହୋଇଲେ ମଉନ ।
କୁମର ମୁଖ ଚାହିଂ ପଚାରନ୍ତି ବ୍ରହ୍ମସୂନ ॥ ୧୮ ॥
ବଶିଷ୍ଠ କହନ୍ତି ଶୁଣ ହେ ଦୁଇ ଭାଇ ।
କଥା ପ୍ରସଙ୍ଗରେ କାର୍ଯ୍ୟ ବିଳମ୍ବରେ ରହି ॥ ୧୯ ॥

---

୭· ସଂକୁଚ— ସଂକାଚ (କ) । ୯· କର—କରନ୍ତି (କ) । ୧୧· ଉଦତ— ବଦତ (କ) । ୧୪. ତୁମ୍ଭଙ୍କୁ—ଆମ୍ଭଙ୍କୁ (କ) । ୧୭· ପୁରଣ—ଦାନ (କ) ।

ତୁମ୍ଭେ ଯେ ଶାସ୍ତ୍ର ଜ୍ଞାନ କର ।
ଦକ୍ଷିଣା ଦେଲେ ଶୁଝିବନା କଣ୍ଠୁ ଦୁଃଖ ଘୋର ॥ ୨୦ ॥
ଶାସ୍ତ୍ର ଶୁଣି ଯେ ଦାନ ଦକ୍ଷିଣା ନଦିଅଇ ।
ଅଗତ ଜନ୍ମେ ସେ ଦରିଦ୍ର ଘରେ ଜନ୍ମ ହୋଇ ॥ ୨୧ ॥
ରୋଗୀ ବଧିର ହୋଇ ସେ ଜାତଇ ।
ଇହ ଜନ୍ମରେ ତାର କନ୍ଧୁ ଲକ୍ଷ୍ମୀ ଗ୍ରହଇ ॥ ୨୨ ॥
ରାଜ୍ୟରେ ଏ ମହାତ୍ମା ହୁଅଇ ରାଜନ ।
ମନ୍ତ୍ରୀ ଅମାତ୍ୟ ଆବର ଧାର୍ମିକ ଜନମାନ ॥ ୨୩ ॥
ଅନେକ ଯୁବତୀ ଶାସ୍ତ୍ର ଶୁଣୁଥିଲେ ।
ଅମୃତମୟ ପ୍ରାୟେ ବୁଝିଥିଲେ ॥ ୨୪ ॥
ମୁହିଂ ରାଜ୍ୟରେ ପ୍ରୋହିତପଣ କରଇ ।
ଅନେକ ତପସ୍ୱୀ ଅଛନ୍ତି ଦ୍ୱିଜବରଇ ॥ ୨୫ ॥
ଅଷ୍ଟାଦଶ କ୍ଷେତ୍ରଣୀ ସୃଷ୍ଟି ପ୍ରକାଶେ ।
ରାମାୟଣ ଶୁଣିଲେ ବସିବେ ସ୍ୱର୍ଗବାସେ ॥ ୨୬ ॥
ଯେ ଯାହାର ଅନରୂପେ ଦାନ ଦକ୍ଷିଣା ଦେବେ ।
ଶାସ୍ତ୍ର ଶୁଣିମାର ସଦଗତ ଲଭିବେ ॥ ୨୭ ॥
ରାଜାର ଦାନ ଦେଲେ ସେ ପାଇବେ ସମସ୍ତେ ଦାନଦେଇ ।
ତେଣୁ ସେ ସଭିଏ ହୋଇଛନ୍ତି ତବଦ ହୋଇ ॥ ୨୮ ॥
ତୁମ୍ଭର ପିତାମାତା କୋଳଗୋତ ଶୁଣିବ ଇଚ୍ଛା କଲି ।
ଯହୁଂ ତୁମ୍ଭେ ନ କହିଲ ମନ ବିରଙ୍ଗ କଲି ॥ ୨୯ ॥
ଯାହାର ଆଗେ ବାକ୍ୟ ପୁରାଣ କହି ।
ତାହାକୁ ବିରସ କରିବାର ଯୁଗତ ନୁହଇ ॥ ୩୦ ॥
ବାଳୁତ ହୋଇଲ ଅବା ବାକ୍ୟ ଯେ ବଖାଣ ।
ପରକଇ କହି ଆପଣେ ନ ଜାଣ ॥ ୩୧ ॥
କେ ତୁମ୍ଭର ପିତାମାତା ସ୍ୱରୂପ କରି କହ ।
ଦାନ ଦକ୍ଷିଣା ଯାହା ପାଅ ଘେନି ଏଥୁ ଯାଅ ॥ ୩୨ ॥
ବଶିଷ୍ଠଙ୍କର ବଚନ ଯହୁଂ କୁଶକୁମର ଶୁଣିଲା ।
ଲବକୁମର ମୁଖ ଗୃହିଂଣ କହିଲା ॥ ୩୩ ॥

---

୨୦· ଉକତ—ଉପଗତ (କ); ଶୁଝିବ—ବୁଝିବେ (କ) । ୨୫. ପ୍ରୋହିତପଣ—ପ୍ରୋହିତପହିତପଣ । ୨୬. ରାମାୟେଣ—ରାବାୟଣ (ଖ) । ୨୮· ରାଜାର—ଯାହାର (କ); ସଭିଏ—ମଭିଏ । ୩୦· ବାକ୍ୟ—କାବ୍ୟ (ଖ) ।

ପଟ୍ଟଣରେ ଯେବେ ମତ୍ତ କରି କହିବା ।
ରାକ୍ଷ ହୋଇଲେ ପଛେ ନଷ୍ଟ ଦେଖିଣ ଦିବା ॥ ୩୪ ॥
ସିଂହ ବ୍ୟାଘ୍ର ଗଜ ଶାର୍ଦ୍ଦୁଳ ତୁମ୍ଭର ପଢ଼ିବେ ଯେବେ ।
ତୁମ୍ଭେ ପଛେ ପଛେ ଥାଅ ମୁହିଁ ମାରିବଇ ଆଗେ ॥ ୩୫ ॥
ରୁଧିର ପ୍ରବାହେ ବାହାକର ଆମ୍ଭର ଭୟେ ।
ଅନେକ ଅସୁର ବୃନ୍ଦେ କରି ଯାଉଛି କ୍ଷୟେ ॥ ୩୬ ॥

## ଲବକୁଶଙ୍କ ପରିଚୟ ଦାନ

ଯହୁଂ ଶୁଣିଲା ଲବକୁମର ବଚନ ।
ସଧୀର କହଇ ଶୁଣସି ସର୍ବଜନ ॥ ୧ ॥
ମାହାକଇ ଆମ୍ଭେ ପିତା କାହୁଂ ଅଛୁ ବୋଲି ପଗ୍ଗରିଲୁ ।
ତାହାର କହନ୍ତେ ଯାହା ସେ ଶୁଣିଲୁ ॥ ୨ ॥
ମୋ ଜନନୀ ଆମ୍ଭଙ୍କୁ କହିଲା ଯାହା ।
ତୁମ୍ଭର ଆଗେ ମୁହିଂ କହୁଅଛୁ ତାହା ॥ ୩ ॥
ଯେବଣ ବେଳେ ମାତାର ଗର୍ଭେ କଲୁ ଆମ୍ଭେ ବାସ ।
ଯେ ଆମ୍ଭର ପିତା ସେ ହୋଇଲା ପ୍ରାଣ ନାଶ ॥ ୪ ॥
ପିତା ଘରକଇ ଅଛିଲା ଆମ୍ଭର ଜନନୀ ।
ମାତାର ପିତା ନାମ ଜନେକ ମହାମୁନି ॥ ୫ ॥
ମାତାଙ୍କର ନାମ ବିଦିତ ସତୀ ସୀତା ।
ସୀତା ସୀତା ବୋଲି ଡାକୁଥାନ୍ତି ତାହାଙ୍କର ପିତା ॥ ୬ ॥
ସୂର୍ଯ୍ୟ ବଂଶେ ଆମ୍ଭେ ହୋଇଲୁ ଉତପନ ।
ଶାସ୍ତ୍ର ପଢ଼ାଇଲେ ବାଲ୍ମୀକ ମହାମୁନ୍ୟ ॥ ୭ ॥
ପିତାର ନାମ ଆମ୍ଭର ନ କହିଲେ ମାତ ।
ଶୁଣିଣ ଶ୍ରୀରାମ ନ କହି ପାରି ଶୋକଭର ଚିତ୍ତ ॥ ୮ ॥
କୁମରଙ୍କୁ କୋଳ କରି କାନ୍ଦନ୍ତି ସୀତାପତି ।
ଭରଥ ଲକ୍ଷ୍ମଣ ଦୁହେଁ ପଡ଼ିଣ ଲୋଟନ୍ତି କ୍ଷିତି ॥ ୯ ॥
ଶ୍ରୀରାମ ଶୋକ ଯହୁଂ ସଭାଲୋକେ ଶୁଣିଲେ ।
ସମସ୍ତେ ହେ ଉଚେ ରୋଦନ ଧ୍ୱନି କଲେ ॥ ୧୦ ॥
[ସମୁଦ୍ର ଘୋଷ ପ୍ରାୟେ ଶୁଭିଲା ମହା ରୋଳ ।
ଗଗନ ମଣ୍ଡଳ ଯାଏ ସମୋଦ୍ର ଉଛୁଳ ॥ ୧୧ ॥

---

୧. ଯହୁଂ—ତହୁଂ (କ) । ୩. ଜନନୀ—ଜନେକାର ଝିଅ (କ) ।

[ଲବକୁମର କହଇ ଏ କେବଣ ବେଭାର ।
ପରର ଦୁଅକୁ କୋଳ କରି ରୋଦନ କିମ୍ପା କର] ॥ ୧୨ ॥
ଏହେବର୍ଣ୍ଣେକ କଥା ଶୁଣିଲି ଆମ୍ଭର ନାହିଁ ।
କି ଅବା ସମସ୍ତେ ହୋଇଲ ତୁମ୍ଭେ ବାଇ ॥ ୧୩ ॥
ଦକ୍ଷିଣା ଦାନ ଦେବ ତୁମ୍ଭେ ଆର କାହିଂ ।
ହରିସ ତେଜି ବିରସ ହୋଇଲ ଯହିଂ ॥ ୧୪ ॥
[ହରଷେଣ ଦାନ ରୋଷେଣ ଶସ୍ତ୍ର ଖଣ୍ଡ ।
ମନ୍ତ୍ରୀ ବୋଲେ ନୃପତି ଚଳିବଇ ଦଣ୍ଡ] ॥ ୧୫ ॥
ଦାନ ଦକ୍ଷିଣାରେ ଅମ୍ଭର କାର୍ଯ୍ୟ ନାହିଂ ।
ମହା ଲଜ୍ୟା ପାଇଲୁ ତୁମ୍ଭର ରୋଦନ ମୁଖ ଚାହିଂ ॥ ୧୬ ॥
ଛାଡ଼ି ଚୁଡ଼ି ମହାତ୍ମା ବଇଦେହୀ ମଣ୍ଡଳକୁ ଯିବୁ ।
ମାତାକଇ ଦେଖିଲେ ସେ ମନଶାନ୍ତି ପାଇବୁ ॥ ୧୭ ॥
କୁମର କଥା ଶୁଣି କହନ୍ତି ବ୍ରହ୍ମସୁନ ।
ଧିର ହୁଅସି ସୀତସ୍ୟାର ବେନି ନନ୍ଦନ ॥ ୧୮ ॥
ଯେବଣ ରାମାୟଣ ତୁମ୍ଭେ କଲ ଉକତ ।
ବାଲମୀକ ମହାମୁନି ପଢ଼ାଇଲେ ତୁମ୍ଭନ୍ତ ॥ ୧୯ ॥
ସୂର୍ଯ୍ୟ ବଂଶେ ବିଖ୍ୟାତ ଦଶରଥ ନୃପତି ।
କଉଶଲ୍ୟା ନାମେ ରାମର ଗର୍ଭବତୀ ॥ ୨୦ ॥
ସେ ଭରଥ ହୋ ଏ କକୟୀର ସୁତ ।
ଲକ୍ଷ୍ମଣ ଶତ୍ରୁଘନ ଏ ବେନି କୁମର ସୁମିତ୍ରାର ସୁତ ॥ ୨୧ ॥
ସୁମିତ୍ରାର ଯେବଣ କନିଷ୍ଠ କୁମରଇ ।
ଲବଣ ମାରି ସେ ମଧୁବନେ ରାଜ୍ୟ କରଇ ॥ ୨୨ ॥
ତୁମ୍ଭର ଜନନୀ ଜନେକ ଦୋହିତା ।
ଶ୍ରୀରାମର ସ୍ଵବେନୀ ସେହିସେ ସତୀ ସୀତା ॥ ୨୩ ॥
ଲୋକତ ଅପମାନ ରାମ ସହି ନ ପାରିଲ ।
ତେଣେ ସେ ତୁମ୍ଭର ମାତାକଇ ଉପେଖିଲ ॥ ୨୪ ॥
ବନସ୍ତେ ଜନମିଲ ତୁମ୍ଭେ ବେନି କୁମର ।
ସେହି ସେ ଜନେକ ତୁମ୍ଭର ମାତାର ପିଅର ॥ ୨୫ ॥
ଶାସ୍ତ୍ର ତୁମ୍ଭଙ୍କୁ ପଢ଼ାଇଲେ ଯେହୁ ।
ବ୍ରହ୍ମାର ତନୟ ବାଲମୀକ ସେହୁ ॥ ୨୬ ॥

---

୧୪. ଏ ପଦର ପାଠ ଖ ପୋଥିରେ:—ଦାନ ଦକ୍ଷିଣା ଦେବ ଆମ୍ଭର କାହିଂ, ହରଷ ତେଜି ଯଦ୍ୟପି ରୋଷ ହୁପାଇ । ୧୯-୨୦. ଏ ଦୁଇ ପଦ ଖ ପୋଥିରେ ନାହିଁ । ୨୦. ବିଖ୍ୟାତ—ବିଖାତ । ୨୬. ଯେହୁ—ଜହୁଂ ।

ତୁମ୍ଭର ପିତାପୁଏ ଭେଟ ନୋହିବା ନିମନ୍ତେ ।
ଗୀତ ଗାଇ ମୁନି ପଠିଆଇ ନିତ୍ୟେ ॥ ୨୭ ॥
ଅସ୍ତ୍ରନିଧି ଯାହାର ବଚନେ ସିଧି ।
ତଣ୍ଡୁଳ କିସ ସେହୁ କରିବ ତପୋନିଧି ॥ ୨୮ ॥
ଚଉରାଶି ଯୋଜନ ଏଥିକୁ ବଇଦେହୀ ଭୁବନ ।
ଶୀଘ୍ରେ ଉଡ଼ାଇ ତୁମ୍ଭଙ୍କୁ ଆଣଇ ପବନ ॥ ୨୯ ॥
ତୋତେ ଦେଖି ମୁହିଂ ପ୍ରତକ୍ଷେ ଜାଣିଲି ।
ପୁଣି ବୋଲି ମୁହିଂ ଶ୍ରୀରାମଙ୍କୁ ନ କହିଲି ॥ ୩୦ ॥
ଦେବଙ୍କର କଷ୍ଟେ ରାମ ମହୀରେ ଉପୁଜିଲ ।
କ୍ଷତ୍ରିସ୍ବ ରାଜାପଣେ କୀର୍ତ୍ତି ଅକୀର୍ତ୍ତି କଲ ॥ ୩୧ ॥
ରାମାୟଣ ଶୁଣନ୍ତେ ଧର୍ମ କୀର୍ତ୍ତି ବର୍ଧମାନ ।
ଅକୀର୍ତ୍ତି ନାଶ ଯାଇ ଯେହ୍ନେ ତୂଳାରେ ହୁତାସନ ॥ ୩୨ ॥
ତୁମ୍ଭର ଜନନୀ ଯେ ସୀତସ୍ତ୍ରୀ ମହାସତୀ ।
ଅଦୋଷେ ଉପେକ୍ଷା ଯେ କଲେ ଦାଶରଥି ॥ ୩୩ ॥
ଯେତେକ କଷ୍ଟ ସୀତସ୍ତ୍ରୀ ବନନ୍ତେ ପାଇଲ ।
ଯେବଣ ଅବସ୍ଥାରେ ତୁମ୍ଭନ୍ତ ଜନ୍ମ କଲ ॥ ୩୪ ॥
ସେ ଦୋଷ ଖରି ଯେ ଶ୍ରୀରାମକୁ ଆସଇ ।
ରାମାୟଣ ଶୁଣିଲେ ପାପ ହୋଇବ ବିନାଶଇ ॥ ୩୫ ॥
ପିତାକୁ ନ ଦେଖି ଯେ ଜନେକର ଘରେ ଥିଲ ।
ରାଜା କୁମର ହୋଇ ଅନେକ ଦୁଃଖ ପାଇଲ ॥ ୩୬ ॥
ରାମାୟଣ ବଖାଣନ୍ତେ ହୋଇଲ ରାଜ୍ୟ କରତା ।
ଧର୍ମବର୍ଦ୍ଧିତେ ଦେଖିଲ ନିଜ ପିତା ॥ ୩୭ ॥
ଅଯୋଧ୍ୟା ସ୍ତ୍ରି ସ୍ବ ପୁରୁଷେ ରାମାୟଣ ଶୁଣିଲେ ।
ସକଳ ପାତକ ଏହାଙ୍କର ବିନାଶିଲେ ॥ ୩୮ ॥
ଶତେ କୋଟି ଯୁଗ ସ୍ୱର୍ଗରେ ବସିବେ ।
ମଞ୍ଚେ ଜାତ ହୁଅନ୍ତେ ଧନେଶ୍ୱର ହୋଇବେ ॥ ୩୯ ॥
ଆପଣାର ଧର୍ମ ଅର୍ଥେ ଧନ ବସ୍ତ୍ର ଦେବେ ଦାନ ।
ତେବେ ସେ ବର୍ଦ୍ଧମାନ ହୋଇବ ନା ପୁନ୍ୟ ॥ ୪୦ ॥

---

୨୮. ଯାହାର—ତାହାର (କ); ତଣ୍ଡୁଳ କିସ ସେହୁ କରିବ—ଆଗତ ଗ୍ରନ୍ଥ ଜଲେ ସେହୁ (କ) । ୩୨. ରାମାୟଣ—ରାବାୟଣ (ଖ); ଯେହ୍ନେ ତୂଳାରେ—ତୁଳାରେ (କ) । ୩୫. ରାମାୟଣ—ରାବାୟଣ (ଖ) । ୩୭. ରାମାୟଣ—ରାବାୟଣ (ଖ); ଦେଖିଲ—ଭେଟିଲ (ଖ) । ୩୮. ରାମାୟଣ—ରାବାୟଣ (ଖ) ୪୦. ବର୍ଦ୍ଧମାନ—ଧର୍ମମାନ (କ) ।

ବେଦବର ପୁଣ୍ଡ ମୁହିଂ ବ୍ରହ୍ମଋଷି ।
ଧର୍ମକର୍ମ ଉପେଖି ରାଜସଭାରେ ବସି ॥ ୪୧ ॥
ଏହି ପାତେକ ନୋହିବାକୁ ମୋତେ ।
ଯତନେ ଉକତ କରାଇ ମୋହର ନିମନ୍ତେ ॥ ୪୨ ॥
ହଜିଲା ପାତେକ ମୁହିଂ ବିନାଶ କଲି ।
ବଶିଷ୍ଠ ପୁତ୍ରଙ୍କର ମୁଖେ ରାମାୟେଣ ଶୁଣିଲି ॥ ୪୩ ॥
ଏମନେକ କହି କୁଶକେଉର ସୁତ ।
ଶିରେ ଚୁମ୍ବନ ଦେଇ ହୋଇଲେ କୃତହସ୍ତ ॥ ୪୪ ॥
ରତ୍ନମଣି କୁଣ୍ଡଳ ଯେ ଆଭରଣ ହୋଇଥିଲେ ।
ଲବକୁମର କର୍ଣ୍ଣରେ କୁଣ୍ଡଳ ଦୁଇ ଖଞ୍ଜିଲେ ॥ ୪୫ ॥
କୁଶକୁମର ଅଙ୍ଗୁଷ୍ଠିରେ ଖଞ୍ଜିଲେ ରତ୍ନମୁଦି ।
ସଭା ଲୋକଙ୍କୁ ଚାହିଂ କହନ୍ତି ତପୋନିଧି ॥ ୪୬ ॥
ଯେ ଯାହାର ଇଚ୍ଛାରେ ଧନ ବସ୍ତ୍ର ଦାନ ଦିଅ ।
ସକଳ ପାତେକ ତୁମ୍ଭର ବିନାଶ କର ହୋ ॥ ୪୭ ॥
ବଶିଷ୍ଠଙ୍କର ବଚନ ଯହୁଂ ସଭା ଲୋକେ ଶୁଣିଲେ ।
ରତ୍ନ ବସ୍ତ୍ର ଅଳଂକାର ସମସ୍ତେହେ ଦେଲେ ॥ ୪୮ ॥
କନେକ ରାଶି ଏ କୁଢ଼ ହୋଇ ପଡ଼ିଲା ।
ଅନେକ ବସ୍ତ୍ର ସଭାରେ ପୂରାଇଲା ॥ ୪୯ ॥
ଲବକୁମର ମୁଖ ଚାହିଂ ବଶିଷ୍ଠେ କହନ୍ତି ।
ଏହି ସେ ଶ୍ରୀରାମ ହୋ ସୀତାଙ୍କର ପତି ॥ ୫୦ ॥
ମନରେ ଅନ୍ତର କିଛି ହି ନ ଧର ।
ଏହି ସେ ଷଡ଼ବିଂବର ତୁମ୍ଭର ପିଅର ॥ ୫୧ ॥
ବଶିଷ୍ଠଙ୍କର ବଚନ ଯହୁଂ ଶୁଣିଲେ ବେନି ଭ୍ରାଥ ।
କଣ୍ଠେ ସରସ୍ୱତୀ ବସିଲା ତୁରିତ ॥ ୫୨ ॥
ମୋହରେ ମୋହିତ କୁମାରଙ୍କ ଦେହି ।
ନୟନ ଛନ ଛନ କଲେ ଶ୍ରୀରାମ ମୁଖ ଚାହିଂ ॥ ୫୩ ॥
ପୁତ୍ରର ବିକଳ ଦେଖି ରଘୁନାଥ ।
ନୟନରୁ ଲୁହ ଗଳି ପଡ଼ଇ ଘନଘନ ॥ ୫୪ ॥

---

୪୨. ନୋହିବାକୁ—ନୋହିବାକ (କ); ଯତନେ ଉକତ—ଜନେ ଉପଗତ (କ), ଯତନ ଉକତ (ଖ); ଏହି—ଏକ । ୪୩. ରାମାୟେଣ—ରାବାୟଣ । ୪୪. ହୋଇଲେ—ବୋଇଲେ (ଖ) । ୪୫. ଲବକୁମର—ଲବକୁସ । ୫୩. ଛନଛନ—ଥନଥନ (ଖ) ।

ଭୁଥ ଲକ୍ଷ୍ମଣ ଆନନ୍ଦେ ନୟନୁ ଲୁହ ଗଳାଇ ।
ଶ୍ରୀରାମଙ୍କୁ କହନ୍ତ ବ୍ରହ୍ମାଙ୍କ ଦୁଲାଳଇ ॥ ୫୫ ॥
ପୁତ୍ର ଦୁଇ ନେନ ଏବେ ନବରକୁ ଯାଅ ।
କଉଶଲ୍ୟା ଦେବୀନ୍ତ କୁମରଙ୍କୁ ଦେଖାଅ ॥ ୫୬ ॥
କଉଶଲ୍ୟା ସୁମିତ୍ରା ତୋହର ସକଳ ଜନନୀ ।
ସୀତଯ୍ୟାର ପୁତ୍ରନ୍ତ ଦେଖି ପାପକ୍ଷୟେ କରନ୍ତୁ ସେ ବୃଦ୍ଧ କାମେନୀ ॥ ୫୭ ॥
ଧାତ୍ରୀ ମୂର୍ଦ୍ଧସୁଲି ଅନ୍ତଃପୁର ପରିବାରୀ ।
ଦୃଷ୍ଟି ତ ବିନାଶ କରନ୍ତୁ ତୋହର ପୁତ୍ରନ୍ତ କୋଳେ ଧରି ॥ ୫୮ ॥
ବଶିଷ୍ଠଙ୍କର ବଚନ ଯହୁଂ ରାମଚନ୍ଦ୍ର ଶୁଣିଲେ ।
ଲବକୁମରକଇ ହୃଦରେ ଗୁପିଲେ ॥ ୫୯ ॥
ଭୁଥ ମହାବୀର କୁଶକୁ କାନ୍ଧେ ଘେନଇଂ ।
ଆଗର ଲୋକକୁ ପଛ କରି ଦଉଇ ସୁମିତ୍ର ନନ୍ଦନଇ ॥ ୬୦ ॥
ବଶିଷ୍ଠ ସହିତେ ମନ୍ତ୍ରୀ ଅମନାତ୍ୟଇ ।
ନବର ଭିତରକଇ ପଶନ୍ତ ସମସ୍ତହି ॥ ୬୧ ॥
ଅଯୋଧ୍ୟା ନଗରୀ ସମସ୍ତ ନରନାରୀ ।
ଏକଇ ଆରକେ ଧାମନ୍ତ ଆଗସରି ॥ ୬୨ ॥
ନବର ଭିତରକଇ ଶୀଘ୍ର ହୋଇ ଗଲେ ।
କଉଶଲ୍ୟା ଆଗରେ ତତକ୍ଷଣେ କହିଲେ ॥ ୬୩ ॥
ଶୁଣ ଗୋ ସାବଧାନେ କ୍ଷତ୍ରି ବର ମାତ ।
ତୁମ୍ଭର କୁଳବଧୂ ଯେ ଜନେକ ଦୋହିତ ॥ ୬୪ ॥
ଲକ୍ଷ୍ମଣ ବନସ୍ତେ ନବାସି ଅଇଲା ।
ଅନେକ ଦୁଃଖ ପାଇ ସେ ପିତା ଘରକୁ ଗଲା ॥ ୬୫ ॥
ବନସ୍ତେ ତାହାର ଗର୍ଭେ ଉପୁଜିଲ ବେନି ପୁତ୍ର ।
ପଢ଼ି ଗୁଣୀ ପଣ୍ଡିତ ହୋଇଲେ ଶାସ୍ତ୍ର କରନ୍ତ ଉଚିତ ॥ ୬୬ ॥
କାଲି ସେ ଏ ପୁରେ ଗୀତ ଗାଇଣ ଗଲା ।
ଆଉ ଭାଇ ଗୋଟି ଘେନି ଆଜ ପ୍ରଭାତୁ ଅଇଲା ॥ ୬୭ ॥
ଦୁଇ ଭାଇ ଅର୍ଥ କରି ଗୀତ ଗାଇଲେ ।
ରାମାୟେଣ ଚରିତ୍ର ସମସ୍ତଙ୍କୁ କହିଲେ ॥ ୬୮ ॥
ଶାସ୍ତ୍ର ଶୁଣି ପୁତ୍ର ବୋଲି ଜାଣିଲେ ସୀତାପତି ।
ପୁତ୍ରକୁ ଘେନିଣ ଏବେ ଆସୁଣ ଅଛନ୍ତି ॥ ୬୯ ॥

---

୬୦. ନନ୍ଦନଇ—କୁମରଇ (କ । ୬୮. ରାମାୟେଣ—ରାବାୟଣ (ଖ) ।

ଶୁଣି କଉଶଲ୍ୟା ଉହତ ମନ ।
ଆନନ୍ଦେ ଅଶ୍ରୁଜଳ ବହଇ ଘନଘନ ॥ ୭୦ ॥
କେକୟୀ କଉଶଲ୍ୟା ସୁମିତ୍ରା ଆବର ଯେତେକ କାମେନୀ ।
ଧାଇଁ ମୃଦୁସ୍ୱଳୀ ପରବାଙ୍ଗନ୍ତି ଯେନ ॥ ୭୧ ॥
ନବରୁ ବାହାର ହୋଇ କଉଶଲ୍ୟା ଯେ ଦ୍ୱାରେ ହୁଅନ୍ତି ।
ଅନେକ ଯୁବତୀ ସନ୍ଧ୍ୟେଣ ଅଛନ୍ତି ॥ ୭୨ ॥
ଏସନେକ ସମୟେ କ୍ଷତ୍ରି ବର ସୁନ୍ଦର ।
ପ୍ରସନ୍ତି ଯେନ ପଶନ୍ତି ନବର ଭିତର ॥ ୭୩ ॥
କଉଶଲ୍ୟା ଦେବୀ ଶ୍ରୀରାମ କୋଳରେ ଦେଖିଲେ ।
ଲବକୁମରଙ୍କୁ ଆଣି କାଖରେ ବସାଇଲେ ॥ ୭୪ ॥
ଭ୍ରାଥର ତହୁଁ କେକୟୀ କୁଶଙ୍କୁ ଘେନନ୍ତି ।
ସୁମିତ୍ରାଏ ଦୁଇ କୁମର ମୁଖେ ଚୁମ୍ବନ ଦିଅନ୍ତି ॥ ୭୫ ॥
ଅନେକ ଯୁବତୀ ହୋଇଲେ ଚହଳ ।
ମହା ଶବଦେକ ହୋଇଲା ମୁଖ ଗୋଳ ॥ ୭୬ ॥
ଲବକୁଶ ଦୁଇ କୁମର କାଖରୁ ଓହ୍ଲାଇଲେ ।
ପିତାର ଜନନୀର ପାଦ ଧରି ପ୍ରଣମିତ ହୋଇଲେ ॥ ୭୭ ॥
କଲ୍ୟାଣ କରନ୍ତି ଶ୍ରୀରାମର ସର୍ବମାତ ।
ପିତାର ସମ୍ପଦ ଏବେ ଭୁଞ୍ଜ ବେନି ଭ୍ରାଥ ॥ ୭୮ ॥
ଲକ୍ଷ୍ମୀ ଭୁଞ୍ଜ ଆୟୁଷ୍ୟ ବର୍ଦ୍ଧମାନ ହୋଉ ।
ଯେ ତୁମ୍ଭର ଶତ୍ରୁ ସେ ବେଗେଣ କ୍ଷୟେ ଯାଉ ॥ ୭୯ ॥
ସକଳ ଯୁବତୀ କୁମରଙ୍କୁ ଉପଲେଖନ୍ତି ।
ସଂଜାତ ସ୍ୱରୂପ ଏ ଶ୍ରୀରାମ ପ୍ରାୟେ ଦିଶନ୍ତି ॥ ୮୦ ॥
ସୀତାକଇ ସମସ୍ତେ ହେ କରନ୍ତି ଧନ୍ୟ ଧନ୍ୟ ।
ସେ ପୁନ୍ୟବତୀ ଗର୍ଭରୁ ଉପୁଜଇ ନା ଏସନେକ ନନ୍ଦନ ॥ ୮୧ ॥

## ଲବକୁଶଙ୍କ ବନ୍ଧାପନା

ତଦ ଅନ୍ତରେ ରାମ ପୁତ୍ରଙ୍କର କଟି ଧଇଲେ ।
କନେକ ସିଂହାସନେ କୋଳେ ଧରି ବସିଲେ ॥ ୧ ॥

---

୭୦-୭୨. ଏ ତିନି ପଦ ଙ ପୋଥିରେ ନାହିଁ । ୭୪. କାଖରେ—ପାଖରେ (କ)
୭୬. ମୁଖଗୋଳ—ହାଲେହୋଳ (ଖ) । ୭୭. ଓହ୍ଲାଇଲେ—ଅଲଇଲେ (କ) ।
୭୮. ଭ୍ରାଥ—ଭ୍ରାଭ୍ରାଥ । ୭୯. ଭୁଞ୍ଜ—ଭୁଞ୍ଜି । ୮୦. କୁମରଙ୍କୁ ଉପଲେଖନ୍ତି—
କୁମରଙ୍କ ରୂପ ଦେଖନ୍ତି (ଖ) । ୧. କଟି—ନଉ (ଖ) ।

ମାଣିକ୍ୟର ଦୀପାବଳୀ ଘେନିଣ ହସ୍ତ ।
ସୁତକୁ ବନ୍ଦାବନ୍ତି ସମସ୍ତ ମାତ ॥ ୨ ॥
ହୃଦରେ ଚତୁଃସମ ଲେପନ କରନ୍ତି ।
ଲଲାଟେ ଚନ୍ଦନ ଘଷି କସ୍ତୁରୀ ଚିତା ଦେନ୍ତି ॥ ୩ ॥
ଭ୍ରଥ ଲକ୍ଷ୍ମଣ (ଶତ୍ରୁଘନର) ତିନି କୁମାର ।
ସେହୁ ବସିଥିଲେ ଶ୍ରୀରାମ କତର ॥ ୪ ॥
ପଞ୍ଚ କୁମାର ଏକ ରୂପ ଦିଶନ୍ତି ।
ପାଞ୍ଚଙ୍କର ଶିରେ ଦୂବ ଅଛତ ଦିଅନ୍ତି ॥ ୫ ॥
ହରଷେ ଶ୍ରୀରାମ ନଗ୍ର ଉଛବ କଲେ ।
ହାଟକୁଳ ମତହସ୍ତୀ ମୁକୁଳା କଲେ ॥ ୬ ॥
ଏକର ବଉ ଆରେକ ନିଅନ୍ତି ।
ଏକର ମାଥେ ଆରେକ ଧୂଳିକି ଉଡ଼ାନ୍ତି ॥ ୭ ॥
କେ କାହାକୁ ଧରି ଠେଲି ପକାନ୍ତି ।
ଚୂନ ହଳଦୀ ଗୋଳି କେ କାହାକୁ ନଉଡ଼ନ୍ତି ॥ ୮ ॥
ହରଷେ ନଗ୍ର ଲୋକେ ଆନନ୍ଦମୟେ ହୋନ୍ତି ।
ରଘୁପତିଙ୍କର କ୍ରମରନ୍ତି ଦେଖିଣ ଦୁହନ୍ତି ॥ ୯ ॥
ଧନ ବସନ ଗଲ ବୋଲି ଚିନ୍ତା ନ କରନ୍ତି ଚିତ୍ତ ।
ସବୁରି ହୃଦରେ ଆନନ୍ଦମୟେ ଚିତ୍ତ ॥ ୧୦ ॥
ଯେବଣ ସାଧବର ଧନବସ୍ତ୍ର ଜୁରି କରିଣ ନେଲେ ।
ତାହାନ୍ତ ପରା ରାମ ଦୁଗୁଣ କରିଣ ଦେଲେ ॥ ୧୧ ॥
ଦୁଃଖିତ ମନ ନ ଧରନ୍ତି କେହୁ ।
ଆନନ୍ଦ ହୋଇଲେ ଧନରତ୍ନ ପାଇ ॥ ୧୨ ॥
ଘରେ ଘରେ ନୋଣ ଶ୍ୱେତ ଅମ୍ବର ଉଡ଼ାନ୍ତି ।
ଶଙ୍ଖ କମ ମହୁରି ବଜଘୋଷ ବଜାନ୍ତି ॥ ୧୩ ॥
ଦମା ଦୁନ୍ଦୁଭି ମୃଦଙ୍ଗ ଭେରି ବଜାନ୍ତି ।
ଠାବେ ଠାବେ ନୃତ୍ୟ ଗୀତ କରନ୍ତି ॥ ୧୪ ॥
ଈଶ୍ୱରକୁ କ୍ଷୀର ସ୍ନାହାନ କରାନ୍ତି ।
ଦରିଦ୍ର ବ୍ରାହ୍ମଣକଇ ଧନବସ୍ତ୍ର ଦାନ ଦେନ୍ତି ॥ ୧୫ ॥
ଦେବୀଙ୍କେ ବଳି ଛାଗଳ ମହିଂଷି ।
କ୍ଷେତ୍ରପାଳକଇ ଆହ୍ୱାନ କରାବନ୍ତି ରଘୁଶିଷି ॥ ୧୬ ॥

---

୩. ଲଲାଟେ—ନଅଡ଼େ (କ) । ୫. ଦିଅନ୍ତି--ଦିୟନ୍ତି (କ) । ୮. ଠେଲିପକାନ୍ତି—ତଇଲ୍ୟ ନଉଡ଼ନ୍ତି (କ) । ୯. ପଦଟି ଖ ପୋଥିରେ ନାହିଁ ।

ତଦଅନ୍ତରେ ଅନ୍ତଃପୁରର ଯୁବତୀ ।
ପାଞ୍ଚ କୁମରଙ୍କୁ କୁଙ୍କୁମ ଘଷନ୍ତି ॥ ୧୭ ॥
ଚନ୍ଦନ ଲେପନ କଲେ ସବୁଙ୍କର ଗାତ୍ର ।
କପୋଳେ କସ୍ତୁରୀ ଚିତା ଦେଲେ ରଘୁନାଥ ॥ ୧୮ ॥
ସୀତାର ମଣି ମୁକୁତା ମାଳ ଯେ ଭଣ୍ଡାରେ ଥୋଇଥିଲେ ।
ଦୁଇ ପୁତ୍ରଙ୍କର ଗଳାରେ ତାହା ଶ୍ରୀରାମ ଲମ୍ବାଇଲେ ॥ ୧୯ ॥
କନକ କୁଣ୍ଡଳ ବାହାରେ ଚନ୍ଦ୍ରବନ୍ଦ ।
ମୁଖ ଦିଶଇ ଯେସନ୍ତେ ପୂର୍ଣ୍ଣିମୀର ଚନ୍ଦ୍ର ॥ ୨୦ ॥
ଦିବ୍ୟ ମଣ୍ଡିଆଳ ପଟ୍ଟଣ ଝୀନବାସ ।
ପରିଧାପନ ହୋଇଲେ ସୀତାର ବେନି ଶିଷ୍ୟ ॥ ୨୧ ॥
ଜାତି ଯୂଥୀ ସେବତୀ ମଲ୍ଲୀ ମାଳତୀ ।
ପୁତ୍ରଙ୍କର ଶିରେ କୁସୁମ ଆଲମ୍ବ କରନ୍ତି ସୀତାପତି ॥ ୨୨ ॥
ଶୀଘ୍ରେଣ ଶ୍ରୀରାମ ଯେ ସ୍ନାହାନ ସାରିଲେ ।
ପାଞ୍ଚ କୁମାରନ୍ତ ଘେନି ମଣୋହିରେ ବସିଲେ ॥ ୨୩ ॥
କନକ ସୀତା ଆଣି ସନଧ୍ୟେ ବସାନ୍ତି ।
ଦେଖି ଲବକୁଶେ ପ୍ରତିମାକୁ ଗୁହାନ୍ତି ॥ ୨୪ ॥
ଲବକୁମର ମୁଖ ଗୃହିଂ କୁଶକୁମର ପଚାରଇ ।
ଏ ପ୍ରତିମା ଦିଶଇ ଆମ୍ଭର ମାତାର ସାଦୃଶଇ ॥ ୨୫ ॥
ଲବକୁମର ମୁଖ ଗୃହିଂ କହନ୍ତି ରଘୁନାନ ।
ଶୁଣ ହେ ପୁତ୍ର ତଲ୍ୟସ୍ତେ କରି ମନ ॥ ୨୬ ॥
ତୁମ୍ଭର ମାତାକୁ ମହୁଂ ବନରେ ନବାସିଲି ।
ସୀତାର ସାଦୃଶେ ପ୍ରତିମା କରାଇଲି ॥ ୨୭ ॥
ଏହାର ମୁଖ ଦେଖଇ ମୁହିଂ ନିତି ।
ପାସୋର ନ ଯାଇ ମୋତେ କନେକ ଦୋହିତି ॥ ୨୮ ॥
ଶୁଣିଣ କୁମାରେ ହୋଇଲେ ମଉନ ।
ମାତାକଇ ସୁମରି ନ ରୁଚଇ ଅନ୍ନ ॥ ୨୯ ॥
ପଞ୍ଚଭୂତ ଆତ୍ମାରେ ଖଳନ୍ତି ଦୁଇ ଭାଇ ।
ଶୀଘ୍ରେଣ ଆସିବ ବୋଲି ଯେ ବୋଇଲେ ଆମ୍ଭର ଆଈ ॥ ୩୦ ॥
ଏତେବେଳ ଯାଏ ରହିଲୁ ଏ ପୁର ।
ଆଦିତ୍ୟ ହୋଇଲାକ ତୃତୀୟ ପ୍ରହର ॥ ୩୧ ॥

---

୨୦. ପୂର୍ଣ୍ଣିମୀର—ପୂର୍ଣ୍ଣିର (କ) । ୨୨. ଆଲମ୍ବ—ଆରମ୍ଭ ।

ଆମ୍ଭନ୍ତ ନ ଦେଖି ଜନେକ ଦୋହିତ ।
ଅତି ବିକଳ ହୋଇବେ ତାହାର ଚିତ୍ତ ॥ ୩୨ ॥
ପୂର୍ବର ପୁଣ୍ୟରେ ପିତାର ମୁଁ ଦେଖିଲୁ ।
ଗର୍ଭଧାତ୍ରୀ ମାତାକଇ ମହାକଷ୍ଟ ଦେଲୁ ॥ ୩୩ ॥
ଏହନେକ ଭାଳୁ ସୀତାର ବେନି କୁମର ।
ଘନଘନ ନୟନୁ ଲୁହ ଗଳି ପଡ଼ଇ ଭୂମିର ॥ ୩୪ ॥
ଅନ୍ନ ନ ଭୁଞ୍ଜନ୍ତି ଭରିଛନ୍ତି ହସ୍ତ ।
ଭୂମିକି ଗୃହ୍ନଂ ଖାର ଲମ୍ବାଇଣ ମାଥ ॥ ୩୫ ॥
ପୁତ୍ରଙ୍କର ବିରସ ମୁଖ ଦେଖିଣ ସୀତାପତି ।
ମନୋହ୍ନ ସାରି ବେଗେ ଆଚ୍ମେନ କରନ୍ତି ॥ ୩୬ ॥
ନବରନ୍ନ ଖଞ୍ଜିତ ଖଟ ଉପରେ ବସିଲେ ।
ଦୁଇ ପୁଅ ଆଣି କୋଳରେ ବସାଇଲେ ॥ ୩୭ ॥
କର୍ପୂରେ ତାମ୍ବୋଳ ଭୁଞ୍ଜନ୍ତି ଦାଶରଥି ।
ପୁତ୍ରଙ୍କର ମୁଖେ ତାମ୍ବୋଳ ଭୁଞ୍ଜନ୍ତି ॥ ୩୮ ॥
ଦୁଇ କୁମରଙ୍କ ମୁଖ ବିରସଇ ।
ଶ୍ରୀରାମ ମୁଖ ଗୃହ୍ନଂ କହନ୍ତି ଲବକୁଶଇ ॥ ୩୯ ॥
ତୋ ସ୍ୱାମୀ କ୍ଷତ୍ରିବର ରଘୁବଂଶ ବିଖ୍ୟାତ ।
ମହୀ ମଧ୍ୟେ ନୃପତିଶେଖର ବୀରବ(ର) ଚକ୍ରବର୍ତ୍ତୀ ॥ ୪୦ ॥
ଅଦୋଷେ ଆମ୍ଭର ମାତାକୁ ଉପେଠଲୁ ।
ଦେବଙ୍କର ଜନାଣେ ଅନେକ କଷ୍ଟ ଦେଲୁ ॥ ୪୧ ॥
ଶାସ୍ତ୍ର ଉକତେ ନଗ୍ର ପରିଭ୍ରମଣ କରୁ ।
ପର ଅପର କେ ବୁଝିତ ନ ପାରୁ ॥ ୪୨ ॥
ବଶିଷ୍ଠଙ୍କର କହନ୍ତେ ଜାଣିଲୁ ସର୍ବସିଦ୍ଧି ।
ଏବେ ସେ ଖେ ତାତ ପୁଶଲା ଆମ୍ଭର ବୁଦ୍ଧି ॥ ୪୩ ॥
ଜଣ ଭିକ୍ଷା ମାଗି ତଣ୍ଡୁଲ ଆମ୍ଭେ ନେଉ ।
ବାଲ୍ମୀକି ମହାମୁନିଙ୍କର ସନ୍ନିଧ୍ୟେ ନେଇ ଦେଉ ॥ ୪୪ ॥
ମାତା ଆମ୍ଭର ନବର ଦ୍ୱାରେ ବସିଥାଇ ।
ଆମ୍ଭନ୍ତ ଦେଖିଲେ ସେ ନବର ଭିତରକୁ ଯାଇ ॥ ୪୫ ॥
ତେବେ ସେ ସ୍ନାହାନ ଭୋଜନକୁ ଯାଇ ।
ଆମ୍ଭଙ୍କୁ ନ ଦେଖି ନ ପୁଣ ଥାଉ ମରଇ ॥ ୪୬ ॥

---

୩୫. ଗୃହ୍ନଂ—ଗୃହ୍ନଂଣ । ୩୬. ଆଚ୍ମେନ—ଆଚ୍ମେବନ (ଖ) । ୩୭. ଖଟ—ଖରଡ଼ (ଖ) । ୪୦. ବିଖ୍ୟାତ—ବିକ୍ଷାତ । ୪୨. ପରିଭ୍ରମଣ—ପରିମଣ (କ) । ୪୩. ସର୍ବସିଦ୍ଧି—ବୁଦ୍ଧି (କ) ।

ଆସିବାର ବେଳେ ଡଆଣଲେ ମାତ ।
ନିକଟେ ଗୀତ ଗାଇ ଆସିବ ବେନ ଭ୍ରାଥ ॥ ୪୭ ॥
ବରଣ କର ଶାସ୍ତ୍ର ଶୁଣିଲ ତୁମ୍ଭେ ଯହୁଁ ।
ତେଣୁ ସେ କ୍ଷଣକଇ ଯେନ ମୁହିଂ ଅଇଲ ବହୁଁ ॥ ୪୮ ॥
ପୂର୍ବ ଜନ୍ମେଣ କଲଇ ସାଧୁ ପୁନ୍ୟ ।
ତେଣୁ ସେ ଦେଖିଲୁ ତୋହର ବଦନ ॥ ୪୯ ॥
ଏବେ ଯିବଉ ଆମ୍ଭେ ଜନେକର ପୁରୀ ।
ଆଗ୍ୟାଂ ଦେବା ଦେବ ମନେଣ ବିଚାରି ॥ ୫୦ ॥
ଶୁଣିଣ ଶ୍ରୀରାମ ତବଦ ହୋଇଲେ ।
ଲବକୁମର ମୁଖ ଗୃହିଂ ବିମନେ କହିଲେ ॥ ୫୧ ॥
ତୁମ୍ଭେ ଉପେଖି ମୋତେ ଯିବ ଯେବେ ।
ଏ ମୋହର ଦେହେ ପ୍ରାଣ ଥିବକି ତେବେ ॥ ୫୨ ॥
ସୀତସ୍ନାନଇ ନ ଦେଖି ଅଥିର ମୋର ମନ ।
କ୍ରୋଧଅଗ୍ନି ଜାଣି ଦହଇ ଘନଘନ ॥ ୫୩ ॥
ତୁମ୍ଭର ମୁଖରେ ଗ୍ରନ୍ଥ ଶୁଣିଲି ।
ଅମୃତ ରସ ପ୍ରାୟେକ ବୁଝିଲି ॥ ୫୪ ॥
ପୁତ୍ରଙ୍କର ମୁଖେ ଯେ ଶୁଣଇ ଗ୍ରନ୍ଥ ।
ଶତେ ପୁରୁଷ ତାହାର ହୁଅଇ ମୁକତ ॥ ୫୫ ॥
ସୂର୍ଯ୍ୟବଂଶକଇ ତୁମ୍ଭେ ଭଗୀରଥ ସମାନ ହୋଇଲ ।
ମାତୃକୁଳ ପିତୃକୁଳ ଦୁଇକୁଳ ଉଧରିଲ ॥ ୫୬ ॥
କଥାଏ କହିବା ଶୁଣ ହେତୁ ମନ ।
ତୁମ୍ଭ କହିବାକୁ ବୁଝଇ ଏମାନ ॥ ୫୭ ॥
ବିଧାତାର ନିର୍ବାଣେ ସୀତା ଉପେଖିଲି ।
ଅସହିତ କଷ୍ଟ ଦୁଖଭାରା ପାଇଲି ॥ ୫୮ ॥
ସୀତାର ଦୋଷ ନାହିଂ ତୁମ୍ଭର କହନ୍ତେ ।
ଦେବତାଙ୍କର କପଟ ମୁହିଂ ମେଣ୍ଟିବି କେମନ୍ତେ ॥ ୫୯ ॥
ଏବେ ମୋତେ ଯେନ ଜନେକପୁରକଇ ଯିବ ।
ମୋହର ଭରସାକଇ ନେଇ ଦେଖାଇବ ॥ ୬୦ ॥
ସତୀକି ପ୍ରବୋଧି ଏଥିକି ଯେନଣ ଆସିବା ।
ନିଷ୍ଠନ୍ତ ହୋଇଣ ରାଜ୍ୟ କରିବା ॥ ୬୧ ॥

---

୪୭· ଡଆଣଲେ—ଡସ୍ଥାଣଲେ । ୪୮· ବରଣ—ବର । ୫୭· ତୁମ୍ଭ—ତୁମ୍ଭକଇ (କ); ଏ ମାନ—ଏବେ ମାନ (କ) । ୫୮· ଦୁଖଭାର—ଦୁଖଭାରା (କ) । ୫୯· କେମନ୍ତେ—କେତେ (କ) ।

ଶୁଣିଣ ଲବକୁଶେ କହନ୍ତି ଯୋଡ଼ି ହସ୍ତ ।
ଯେ ତୋହର ବଂଶରେ ମିଳଇ ସେ ତାତ ॥ ୬୨ ॥
ଶାସେକ ନାଶେକ ତୁ ପ୍ରାଣର ଅଧିକାରୀ ।
ସ୍ୱାମୀ ଦୟା କଲେ ଦୋଷ ହୁଅଇ ପାଶ ॥ ୬୩ ॥
ପୂର୍ବକାଳେ ଦୁର୍ଗାକୁ ସେବଇ ଯେବଣ ଯୁବତୀ ।
ଇହଜନ୍ମେ ହେ ସ୍ୱାମୀର ସଉଭାଗୀ ହୁଅନ୍ତି ॥ ୬୪ ॥
ଆମ୍ଭେ ଆସ୍ତି ନାସ୍ତି କରିତ ନ ପାରୁ ।
ଯେ ତୋହର ଆଗ୍ୟାଂ ଶିରେ ଘେନ ପାରୁ ॥ ୬୫ ॥

## ସୀତାଙ୍କ ନିକଟକୁ ଯାତ୍ରା

ସୁତଙ୍କର ବଚନେ ଶ୍ରୀରାମ ହୋଇଲେ ହରଷ ।
ବଶିଷ୍ଠ ମହାମୁନିଙ୍କି ହକାରନ୍ତି ପାଶ ॥ ୧ ॥
ମନ୍ତ୍ରୀ ଅମନାତ୍ୟ ତପିଷ୍ଠ ଭଗବନ୍ତଜନ ।
ସୁଜ୍ଞ ସୋଦର ବୈଷ୍ଣବ ବଦ୍ୟୁଜନ ॥ ୨ ॥
ଭ୍ରଥ ଲକ୍ଷ୍ମଣ ଅଛନ୍ତି ଦୁଇଭାଇ ତୁଲେ ।
ଶ୍ରୀରାମର ସନଧ୍ୟେ ସମସ୍ତେ ମିଳିଲେ ॥ ୩ ॥
ବଶିଷ୍ଠଙ୍କର ମୁଖ ଗ୍ରହ୍ନଂ କହନ୍ତି ଋଷିବର ସୁନ୍ଦର ।
ସେ ମୁନି ଏହୁକ୍ଷଣି ଯିବା ବହ୍ନିଦେଶ ନଗର ॥ ୪ ॥
ପ୍ରତ୍ୟେକେ ଆରୋହି ଏହିକ୍ଷଣି ଯିବା ।
ଜନେକ ନନ୍ଦନୀକ ଘେନିଣ ଆସିବା ॥ ୫ ॥
ତୁମ୍ଭର ନ ଗଲେ ସିଦ୍ଧ୍ୟ ନୁହୋଇ କାର୍ଯ୍ୟ ।
ସୀତାକଇ ବୁଝାଇ କହିବ ବ୍ରହ୍ମାର ତନୁଜ ॥ ୬ ॥
ବଶିଷ୍ଠେ କହନ୍ତି ଜାଣୁଛିକି ପୂର୍ବକାଳର କଥା ।
ମୋହର ବଚନ ଯେ ନ କଲୁ ସର୍ବଥା ॥ ୭ ॥
ଏବେ ଯିବା ନା ଜନେକ ଭୁବନ ।
ଭଲ ଶଂକ୍ରନ୍ୟ ନ ବୁଝଇ ମୋହର ମନ ॥ ୮ ॥
ମହାସତୀଙ୍କି ଅନେକ ଦୁଃଖ ଦେଲୁ ।
ପରାପର କଥା ଯେ ଦୁଇ ନ ଚେତିଲୁ ॥ ୯ ॥

---

୬୩. ଦୋଷ—ଦ୍ରୋହ (କ) । ୨. ଭଗବନ୍ତଜନ—ଭଗବାନ (କ); ବୈଷ୍ଣବ ବଦ୍ୟୁଜନ—ତପିଷ୍ଟ ତପୀଜନ କ) । ୯. ପରାପର କଥା—ପରାପର (କ) ।

ଅପବାଦ୍ୟ ରାଗେ ଯେ କୋପ କରଇ ।
ପଛନ୍ତ କାଳେ ସେ ଝୁରି ଝୁରି ମରଇ ॥ ୧୦ ॥
ଶ୍ରୀରାମ କହନ୍ତ ଏବେ ଗଲକଥାକୁ ଆନ ନ କରଇ ମହାମୁନ୍ୟ ।
ନ୍ମରଙ୍କୁ ଦେନ ଯିବା ଗୃଳ ବହନ ॥ ୧୧ ॥
ଏସନେକ କହୁ ରାମ ପୁଷ୍ପକ ସୁମରିଲେ ଯହୁଁ ।
ତତକ୍ଷଣେ କୋବେର ବିମାନ ଦେଇ ପଠିଆଇଲ ତହୁଁ ॥ ୧୨ ॥
ଦେଖିଣ ଶ୍ରୀରାମ ହରଷ ହୋଇଲେ ।
ପୁଅଙ୍କର କଟି ଧରି ରଥରେ ବିଜୟେ କଲେ ॥ ୧୩ ॥
ପୋହିତ ମନ୍ତ୍ରୀ ଅମନାତ୍ୟ ସହିତେ ।
ଭରଥ ଲକ୍ଷ୍ମଣ ସମସ୍ତେହେ ବସନ୍ତି ରଥେ ॥ ୧୪ ॥
କକେୟୀ କଉଶଲ୍ୟା ସୁମିତ୍ରା ତିନ ମହାଦେଈ ।
ସୀତାଙ୍କୁ ଦେଖିବାକୁ ସଜ ହୁଅନ୍ତି ସେହି ॥ ୧୫ ॥
ଆଉର ଯେତେକ ଅନ୍ତଃପୁରର ଯୁବତୀ ।
ସୀତାଙ୍କୁ ଦେଖିବାକୁ ସମସ୍ତେ ସଜ ହୁଅନ୍ତି ॥ ୧୬ ॥
ଧାଈ ମୁଦୁସୁଲୀ ପରିବାରି ସହିତେ ।
ସମସ୍ତେ ଅଇଲେ ବସିବି ବୋଲି ରଥେ ॥ ୧୭ ॥
ବଶିଷ୍ଠେ ବୋଲନ୍ତି ରାମଚନ୍ଦ୍ର ମାତ ।
ରାଜ୍ୟ ତେଜିବାର ତୁମ୍ଭର ନୁହଇ ଯୁଗତ ॥ ୧୮ ॥
ରଥ ଆରୋହି ଶୂନ୍ୟ ମାର୍ଗେ ଆମ୍ଭେ ଯିବୁ ।
କାହୁଡ଼ି ଆଜ ଏଥକଇ ଆସିବୁ ॥ ୧୯ ॥
ରାଜ ଭଣ୍ଡାର ସମ୍ଭାଳି ତୁମ୍ଭେ ଥିବ ।
ମନେ ବଇରାଗ ତୁମ୍ଭେ କିଛି ନ ଧରିବ ॥ ୨୦ ॥
କଉଶଲ୍ୟାଏ କହନ୍ତି ଶୁଣସି ମହର୍ଷି ।
ତିନ ଭଏଣୀ ରଥେ ଯାଉ ଆମ୍ଭେ ବସି ॥ ୨୧ ॥
ଜନେକ ନନ୍ଦନୀର ମୁଖ ଆମ୍ଭେ ଦେଖୁ ।
ମାନେବ ଜନମର ପାତେକ ଉପେଖୁ ॥ ୨୨ ॥
ବିଶେଷେ ଋଷିଙ୍କର କୋପ ମହାଅଗ୍ନି ।
ଅନେକ ବନସ୍ତେ ବୁଲିଲ ଛିନ୍ନସେଣୀ ॥ ୨୩ ॥
ଗର୍ଭର ଭାରି ସେ ପାଇଲ ଅତିଦୁଃଖ ।
ନ ପୁଣ ନ ଗୃହିଂ ସେ ଶ୍ରୀରାମର ମୁଖ ॥ ୨୪ ॥

---

୧୦. ଅପବାଦ୍ୟ ରାଗେ—ଆପାଦକାଳେ (ଖ) । ୧୩. କଟି—ନଡ଼ି (ଗ) ।

ମୁହିଂ ସୀତାଙ୍କୁ ଯେ କହିବି ପ୍ରବୋଧି ।
ମୋତେ ଦେଖିଲେ ସତୀ ଛାଡ଼ିବ କୋପ କ୍ରୁଧି ॥ ୨୫ ॥
ମୋହର ବଚନ ନ ଲଂଘଇ ସତୀ ସୀତା ।
ଆମ୍ଭନ୍ତ ରଥେ ବସାଇ ନଅସି ମହାଗ୍ୟାଂତା ॥ ୨୬ ॥
ସ୍ତ୍ରିଗ୍ରି ସେ ଜାଣନ୍ତି ନା ସ୍ତ୍ରିଙ୍କର ପ୍ରକୃତି ।
ମାତାର ବଚନ ଶୁଣି କହନ୍ତି ସୀତାପତି ॥ ୨୭ ॥
ତୁମ୍ଭେ ତାହା କହିଲ ଗୋ ସେ କଥା ନସ୍ଥିତ ।
ଅତି ଧାର୍ମିକ ସେ ଜନେକର ଦୋହିତ ॥ ୨୮ ॥
ଲଙ୍କାରେ ଯେବେଣ ରାବଣ ମାରିଲି ।
ଦୋଷୃଣି ବୋଲି ତାହାକୁ ଅଗ୍ନି ପରୀକ୍ଷ କଲି ॥ ୨୯ ॥
ରାତ୍ର ଦିବସ ସାତ ଦିନ ଅଗ୍ନିରେ ରହିଲି ।
ଦେହ ନ ପୋଡ଼ିଲି ଊଦା ବସ୍ତ୍ର ନ ଶୁଖିଲି ॥ ୩୦ ॥
ସୁଗ୍ରୀ ଅଙ୍ଗଦଙ୍କୁ ପଠିଆଇଲି ଦେଖି ।
ତାହାଙ୍କୁ ସମାଦ ନ ଦେଲେ ଶଶୀମୁଖୀ ॥ ୩୧ ॥
ଅଗ୍ନିର ସନ୍ନିଧ୍ୟକୁ ଗଲି ମୁହିଂ ଯେବେ ।
କୋପ ତେଜି ସୀତସ୍ଥା ସମାସ୍ୟା କଲ ତେବେ ॥ ୩୨ ॥
ତାହାର ହୃଦରେ କୋପ ନାହିଂ ମୋତେ ।
ଯଦ୍ୟପି ଜାନେକୀ କୋପ କରଇ ଚତ୍ତେ ॥ ୩୩ ॥
ବଶିଷ୍ଟ ତପୋବନ୍ତ ପ୍ରବୋଧି କହିବେ ।
ଭ୍ରଥ ଲକ୍ଷ୍ମଣ ଯେ ଭଗତ ହୋଇବେ ॥ ୩୪ ॥
ଏ ମେ ଦ୍ୱର ଅମନାତ୍ୟଗଣମାନେ ।
ଆବର ଥିବେ ତ ଜନେକ ତପୋଧନେ ॥ ୩୫ ॥
ସମସ୍ତେ ସୀତାକଇ ପ୍ରବୋଧି କହିବେ ।
ଲବକୁଶେ ମାତାର ଚରଣେ ପଡ଼ିବେ ॥ ୩୬ ॥
ବହୁତ ବଚନ ସେ ନ ଲଂଘଇ ସୀତା ।
ମହତ ମର୍ଯିତା ସେ ଋଷିର ଦୋହିତା ॥ ୩୭ ॥
ଦୁଃଖ ପାଇ ମାତା ତୁମ୍ଭେ କଂପା ଗିବ ।
ଅନ୍ତଃପୁରେ ମୋହର ଶଜେ କରଥିବ ॥ ୩୮ ॥

---

୨୬· ନଅସି—ନସ୍ଥିତି । ୨୮· ନସ୍ଥିତ—ନଅତ । ୨୯· ଯେବେଣ—କେବଣ ।
୩୧· ସମାଦ—ସମ୍ବାଦ (କ ; ସମାସ୍ୟା (ଖ) । ୩୪–୩୭. କ ପୋଥିରେ ୩୪
ପଦର ପ୍ରଥମ ପାଦ ଓ ୩୭ ପଦର ଶେଷ ପାଦ ମଧର ଗ୍ଡ଼ିର ପାଦ ନାହିଁ ।
୩୮· ଗିବ—ଗିବା (ଖ); କରଥିବ—କରଥିବା (ଖ) ।

ଶ୍ରୀରାମର ବଚନ ଯହୁଂ କଉଶଲ୍ୟା ଶୁଣିଲେ ।
ସମସ୍ତ ପ୍ରବନ୍ଧ ଦେହ୍ନି ନବରେ ପଶିଲେ ॥ ୩୯ ॥
ସ୍ୱଚ୍ଛିକ ନଡ଼ି ଗମନ୍ତି ଚନ୍ଦ୍ରଘାତ ।
ମନପବନ ସମାନ ଗମଇ ଗଗନଗଡ଼ ॥ ୪୦ ॥
ନମସ୍ତେ ଗୋପାଳସୁନ୍ଦର ଗୋପୀମୋହନ କାନ୍ୟ ।
ନନ୍ଦର ଘରେ ବଢ଼ିଲେ ଯଦୁବଂଶେ ଉତପନ ॥ ୪୧ ॥
କଦମ୍ବ ତରୁମୂଳେ ବଚନ୍ଧ ବଇଂଶୀର ଧ୍ୱନି ।
ଶୁଣି ଅଥିର ହୃଦୟ ଗୋପାଳକାମେଣୀ ॥ ୪୨ ॥
ସୁନ୍ଦରକର୍ମ ତେଜି ଚଳନ୍ତି କୁଞ୍ଜବନେ ।
ଶରୀର ଅଚେତନ ଗୋପୀଙ୍କର ବିରହ ମଦନେ ॥ ୪୩ ॥
ଚଞ୍ଚଳ ମନାସ୍ଥ୍ୟା ନୁଆଗନ୍ତୁ ଥିର କରି ।
କଦମ୍ବତଳେ ଲେଉଡ଼ନ୍ତି ନନ୍ଦନନ୍ଦନ ଶ୍ରୀହରି ॥ ୪୪ ॥
କାମସେଣୀ ସୁବର୍ଣ୍ଣ ତୋଷେ କଲେ ଠାବ ।
ମିଳିଲ କାମେଣୀଙ୍କର ମନ ରଞ୍ଜିଲୁ ପଦ୍ମନାଭ ॥ ୪୫ ॥
କାହାକଇ ଆଲିଙ୍ଗନ କାହାକଇ ପଢ଼ରୋଷ ।
କାହାକଇ ଚୁମ୍ବନ କାହାକଇ ପରିହାସ ॥ ୪୬ ॥
କାହାକଇ ଆଶ୍ୱାସନା କାହାକଇ ପ୍ରୀତିମେଳ ।
କାହାକଇ ହାସ୍ୟ କାହାକଇ କରେ କରତାଳ ॥ ୪୭ ॥
ଭୁଙ୍କେ ଭୁଙ୍କେ ସେ କେବଣ ଗୋପୀଙ୍କି ଭଡ଼ି ।
କେବଣ ଗୋପାଳୁଣୀଙ୍କର କର ଧରି ଉଚ୍ଛୁଡ଼ି ॥ ୪୮ ॥
ମୁଖେ ଚୁମ୍ବନ କାହାକଇ ଅଧରେ ଅଧର ପାନ ।
କାହାକଇ ଦନ୍ତ ଘାତ କାହାକଇ ଉଲ୍ଲୋଳ ନୟନ ॥ ୪୯ ॥
କାହାର ଗଳା ଧରି ପିଠିରେ ଆରୋହଣ କରନ୍ତି ।
କେବଣ ଗୋପୀକି ହରି କୋଳରେ ବସାନ୍ତି ॥ ୫୦ ॥
କେବଣ ଗୋପୀଙ୍କି ହାସ୍ୟ ପରିହାସ୍ୟ ବିନୋଦେ ।
କେ ନୃତ୍ୟ କରଇ କେ ଗାବଇ ଧନାଶ୍ରୀ ନାଦେ ॥ ୫୧ ॥

---

୪୪. ମନାଷ୍ଥ୍ୟା—ମନ (ଖ); ଲେଉଡ଼ନ୍ତି—ଲୋଳନ୍ତି (କ) । ୪୬. ପଢ଼ରୋଷ—ପରମତୋଷ (କ) । ୪୮. ଭଡ଼ି—ଘବ । ୪୯. ଉଲ୍ଲୋଳ—ଉଠଲ୍ଲଳ । ୫୦. ପିଠିରେ ଆରୋହଣ—ଆଭରଣ (ଖ); ଗୋପୀକି ହରି କୋଳରେ—ଗୋପୀ ହରିଙ୍କି କାଖରେ (କ) । ୫୧. ପରିହାସ୍ୟ—ଲାସ୍ୟ (ଖ); ଧନାଶ୍ରୀ—ବଂଶୀ (ଖ); ନାଦେ—ରାଗେ (କ) ।

ଏମନେକ କୁତୂହଳ ବିନୋଦ ପ୍ରେମ ପୀରତି ।
ଗୋପୀ ମନୋରଞ୍ଜନ ଯୋଶଦାର ତନୟ ଶ୍ରୀପତି ॥ ୫୨ ॥
ତବ ଚରଣଅରବିନ୍ଦେ ଲୋଟୁ ମୋହର ଶିର ।
ସିଦ୍ଧେଶ୍ୱର ଦାସଙ୍କୁ ଭବଜଳୁ କର ପାର ॥ ୫୩ ॥

## ସୀତାଙ୍କ ପ୍ରତୀକ୍ଷା

ଏଥି ଅନନ୍ତରେ ଶୁଣ ଯୁଧିଷ୍ଠିର ନୃପତି ।
ଦୃଢ ଭାଇ ହନ୍ତେ ପ୍ରିୟବନ୍ତ ସୁବନ୍ତ ॥ ୧ ॥
ମାରକଣ୍ଡଙ୍କର ପସ୍ତ ଧରି କରନ୍ତି ନମସ୍କାର ।
ହେ ମୁନି ରାମାୟଣ ଶୁଣାଇ ନିର୍ମଳ କରାଅ ଶରୀର ॥ ୨ ॥
ସୀତାଙ୍କୁ କହୁଯେ ଲବକୁଶେ ଗୀତ ଗାଇତ ଗଲେ ।
ଶ୍ରୀରାମ ମାତାର ମନଧ୍ୟାନୁ ବାହୁଡ଼ି ନଇଲେ ॥ ୩ ॥
ଚିନ୍ତାର ଅନ୍ତରେ ଲବକୁଶେ ବାକ୍ୟ କହନ୍ତେ ।
ଦୁଇ ପହର ହୋଇଥିଲା ଆଦିତ୍ୟ ରଥେ ॥ ୪ ॥
ଅସ୍ତୁ କହିବା ସମାପତେ ବରଞ୍ଚି ଯେ ଗଲା ।
ଦେଖି ଦେଖୁ ଦିବାକର ତିନି ପହର ହୋଇଲା ॥ ୫ ॥
ପୁତ୍ରନ୍ତ ନ ଦେଖି ଜନେକ ଦୋହିତ ।
ହୃଦ ବିଦୃରିଲେ ଯେ ଲବକୁଶଙ୍କର ମାତ ॥ ୬ ॥
ଏଥିର ଚରିତ୍ର ମୁନି କହସି ଉକତି ।
ଶୁଣିଣ ଭ୍ରାନ୍ତ ଯେ ଉପେଖୁ ଆମ୍ଭର ମତି ॥ ୭ ॥
ମାରକଣ୍ଡେ କହନ୍ତି ଶୁଣ କୁନ୍ତୀସୁତ ।
ଅନେକ ବ୍ରାହ୍ମଣ ଯେ ଦୌପଦୀ ସହିତ ॥ ୮ ॥
ନିତାର ନବର ଦ୍ୱାରେ ଯେ ବସିଣ ସତୀ ଥିଲା ।
ତହୁଁଣ ଉହ୍ଲାଇ ଦେବୀ ଗଗନକୁ ଗୃହୁଁଲା ॥ ୯ ॥
ଭାଳଇ ଆଦିତ୍ୟ ଯେ ହୋଇଲା ତିନି ପହର ।
ଏତେବେଳ ହୋଇଲା ନଇଲେ ମୋହର କୁମର ॥ ୧୦ ॥
ଚଉ ଛନଛନ ଗୃହୁଁଲା ଚଉକତି ।
ବୋଲଇ ଅତି ଦୁଷ୍ଟ ମୋହର ପୋଏ ଖେଡ଼ାଉଳ ମତି ॥୧୧॥
ଯେତେବେଳେ ଥାନ୍ତି ମୋହର ସନ୍ନିଧ୍ୟାନେ ।
ଯାହା କହନ୍ତେ ନ ଲଂଘନ୍ତି ମୋହର ବଚନେ ॥ ୧୨ ॥

---

୧୨· କହନ୍ତେ ନ—କହନ୍ତି ।

ମୋହର ଉଦରୁ ଯେତେବେଳୁ ଯାନ୍ତି ।
ବାଟରେ ଯାଇ ସେ ଦ୍ୱନ୍ଦ ହି ସେ କରନ୍ତି ॥ ୧୩ ॥
ମୁହିଁ ମନ୍ଦବୁଦ୍ଧି ଏମନେକ ନଲକ୍ଷଣୀ ।
ତବସେ ପୁତ୍ର କଇ ମୁଁ ନ ଦେଖଇ ରାଢ଼େଣୀ ॥ ୧୪ ॥
ମନ ବଇରାଗ ରେଜ ଗାଉଥିବେ ଶାସ୍ତ୍ର ।
ଗୀତ ନ ଗାଇଲେ କୋପ କରନ୍ତି ପିତାମହ ସୁତ ॥ ୧୫ ॥
ଦୁଃଖର କଲେ ମୋତେ ଘପକ୍ଷ ହୋଇଲ ।
ନର୍ମିକ ଅବଳା ମେ ଉସ୍ଥା ଉପେକ୍ଷିଲ ॥ ୧୬ ॥
ତାହାର ବୋଲେ ପୁଣ କ୍ଷଣେହେ ନ ରହନ୍ତି ।
ଅଗମ୍ୟ ଗୋଚରବନେ ପଶି ଆନଯାତ ହୁଅନ୍ତି ॥ ୧୭ ॥
ଖେଳିବାର ଭୁକ୍ତି ବାର ବାଳୁତ ବୟସ ।
ଗୀତ ଗାଇ ପରମନ କରନ୍ତି ତୋଷ ॥ ୧୮ ॥
ରାଜାକୁମର ହୋଇ ଏତେ ଦୁଃଖ ପାଇଲେ ।
ମୁହିଁ ପାପିଷ୍ଠ ଯେ ମୋହର ଗର୍ଭେ ଉପୁଜିଲେ ॥ ୧୯ ॥
କ୍ଷିତି ବରସୁନ୍ଦର ଯେ ଯାହାର ତାତ ।
ଏକୋଇଶ ଶତ ଯେ ଶ୍ରୀରାମର ମାତ ॥ ୨୦ ॥
କହ୍ଣଲ୍ଲା ଦେଖି ପୂର୍ବେ ପାପ କଲେ ।
ପୁତ୍ରଙ୍କର ତନୟ ଦେଖି ନ ପାରିଲେ ॥ ୨୧ ॥
ଯଦ୍ୟପି କଉଶଲ୍ୟାଏ କରିଛନ୍ତି ପୁନ୍ୟ ।
ତେବେ ସେ ଶୁଣିବେ ନା ଲବକୁଶଙ୍କର ବଦନ ॥ ୨୨ ॥
ଏମନେକ ମହାସତୀ ମନେ ବିକଳେ ଭାଳଇ ।
ପବନେ ନାଡ଼ିଲା ଯେସନେ ବୁଲଇ ଅନ୍ତରାଳ ହୋଇ ॥ ୨୩ ॥
କ୍ଷଣକେ ଉଠଇ ଦେବୀ କ୍ଷଣକେ ବସଇ ।
ସଙ୍ଗଭଗ୍ନ ହରିଣୀ ଜାଣି ଚଉକତ ଦୃଷ୍ଟି ହୁଅଇ ॥ ୨୪ ॥
ବିଧାତା ସୁମରଇ ଦେବୀ ସୁମରଇ ବିଶ୍ୱନାଥ ।
କାହିଁକି ଗଲେ ମୋହର ଅଞ୍ଚଳ ବେଦପୁତ୍ର ॥ ୨୫ ॥
ନୟନରୁ ଲୁହ ଗଳି ପଡ଼ଇ ଘନ ଘନ ।
କ୍ଷଣକେ ପୁତ୍ରଙ୍କୁ ସୁମରଇ କ୍ଷଣକେ ଶାନ୍ତ କରଇ ମନ ॥ ୨୬ ॥
କୋପଚଣ୍ଡ ହୋଇ କହଇ ବହୁଦେଇ ।
ଭଲେ ଯେବେ ଆସନ୍ତି ଆଜ ଦୁଇଭାଇ ॥ ୨୭ ॥

---

୧୫. ଗାଉଥିବେ—ଶୁଣୁଥିବେ । ୨୩. ନାଡ଼ିଲା—ଲଉଡ଼ିଲା (କ) ।

ଅଷ୍ଟଳେ ବାନ୍ଧଣେ ଛୁଟେଟେଣ ପିଟିବ ।
ମୋହର ପିତାଘରେ ପଶିତ ନ ଦେବ ॥ ୨୮ ॥
ତାହାଙ୍କର ପିଠି ସେ ରୁହାଇବ ମୋତେ ।
ତାହାଙ୍କର ଉପରେ ମଥା କୋଡ଼ିବ ଭୂମିଗତେ ॥ ୨୯ ॥
ତାହାକଇ ବୋଲିବ ମୋହର ପୁତ୍ରର ମନ୍ଦପଣ ।
ବାଟେ ଯାନ୍ତେ ଅବା କଲେ ତଳି ଦ୍ୱନ୍ଦମାନ ॥ ୩୦ ॥
ମନ୍ମଥର ହୋଇ ଅବା କେଣିକି ଗଲେ ।
ଲକେଣ ମୋହର ସନଧିକୁ ନଇଲେ ॥ ୩୧ ॥
କି ଅବା ଆଜ ନ ପାଇଲେ ଭିକ୍ଷା ।
ଯେଣେ ଆସି ନ ପାରନ୍ତି ମୋହର କଣ୍ଠ ॥ ୩୨ ॥
ନାଟ୍ୟାପଦ ରାମାୟଣ ଗାବନ୍ତି ସେ ଗୀତେ ।
ଶୁଣି ଲୋକେ ବଇରାଗ ହୁଅନ୍ତି ନିଜ ଚିତ୍ତେ ॥ ୩୩ ॥
ନୃତ୍ୟସ୍ୱର ଗନ୍ଧ ଯେସନେ ସମସ୍ତେ ବନ୍ଦାଇ ।
ପୂର୍ଣ୍ଣମୀର ଚନ୍ଦ୍ରକୁ କେହୁ ପଟମ୍ୟ ନୁହଇ ॥ ୩୪ ॥
ନଟନେ ପ୍ରବୀଣ ନବରନ ଗାଇ ।
ଏହାଙ୍କର ମୁଣ୍ଡେ ସେ ଜଗତେଣ ଗୃହଂ ॥ ୩୫ ॥
ନୂଆଂ ବସ୍ତ୍ର ଆବର ନୂଆ ଅଳଙ୍କାର ।
ତାହାଂଙ୍କ ସେ ଭଲ ବୁଝନ୍ତିନା ସକଳ ସଂସାର ॥ ୩୬ ॥
ନୂଆଂ ଗୀତଇ ସେ ଶୁଭଇ ତାଙ୍କ ଗୀତ ।
ପୁରୁଣା ଗୀତକଇ କାହାର ନ ବଳିବାକ ମତ ॥ ୩୭ ॥
ତେଣୁ ସେ ତଣ୍ଡୁଳ ହୋଇଲକ ଅଳପ ।
କିମ୍ବ ଦେବେ ଅଣି ଗୁରୁଙ୍କ ସମୀପ ॥ ୩୮ ॥
ତେଣେ ସେ ମୋହର ପୋଏ ଆସିତ ନ ପାରଲେ ।
ଦୂର ଦେଶକୁ ଅବା ଗୀତ ଗାଇ ଗଲେ ॥ ୩୯ ॥
ଆନ ଦେଶରେ ଅବା ପାଇଲେ ସନମାନ ।
ତେଣେ ସେ ନଇଲେ ମୋହର ସନ୍ଧାନ ॥ ୪୦ ॥
କି ଅବା ଆଜ ଏକ ଏକ ହୋଇଗଲେ ।
ବନଜନ୍ତୁଙ୍କର ମୁଖେ ପ୍ରାଣନାଶ ହୋଇଲେ ॥ ୪୧ ॥
କି ଅବା କାଲି ଗାଇଲି ଯାହାର ତନ୍ତ୍ରଂ ।
ତାହାର ପୁରକୁ ଅବା ଗଲେ ଦୁଇ ଭାଇ ॥ ୪୨ ॥

---

୨୮. ଦେବ—ଦେଖିବ । ୩୦. ମୋହର ପୁତ୍ରର—ମୋହର (କ) ।
୩୩. ରାମାୟଣ—ରବାୟଣ (ଖ) । ୩୭. ଦ୍ୱିତୀୟ ପାଦର ପାଠ କ ପୋଥିରେ :—ସେହୁ ଗୀତ କରଇ କାହାର ବଳିବାକ ମତ ।

ଗଉଣ୍ଢେବ ପାଇ ଅବା ତାହାର ଘରେ ରହିଲେ ।
ଜଳ ଅବା ମିଷ୍ଟ ଭୋଜନ ତହିଂ ପାଇଲେ ॥ ୪୩ ॥
ସ୍ୱଭାବେ ବାଳୁତ ଚଞ୍ଚଳ ମତି ।
ଆଶ୍ୱାସନା ସହିଂ ପାନ୍ତି ତହିଂ ବିଶ୍ରାମ କରନ୍ତି ॥ ୪୪ ॥
କାହାକଇ ପଠିଆଇବି ନ ଜାଣଇ ତଥ୍ୟ ।
ଭାଳଣି ମହାସତୀ ଅଥିର ପଞ୍ଚଭୂତ ॥ ୪୫ ॥
କ୍ଷଣେକ ଶୋକ କରଇ କ୍ଷଣେକ କରଇ ରାଗ ।
ବୋଲନ୍ତି ଯଦ୍ୟପି ଆସନ୍ତୁ ମୋହର ଆଗ ॥ ୪୬ ॥
ତାହାଙ୍କର ଉପରେ ପ୍ରାଣ ମୁଂ ଛାଡ଼ିବି ।
ନଉଚେତ ପୃଥ୍ୱୀ ଫାଟିବ ପାତାଳେ ପଶିବି ॥ ୪୭ ॥
ସେ ପୁତ୍ରଙ୍କର ମୁଖ ଚାହିଂଲେ ଜିଇ ମୋହର ସୁସ୍ଥ ।
ଜେତେବେଳେ ମୋହର ବଚନ ଲଂଘନ୍ତି ଦୁଷ୍ଟ ଚିତ୍ତ ॥ ୪୮ ॥
ପିତା ଯେସନେକ ଦୁଃଖ ଦେଲା ମୋତେ ।
ତହିଂ ଅଧିକ ହୋଇଲେ ବେନି ପୁତ୍ରେ ॥ ୪୯ ॥
ପୁଣି ବିଚାରଇ ଜନେକର ଦୋହିତା ।
ପୁତ୍ରନ୍ତି ଦେଖିଲେ ସେ ଛାଡ଼ିବ ସର୍ବଚିନ୍ତା ॥ ୫୦ ॥
ଏଥେ ବସିଥାଇ ମୁଂ କିସ କରିବି ।
ପୁତ୍ରନ୍ତି ଲୋଡ଼ି ମୁହିଂ ବନସ୍ତକୁ ଯିବି ॥ ୫୧ ॥
କାଞ୍ଚନା ରତ୍ନା ଦୁଇ ଭଗ୍ନୀ ।
ତାହାକୁ ହକାରି କହଇ ଜଗ୍ଧସେନୀ ॥ ୫୨ ॥
ଏତେବେଳ ନଇଲେ ମୋହର ବେନି ନନ୍ଦନ ।
ପୁତ୍ରକଇ ନ ଦେଖି ପୋଡ଼ୁ ଅଛି ମୋହର ମନ ॥ ୫୩
ଚାଲ୍‌ଲେ ବନକଇ ଲୋଡ଼ଣ ଯିବା ।
ଯେତେ ଧୂରେ ପାଇବା ଯେନଣ ଆସିବା ॥ ୫୪ ॥
ପୁତ୍ରକୁ ଦେଖିବ ଯେବେ ବାହୁଡ଼ି ଆସିବ ।
ନହୁଚେତ ଦହଡ଼ିରେ ବନ୍ଧନେ ପ୍ରାଣ ଛାଡ଼ିବ ॥ ୫୫ ॥

---

୪୫. ପଠିଆଇବ—ପଠିସ୍ଥାବ । ୪୬. ଶୋକ କରଇ—ଶୋକକଇ । ଯଦ୍ୟପି—ଆଜ ଦେଖି (ଖ) । ୪୭. ପୃଥ୍ୱୀ ଫାଟିବ ପାତାଳେ—ପ୍ରଖର ଅଗ୍ନିରେ (ଖ) । ୫୦. ଛାଡ଼ିବ—ଛାଡ଼ିବ (ଖ) । ୫୨. ରତ୍ନା—ରଞ୍ଜନା ନାମେ (ଖ) । ୫୫. ଦେଖିବ—ଦେଖି (କ) ; ଦହଡ଼ିରେ ବନ୍ଧନେ ପ୍ରାଣ ଛାଡ଼ିବ—ଆତ୍ମାଘାତ କରିବ ।

ଶ୍ରୁତିଶ ବସ୍ତ୍ରଦସ୍ତେ ସେ ହୋଇଲେ ବେନି ଭଗ୍ନୀ ।
ଆଗ ପଛେ ଗ୍ରୁବନ୍ତ ଶୋଭନାର ବେନ ନନ୍ଦନୀ ॥ ୫୬ ॥
ଯେବଣ ବେଳେ ସୀତାୟା ଅଗ୍ନିରୁ ଜାତ ହୋଇଲ ।
ସେ ଶୋଭନା ସୀତାଙ୍କୁ ପ୍ରତିପାଳିଲ ॥ ୫୭ ॥
ସୀତାୟାର ମୁଣ୍ଡ ଗୁନ୍ଥଂଲେ ଯେତେବେଳେ ।
ଦୁଇ ଦୋହିତା ଉପୁଜିଲ ତାହାର ଗର୍ଭରେ ॥ ୫୮ ॥
କାଞ୍ଚନା (ରତ୍ନା) ଦୁହେଂ ହସନ୍ତ ଢବ୍ୟସ୍ଥିତ ।
ତେଣେସେ କାଞ୍ଚନା ରତ୍ନା ନାମ ବିଖ୍ୟାତ ॥ ୫୯ ॥
ଆଗରେ କାଞ୍ଚନା ପଛେ ରତ୍ନାବଳୀ ।
ମଧ୍ୟେ ଶକେ କଲେ ଜନେକର ଦୁଲଲୀ ॥ ୬୦ ॥
ମକର ଶୁକ୍ଳ ପଞ୍ଚମୀ ବୃହସ୍ପତି ବାର ।
ତୃତୀୟ ପ୍ରହର ଦୁଇଘଡ଼ି ଦବାକର ॥ ୬୧ ॥
ଏସନେକେ କାଳବେଳାରେ ସେ ସତୀ ।
ପୁଅନ୍ତ ଲୋଡ଼ି ଯାଇ ଅନ୍ତରାଳ ମତି ॥ ୬୨ ॥
କାଞ୍ଚନା ରତ୍ନାଙ୍କୁ କହନ୍ତ ଜିତ୍ନସେନୀ ।
ଏହୁ ବାଟେ ଲେଉଟନ୍ତ ମୋହର ପୁଅ ବେନି ॥ ୬୩ ॥
ଲବକୁମର କାଲି ମୋତେ କଢ଼ାଇ ଆଣିଲ ।
ବଟବୃକ୍ଷ ତଳେ ବସାଇ ଆପଣେ ବୃକ୍ଷ ଉପରେ ଉଠିଲ ॥ ୬୪ ॥
କୁଶ କୁଶ ବୋଲି ଡାକ ଦେଲି ଯହୁଂ ।
ଧାଇଂଣ କୁଶ ଅଇଲକ ତହୁଂ ॥ ୬୫ ॥
ଏସନେକ କହୁ ସତୀ ବିମନେଣ ଗଲେ ।
ସେହୁ ବଟବୃକ୍ଷର ତଳେ ଯାଇଣ ହୋଇଲେ ॥ ୬୬ ॥
ସେହୁଠାବରେ ଦୁଇ ବାଟ ଅଛଇ ବିଦ୍ୟମାନ ।
ବୃକ୍ଷର ତଳେ ବସଇ ସତୀ କୋଧିତ ପଞ୍ଚୁମନ ॥ ୬୭ ॥
କାଞ୍ଚନା ରତ୍ନାଙ୍କୁ କହନ୍ତ ଜନେକର ଝିଅ ।
ବାଟେବାଟେ ହୋଇ ତୁମ୍ଭେ ଦୁଇ ଭଗ୍ନୀ ଯାଅ ॥ ୬୮ ॥
ଲବକୁଶଙ୍କୁ ଯେ ଅବା ଦେଖିବ ।
ସେହୁଠାରୁ ଦୁହିଙ୍କି ଘେନିଣ ଆସିବ ॥ ୬୯ ॥

---

୫୬. ଶୋଭନାର ବେନ ନନ୍ଦନୀ—ଶୋଭନା ରତ୍ନା ବେନଭଗ୍ନି (କ), କାଞ୍ଚନା ରଞ୍ଜନା ବେନ (ଖ) । ୫୮. ଗୁନ୍ଥଂଲେ—ଧୋଇ ହୋଇଲ (କ) । ୫୯. ବିଖ୍ୟାତ—ବିଷାଦ । ୬୫. ଯହୁଂ—ତହୁଂ (କ) । ୬୮. ବାଟେବାଟେ—ବାଟେବା ।

ସୀତାର ବଚନ ସନ୍ତୁଂ ଦୁଇଭଗ୍ନୀ ଶୁଣିଲେ ।
ପଥ ଅନୁସର ଏକ ଏକ ହୋଇ ଗଲେ ॥ ୭୦ ॥
ତରୁତଳେ ବସିଲେ ଜନେକ କୁମାରୀ ।
ମୁକଳ କର ଦୁଇ କରେ ଚୀରନ୍ତ ଜବେଶ ॥ ୭୧ ॥
କେଶ ମୁକୁଳା କରନ୍ତେ ସୁଗନ୍ଧ ଗନ୍ଧବାସେ ।
ଦେଖିଣ ଭ୍ରମରେ ଉଡ଼ନ୍ତ ଚଉପାଶେ ॥ ୭୨ ॥
ଅବନୀରେ ଲୋଟଇ ଜାନକୀର କେଶ ।
ଚଉକତକ ଗୁହାଂଇ ମନର ହରଷ ॥ ୭୩ ॥
ଶୁଣ ହେ ମୁଧିଷ୍ଠିର କହନ୍ତ ମାର୍କଣ୍ଡ ।
ଅତ୍ର ପ(ବ)ନ୍ଧ ଏ ଉତ୍ତର କାଣ୍ଡ ॥ ୭୪ ॥
ଯେବଣ ବେଳେ ସୀତାଙ୍କର ପ୍ରତିମା ନିର୍ମାଣିଲ ।
ଶୁଦ୍ଧ ଲକ୍ଷଣେ ସୀତାଙ୍କ ଅନୁପାମ ଦିଶିଲ ॥ ୭୫ ॥
ଦେଖିଣ ମନେ ବିଚାରଇ ବେଦପତି ।
ଏ ପ୍ରତିମା ହୋଇବ ସୀତାଙ୍କ ମହାସତୀ ॥ ୭୬ ॥
ଏକ ଅବଗୁଣ ତ ଶରୀରେ ଏହା ନାହିଂ ।
ଏହାକଇ ଅନୁଭବ ହୋଇବାକ କାହିଂ ॥ ୭୭ ॥
କେବଣ ଉପାୟେ ଏହାକୁ ଦୁଃଖ ଦେବ ।
ଆନ ଅବଗୁଣ ନାହିଂ କେଶ କୁଶାଳ କରିବ ॥ ୭୮ ॥
ତେଣୁ ସେ ଜାନକୀର କୁଶାଳ ଗୁଚର କେଶ ।
ବିମନେ ବସି ସୀତା ଗୁହାଂଇ ଦଶଦିଶ ॥ ୭୯ ॥

## ସୀତାରାମ ଭେଟ

ଏଥୁ ଅନନ୍ତରେ ଶୁଣ ପଣ୍ଡୁର ତନୁଜ ।
ପୁଷ୍ପକ ଆରୋହି ଆସନ୍ତ ରଘୁରାଜ ॥ ୧ ॥
ବଟବୃକ୍ଷର ତଳ ନିକଟେ ସନ୍ତୁଂ ହୋଇଲେ ।
ଗଗନେ ଥାଇ ଲବକୁଶେ ମାତାକୁ ଗୁହିଂଲେ ॥ ୨ ॥
ଶ୍ରୀରାମର ଅଗ୍ରତେ କହନ୍ତ ଲବକୁଶ ବେନି ଭ୍ରାଥ ।
ଆମ୍ଭକଇ ଲୋଡ଼ି ଆସିଛନ୍ତ ମାତ ॥ ୩ ॥
ବଟବୃକ୍ଷର ତଳେ ଏକା ବସିଅଛୁ ।
ସୀତାଙ୍କୁ ଦେଖି ଚହ୍ନିଲେ ରଘୁବଚ୍ଛୁ ॥ ୪ ॥

---

୭୦. ଅନୁସର—ଉପନେସି (ଖ) । ୭୧. ଚୀରନ୍ତ—ଚନ୍ଦନ୍ତ । ୭୭. ଏକ—ଏ ; ତ—ତା (କ) ; ଅନୁଭବ—ଅନୁଭର (କ) । ୭୮. ଏହାକୁ—କାହାକୁ ।
୨. ତଳ—ତଳେ । ୪. ପ୍ରଥମ ପାଦଟି ଖ ପୋଥିରେ ନାହିଁ ।

ଲବକୁଶଙ୍କର ମୁଖ ଚାହିଁ କହନ୍ତି ବ୍ରହ୍ମସୁତ ।
ରଥୁଁ ଓହ୍ଲାଇ ତୁମ୍ଭେ ଯାଅ ଯା ତଡତ ॥ ୫ ॥
କୋପଭର ଚିତ୍ତ ହୋଇଛି ବିରସ ।
ତୁମ୍ଭେ ବେନି ପୁତ୍ର ଯାଅ ମାତା ପାଶ ।
ତୁମ୍ଭଙ୍କୁ ଦେଖି ସେ ହୋଇବ ହରଷ ॥ ୬ ॥
ଲଜ୍ଜା ଉହାଡ଼େ ଆମ୍ଭେ ରହିଥିବୁ ।
ତୁମ୍ଭେ ପ୍ରବୋଧି କହିଲେ ସେ ଆମ୍ଭେ ପଛେ ଯିବୁ ॥ ୭ ॥
ତୁମ୍ଭର ମୁଖ ଦେଖିଲେ ଛାଡ଼ିବ କୋପମନ ।
ତେବେ ସେ ଆମ୍ଭେ କରିବୁ ଗମନ ।
[ତୁମ୍ଭେ ଯାଅ ବାବୁ ମାତାର ସନ୍ନିଧାନ] ॥ ୮ ॥
ତୁମ୍ଭେ ତ ହରଷ ହୋଇ କଥା ହୋଇବ ଯେବେ ।
ସତୀର ସନଧିକୁ ଯିବୁ ଆମ୍ଭେ ତେବେ ॥ ୯ ॥
ଜନକ ରାଜର୍ଷିଙ୍କ ସକଳ କଥା କହିବା ।
ତୁମ୍ଭର ମାତାକୁ ଘେନି ଅଯୋଧ୍ୟାକୁ ଯିବା ॥ ୧୦ ॥
ଶୁଣ ଯୁଧିଷ୍ଠି ବଶିଷ୍ଠର ଚରିତ ।
ସାତ ପ୍ରଳୟ କଥା ଜାଣଇ ଗର୍ଭଗତ ॥ ୧୧ ॥
ଶ୍ରୀରାମ ସମ୍ପଦ ଅର୍ଥେ କହନ୍ତି ଏସନ ।
ଭୂତ ଭବିଷ୍ୟ ବର୍ତ୍ତିମାନ ଜାଣଇ ସର୍ବଗ୍ୟାନ ॥ ୧୨ ॥
ମନେ ମନେ ବିଚାରଇ ବଶିଷ୍ଠ ଗ୍ୟାନଗର୍ଭ ।
ଏହିକ୍ଷଣି ସୀତସ୍ୟା ପାତାଳକୁ ଯିବ ॥ ୧୩ ॥
ଏଥୁଁ ଅନନ୍ତରେ ଶୁଣ କୁନ୍ତୀସୁତ ।
ବଶିଷ୍ଠ ବଚନ ଶୁଣି ଲବକୁଶ ବେନିଭ୍ରାତ ॥ ୧୪ ॥
ପୁଷ୍ପକ ରଥରୁ ଧୀର ହୋଇ ଓହ୍ଲାଇଲେ ।
କୃତକୃତ ଚିତ୍ତ ହୋଇ ମାତାର ସନଧିକୁ ଗଲେ ॥ ୧୫ ॥
ବଟବୃକ୍ଷ ତଳେ ସତୀ କ୍ରୋଧଭରେ ବସିଅଛି ।
ମାତାର ସନଧେ ମିଳିଲେ ବେନି ବଛ ॥ ୧୬ ॥
ଓଳଗନ୍ତି ବେନି ଭାଇ ମାତାର ଚରଣ ଧରି ।
ତନୟନ୍ତ ଦେଖି ହସ ହସ ହୋଇଲେ ଜନକକୁମାରୀ ॥ ୧୭ ॥
ନିଧନେ ଧନ ପ୍ରାପତ ଅନ୍ଧରେ ଚକ୍ଷୁଦାନ ।
ନୟନୁ ଅଶ୍ରୁଜଳ ଗଳଇ ଘନ ଘନ ॥ ୧୮ ॥

---

୫. ବ୍ରହ୍ମସୁତ—ଦାଶରଥି । ୭. ଦ୍ୱିତୀୟ ପାଦଟି କ ପୋଥିରେ ନାହିଁ । ୧୧. ବଶିଷ୍ଠର—ବଟର । ୧୨. ସର୍ବଗ୍ୟାନ—ସେ ଗ୍ୟାନ (କ) । ୧୪. ବଶିଷ୍ଠ—ଶ୍ରୀରାମ ।

ମାଗିବି ମରିବି ବୋଲି ସେ ସତୀ କୋପ କରୁଥିଲା ।
ପୁତ୍ରନ୍ତ ଦେଖି ସକଳ କଷ୍ଟ ପାସୋରିଲା ॥ ୧୯ ॥
କାଞ୍ଚନା ଦାଗ ଦକ୍ଷିଣକଇ ଯାଇଥିଲା ଲେଞ୍ଚି ।
କୁମାରଙ୍କର ପଛେ ସେ ଅଇଲେ ବାହୁଡ଼ି ॥ ୨୦ ॥
ସନଦେ ଉଭା ହୋଇଲେକ ପୁତ୍ରଙ୍କ ।
କୋଳ ଧରି କୋଲା କଲେ ପୁତ୍ରଙ୍କଇ ମହାସତୀ ॥ ୨୧ ॥
ରତ୍ନଅଲଙ୍କାରି ପୁଷ୍ପ ଚନ୍ଦନ ।
କସ୍ତୁରୀ ଛଡ଼ା କ୍ଷୀନ ବସନ ପରିଦ୍ଧରଣ ॥ ୨୨ ॥
ସୀତା ପଗ୍ରରନ୍ତ କୁମରଙ୍କ ମୁଖ ଚୁମ୍ବି ।
ଏ ରତ୍ନ ଅଲଙ୍କାର ପାଇଲ ତୁମ୍ଭେ କାହିଁ ॥ ୨୩ ॥
ବେଗେ ଆସିବୁ ବୋଲି ଯେ ମୋତେ କହିଗଲ ।
ଏ ଅଲଂକାର ଦେଖି ସେ ମୋତେ ପାସୋରିଲ ॥ ୨୪ ॥
ଏତେବେଳ ହୋଇଲା ମୋହର ଆହାର ନାହିଁ ।
ଦଶ ଦିଶ ଶୂନ୍ୟ ତୁମ୍ଭର ବାଟ ଗୁହିଁ ॥ ୨୫ ॥
ଏ ରତ୍ନ ଚଉର୍ଯ୍ୟ କରି ଅବା କାହାର ଘରୁ ଆଣିଲ ।
ବେଳ ଅସ୍ତଯାଏ କାହାର ଘରେ ଥିଲ ॥ ୨୬ ॥
ଦଶରଥ ଅନୁରୂପେ କର୍ମେ କଲ ଅବା ଦ ପୋ ।
ଚୋରାଇ ଆଣିଲେ ପାପ ନ ଯାଇରେ ବାପ ॥ ୨୭ ॥
ମନର ହରଷେ ଦାନଦକ୍ଷିଣା ଦଅଇ ଯେବେ ।
ପୂର୍ବ ଜନ୍ମେ ଦେଲେ ପାଇବନା ଏବେ ॥ ୨୮ ॥
ଏହୁ ଜନ୍ମେ ଯେ ଶାସ୍ତ୍ର ଶୁଣି ଦାନ ଦକ୍ଷିଣା ଦଅଇ ।
ସହସ୍ରେ ଜନ୍ମେ ସେ ଆଗତ କରି ପାଇ ॥ ୨୯ ॥
କେବଣ ପୁନ୍ୟବନ୍ତ ଏ ଦ୍ରବ୍ୟନ୍ତ ଦାନ ଦେବ ।
ଶୁଣିମାତ୍ରୁ ଅଶଖ୍ୟ ଦେଖିବାକୁ ଦୁର୍ଲ୍ଲଭ ॥ ୩୦ ॥
ମାତାର ବଚନ ଶୁଣି କୁମାରେ ଲଜ୍ୟା ପାଇଲେ ।
ଫକୁରେ କଥା କହି ନ ପାରିଲେ ॥ ୩୧ ॥
ରତ୍ନା କାମେନୀ ପୂର୍ବ ବାଟେ ଲେଉଡ଼ି ଯାଇଥିଲା ।
କୁମରନ୍ତ ନ ଦେଖି ସେ ବାହୁଡ଼ି ଅଇଲା ॥ ୩୨ ॥

୨୨. ପରିଦ୍ଧରଣ—ପରିଧାନ (ଖ) । ୨୫. ତୁମ୍ଭର—ତୁମ୍ଭଙ୍କ (କ) ।
୨୭. ଦ. ପୋ—ଦାପ ; ପ୍ରଥମ ପାଦର ପାଠ ଖ ପୋଥିରେ :—
ଅନୁମତ କର୍ମକରି ଆଣିଲ ଯେତେ ମତ । ୨୯. ଏ ଦ୍ରବ୍ୟନ୍ତ—ଦ୍ରବ୍ୟନ୍ତ (କ) ;
ଅଶଖ୍ୟ—ଆଶ୍ଚର୍ଯ୍ୟ (ଖ) । ୩୧. ନ ଦେଖି—ଦେଖି (କ) ।

ଙ୍ଗାରକଇ ବ୍ୟଥା ପାଇଲା ଯେ କାମେମା ।
ଦେଖିଲେ ସୀତସ୍ୱାଠାବେ ଅରୁଣ୍ଯ ଧ୍ୱବେକ ॥ ୩୩ ॥
କୋପେ ରତ୍ନା କହଇ ଲବର ମୁଖ ଗୃହୁଂ ।
ତ୍ରୁମ୍ୱନ୍ତ ନ ଦେଖି ମାତାର ସମାକୁଳ ଦେହ ॥ ୩୪ ॥
କେକ ଅସ୍ତ୍ର ହୋଉଅଛୁ କସ କରୁଥିଲ ।
କନସ୍ତେ ଭୁଲି ତୁମ୍ଭେ କଷ୍ଟ ପାଇଲ ॥ ୩୫ ॥
ସଙ୍କୁଚେଣ କଥା କହି ନ ପାରଲେ ।
କୁମରଙ୍କ ମୁଖ ଗୃହୁଂ ରତ୍ନା ବୋଇଲେ ॥ ୩୬ ॥
ନାଡ ଗୀତ ଗାଅ ବନସ୍ତେଣ ପଶି ।
ଭାଟ ଗୃହୁଂଥାଇ ମାତା ଦୁଆରେଣ ବସି ॥ ୩୭ ॥
ମଥାକଇ ହସ୍ତ ପାଇଲକ ତ୍ରୁମ୍ବର ଯେବେ ।
ଜନନୀର ପ୍ରାପ୍ତ ଜାଣିମ କା ତେବେ ॥ ୩୮ ॥
ଅଢ କଷ୍ଟ ର ସେ କର୍ଣପକ୍ଷ କହିଲା ।
ଶୁଣିଣ ଜାନ୍ନଙ୍କର ଦେହେ କୋପ ବଢିଲା ॥ ୩୯ ॥
ସୀତସ୍ୱା କହଇ କେନ୍ତ ମୁଖ ଗୃହୁଂ ।
ଭଲ କରି ଗୁଟେକ ସ୍ୱର୍ଣ୍ଣି ଆଣ ଯାଇ ॥ ୪୦ ॥
ଗୁଟେ ପିଟିଣ ଶଗ୍ନୀର ପିଣ୍ଡି ବ ।
ତେବେ ସେ ମୋହର ପ୍ରତାପ ଯାଶବ ॥ ୪୧ ॥
ଏସନେକ କହି ଦୁହିଙ୍କର ଭୁଜ ଦୃଢ଼ କରି ଧଇଲା ।
ତତକ୍ଷଣେ ରତ୍ନା ଗୁଟେକେ ସ୍ୱର୍ଣ୍ଣିଣ ଆଣିଲା ॥ ୪୨ ॥
ଗୁଟେକ ଦେଖି କୁମରଙ୍କର କମ୍ପିଲାକ ଦେହ ।
କର ଧରି କାଞ୍ଚନ ସପ୍ତର ଆଗେ କହ ॥ ୪୩ ॥
ଅନ ଭଣେ ସୀତସ୍ୱା ପୁତ୍ରକୁ ନ ମାରବା ।
କୋପ ଶାନ୍ତ କର ଗୋ କୁମରଙ୍କୁ ପଗ୍ଭରବା ॥ ୪୪ ॥
ତୁହି ରତ୍ନା କେ ନ ଜାଣୁ ତୁ କିଛୁ ।
ଏହାର ବଚନେ କୋପ ନ କର ମୃଗାକ୍ଷୀ ॥ ୪୫ ॥
ସାଗରେ କ୍ଷୀରକରେ ଭଞ୍ଜିଲା ଆଣି ଖାର ।
ଏହାର ବଚନ ଶୁଣି କୋପ ବସିଲ ତୁମ୍ବର ॥ ୪୬ ॥
ଗୁଟ ସ୍ୱର୍ଣ୍ଣିଣ ଆଣିଲାକ ଯହୁଁ ।
ପୁତ୍ରଙ୍କର ନୟନୁ ଲୁହ ଗଲା ପଡ଼ଇ ତହୁଂ ॥ ୪୭ ॥

୩୩. ନ ଦେଖ—ଦେଖି ; ଦେହ—ଦେଇ । ୩୭. ପଦଟି ଖ ପୋଥିରେ ନାହିଁ ।
୪୩. ଧରି—ଯେଉଁ (ଖ) । ୪୫. ଏହାର—ରୁ ଏହାର (କ) ।
୪୬. ସାଗରେ —ସାଗରେଣି ଙ ।

ବାଟ ଚାଲି ଯୋଏ ଅଛନ୍ତି କଷ୍ଟ ପାଇ ।
ଏସନେକ ବହୁ କାଞ୍ଚନା ମଣିର ପସ୍ତର ଧରି ଲେଉଛ ॥ ୪୮ ॥
କାଞ୍ଚନାର ବଚନ ଶୁଣି ସୀତା କୋପ ଶାନ୍ତି କଲି ।
ଲବକୁଶଙ୍କ ମୁଣ୍ଡ ଚୁମ୍ବି ସୁଧୀରେ ପଚାରିଲି ॥ ୪୯ ॥
ଏ ମୁକୁତା ରତ୍ନମାଳା ମାଣିକ୍ୟର ହାରଇ ।
ଶୁଦ୍ଧ ସୁବର୍ଣ୍ଣର ମାଳା ପୋଏଲା ପଦ୍ମରାଗଇ ॥ ୫୦ ॥
ନୃପତିଙ୍କ ଦୁର୍ଲ୍ଲଭ ଏହା ଦେଖିବା କାହିଁ ।
ଆନ ରାଜାର ପୁରେ ଏସନେକ ରତ୍ନ ନାହିଁ ॥ ୫୧ ॥
ଯେବଣ ବେଳେ ଥିଲି ମୁଁ ସ୍ୱାମୀର ପୁରେ ।
ଏସନେକ ଅଳଂକାର ଅଛୁ ଶ୍ରୀରାମ ଭଣ୍ଡାରେ ॥ ୫୨ ॥
ଏ ମାଳାମାନେ ମୋହର ପ୍ରାୟେ ଦିଶନ୍ତି ।
କେଉଁଣେ ସେ ମୁହିଂ ମନ କରଇ ଭ୍ରାନ୍ତି ॥ ୫୩ ॥
ଏ ଦିବ୍ୟମାଳାମାନନ୍ତ ତୁମ୍ଭଙ୍କୁ କେ ଦେଲା ।
କହସି ସ୍ୱରୂପ ମହାସତୀ ପଚାରିଲି ॥ ୫୪ ॥
ଲବକୁମର କହଇ ଶୁଣସି ଗୋ ମାତା ।
କହିଲେ ନ ପୁଣ କୋପ କରଇ ତୋହ ଚିତ୍ତ ॥ ୫୫ ॥
ମିଛସ୍ଥା କହଇ ନ ମାରଇ ଏବେ ।
ସ୍ୱରୂପ କରି ତୁମ୍ଭେ କହ ମୋତେ ଯେବେ ॥ ୫୬ ॥
ଲବକୁମର କହଇ ଶୁଣସି ସାବଧାନେ ।
ତୋହର ଆଗେ ମିଥ୍ୟା କହିବୁ କେସନେ ॥ ୫୭ ॥
କାଲି ଯହୁଂ ନଗ୍ର ଗୀତ ଗାଇ ଗଲୁ ।
କୁଶକଇ ଯେନ ସେ ନଗ୍ରକୁ ଆମ୍ଭେ ଗଲୁ ॥ ୫୮ ॥
ଅଯୋଧ୍ୟା ନାମେ କଟକ ରାମ ତହିଁର ନୃପତି ।
ଭରଥ ଲକ୍ଷ୍ମଣ ତାହାଙ୍କର ଭ୍ରାଥ ହୁଅନ୍ତି ॥ ୫୯ ॥
ଶତ୍ରୁଘନ ନାମେ ଯେବଣ ଶ୍ରୀରାମର ଭାଇ ।
ଲବଣ ମାରି ସେ ମଧୁବନେ ଅଛୁ ରହି ॥ ୬୦ ॥
ରାବାୟେଣ ଚରିତ ସେ ଶୁଣିଲେ ବିଶେଷି ।
ତାହାର ପ୍ରୋହିତ ଗୋ ବଶିଷ୍ଠ ମହାଋଷି ॥ ୬୧ ॥
ଆମ୍ଭନ୍ତ ପୁତ୍ର ବୋଲି ରାମ ଅନେକ ଶ୍ରଦ୍ଧା କଲି ।
କୋଳେ ଧରି ତାହା ନବରକୁ ଘେନଗଲି ॥ ୬୨ ॥

---

୫୩. ମନ—ମନେନ (କ) । ୬୦. ସେ—ସ । ୬୧. ଶୁଣିଲେ—କହିଲେ (କ) ।

ଶ୍ରୀରାମ ମାତାର ନାମ କଉଶଲ୍ୟା ଦେବୀ ।
ଭରଥ ଜନନୀର ନାମ ଅଟଇ କୈକେୟୀ ॥ ୬୩ ॥
ସୁମିତ୍ରା ଦେବୀ ଲକ୍ଷ୍ମଣ ଶତ୍ରୁଘନ ମାତା ।
ଏହେ ତିନି ଜାତ ଯେ ଦଶରଥଙ୍କର ବନିତା ॥ ୬୪ ॥
ସମସ୍ତ ବିଧବାଏ ଆମ୍ଭର ମୁଖେ ଚୁମ୍ବନ ଦେଲେ ।
ତୋହର ପୁତ୍ର ବୋଲି ଆମ୍ଭନ୍ତ ଦୟା କଲେ ॥ ୬୫ ॥
ବହୁତ ହରଷ ହୋଇଲେ ତୁମ୍ଭର ଜନଭଗ୍ନୀ ।
ତିନି ପୁତ୍ର ତାହାଙ୍କର ଏକ ସାଦିଶ କାଶି ॥ ୬୬ ॥
ଏ ରତ୍ନମାଳା ଗୋ ଭଣ୍ଡାରୁ ଅଣାଇଲେ ।
ଟୁଙ୍କା କରି ଶ୍ରୀରାମ ଆମ୍ଭର ଗଳାରେ ଲମ୍ବାଇଲେ ॥ ୬୭ ॥
ଶୀତ ଶାବନ୍ତେ ଯେତେ ଧନବସ୍ତ୍ର ପାଇଲୁ ।
ଅନେକ ବ୍ରାହ୍ମଣଙ୍କୁ ଦାନ ତାହା ଦେଲୁ ॥ ୬୮ ॥
ଯେତେକ ଅଗୁଳି ତାହା ଭଣ୍ଡାରେ ଥୋଇଲେ ।
ଏକ ଆମ୍ଭନେ ରାମ ମଣୋହି କରି ବସିଲେ ॥ ୬୯ ॥
ଏକର ଉଚ୍ଛିଷ୍ଟ ନ ଛୁଇଁ ଆନ ଜଣ ।
ପୁତ୍ର ନୋହିଲେ କାମ୍ପା ଶ୍ରୀରାମ କଲେ ଭୋଜନ ॥ ୭୦ ॥
ତୋତେ ପିତା ବୋଲି ପୁଚ୍ଛିଲୁ ଯେବଣ କାଳେ ।
ତୁହି କହିଲୁ ପିତା ତୁମ୍ଭର ମଲା ବାଳକାଳେ ॥ ୭୧ ॥
ତାହା ଆମ୍ଭେ ଗୋ ସ୍ୱରୂପ ପ୍ରାୟେ ବୁଝିଲୁ ।
ଏବେ ପିତା ମୁଖ ମୋ ପ୍ରତକ୍ଷେ ଦେଖିଲୁ ॥ ୭୨ ॥
ତୁମ୍ଭେ ଏବେ କହ ଗୋ ଆମ୍ଭର ଅଟଇ କି ପିତା ।
ତୁମ୍ଭେ ସେ ଜାଣ ନା ଏଥିର ତଥ୍ୟ କଥା ॥ ୭୩ ॥
ମନ ସେ ଜାଣଇଁ ଗୋ ଯେ ଯେତେ ପାପ କରଇ ।
ମାତା ସେ ଜାଣଇଁ ନା ପୁତ୍ରକଇ ଯେ ଅଟଇ ପିଅରଇ ॥ ୭୪ ॥
ଲବକୁମର କଥା ସତ୍ତା ଶୁଣିଲକ ଯହୁଁ ।
ହୃଦୟରୁ ଶ୍ରମ ଝାଳ ଗଳିଲକ ତହୁଁ ॥ ୭୫ ॥
ପୁତ୍ରଙ୍କର ଭୁଜ ସତ୍ତା ଧରଣି ଯେ ଥିଲା ।
ମାନଭରେ କୁମାରଙ୍କର ବାହା ଛୁଡ଼ିଲା ॥ ୭୬ ॥
ଭୂମିରେ ବସିଲା ଜନେକର ଦୁଲଣୀ ।
ଅଶ୍ରୁଜଳ ଗଳଇ କମଳ ନୟନ ବେନି ॥ ୭୭ ॥

---

୭୦. ଶେଷ ପାଦର ପାଠ ଖ ପୋଥିରେ :—ଏକ ପର୍ବେ ଯେନ ରାଜା ଆମ୍ଭନ୍ତ କଲେକ ଭୋଜନ । ୭୪. ଯେ ଯେତେ—ମନ ଯେତେ (ଖ) ।

ଲବକୁଶଙ୍କର ମୁଖ ଚାହିଂ କହନ୍ତି ରାମନାରୀ ।
ଦଇବ ସେ କଢ଼ାଇ ନେଲକ ସେ ପୁରୀ ॥ ୭୮ ॥
କହିଲ ମୁହିଂ ମିଥ୍ୟା ପଚାରନ୍ତେ ତୁମ୍ଭର ।
ସେହି ରାମଚନ୍ଦ୍ର ତୁମ୍ଭର ପିଅର ॥ ୭୯ ॥
କଉଶଲ୍ୟା ଦେବୀ ଶ୍ରୀରାମର ଜନନୀ ।
କକସ୍ୟା ସୁମିତ୍ରା ଏ କଉଶଲ୍ୟାଙ୍କର ଭଗ୍ନୀ ॥ ୮୦ ॥
ଦଶରଥ ନୃପତିଙ୍କର ତିନହେଁ ପାଟରାଣୀ ।
ଏକୋଇଶ ଶତ ଯେ ଦଶରଥଙ୍କର ଘରଣୀ ॥ ୮୧ ॥
ଭରଥ ନାମ ଯାହାର ସେ କକସ୍ୟାର ସୁତ ।
ଲକ୍ଷ୍ମଣ ଶତ୍ରୁଘନ ସୁମିତ୍ରାର ବେନି ପୁତ୍ର ॥ ୮୨ ॥
ମୋହର ତିନି ଭଗ୍ନୀଙ୍କର ଯେବେ ପୁତ୍ର ଉପୁଜିଲ ।
ସୂର୍ଯ୍ୟବଂଶ ଏବେ ଉଦିତ ହୋଇଲା ॥ ୮୩ ॥
ଚାରି ଦୋହିତାଙ୍କର ଯେବେ କୋଳେ ଦୁଲିଲ ।
ଆନନ୍ଦ ହୋଇବେ ଜନେକ ତପଶୀଳ ॥ ୮୪ ॥
ଏମନେକ ମାତାପୁତ୍ର କଥା ହୁଅନ୍ତେ ତହିଂ ।
ବଶିଷ୍ଠ ମହର୍ଷି ଶ୍ରୀରାମ ମୁଖ ଚାହିଂ ॥ ୮୫ ॥
ପୁତ୍ରକୁ ସୀତା ବଇରାଗ ଛାଡ଼ିଲା ।
ବିସ୍ମୟେ ତେଜି ଏବେ ହରଷ ହୋଇଲ ॥ ୮୬ ॥
ତୋହର କଥା କହଇ ପୁତ୍ରଙ୍କର ଆଗେ ।
ଭଲ ସମୟ ହୋଇଅଛି ଯିବା ଚାଲ ବେଗେ ॥ ୮୭ ॥
ଶ୍ରୀରାମ କହନ୍ତି ମୁହିଂ ଏଥେ ଥାଇ ରହି ।
ଭରଥ ଲକ୍ଷ୍ମଣ ଘେନି ତୁମ୍ଭେ ଯାଅ ବେଗ ହୋଇ ॥ ୮୮ ॥
ପ୍ରବୋଧି ସୀତାର ମନ କର ଶାନ୍ତ ।
ଜାନେକୀର କୋପକୁ କରଇ ମୁହିଂ ଭୀତ ॥ ୮୯ ॥
ଶ୍ରୀରାମ ବଚନ ଯହୁଁ ବଶିଷ୍ଠେ ଶୁଣିଲେ ।
ଭରଥ ଲକ୍ଷ୍ମଣ ଘେନି ସୀତାର ସନ୍ନିଧ୍ୟକୁ ଗଲେ ॥ ୯୦ ॥
ଦେଖି ଚମତ୍କାର ହୋଇଲେ ମହାସତୀ ।
ଭରଥ ଲକ୍ଷ୍ମଣ ଦୁଇ ଭାଇ ଶିରରେ କର ଦିଅନ୍ତି ॥ ୯୧ ॥
ଲବକୁଶେ ଯେ ମାତାର ସନ୍ନିଧ୍ୟେ ଥିଲେ ।
ଚରଣ ଧରି ଭୂମିରେ ପଡ଼ିଲେ ॥ ୯୨ ॥

---

୭୯· ମିଥ୍ୟା—ଯାହା (କ), ୮୫· ତହିଂ—ଯହିଂ (କ) ।

ଲକ୍ଷ୍ମଣଙ୍କୁ ଦେଖି ସତୀର ଉଡ଼ିଲାକ ସାହାସ ।
କୋପେ ଘନ ଘନ ଛାଡ଼ଇ ନିଶ୍ୱାସ ॥ ୯୩ ॥
ମନେ ମନେ ବିଚାରଇ ଜନକ କୁମାରୀ ।
ଏହାର ମୂଚ ଗୃହାନ୍ତେ ମୋହର ହୃଦୟ ବିଦାରି ॥ ୯୪ ॥
ନିଷ୍ଠୁର ବଚନକଇ ମୋତେ ଯେବଣ ଆସିଲା ।
ନ କହି କରି ମୋତେ ଛାଡ଼ିଣ ଏ ଗଲା ॥ ୯୫ ॥
ସ୍ୱାମୀର ଆଗ୍ୟାଂ କରିବ ଏ କିସ ।
ଏହା ନ କହିଗଲା ପାଇଲି ମୁହିଂ ବଡ଼ତ୍ରାସ ॥ ୯୬ ॥
ଯେତେ କଷ୍ଟ ପାଇଲି ସେ ଏହାର ପ୍ରସାଦେ ।
ଏ କିପାଇଂ ଆସଇ ମୋହର ସନ୍ନିଧ୍ୟେ ॥ ୯୭ ॥
ସମାସ୍ୟା ନ ଦେଇ ସତୀ ବସିଲା ମଥା ପୋତି ।
ସୀତାର ସନ୍ନିଧ୍ୟେ ବଶିଷ୍ଠେ କହନ୍ତି ॥ ୯୮ ॥
ସ୍ୱାମୀର ଦୋଷ ଗୋ ନ ଧର ରମନାରୀ ।
ଭ୍ରଥା ସ୍ତ୍ରୀଙ୍କର ଗୋ ହୁଅନ୍ତି ଅଧିକାରୀ ॥ ୯୯ ॥
ଯୁବତୀଙ୍କି ଯେବଣ ପୁରୁଷ ଅନିମିତ୍ତ୍ୟେ ଦୋଷ ବିହଇ ।
ସକଳ କଷ୍ଟ ତାର ମଥାରେ ବସଇ ॥ ୧୦୦ ॥
ଏ ମାୟା ସଂସାର ଆବର ମାୟା ଫାଶ ।
ଭରିଯାଙ୍କୁ ବେଶ ନ କରନ୍ତି କେବଣ ପୁରୁଷ ॥ ୧୦୧ ॥
ତୋତେ ଯେ ରାମଚନ୍ଦ୍ର ଅବସ୍ଥା ବିହିଲା ।
ସେହି ସେ ଗୋ ମହାସତୀ ବଡ଼ ଦୁଃଖ ପାଇଲା ॥ ୧୦୨ ॥
ପତିଙ୍କି କୋପ କଲେ ତୋହର ଧର୍ମ ହୋଇବ ନାଶ ।
କର୍ମର ଅବଳ ତୋତେ ବିଧାତାର ବଶ୍ୟ ॥ ୧୦୩ ॥
ବଶିଷ୍ଠଙ୍କର ମୁଖରୁ ଶୁଣି ଜନକର ଦୁଲଣୀ ।
ହୃଦୟ ଦହଇ ଯେସନ କୋଠ ଅଗ୍ନି ଜାଣି ॥ ୧୦୪ ॥
ବଶିଷ୍ଠଙ୍କର ପୟର ଧରି ସତୀ ପ୍ରଣମ୍ୟ କରଇ ।
ମଥା ପୋତି ଉଭା ହୋଇଲା ନୟନୁ ଲୁହ ଝରଇ ॥ ୧୦୫ ॥
କଲ୍ୟାଣ ବାଞ୍ଛିନ୍ତି ପିତାମହର ସୁତ ।
ଅଇହୋ ସୁଲକ୍ଷଣୀ ହୁଅ ଜନକ ଦୋହିତ ॥ ୧୦୬ ॥

---

୯୬· ଏହା—ଏହାର । ୧୦୧· ଆବର—ଅଟଇ (ଖ) । କେବଣ—ଯେବଣ । ୧୦୨· ଅବସ୍ଥା—ଅପ୍ରାଧ (ଖ); ୧୦୪· ମୁଖରୁ -ବଚନ (ଖ) ୧୦୬· ଅଇହୋ—ଅହ୍ମସ୍ତୁ (ଖ) ।

ଦୁଇପୁତ୍ର ତୋହର ହୋଇଲୁ ମହାପଣ୍ଡ ।
ମୁହିଂ ତୋତେ ବୋଲଇ ଶ୍ରୀରାମଙ୍କ କୋପ ଛାଡ଼ ମହାସତୀ॥୧୦୭॥
ମୁନିର ବଚନେ ଦେବୀ ମହାସତୀ ସୀତା ।
ମୁନିଙ୍କର କଥା ଶୁଣି ମନରେ ଗରୁଚିନ୍ତା ॥ ୧୦୮ ॥
ସୀତାୟା କୋପ ଯହୁଂ ଶ୍ରୀରାମ ଦେଖିଲା ।
କୋଦଣ୍ଡ କରେ ଧରି ସନ୍ଧଧ୍ୟେ ମିଳିଲା ॥ ୧୦୯ ॥

## ସୀତା ପାତାଳୀ ହେଲେ

ଦେଖିଣ ସୀତାୟା କୋପ ଅଗ୍ନି କାୟେ ।
ଘୃତ ପଡ଼ିଥିଲେ ଯେହ୍ନେ ହୁତାଶନ ହୋଏ ॥ ୧ ॥
ଲବକୁଶ ମୁଖ ଗ୍ରହୁଂ କୋପ କରଇ ସତୀ ।
ଏ ଚଣ୍ଡାଳଆତ୍ମା ଏହାକୁ ଯେବେ ଅଇଲେ ମୋହର କତ ॥ ୨ ॥
ପିତାର ମୁଖ ଯେବେ ନୟନେ ଦେଖିଲ ।
ଆଜହୁଂ ତୁମ୍ଭେରେ ମାତୃଶୂନ୍ୟ ହୋଇଲ ॥ ୩ ॥
ଏତେ କହି ଦେବୀ ସୂର୍ଯ୍ୟଙ୍କୁ କରଇ ସାକ୍ଷୀ ।
ତୁମ୍ଭେ ଜାଣ ନା ମୁହିଂ ଯେତେ ଦୁଃଖୀ ॥ ୪ ॥
ଶ୍ରୀରାମର ମୁଖ କମ୍ପା ନୟନେ ଦେଖିବ ।
ଏ ଦେହ ଧରି ମୁଂ କସ ସାର୍ଥ ଅର୍ଜିବି ॥ ୫ ॥
ମୁହିଂ ଯେବେ ପତିଭଗତା ମହାସତୀ ।
ପରପୁରୁଷେ ମୋହର ନ ବଳଇ ମତି॥ ୬ ॥
ଗୋ ବସୁମତୀ ତୁ ଦୁଇଭାଗ ହୁଅସି ।
ତୁହି ମୋହର ମାତା ମୋତେ ଠାବ ଦେସି ॥ ୭ ॥
ସୀତା ବଚନେ ପୃଥ୍ୱୀ ଦୁଭାଗ ହୋଇଲା ।
ଦେଖୁ ଦେଖୁ ମହାସତୀ ପାତାଳେ ପଶିଲା ॥ ୮ ॥
ଦେଖିଣ ଶ୍ରୀରାମ କୋଦଣ୍ଡ ପକାଇଲେ ।
ଦୁଇ ଭୁଜେ ଯାଇ କୋଳ କରି ଧଇଲେ ॥ ୯ ॥
କରଗତେ ଦେବୀର ରହିଲାକ କେଶ ।
ତତକ୍ଷଣେ ପାତାଳେ ଦେବୀ ହୋଇଲେ ପ୍ରବେଶ ॥ ୧୦ ॥

---

୧୦୭. ହୋଇଲୁ—ହୋଇ (କ) । ୧୦୮. ବଚନେ—ବଚନକୁ (କ); ମହାସତୀ—ମହା । ୧. ହୋଏ—ଦହେ (କ) । ୨. ଏହାକୁ—କୁ (କ) । ୪. ସୂର୍ଯ୍ୟଙ୍କୁ—ବରହ୍ମକ (ଖ) । ୫. ଧରି—ଅର୍ଜି [କ]; ସାର୍ଥ— ପୂର୍ବାର୍ଥ[କ]

ବୈକୁଣ୍ଠ ପୁରେ ଯାଇ ହୋଇଲେ ତତକ୍ଷଣି ।
ନିଷ୍ଟନ୍ତେ ବିଷ୍ଣୁ ପୁରେ ରହିଲେ ରାମରାଣୀ ॥ ୧୧ ॥
କିପୁତୁ ଜାନେକୀ ଗୋ ଜଗ୍ୟଂସମ୍ଭବୀ ।
ପୃଥ୍ୱୀର ଭାର ଅର୍ଥେ ଥିଲୁ ଗୋ ଜନ୍ମ ଲଭି ॥ ୧୨ ॥
ସୀତାୟା ନାମ ରୂପେ ଶରୀର ଧୃଣୀ କଲୁ ।
କାଳର ବଶ୍ୟ ପଣେ ଜନେକର ଘରେ ଥିଲୁ ॥ ୧୩ ॥
ଶ୍ରୀରାମର ଘରଣୀ ଗୋ ହୋଇଲୁ ପାଟରାଣୀ ।
ପଞ୍ଚୁବଟୀ ବନେ ତୋତେ ହରି ନେଲା ବିଂଶପାଣି ॥ ୧୪ ॥
ପଦ୍ମଆସନୀ ଗୋ ତୋହର ଗନ୍ଧ ଆଣେ ।
ଅନେକ ରକ୍ଷ ହରି ଗଲେ ଲଙ୍କଦେଶେ ॥ ୧୫ ॥
ତୋହର ଛଳେ ଗୋ ଷର୍ଜିବର ସୁନ୍ଦର ।
ଅସୁର ବଳ ମାରି ରାବଣର ଛେଦିଲେ ଦଶଶିର ॥ ୧୬ ॥
ଲଙ୍କାଗଡ଼େ ବିଭୀଷେଣକୁ ରାଜା କଲେ ।
ତୋତେ ଦେନି ରାମ ଅଯୋଧ୍ୟାକୁ ଅଇଲେ ॥ ୧୭ ॥
ନିଷ୍ଟନ୍ତେ ରାଜ୍ୟ କରନ୍ତେ ଦାଶରଥି ।
ଶ୍ରୀରାମ ମୁଖ ଗୃହିଂ ପାପିଷ୍ଟେ ମୋକ୍ଷ ହୋନ୍ତି ॥ ୧୮ ॥
ତେତିଶ କୋଟି ଦେବ ମାୟା କୃତ କଲେ ।
ଅଯୋଧ୍ୟା ନଗରକଇ ଶାରଦା ବରଗିଲେ ॥ ୧୯ ॥
ଶ୍ରୀରାମ ହୃଦରେ ଯେବେ ବସିଲା ସରସ୍ୱତୀ ।
ବହୁତ କଥା ଶୁଣି ରାମ ମନେ ମନେ ବିକୃତ ॥ ୨୦ ॥
ଅଗମ୍ୟ ଘୋର ବନରେ ନିବାସ କରାଇଲା ।
ଗର୍ଭିଣୀ କାମେନୀ ବୋଲି ଓପ୍ରୋଧ ନକଲା ॥ ୨୧ ॥
ଅନେକ କଷ୍ଟେ ଦୁଇ ପୁତ୍ର ଜାତ କଲୁ ।
ଲବକୁଶ ନାମ ସେ ତନୟଙ୍କୁ ଦେଲୁ ॥ ୨୨ ॥
ବାଲ୍ମୀକ ଋଷି ସେ ଦୁଇଭାଇଙ୍କି ପଢ଼ାଇଲେ ।
ରାମାୟେଣ ଚରିତ୍ର ସକଳ ଶିଖାଇଲେ ॥ ୨୩ ॥
ଲବକୁଶ ଦୁଇ ଭାଇ ଗଲେ ଗୀତ ଗାଇ ।
ଦଇବର ନିର୍ମାଣ ଗୋ ମେଣ୍ଟଣ ନ ଯାଇ ॥ ୨୪ ॥

---

୧୧. ଖ ପୋଥିରେ ଏ ପଦର ପାଠ :—ସେ ସପ୍ତପୁର ପାତାଳେ ବିଜୟେ ଶ୍ରୀହରି । ବିଷ୍ଣୁ ର ପାଶେ ବିଶ୍ରାମିଲା ଶ୍ରୀରାମର ନାରୀ ॥ ୧୫. ପଦ୍ମଆସନୀ—ପଦ୍ମବାସେନୀ [ଖ]; ତୋହର ଗନ୍ଧ—ଗନ୍ଧ [କ] । ୧୮. କରନ୍ତେ—କରନ୍ତି [କ] । ୨୩. ରାମାୟେଣ—ରାବାୟଣ [ଖ] ।

ଅଯୋଧ୍ୟାକୁ ଦୁଇ ଭାଇ ଗୀତ ଗାଇ ଗଲେ ।
ଶ୍ରୀରାମର ଆଗେ ରାମାୟେଣ କହିଲେ ॥ ୧୫ ॥
ଶୁଣିଣ ଶ୍ରୀରାମଚନ୍ଦ୍ର ପାପକ୍ଷୟେ ଗଲା ।
ଲବକୁଶେ କହନ୍ତେ ପୁତ୍ର ବୋଲି ଜାଣିଲ ॥ ୧୬ ॥
ଜନୟନ୍ତ ଘେନଣ ଆଇଲେ ତୋତେ ନେଇ ।
ଶ୍ରୀରାମ ମୁଖ ଦେଖି କୋପ କଲୁ ବୁଦ୍ଧି ॥ ୧୭ ॥
ପାତାଳ ବଇକୁଣ୍ଠ ପୁରେ କଲୁ ସ୍ଥିତି ।
ବିଷ୍ଣୁର ବଲ୍ଲଭା ତୁହି ପରମପୀରତି ॥ ୧୮ ॥
ତବ ପଦ୍ମପାଦେ ମୋହର ଭଗତର ବାସ ।
ଭବ ଜଳଧିରୁ ଉଦ୍ଧର କହି ସିଦ୍ଧେଶ୍ୱର ଦାସ ॥ ୧୯ ॥

## ରାମାଦିଙ୍କ ଶୋକ

ଏଥୁ ଅନନ୍ତରେ ଶୁଣ ପଣ୍ଡୁର ନନ୍ଦନ ।
ନୟନ ଥନଥନ କରି ପୁଛଇ ଶୁଣସି ମହାମୁନ୍ୟ ॥ ୧ ॥
ପୃଥୀର ଭିତରେ ସୀତ୍ୟା ପଶିଲା ।
ତହୁଁ ଅନ୍ତେ ରାମ କେବଣ କୃତ୍ୟ କଲା ॥ ୨ ॥
ଏଥିର ଚରିତ ବିସ୍ତାରି କରି କହ ।
ବଡ଼ ବିକଳ ମୁନି ହେ ହେଉଛି ମୋହର ଦେହ ॥ ୩ ॥
କହନ୍ତି ମାରକଣ୍ଡ ଶୁଣସି କୁନ୍ତୀ ସୁତ ।
ଦୁସହ ଅରିଷ୍ଟି ତୋହର ଦୁରିତ ହୋଉ ହତ ॥ ୪ ॥
ସୀତାସ୍ତୁ ପୃଥ୍ୱୀରେ ପଶିଲା ଶୁଣନ୍ତି ଯେବଣ ନରନାରୀ ।
ଦୟାକରଇ ତାହାକୁ ସିନ୍ଧୁ କୁମାରୀ ॥ ୫ ॥
ଶତେକୋଟି ଜନ୍ମର ପାତେକ ହୋଉ ନାଶ ।
ବଇକୁଣ୍ଠପୁରେ ବସଇ ସେ ବିଷ୍ଣୁ ନାଥର ପାଶ ॥ ୬ ॥
ସୀତାର କେଶ ହସ୍ତରେ ଘେନ ସୀତାପତି ।
ଭୂମିରେ ପଡ଼ି ରାମ ଅଚେତନ ମତି ॥ ୭ ॥
ଦୁଇକୁମାରେ ଯହୁଁ ମାତାକୁ ନ ଦେଖିଲେ ।
ହସ୍ତାରେ କର ତାଡ଼ି ଭୂମିରେ ପଡ଼ିଲେ ॥ ୮ ॥
ଭରଥ ଲକ୍ଷ୍ମଣ ରୋଦନ କରନ୍ତି ।
ଅମନାତ୍ୟ ମନ୍ତ୍ରୀଗଣେ ଆସି ସନଧ୍ୟେ ମିଳନ୍ତି ॥ ୯ ॥

---

୧୫. ରାମାୟେଣ—ରାବାୟଣ [ଖ] । ୧୯. କହି—କରଇ । ୫. ସିନ୍ଧୁ—ସିଧ୍ୟ [କ] । ୮. ନ ଦେଖିଲେ—ଦେଖିଲେ ।

କ୍ଷଣକେ ଶ୍ରୀରାମ ଚେତନା ପାଇଲା ।
ଦୁଇ ପୁତ୍ରକୁ କୋଳେଧରି ଉଚ୍ଚେ ରୋଦନ କଲା ॥ ୧୦ ॥
ଆହା ଜାନେକି କେବଣ କଥା ଗଲୁ ।
ଧନ୍ୟ ଜାଇ ମୋହୋର କେମନ୍ତେ ଉପେକ୍ଷିଲୁ ॥ ୧୧ ॥
ମୁହିଁ ମନ୍ଦ ବୁଦ୍ଧି ବୁଝି ତ ନ ପାରିଲି ।
ବିନା ଦୋଷେ ତୋତେ ଉପେକ୍ଷା ମୁଁ କଲି ॥ ୧୨ ॥
ବନସ୍ତେ ତୁହି ଯେ ଅନେକ କଷ୍ଟ ପାଇଲୁ ।
ପୁଣ ଚନ୍ଦ୍ରପ୍ରତିମା ଜାଣି ଦୁଇପୁତ୍ର ଜାତ କଲୁ ॥ ୧୩ ॥
ଏ ପୁତ୍ର ଉପେକ୍ଷି ଗଲୁ ଏବେ କାହିଁ ।
ପୃଥୀରେ ପଶିଲୁ ମୋହର ମୁଖ ନ ଚାହିଁ ॥ ୧୪ ॥
ଅଗ୍ନିବାର ବେଳେ ଯାହା ମାତା ମୋତେ ବୋଇଲା ।
ଜନନୀ ବଚନ ଏବେ ସ୍ୱରୂପ ହୋଇଲା ॥ ୧୫ ॥
ମାତାକଇ ଯେବେ ରଥେ ବସାଇ ଆଣନ୍ତି ।
ସୀତାସ୍ତ୍ରୀ ଦେନ ମୋହର ରାଜ୍ୟକଇ ଯାନ୍ତି ॥ ୧୬ ॥
କାଳକ ପଛ ବୁଦ୍ଧି ମୋହର ନଷ୍ଟ ।
ଅପଣାର କର୍ମରେ ହୋଇଲି ପତ୍ନୀଭ୍ରଷ୍ଟ ॥ ୧୭ ॥
ଏସନେକ ଭଲେ ରୋଦନ କରନ୍ତି ସୀତାପତି ।
ବଶିଷ୍ଠ ସୁମନ୍ତ୍ର ସହିତେ ରୋଦନ କରନ୍ତି ॥ ୧୮ ॥
ମନ୍ତ୍ରୀ ଅମାତ୍ୟ ଭରଥ ଲକ୍ଷ୍ମଣ ଦୁଇଭାଇ ।
ସର୍ବହେ କୋଧେ ସମାକୁଳ ଦେହି ॥ ୧୯ ॥
କାଞ୍ଚନା ଚର୍ଚ୍ଚ ଯେ ସଭାମଧ୍ୟରେ ଥିଲେ ।
ସୀତାସ୍ତ୍ରୀ ଭୂମିରେ ପଶନ୍ତେ ସେହି ଦେଖିଲେ ॥ ୨୦ ॥
ଉଚ୍ଚେ କରତାଡ଼ି ଦୁଇ ଭଗ୍ନୀ କାନ୍ଦନ୍ତି ।
କେଶବାସ ଅସମ୍ଭାଳ ଅବନୀରେ ଲୋଟନ୍ତି ॥ ୨୧ ॥
କାହିଁକି ଗଲୁ ଗୋ ଜନେକ ଦୋହିତା ।
କିସ ବୋଲି କହିବୁ ତୋହର ପିତାର ଅଗ୍ରତ ॥ ୨୨ ॥
ଆମ୍ଭନ୍ତ ଦେନ ଯେ ପ୍ରସନ୍ନ ଲୋଡ଼ି ଅଇଲୁ ।
ଲବକୁଶକୁ ଛାଡ଼ି ପୃଥୀରେ ପଶିଲୁ ॥ ୨୩ ॥
କାନ୍ଦ କାନ୍ଦନ୍ତି ସେହି ଦୁଇ ଯୁବତୀ ।
ଚାହୁଁଡ଼ି ବଇଦେହୀ ମଣ୍ଡଳକୁ ଯାନ୍ତି ॥ ୨୪ ॥

---

୧୭· କାଳକ ପଛବୁଦ୍ଧି ମୋହର—କାଳ ପଛରେ ମୋହର ବୁଦ୍ଧି [କ୍ରି] ।

ନଗର ଭିତରେ ଯାଇ ପ୍ରବେଶ ହୋଇଲେ ।
ଜନକର ଆଗେ ସେ ବିକଳ ଶବ୍ଦେ କହିଲେ ॥ ୨୫ ॥
ସୀତାଙ୍କୁ ନ ଦେଖି ଜନେକ ରାଜମୁନ୍ୟ ।
ତେବେକେ ବସିଛନ୍ତି ଅନେକ ତପୋଧନମାନ ॥ ୨୬ ॥
ଚଉକଢ଼ ଲୋଡ଼ନ୍ତି ପରିବାରୀ ଦାସୀ ।
ଚିନ୍ତାରେ ଅଥିର ଜନେକ ରାଜଋଷି ॥ ୨୭ ॥
ଏସନେକ ସମସ୍ତେ ଦୁଇ ଭଗ୍ନୀ ।
ଜାଣିଣି କହନ୍ତି ଶୁଣ ହେ ମହାମୁନି ॥ ୨୮ ॥
ତୁମ୍ଭର ନନ୍ଦନୀ ଲବକୁଶଙ୍କର ଗର୍ଭଧାରୀ ।
ବନସ୍ତକୁ ଗଲେ ସେ ପୁତ୍ରଙ୍କ ଅନୁସରି ॥ ୨୯ ॥
ସଙ୍ଗରେ ଥିଲେ ଆମ୍ଭେ ଦୁଇ ଭଗ୍ନୀ ଗଲୁ ।
ବଟବୃକ୍ଷ ତଳେ ସବିହେ ହୋଇଲୁ ॥ ୩୦ ॥
ତରୁବର ଗ୍ରସ୍ଥାରେ ସତୀ ଏକାନ୍ତେ ବସିଥିଲା ।
କୁମରଙ୍କ ଲୋଡ଼ି ଆମ୍ଭ ଦୁଇ ଭଗ୍ନୀଙ୍କି ପଠିଆଇଲା ॥ ୩୧ ॥
ଲବକୁଶେ ଯେ ଗୀତ ଗାଇତ ଗଲେ ।
ଅଯୋଧ୍ୟା ନରନାରୀ ସମସ୍ତେ ହେ ଶୁଣିଲେ ॥ ୩୨ ॥

ରାମାୟଣ ଚରିତ କରନ୍ତେ ବଖାଣ ।
ପୁତ୍ର ବୋଲି ଜାଣିଲେ ଶ୍ରୀରାମ ଲକ୍ଷ୍ମଣ ॥ ୩୩ ॥

ତନୟନ୍କୁ ଦେଖି ସେ ନବରଙ୍ଗ ଗଲା ।
କ୍ଷୀର ବସନ ପିନ୍ଧାଇ ଚନ୍ଦନ ଲେପିଲା ॥ ୩୪ ॥

ସୀତାର ସଜ ରତ୍ନ ଅଳଙ୍କାର ।
ଦୁଇ ପୁତ୍ରଙ୍କର ଗଳାରେ ଭରିଲେ ରତ୍ନହାର ॥ ୩୫ ॥

ପୁତ୍ରନ୍ତ ଯେବଣ ସେ ବିମାନରେ ବସି ।
ଭରଥ ଲକ୍ଷ୍ମଣ ଆଉ ବଶିଷ୍ଠ ମହାଋଷି ॥ ୩୬ ॥

ମନ୍ତ୍ରୀ ଅମାତ୍ୟ ବୈଷ୍ଣବ ଅନେକ ଜନଙ୍କର ତୁଲେ ।
ସମସ୍ତେ ହେ ଏଥକଇ ଆସୁଣ ଥିଲେ ॥ ୩୭ ॥

ବଟବୃକ୍ଷ ତଳେ ସୀତାଙ୍କୁ ଦେଖିଲେକ ଯହୁଁ ।
ଲତା ଉହାଡ଼େ ସମସ୍ତେ ବିଶ୍ରାମିଲେ ତହୁଁ ॥ ୩୮ ॥

---

୨୫—୨୬. ଏ ଦୁଇ ପଦ ଖ ପୋଥିରେ ନାହିଁ । ୨୭. ଚିନ୍ତାରେ--ଚଉରେ[କ]
୩୧. ଭଗ୍ନୀଙ୍କି—ଭାଇଙ୍କି [କ] । ୩୭. ବୈଷ୍ଣବ—ବଶିଷ୍ଠ [କ] ।

ଲବକୁଶ ଦୁଇ ଭାଇ ଆଗ ହୋଇଲେ ।
ମାତାର ସନ୍ନିଧ୍ୟେ ଆସିଣ ମିଳିଲେ ॥ ୩୯ ॥
କୋପେଣ ସୀତାସ୍ୱା ଉମଭରତ ହୋଇଲା ।
ଉମ ଶ୍ୟାନ୍ତ କଲା ସହୁଂ ପୁସଙ୍କୁ ଦେଖିଲା ॥ ୪୦ ॥
ଆମ୍ଭେ ଦୁଇ ଭଗ୍ନୀ କୁମରନ୍ତ ଲେଡ଼ ଯାଇଥିଲୁ ।
ସମସ୍ତେ ହେ ଆସି ଏକ ରୁଣ୍ଡ ହୋଇଲୁ ॥ ୪୧ ॥
ଚନ୍ଦ୍ରମାଲା ଦେଖି ସୀତାସ୍ୱା ଚହ୍ନିଲା ।
କାହୁଂ ପାଇଲ ବୋଲି ପୁସନ୍ତ ପଗ୍ଗୁଚାଲା ॥ ୪୨ ॥
ଲବକୃଶେ କହିଲେ ଆମ୍ଭେ ଗୀତ ଗାଇତ ଗଲୁ ।
ଅଯୋଧ୍ୟା ନଗ୍ରେଣ ଯାଇଣ ହୋଇଲୁ ॥ ୪୩ ॥
ଋଷି ବର ସୁନ୍ଦର ଆମ୍ଭର ଗୀତ ଶୁଣିଲା ।
ପୁନ ବୋଲିଣ ସେ ମଣିମାଲା ଏକ ଦେଲା ॥ ୪୪ ॥
ପୁସଙ୍କର କଥା ଶୁଣିଣ ମହାସତୀ ।
ଲବକୁମର ମୁଖ ଗୃହୁଂ କହଇ ଶାନ୍ତ ମୂର୍ତ୍ତି ॥ ୪୫ ॥
ଏସନେକ ସମୟେ ବଶିଷ୍ଠ ମହାଋଷି ।
ଭ୍ରଥ ଲକ୍ଷ୍ମଣ ଘେନ ସୀତାର ସନ୍ନିଧ୍ୟକୁ ଆସି ॥ ୪୬ ॥
ଲକ୍ଷ୍ମଣଙ୍କୁ ଦେଖି ସୀତାସ୍ୱା କୋପ କଲା ।
ବହୁତ ପ୍ରବୋଧି ବଶିଷ୍ଠ କହିଲା ॥ ୪୭ ॥
ଘନ ଘନ ସତୀ ଛାଡ଼ଇ ନିଶ୍ୱାସ ।
ଏସନେକ ସମୟେ ମିଳିଲା ରାମ ପାଶ ॥ ୪୮ ॥
ମନ୍ତ୍ରୀ ଅମନାତ୍ୟ ସନଧ୍ୟେ ଅଛନ୍ତି ।
ଶ୍ରୀରାମଙ୍କଇ ଦେଖି କୋପ କଲା ମହାସତୀ ॥ ୪୯ ॥
ସ୍ୱାମୀର ମୁଖ ସତୀ କେବେହେ ନ ଗୃହୁଂଲା ।
ସୀତାସ୍ୱାର ବଚନେ ପୃଥୀ ଦୁଇଭାଗ ହୋଇଲା ॥ ୫୦ ॥
ପାତାଳେ ତୃନ୍ତର ଦୋହିତା ହୋଇଲା ପ୍ରବେଶ ।
ଶ୍ରୀରାମଚନ୍ଦ୍ରର ସନଧ୍ୟେ ଅଛନ୍ତି ଲବକୁଶ ॥ ୫୧ ॥
ସ୍ୱରୂପ କଥାଏ ପ୍ରତକ୍ଷେ ଦେଖିଲୁ ।
ଦୋ ତପିଷ୍ଟ ରାଜା ତୃନ୍ତର ଆଗେ କହିଲୁ ॥ ୫୨ ॥
ଶୁଣିଣ ଜନେକ ମୁନ ଢଳିଣ ପଡ଼ିଲା ।
ଗ୍ୟାନ ହାରିଲା ଅଚେତ ହୋଇଲା ॥ ୫୩ ॥

---

୪୮· ସତୀ—ମୂର୍ତ୍ତି [କ] ।

ଋଷିର ଭଟେଣ୍ଣା ସେ ସନ୍ଧ୍ୟରେ ଥିଲି ।
ମୂର୍ଚ୍ଛା ଯାଇଣ ସେ ଭୂମିରେ ପଡ଼ିଲି ॥ ୫୪ ॥
କାନ୍ଦଇ ଉଚସ୍ୱରେ କ୍ଷତ୍ରସେଣୀର ମାତା ।
କ୍ଷଣକେ ଜନେକ ମୁନି ହୋଇଲି ସଚେତା ॥ ୫୫ ॥
ଉଚେ ରୋଦନ କରଇ ମହାମୁନି ।
କେଣେ ଗଲୁ ସୀତମ୍ମା ଗୋ ଦୁଃଖୀର ନନ୍ଦଣୀ ॥ ୫୬ ॥
ପଢ଼ ବିଚ୍ଛେଦ ହୋଇ ଥିଲୁ ମୋହର ଘରେ ।
ତୋହର ଥାନ୍ତେ ଶୋକ୍ଷଥିଲିକ ମୋହର ପୁରେ ॥ ୫୭ ॥
ତୋତେ ନ ଦେଖି ଜୀବନେ କିସ କାର୍ଯ୍ୟ ।
ନିନିଜ ଆତ୍ମା କିପାଇଂ ନ ଯାଇ ଆଜ ॥ ୫୮ ॥
ଜନେକ କାନ୍ଦନ୍ତି ରୋଦନ୍ତି ସକଳ ଋଷି ।
ବେଢ଼ିଣ ରୋଦନ କରନ୍ତି ମୁନିର ଅବଳାଶୀ ॥ ୫୯ ॥
ଧାଣ୍ଡି ପରିବାଣ୍ଡି ରୋଦନ କରନ୍ତି ।
ଶୁଣି ବେଗେ ଅଇଲେ ବାଲ୍ମୀକ ମହାଯତି ॥ ୬୦ ॥
ଜନେକକୁ ପ୍ରବୋଧି କହନ୍ତି ତପସ୍ୱୀ ।
ପୃଥୀରେ ପଶିଲ ଯେବେ ତୋହର କୁମାରୀ ॥ ୬୧ ॥
ନହିଂ ଉପୁଜିଲା ସେ ଯେ ତହିଂକି ଗଲା ।
ଦେବଙ୍କର କଷ୍ଟେ ସେ ମାନବେ ଉପୁଜିଲା ॥ ୬୨ ॥
ଆବର ସୀତମ୍ମାକୁ ଦେଖିବୁ ତୁ କାହିଂ ।
ତୋହର ଦେଶକୁ ଯେବେ ଅଇଲେ ସୀତାପାଇଂ ॥ ୬୩ ॥
କ୍ଷଣେ ବର ସୁନ୍ଦରର ଗ୍ଳଲ ମୁଖ ଦେଖି ଯିବା ।
ସଞ୍ଚିତ ପାପ ଯାଗ ଦହନ କରିବା ॥ ୬୪ ॥
ଶତେ ସହସ୍ର ଜନ୍ମର ଯେତେ ପାପ ହରି ।
ରାମ ମୁଖ ଦେଖିଲେ ସେ ଦୁଃଖ ଅପହରି ॥ ୬୫ ॥
ଜନେକ କହଇ ମୋହର ଦେହେ ବସଇ ମାନ ।
କେସନେକେ ଚାହିଂବି ମୁଂ ଶ୍ରୀରାମର ବଦନ ॥ ୬୬ ॥
କି ଦୋଷେ ମୋହର ଦୋହିତାକୁ ଦୁଃଖ ଦେଲା ।
ମହନ୍ତ ପୁରୁଷ ହୋଇ ଅନୀତକି ଗଲା ॥ ୬୭ ॥
ଇପ ହି ନ କରିବି ଦେହ ନ ଧରିବି ।
ଅବଶ ଆଜ ମୁହିଂ ଆତ୍ମାଘାତେ ମରିବି ॥ ୬୮ ॥

୬୨. ନହିଂ—ନହିଂ (ଖ); ସେଯେ— ସେସ୍ୱେ ।

ବାଲ୍ମୀକି କହନ୍ତି ତହିଂ କୋପ ନ କର ।
ବଇକୁଣ୍ଠ ତେଜି ରାମ ମାନବ ଅବତାର ॥ ୬୯ ॥
ପୃଥ୍ୱୀର ହିତ ଅର୍ଥେ ହୋଇଲେ ଜାତ ।
ଅସୁରନ୍ତ ବିନାଶି ଛେଦିଲେ ଦଶମାଥ ॥ ୭୦ ॥
ସୀତାର ସହିତେ ନିଜ ରାଜ୍ୟେ ଥିଲେ ।
ପାପୀ ଲୋକ ମୁକତି ଶ୍ରୀରାମ ମୁଖ ଦେଖିଲେ ॥ ୭୧ ॥
ତେଣୁ ସେ ବୈକୁଣ୍ଠପୁର ଯିବା ବିଚାରି ।
ବିଚ୍ଛେଦ କରାଇଲେ ଜନକ କୁମାରୀ ॥ ୭୨ ॥
ସୀତା ଏଥେ ଥିଲେ ନ ସରଇ ଯୁଗ ।
ତେଣୁ ସେ ତୋହର ଦୋହିତା ପଶିଲା ଭୂମିଭାଗ ॥ ୭୩ ॥
ଏବେ ଚାଲ ଶ୍ରୀରାମ ସନ୍ନିଧ୍ୟକୁ ଯିବା ।
ତୋହର ପୁରକଇ ଦେଖଣ ଆସିବା ॥ ୭୪ ॥
ଯଦ୍ୟପି ନ ଆସଇ ସୀତସ୍ୟାର ପଥ ।
ସମର୍ପି ଆସିବା ତୋହର ବେନି ନାତି ॥ ୭୫ ॥
ଲବକୁଶଙ୍କୁ ପ୍ରତିପାଳଇ ମୁଁ ପୂର୍ବେ ।
ଋଷି ବର ସୁନ୍ଦର ମୁଖ ଚାହିଂବୁ ତୁ ଏବେ ॥ ୭୬ ॥
ବାଲ୍ମୀକଙ୍କର ବଚନ ଶୁଣି ତପୋଧନ ।
ସନ୍ନିଧ୍ୟେ ହକାରିଲେ ମୁନିଗଣ ମାନ ॥ ୭୭ ॥
[ଅନେକ ଦ୍ରବ୍ୟ ଉପହାର ଘେନି ।
ଆପଣେ ଗମନ୍ତି ବାଲ୍ମୀକି ତପୋଧନ] ॥ ୭୮ ॥
ଋଷିବୃନ୍ଦ ସଙ୍ଗତେ ବାଲମୀକି ତପୋଧନ ।
କେତେ ଧୂରୁ ଦିଶିଲେ ରଘୁବର ନନ୍ଦନ ॥ ୭୯ ॥
ବଟବୃକ୍ଷ ତଳେ ଅଛନ୍ତି ରାମଚନ୍ଦ୍ର ।
ତହିଂ ଯାଇ ମିଳିଲେ ସକଳ ଋଷିବୃନ୍ଦ ॥ ୮୦ ॥
ବଶିଷ୍ଠ ସଙ୍ଗତେ ରଘୁବଂଶମଣି ।
ବସିଛନ୍ତି ସମସ୍ତେ ତଇଲେ ମାଛୁ ଜାଣି ॥ ୮୧ ॥
ଯେ ଯାହାର ମାନଣା ମୁନିଗଣେ କହନ୍ତି ।
ବାଲ୍ମୀକଙ୍କର ପଛୁର ଧରି ଶ୍ରୀରାମ ଓଲଗନ୍ତି ॥ ୮୨ ॥
ଜନେକ ମହର୍ଷିଙ୍କର ସନ୍ନିଧ୍ୟକୁ ଗଲେ ।
ପଛୁର ଧରି ରାମଚନ୍ଦ୍ର ପ୍ରଣମିତ କଲେ ॥ ୮୩ ॥

---

୭୧. ସହିତେ—ସମିତେ (କ) । ୭୯. ପଦଟି ଖ ପୋଥିରେ ନାହିଁ; କେତେ—କେତେ ।

ଭୃଥ ନିଷ୍ଠୁର ମୁନଙ୍କି ପ୍ରଣିପାତ କରନ୍ତି ।
ରଦନ କ୍ରମୋଦ କାଣ୍ଡି ନୟନ ଦହନ୍ତି ॥ ୮୪ ॥
ଲବକୁଶଙ୍କୁ ଜନେକ ମୁନ କୋଳ କରି ଧରନ୍ତି ।
ସୀତା ଆଉଂସିଣ ଯେ ହଟେ ରୋଦନ କରନ୍ତି ॥ ୮୫ ॥
ଜେମାରେ ବାନ୍ଧନ୍ତି ଦେଖିଣ ମାତାର ଗାତ ।
କୁମରଙ୍କ ମୁଖ ଚୁମ୍ବି ରୋଦନ କରନ୍ତି ରଘୁନାଥ ॥ ୮୬ ॥
ଶରୀର ଅସମ୍ଭାଲ ସବୁଙ୍କର ଦେହ ।
ବଶିଷ୍ଠେ ବାଲ୍ମୀକେ ରାମଙ୍କୁ ପ୍ରବୋଧିଣ କହ ॥ ୮୭ ॥
ତୋହର ଅଧଇର୍ଯ୍ୟେ ଧଇର୍ଯ୍ୟ ହୋଇବ କେ ଆନ ।
ଧର୍ମିକପଣେ ଶାନ୍ତ କରସି ତୋହର ମନ ॥ ୮୮ ॥
ଯେ ଯାହାର ଫଳ ଫଳଇ କାଳଇ ।
କ୍ଷର୍ମି ପଡପଣ ତୁହ୍ମ ହେ ସୂର୍ଯ୍ୟବଂଶେ ଉହ୍ଳଇ ॥ ୮୯ ॥
ଆହ୍ମା ଘରକେ ନ କର ତୁ ନ କର ଚିନ୍ତା ।
ଅବର ଦେଖନ୍ତେ ତୁ ପାଇବୁ କି ସୀତା ॥ ୯୦ ॥
ବାଲ୍ମୀକଙ୍କର କହନ୍ତେ ରାମ ରୋଦନ ଛାଡ଼ିଲେ ।
କରେ କୋଦଣ୍ଡ ଧରି ରାମ ଅମର୍ଷନ କଲେ ॥ ୯୧ ॥
ରଘୁନନ୍ଦନ ଶର ଯୋଖୁ କାଢ଼ନ୍ତି ତଡ଼ତ ।
ଆଜ ବିନାଶିବି ଅଭବ୍ୟେ ବସୁମତୀ ॥ ୯୨ ॥
ମୋହର ପତ୍ନୀକି ଏହ୍ନ ସେ ସଘରଲ୍ଲ ।
ଯେ ଭଗତ ହୋଇ ନାରୀଚ ଗୁଣରେ ବହାଇଲ୍ଲ ॥ ୯୩ ॥
ଦେଖିଣେ ଅମରାଧି ଦେବଗଣେ ଭାଳ ।
ଶ୍ରୀରାମ ନାରୀଚ କି ସହ୍ବ ମହୀଆଳୀ ॥ ୯୪ ॥
ରସାନ୍ତଲେ ଆସି ପୃଥ୍ୱୀ ପଡ଼ିବ ।
ସକଳ ଜୀବଜନ୍ତୁ ପ୍ରାଣେ ନାଶ ହୋଇବ ॥ ୯୫ ॥
ଶୂନ୍ୟେଣ ଡାକ ଦେଲେ ଯେ ଅମରଗଣ ।
ଛାଡ଼ ଛାଡ଼ ଆୟୁଧ ପୃଥ୍ୱୀକି ନ ବିନ୍ଧ ବାଣ ॥ ୯୬ ॥
ତୋହର କୋପ ସହ୍ନ ପାରଇକି ବସୁମତୀ ।
ସକଳ ହତ୍ୟାରେ କାରେଣୀକି ହୋଇବୁ ଦାଶରଥି ॥୯୭॥
ମୂର୍ବେ ଖେଦ କଲୁ ଲୋକଙ୍କ ବଚ୍ୟାଣେ ।
ଧରଣୀକି ନିବାସିଲୁ କେବଣ କାରଣେ ॥ ୯୮ ॥

---

୮୮. ଶାନ୍ତ କରସି—ସମାସ୍ୟା କର ତୋହର (କ) । ୯୦. ଚିନ୍ତା—ଖ୍ୟାତା (କ ; ଦେଖନ୍ତେ—ଦେଖନେ । ୯୩. ସଂଘରଲ—ସଂଘାରିଲ (କ) । ୯୫. ରସାନ୍ତଲେ —ରସାନ୍ତାଲେ । ୯୬. ଅମର—ଅମରସୁର (କ)

ବହୁତ ଜନ୍ତୁ ହସ୍ତୀ ପାଇଲୁ ବନ ମଧ୍ୟ ।
ବୃଦ୍ଧ କାଳେ ତୋହର ଜପ କାମ ସଧ୍ୟ ॥ ୯୯ ॥
ଧର୍ମ ଶାସ୍ତ୍ରକଇ ସେ ଚନ୍ଦ୍ରକୁ କାରଣ ।
ପରମ ପୁରୁଷ ତୁ ପ୍ରମାର୍ଥ ଧାରଣ ॥ ୧୦୦ ॥
ଦେବଙ୍କର ବଚନ ଶୁଣି ରାମ ତୁଷ୍ଟ ହୋଇଲେ ।
ଧନୁଶର ପକାଇ ସେ ତରୁତଳେ ବସିଲେ ॥ ୧୦୧ ॥
ଜନେକ ମହର୍ଷି ଯେ କୁମରକୁ ଧରିଥିଲୁ ।
ଶ୍ରୀରାମର ସନ୍ନିଧ୍ୟକୁ ସେ ତତକ୍ଷଣେ ଗଲା ॥ ୧୦୨ ॥
ଅମୂଲ୍ୟ ରତ୍ନ ନେଇ ଗୃପଇ ରାମ ଶିର ।
ନିସ୍ବନ ଅନଅନ କରି କହଇ ମୁନିବର ॥ ୧୦୩ ॥
ଆଦିତ୍ୟ ହୋଇଲା ଶେଷ ପ୍ରବେଶ ଅନ୍ଧାର ।
ଏବେ ଯିବା ବାବୁ ହେ ଆମ୍ଭର ନଜପୁର ॥ ୧୦୪ ॥
ତୋହର ଗଲେ ମୋହର ଦୁରିତ କ୍ଷୟେ ହୋଉ ।
ଦୋହିତା ବିନାଶ କଷ୍ଟ ପାସୋର ମୋତେ ହୋଉ ॥୧୦୫॥
ଶ୍ରୀରାମ କହନ୍ତି ଏ କଥା ନୁହଇଟି ବିହିତ ।
ତୋହର ଦୋହିତାକୁ ଦୁଃଖ ମୁହିଂ ଦେଲଇ ବହୁତ ॥୧୦୬॥
କେସନେକେ ତୁମ୍ଭର ନବରକଇ ଯିବି ।
ସ୍ତ୍ରୀଗଣଙ୍କର ମୁଖ କେସନେ ଗୃହିଂବି ॥ ୧୦୭ ॥
ନଗ୍ରଲୋକେ ମୋତେ କରିବେ ଧିକାର ।
ବହୁତ ସଙ୍କୋଚ ମୁଂ କରଇ ମୁନିବର ॥ ୧୦୮ ॥
ବାଲ୍ମୀକେ କହନ୍ତି ଶୁଣ ରଘୁପତି ।
ଜନେକ ପରକଇ ଯିବାର ମିଳଇ ଯୁଗତି ॥ ୧୦୯ ॥
ସନ୍ଧ୍ୟାଭାଗ ଆସି ହୋଇଲା ପ୍ରବେଶ ।
ଅଯୋଧ୍ୟା ନଗ୍ର ଅଟଇ ବାଟ ଦୂର ଦେଶ ॥ ୧୧୦ ॥
ଆଜ ଜନେକର ପୁରେଣ ରହିବୁ ।
ପ୍ରଭାତେ ପୁତ୍ରଙ୍କୁ ଘେନି ଅଯୋଧ୍ୟାକୁ ଯିବୁ ॥ ୧୧୧ ॥
ଶ୍ରୀରାମ କହନ୍ତି ଏସନ ନୁହଇ ।
ବନ ଅଗ୍ନି ଜାଣି ମୋର ଶରୀର ଦହଇ ॥ ୧୧୨ ॥
ଭାରିଯା ନାଶହୋଇଲା ଜନେକ ପୁରକୁ କେସନେକେ ଯିବି ।
ବହୁତ ଲୋକ ମୁଖେ ମୁଂ ଲଜ୍ଜା ପାଇବି ॥ ୧୧୩ ॥

---

୯୯. ମଧ୍ୟ—ମଧ୍ୟେ (କ); ସଧ—ସଧ୍ୟେ (କ) । ୧୦୧. ଶେଷ ପାଦଟି ଖ ପୋଥିରେ ନାହିଁ । ୧୧୨-୧୧୫. ଏ ଗୁରିପଦ କ ପୋଥିରେ ନାହିଁ ।

ଏବେ ତୁମ୍ଭେ ଆପଣା ନଗରକୁ ଯାଅ ।
ଆଉ ମୋତେ ଦୁଃଖମାନ ନ କରାଅ ॥ ୧୧୪ ॥

ବଶିଷ୍ଠେ କହନ୍ତି ହୋ ଜନେକ ମହାମୁନୀ ।
ବାହୁଡ଼ି ନିଜ ପୁରକୁ କରିବୁ ଗମନ ॥ ୧୧୫ ॥

ପ୍ରତ୍ୟେକ ଆଗେହି ଆମ୍ଭେ ଅଯୋଧ୍ୟାକୁ ଯିବୁ ।
ଏହିକ୍ଷଣି ନଗ୍ରେ ପ୍ରବେଶ ହୋଇବୁ ॥ ୧୧୬ ॥

ବଶିଷ୍ଠଙ୍କର ବଚନ ଶୁଣି ଜନେକ ତପସ୍ବୀ ।
ଶ୍ରୀରାମ ଆଗେ ଲବକୁଶନ୍ତ ସମର୍ପନ୍ତି ଭୁଜ ଧରି ॥ ୧୧୭ ॥

ଏ ତୋହର ପୁତ୍ରେ ହୋଇଲେ ମାତୃହୀନ ।
ଏବେ ଏହାନ୍ତ ପ୍ରତିପାଳଣ କର ରଘୁନାଥ ॥ ୧୧୮ ॥

ମୋହର ଘରେ ବାଳୁତ କାଳେ ଥିଲେ ।
ବାଲ୍ମୀକଙ୍କର ପ୍ରସନେ ଗ୍ୟାଂନବନ୍ତ ହୋଇଲେ ॥ ୧୧୯ ॥

ଯେସନେକ ମାତାକଇ ମନେ ଆନ ନ ଧରନ୍ତି ।
କୁମରକୁ ସମର୍ପି ବାହୁଡ଼ଇ ଦୁଃଖମତି ॥ ୧୨୦ ॥

ନିଜ ନଗରେ ହୋଇଲେ ପ୍ରବେଶ ।
ସୀତାକୁ ସୁମରି ମନରେ ମହାତ୍ରାସ ॥ ୧୨୧ ॥

ରାତ୍ରଦିବସେ ସୀତାମୁଖ ଦେଖଇ ।
ତନୁ କ୍ଷୀନ ହୋଇଲ ଆହାର ଉପେଖଇ ॥ ୧୨୨ ॥

ବାଲ୍ମୀକ କହନ୍ତି ଜନେକ ମୁଖ ରୁନ୍ଧିଂ ।
ଶରୀର ଥିର କରି ଥାପି ଧଉର୍ଯ୍ୟ ହୋଇ ॥ ୧୨୩ ॥

ଯୋଗମାର୍ଗେ ଚିନ୍ତ ଦୃଢ଼ ବ୍ରହ୍ମଜ୍ଞାନ ।
ତେଣେ ସେ ଦୁଃଖ ସୁଖ ହୋଇବ ଏକମନ ॥ ୧୨୪ ॥

ଏସନେକ କହି ବାଲ୍ମୀକ ମୁନି ତହୁଂ ଗଲେ ।
ନିଜ ଆଶ୍ରମେ ଯାଇ ପ୍ରବେଶ ହୋଇଲେ ॥ ୧୨୫ ॥

ବାଲ୍ମୀକଙ୍କର ବଚନ ହୃଦରେ ଧରି ।
ମନରେ ବ୍ୟଥା ତେଜିଲେ ଜନେକ ତପସ୍ବୀ ॥ ୧୨୬ ॥

---

୧୧୬. କ ପୋଥିରେ ଏହାର ପ୍ରଥମ ପାଦଟି ଦ୍ଵିତୀୟ ପାଦ ଓ ଦ୍ଵିତୀୟ ପାଦଟି ପ୍ରଥମ ପାଦରୂପରେ ରହିଅଛି । ୧୨୨. ସୀତାମୁଖ—ସୀତାକୁମୁଖ । ୧୨୩. ଥିର କରି ଥାପି—ଅଥିର କରି ଆପି (କ) । ୧୨୪. ଚିନ୍ତ ଦୃଢ଼ ବ୍ରହ୍ମଜ୍ଞାନ—ଚଉହାତ ବ୍ରହ୍ମ ଜ୍ଞାନ (କ), ପଶି ଚିନ୍ତ ସଦାଗ୍ୟାଂନ (ଖ) ।

# ଅଯୋଧ୍ୟାରେ ଶୋକୋଚ୍ଛ୍ୱାସ

ଏଥୁ ଅନନ୍ତରେ ଶୁଣ ଯୁଧିଷ୍ଠିର ।
ପାତ୍ର ମନ୍ତ୍ରୀ ସହିତେ ବଶିଷ୍ଠ ମୁନିବର ॥ ॥
ପୁଷ୍ପକ ରଥେ ବହନ୍ତି ରଘୁପତି ।
କୋଳେ ଆଣି ଧରି ପୁଛନ୍ତି ନବ ବନ୍ଧୁ ॥ ୨ ॥
ଭରତ ଲକ୍ଷ୍ମଣ ଅଛନ୍ତି ସନ୍ନିଧ୍ୟାନେ ।
ସମସ୍ତେ କରସ ଶୋକଭଞ୍ଜ ମନେ ॥ ୩ ॥
ଶୀଘ୍ରେ ବିମାନ ଚଳଇ ପବନ ।
ଅନ୍ତରୀକ୍ଷେ ରଥ କରଇ ଗମନ ॥ ୪ ॥
ଶାଗୀ ନନ୍ଦନ ଅଙ୍ଗାର ଦଣ୍ଡଦଣ୍ଡ ।
ଅଯୋଧ୍ୟା ନଗ୍ରେ ବିମାନ ହୋଇଲା ପ୍ରବେଶ ॥ ୫ ॥
ନଗ୍ର ନରନାରୀ ଯହୁଁ ରଥ ଦେଖିଲେ ।
ସୀତା ଅଇଲ ବୋଲି ହରଷ ହୋଇ ଧାଇଁଲେ ॥ ୬ ॥
ଅନ୍ତପୁରେ ଯାଇ କହିଲେ ତୁରିତ ।
ସୀତାଙ୍କୁ ଘେନି ଅଇଲେ ତୁମ୍ଭର ପୁତ୍ର ॥ ୭ ॥
ଜ୍ଞମନେ କଉଶଲ୍ୟାଏ ବସିଣ ଥିଲେ ।
ଭଗ୍ନୀ ଦୁଇ ଯେନି ବାହାର ହୋଇଲେ ॥ ॥
ଏକୋଇଶ (ଶତ) ସପତ୍ନୀ ବସିଣ ଥାନ୍ତି ସନ୍ନିଧ୍ୟାନେ ।
ଧାତ୍ରୀ ମୁଦୁସ୍ଥଳୀ ଆବର ପଣବାଶ୍ରମାନେ ॥ ୯ ॥
ସମସ୍ତେ ସୀତା ଆଇଲା ପରସ୍ପେ ବୁଝିଥିଲେ ।
ଅନ୍ତଃପୁର ତେଜି ସିଂହଦ୍ୱାରେଣ ମିଳିଲେ ॥ ୧୦ ॥
ସହିଂଶ ଅବଇ ପୁଷ୍ପକ ରହୁବଟି ।
ସୁବର୍ଣ୍ଣର ଧାପେକ ଘେନି କଉଶଲ୍ୟାଏ ଉଭାହୋଇଲେ ରଥରଦ୍ୱାର ॥ ୧୧ ॥
ତବହେ ବିମାନୁ ନ ଓଲବନ୍ତି କେହୁ ।
ଏକ ଆରେକରେ ସମାସ୍ୟା ନ ଦେନ୍ତି କେହୁ ॥ ୧୨ ॥
ରଥର ଦ୍ୱାରେ ବଶିଷ୍ଠେ ବସିଛନ୍ତି ।
ମୁନିବର ମୁଣ୍ଡ ଗୃହିଂ କଉଶଲ୍ୟାଏ ପୁଛନ୍ତି ॥ ୧୩ ॥
ହେ ମୁନି କେବଣ କଥା ବସିଛ ନିଦ୍ରମେନୀ ।
ସ୍ୱରୂପ କରଣ କହସି ମହାମୁନି ॥ ୧୪ ॥

---

୨. ପୁଷ୍ପକ—ପୁଷ୍ପେ । ୭. କହିଲେ—ହୋଇଲେ (କ) ।
୧୨. ଓଲବନ୍ତି—ଅଙ୍ଗଲବନ୍ତି ।

ତବେତ ହୋଇ ନେନ୍ଥ ନ କହନ୍ତ କଥା ।
ଅଇଲା କି ନଇଲ ଜନେକ ଦୋହିତା ॥ ୧୫ ॥
ସୂର୍ଯ୍ୟକୁଳବଧୂର ଦେଖଇ କନା ମୁଖ ।
ଧୃଢରେ ସମାକୁଳ ଛଡ଼ାଅ ସବଦୁଃଖ ॥ ୧୬ ॥
ବଶିଷ୍ଠ କହନ୍ତ କକସ୍ଥା ଗ୍ରକାର ଦୋହିତା ।
ତୋହାର ବଚନ କ ହୋଇବ ଅନ୍ୟଥା ॥ ୧୭ ॥
ଅନେକ ପ୍ରବୋଧ କହିଲଇ ମୁହିଂ ।
ସେ କଥା ନ ଶୁଣିଲ ସେ ଅଛଇ କଷ୍ଟ ପାଇ ॥ ୧୮ ॥
ଶ୍ରୀରାମକଇ ଦେଖି ସେ ମୁଖ ନ ଗୃହିଂଲ ।
କୋପେ ମହାସତୀ ପୃଥିରେ ପଶିଲ ॥ ୧୯ ॥
ଶୁଣିଣ କଉଶଲ୍ୟାଏ ପଡ଼ଲେ ଧରଣୀ ।
ଉବେର କରତାଡ଼ନ୍ତ ଦଶରଥର ରାଣୀ ॥ ୨୦ ॥
ଉଚସ୍ୱରେ ସମସ୍ତେହେ ରୋଦନ କରନ୍ତ ।
ଆମ୍ଭା ଅଚେତ ପଡ଼ିଣ ମେ.ହ ଯାନ୍ତ ॥ ୨୧ ॥
କ୍ଷଣକେ କଉଶଲ୍ୟାଏ ଚେତନା ପାଇଲେ ।
ବଶିଷ୍ଠ ମହାମୁନଙ୍କର ମୁଖକୁ ଗୃହିଂଲେ ॥ ୨୨ ॥
କୋପେଣ ନଶ୍ୱାସ ଗ୍ରଡ଼ଇ ଘନଘନ ।
ଗୁହିସେ ଏସନେକ କଲୁନ ମହାମୁନ୍ୟ ॥ ୨୩ ॥
ଯିବାର ବେଳେ କହିଲ ମୋତେ ନାଅ ।
ଜନେକ ଦୋହିତାର ମୁଖ ଦେଖାଅ ॥ ୨୪ ॥
ମୁହିଂ ସୀତାକଇ କହଇ ପ୍ରବୋଧ ।
କୋପ ଗ୍ରଡ଼ବ ତେବେ ଯୁବତୀ ରତ୍ନନଧି ॥ ୨୫ ॥
ମୋହର ବଚନ ସେ କ ଲଂଘି ପାରନ୍ତା ।
କପାଇଂ ଜାନେକୀ ପୃଥିରେ ପଶନ୍ତା ॥ ୨୬ ॥
ମାତାର କଥା ଶୁଣି ଶ୍ରୀରାମ ଶୋକ ଚଢ଼େ ।
ପୁତ୍ରଙ୍କର କଟି ଧରି ଓହ୍ଲାଇଲେ ରୁରତେ ॥ ୨୭ ॥
ଭୂମିକି ଗୃହିଂଣ ବସିଲେ ରଘୁବୀର ।
ଦୁଇ ନୟନରୁ ଠସଠସ ପଡ଼ଇ ନୀର ॥ ୨୮ ॥
ଭରଥ ଲକ୍ଷ୍ମଣ ଆବର ପ୍ରୋହିତ ମନ୍ତ୍ରୀ ।
ନଗ୍ର ଲୋକେ ଅନେକ ବେଢ଼ିଣ ଅଛନ୍ତ ॥ ୨୯ ॥

---

୧୬. ମୁଖ—ଦୁଃଖ । ୧୮. କହିଲଇ ମୁହିଂ—କହିଲେ ମୁନେହି (କ) ।
୨୦. ଉବେର—ଉନେ (କ) । ୨୪. ନାଅ—ନସ୍ଥ ।

କଉଶଲ୍ୟାଏ କହନ୍ତି ଶ୍ରୀରାମ ମୁଖଗୃହିଂ ।
ମୋହର କଥା ଶୁଣ ଶୋକ ଶାନ୍ତ ହୋଇ ॥ ୩୦ ॥
ସ୍ୱାମୀର କାର୍ଯ୍ୟ ମୁହିଂ ପୂର୍ବେ ନ କଲି ।
ତୋହର ବନକଇ ଯାନ୍ତେ ମୁଂ ଦୁର୍ଗା ପୂଜିଲି ॥ ୩୧ ॥
ଦୁର୍ଗାର ପ୍ରସନ୍ନେ ତୁହି ଶୁଭେଣ ଅଇଲୁ ।
ଅଯୋଧ୍ୟା ନରେଶ ତୁହି ମହାରାଜା ହୋଇଲୁ ॥ ୩୨ ॥
ତୀର୍ଥ ଗମିଲୁ କଲୁ ଅନେକ ପୁନ୍ୟଧର୍ମ ।
ପୁତ୍ର ମେଣ୍ଟି ନ ପାରିଲୁ ପୂର୍ବର ଜନ୍ମକର୍ମ ॥ ୩୩ ॥
ଅନମିତ୍ତେ ଦାଗ ବହିଲୁ କାହାରି ବୋଲ ନ କଲୁ ।
ମହାସତୀ ସୀତସ୍ୟାଙ୍କୁ ବନବାସ ବହିଲୁ ॥ ୩୪ ॥
ତୋହର ପୁତ୍ର ଦେଖିବାକୁ ଆଶା କରିଥିଲି ।
ଏବେ ସୀତସ୍ୟାର ଗର୍ଭେ ବେନି ପୁତ୍ର ଦେଖିଲି ॥ ୩୫ ॥
ପୁତ୍ରର ପୁତ୍ରକୁ ଯେବେ ଦେଖନ୍ତି ।
ଶତେ ଜନ୍ମର ସେ ପାତକ ଉପେଖନ୍ତି ॥ ୩୬ ॥
ମୋହର ଭଗ୍ନୀର ନନ୍ଦନ ଉପୁଜିଲା ।
ଉଥାକୁଳର ମାତୃକୁଳର ପାତକ ଖଣ୍ଡେ ଗଲା ॥ ୩୭ ॥
ପାଷ୍ଠକୁମାରେ ସୂର୍ଯ୍ୟବଂଶେ ହୋଇଲେ ଉତ୍ପତ୍ତି ।
ଏହାଙ୍କୁ ପ୍ରତିପାଳି ଭୋଗ କର କ୍ଷିତି ॥ ୩୮ ॥
ଏବେ ଛନ୍ଦା ଆରୋପଣ ବେଗେ କର ସଜ ।
ଅନଳେ ପଶିବି ଶରୀର କରିବି ଦହନ ॥ ୩୯ ॥
ଶ୍ରୀରାମ କହନ୍ତି ଶୁଣ ଗୋ ଜନନୀ ।
ତୁହି କେସନେକେ ଏବେ ପଶିବୁ ବହ୍ନି ॥ ୪୦ ॥
ଏ ମୋହର ପୁତ୍ରେ ହୋଇଲେ ମାତୃହୀନ ।
ତୁମ୍ଭେ ପ୍ରତିପାଳିବ ଏ ବେନି ନନ୍ଦନ ॥ ୪୧ ॥
କଉଶଲ୍ୟାଏ କହନ୍ତି ତୁ ମୋତେ ନ ମଣାଅ ଏହା ।
ଯେ ଯାହାର ବୃତ୍ତବାକହି ଦଇବ ସେ ଯାହା ॥ ୪୨ ॥
ମୁହିଂ ତୋତେ କହିଲି ଅନେକ ମଣାଇଂ ।
ପ୍ରବୋଧି ସୀତାକଇ ମୁହିଂ ଯେନ ଆସଇ ଯାଇ ॥ ୪୩ ॥
ମୋତେ ନ ନେଲ ତୁମ୍ଭେ ସମସ୍ତେ ନେଇ ଗଲ ।
ତେଣେ ସେ ସୀତାକଇ ନବାସି ଅଇଲ ॥ ୪୪ ॥

---

୩୦. ପୁଣ—ଶୁଣ (କ) । ୩୬. ପୁତ୍ରର ପୁତ୍ର—ପୁତ୍ର (କ) । ୩୯. ଛନ୍ଦା—ଛତ (ଖ) । ୪୨. ମଣାଅ—ଭଣ୍ଡାଅ (ଖ ; ବୃତ୍ତବାକହି—ବୃତ୍ତବାକୁ (ଖ) ।

ବେଳେବେଳେ ଉପେକ୍ଷା (କରୁ) ବୁଦ୍ଧି ମୋହର ବଚନ ।
ତୋହର ମୁଖ ଗୁହେଁ ମୋତେ ମରଣ ସମାନ ।। ୪୫ ।।
ପିତା ବନବାସ ପଠିଆଇଲା ଯେବଣ ବେଳେ ।
ବନସ୍ତକଇ ନ ଯା ବୋଲି ବୋଇଲି ସେ କାଳେ ।। ୪୬ ।।
ମୋହର ବଚନ ତେଜ ବନସ୍ତକୁ ଗଲୁ ଯହୁଁ ।
ତୋତେ ନ ଦେଖି ପିତା ପ୍ରାଣ ଛାଡ଼ିଲେକ ତହୁଁ ।। ୪୭ ।।
ବନସ୍ତକୁ ଯାଇ ତୁ କେତେ ଦୁଃଖ ପାଇଲୁ ।
ଲୁବୁଧ ଅଂଗେ କରି ମୃଗ ମାରିବା ଗଲୁ ।। ୪୮ ।।
ଲକ୍ଷ୍ମଣ ଥିଲା ତୋତେ ଲୋଡ଼ିବା ଗଲା ।
ତେଣୁ ସେ ପର୍ଣ୍ଣକୋଟୀ ଅନାସ୍ତ ହୋଇଲା ।। ୪୯ ।।
ତେମନ୍ତେ ସେ ହରି ନେଲାକ ଦଶଗିରି ।
ତୋହରେ ସେ ଦୁଃଖ ପାଇଲା ଜନେକ କୁମାରୀ ।। ୫୦ ।।
ବାନରଙ୍କର ବୁଦ୍ଧି ବଳେ ତୁହି ରାବଣ ମାଇଲୁ ।
ତହୁଁ ଆସି ଅଯୋଧ୍ୟାରେ ପ୍ରବେଶ ହୋଇଲୁ ।। ୫୧ ।।
ଅନେକ ଲୋକ ଥିଲେ ତୋହର ସନଧ୍ୟାନେ ।
ଅଗ୍ନିରେ ନ ପଶିଲୁ ବୋଲି ମୋତେ କହିଲୁ ଅପମାନେ ।।୫୨।।
ମରିବାର ବେଳେ ମୋତେ ସ୍ୱାମୀ ହି କହିଲେ ।
ତେଣୁ ସେ ଅଗ୍ନିରେ ନ ପଶିଲୁ ପ୍ରଭୁଙ୍କର ବୋଲେ ।। ୫୩ ।।
ସ୍ୱାମୀର ଅଙ୍ଗ ସଙ୍ଗେ ଦେହ ଯେବେ ଦହି ।
ଶତେକଳପ ପରଯନ୍ତେ ତାହାର ଜଂଘେ ବସି ଅମୃତପାନ କରଇ।।୫୪।।
ଭର୍ତ୍ତାର କୃତ ଦୋଷ ହୁଅଇ ନାଶ ।
ପ୍ରଭୁ ଜଂଘେ ବସନ୍ତେ ସ୍ୱାମୀ ନ ପାଇ ତ୍ରାସ ।। ୫୫ ।।
ପ୍ରଭୁର ସନ୍ତେକ ଘେନ ପଶଇ ହୁତାଶନ ।
ସ୍ୱାମୀକ ଆଗ୍ରହ ବସଇ ଇନ୍ଦ୍ରଭୁବନ ।। ୫୬ ।।
ଏବେ ସ୍ୱାମୀର କାର୍ଯ୍ୟ କରିବଇ ।
ତୋହର ନାସ୍ତି କଲେ କମ୍ପା ରହିବ ମୁହିଁ ।। ୫୭ ।।
ସେ କଥା ସମସ୍ତ ପାସୋରି ମୁହିଁ ଥିଲି ।
ଏବେ ସୀତସ୍ୱାର ମରନ୍ତେ ସମସ୍ତ ସୁମରିଲି ।। ୫୮ ।।
ଯଦ୍ୟପି ଅଗ୍ନି ତୁହି ସଂଯୋଗ ନ କରିବୁ ।
ଏ ମୋହର ହତ୍ୟାରେ କାରେଣୀ ହୋଇବୁ ।। ୫୯ ।।

---

୪୯. ପର୍ଣ୍ଣକୋଟୀ—ପର୍ଣ୍ଣକଟି । ୪୯-୫୧. ଏ ଛଅ ପଦ ଖ ପୋଥିରେ ନାହିଁ ।
୫୫. ନ ପାଇ—ପାଇ (କ) । ୫୬. ଇନ୍ଦ୍ରଭୁବନ—ତ୍ରିଭୁବନ (କ) ।
୫୭. କରିବଇ—କରିବଇ ମୁହିଁ (କ) । ୫୯ ସଂଯୋଗ—ସମ୍ମୁଖେ (କ) ।

ନିଉଚେତ ନୃପରେ ହୋଇବ ପ୍ରାଣନାଶ ।
କିଅବା ନଜ ଅନଳେ ହୋଇବ ମୁଂ ଭସ୍ମ ॥ ୬୦ ॥
ଶୁଣିଣ ଶ୍ରୀରାମ ଗୃହାନ୍ତ ବଶିଷ୍ଠଙ୍କର ମୁଖ ।
ଦେଖିଲକ ସେ ଯତ ଦୁଃଖ ଉପରେ ଦୁଃଖ ॥ ୬୧ ॥
ପତ୍ନୀ ବଚ୍ଛେଦ (ଲଭି' ରାଜ୍ୟେ ମୁହିଂ ଥିଲି ।
ମାତାଙ୍କୁ ଦେଖି ସୀତାକୁ ପାସୋରିଲି ॥ ୬୨ ॥
ବଶିଷ୍ଠେ କହନ୍ତ ଯାହାର ଯେଉ ଇଚ୍ଛା ।
ଆବର ବିଶେଷେ ସ୍ତିରୀଙ୍କର କଷା ॥ ୬୩ ॥
ଯାହା କହନ୍ତ ଅନ୍ୟଥା ନ କରନ୍ତ ।
ଜୀୟନ୍ତେ ବୃଥା ସ୍ତିରୀ ବିଧବା ଯୁବତୀ ॥ ୬୪ ॥
ମନ୍ଦଗ୍ୟାମୀ ତ କାମେନୀ ବିବେକ ମର୍ଯ୍ୟିତା ।
ମହତ କୁଳେ ଉଚପଥ ପ୍ରଚଗ୍ୟା ନ ଚଳନ୍ତା ॥ ୬୫ ॥
ସେ କପାଇଁ ଆବର ରହିବ ତୋହର ବୋଲେ ।
ଧର୍ମିନାଶ ହୋଇବନା ଏବେ ନାସ୍ତି କଲେ ॥ ୬୬ ॥
ଶୁଣିଣ ଶ୍ରୀରାମ ଦୁଇଭାଇନ୍ତ ହକାରନ୍ତି ।
ସୁମନ୍ତ ପାଣକଇ ବିଶ୍ୱାସ କଥା କହନ୍ତ ॥ ୬୭ ॥
ଅଗ୍ନି ସମ୍ଭାର କରସି ହୋ ଏବେ ।
ଶ୍ରୀରାମର ବାକ୍ୟ ଉତ୍ତରିଲେକ ଯେବେ ॥ ୬  ॥
ତତକ୍ଷଣେ ଅଗ୍ନି ଆରୋପଣ କରନ୍ତ ।
ଭରଥ ଲକ୍ଷ୍ମଣ ଯେ ଆବର ପାତ୍ରମନ୍ତ୍ରୀ ॥ ୬୯ ॥
କକୟୀ ସୁମିତ୍ରା ଦଶରଥଙ୍କ ଯେତେ ରାଣୀ ।
ସମସ୍ତେ କହନ୍ତ ଶୁଣ ରୁପପାଣି ॥ ୭୦ ॥
କଉଶଲ୍ୟା ସେ ଯେବେ ଅଗ୍ନିରେ ପଶିବ ।
ଆମ୍ଭର ବ୍ରତଥିଲେ କସ କାର୍ଯ୍ୟ ହୋଇବ ॥ ୭୧ ॥
ତୁମ୍ଭ ଯହୁଂ ରାମ କଲୁ ବନବାସ ।
ଆମ୍ଭର ଭ୍ରଥାଏ ହୋଇଲେ ପ୍ରାଣନାଶ ॥ ୭୨ ॥
କଉଶଲ୍ୟାକୁ ମାତା ପ୍ରାୟେ ବୁଝିଲୁ ।
ସକଳ କଷ୍ଟ ଏହାର (ପ୍ରସାଦେ) ପାସୋରିଲୁ ॥ ୭୩ ॥

---

୬୦. ହୋଇବ—ହୋଇବୁ (କ) । ୬୫. ବିବେକ ମର୍ଯ୍ୟିତା—ମର୍ଯ୍ୟିତା; ପ୍ରଚଗ୍ୟା ନ ଚଳନ୍ତା—ଗ୍ୟାନଚଳନ୍ତା । ୬୮. ସମ୍ଭାର—ସଂଯୋଗ (ଖ ; ଉତ୍ତରିଲେକ—କହିଲେ (ଖ) ।

କେ ଅବା ଆମ୍ଭକଇ କରିବ ଚିନ୍ତା ।
ଆବର ବ୍ରତଅଛୁ କି ଜନେକ ଦୋହ୍ଳତା ॥ ୭୪ ॥
ଏ ସେ ମହାସତୀ ଜାଣଇ ଆମ୍ଭର ମନ ।
ତାହାର ବହୁନେ ଧିକ ଯାଇ କନା ଜୀବନ ॥ ୭୫ ॥
ଏ ଦେହ ରଖିଲେ କିସ ସୁଖ ପାଇବୁ ।
ତୋହର ଗ୍ରାମୁରେ ମଲେ ସକଳ ପାତେକ ନାଶିବୁ ॥ ୭୬ ॥
ଏଥକୁ ଋଷିବର ନ କର ତୁହ୍ମ ଆନ ।
ତୁମ୍ଭେ ପ୍ରତିପାଳ ଏ ପଞ୍ଚ ନନ୍ଦନ ॥ ୭୭ ॥
ମାତାର ବଚନେ ରାମ ସନମତ କରନ୍ତି ।
ପାଞ୍ଚ ଅମନାତ୍ୟ ମନ୍ତ୍ରୀକି କହନ୍ତି ॥ ୭୮ ॥
(ଏକୋଇଶ ଶତ ଭାରଯା ପାଞ୍ଚ ତିନ ଭଗ୍ନୀ ।
କୈକେୟୀ ସୁମିତ୍ରା) ଏ ମୋହର ଜନନୀ ॥ ୭୯ ॥
ଦୁଇ ଠାବ କରି ଅଗ୍ନି ଆରୋପଣ କର ।
ଆଜ୍ଞା ଦେଲେ ରାମ ଋଷିବର ସୁନ୍ଦର ॥ ୮୦ ॥
ଶ୍ରୀରାମର ବଚନ ଶୁଣିଲେକ ଯହୁଂ ।
ସମସ୍ତେ ସନ୍ତୋଷ ଯେ ହୋଇଲେକ ତହୁଂ ।
ଦୁଇ ଠାବ କରି ଅଗ୍ନି ଆରୋପଣ କଲେ ତହୁଂ ॥ ୮୧ ॥
ଶୁଖ ଦାରୁ ଆଣି କୁଚି କୁଚି କରନ୍ତି ।
ଚନ୍ଦନ ଅଗୋରୁ କର୍ପୂର ସିଞ୍ଚନ୍ତି ॥ ୮୨ ॥
ଘୃତ ଯବ ତିଳ ଅଗ୍ନିରେ ଢାଳିଲେ ।
ସ୍ନାହାନ ସାରି ସକଳ ସ୍ତ୍ରୀଗଣ ଅଇଲେ ॥ ୮୩ ॥
ନାନା ରତ୍ନ କୁସୁମ ବୃଷ୍ଟି କରନ୍ତି ।
ଦେହ ପ୍ରୀତିକଇ ଦାନଦକ୍ଷିଣା ଦିଅନ୍ତି ॥ ୮୪ ॥
ନଟ ଭଟ ଆବର ବ୍ରାହ୍ମଣ ମିଳିଲେ ।
ସକଳ ଯୁବତୀ କନେକ ବୃଷ୍ଟି କଲେ ॥ ୮୫ ॥
ଅନେକ ଛନ୍ଦେ ଦୁନ୍ଦୁଭି ବାଦ୍ୟ ବଜାନ୍ତି ।
ଅଯୋଧ୍ୟା ନରନାରୀ ବେଢିଣ ଦେଖନ୍ତି ॥ ୮୬ ॥
ହସ୍ତେ ଶ୍ରୀଫଳ ଘେନି ଶ୍ରୀରାମର ଜନନୀ ।
ଦଶରଥ ରାଜାଙ୍କର ମୁଣ୍ଡ ସନ୍ତେକ ଘେନି ॥ ୮୭ ॥

---

୮୧. ଏହାର ଦ୍ୱିତୀୟ ପାଦଟି କ ପୋଥିରେ ନାହିଁ ଓ ତୃତୀୟ ପାଦଟି ଖ ପୋଥିରେ ନାହିଁ । ୮୨. ଶୁଖ—ଶୁଖିଲ (ଖ); ଅଗୋରୁ—ଅଗୁରୁ (ଖ) ।

ଧର୍ମ ନିରଞ୍ଜନ ଆଦିତ୍ୟ ସୁମରଇ ।
ତିନି ପ୍ରଦକ୍ଷିଣ କରି ଅଗ୍ନିରେ ଡେଇଁ ପଡ଼ଇ ॥ ୮୮ ॥
ତଦଅନ୍ତରେ କେକୟୀ ସୁମିତ୍ରା ବେନି ।
ଏକ ଠାବେ ବସିଲେ ତିନି କାମିନୀ ॥ ୮୯ ॥
ଆରେକ କୁଣ୍ଡରେ ଅଗ୍ନି ପ୍ରଖରେ ଜଳି ।
ତହିଁ ଧାସ ଦେଲେ ଏକୋଇଶ ଶତ ବାଳୀ ॥ ୯୦ ॥
ଶ୍ରୀରାମର ମୁଖ ଦେଖି ସନ୍ତୋଷ ଲଭିଲେ ।
ସକଳ ପାତେକ ଉପେକ୍ଷି ସୁରସଭାରେ ବସିଲେ ॥ ୯୧ ॥
ଯହିଁ ଯାଇ ବସିଛନ୍ତି ଦଶରଥ ନୃପତି ।
ବେଢ଼ି ବସିଲେ ସକଳ ଯୁବତୀ ॥ ୯୨ ॥
ଦେଖି ସୁରପତି ଅନେକ ପ୍ରଶଂସା କଲା ।
ଧନ ରତ୍ନ କରି ବସ୍ତ୍ର ଅଳଙ୍କାର ଦେଲା ॥ ୯୩ ॥
ସ୍ତ୍ରୀଏଯାକ ଦେଖି ଦଶରଥ ମନ ତୋଷ କରଇ ।
ଅମର ସ୍ୱର୍ଗ ସଭାରେ ନିଷ୍ଠନ୍ତେଣ ରହଇ ॥ ୯୪ ॥

## ସଂସ୍କାର ବଧି

ଏଥି ଅନନ୍ତରେ ଶୁଣ ପଣ୍ଡୁସୁତ ।
ଶୋକଭରେ ନବରେ ପଶନ୍ତି ରଘୁନାଥ ॥ ୧ ॥
ପୁତ୍ରଙ୍କୁ କୋଳେଧରି ଶୟନ କରନ୍ତି ।
ଭରଥ ଲକ୍ଷ୍ମଣ ଦୁଇ ଭାଇ ସନ୍ନିଧ୍ୟେ ବସିଛନ୍ତି ॥ ୨ ॥
ନିଦ୍ରା ନ ମାଡ଼ଇ ଉଚାଟେ ଶୋଇଲେ
ମୁଣ୍ଡି ପୁତ୍ରଙ୍କର ଉପରେ ହସ୍ତ ଦେଲେ ॥ ୩ ॥
ଏନେକେ ଶେଷ ହୋଇଲା ତମିର ।
ଶେଯ୍ୟାରୁ ଉଠନ୍ତି ରାମ ଦୁଇ ପୁତ୍ରଙ୍କର କଟି ଧରି ॥ ୪ ॥
ମାତାଙ୍କୁ ନ ଦେଖି ଶୋକ ମହାଘୋର ।
ସୀତାର ଗୁଣ ସୁମରି ଦହଇ ଶରୀର ॥ ୫ ॥
ବଶିଷ୍ଠ ଶ୍ରୀରାମ ସନ୍ନିଧ୍ୟକୁ ଆଇଲେ ।
ମନ୍ତ୍ରୀ ଅମାତ୍ୟ ବନ୍ଧୁ ଲୋକେ ସନ୍ନିଧ୍ୟେ ମିଳିଲେ ॥ ୬ ॥

---

୮୮. ଆଦିତ୍ୟ—ଆଦ୍ୟା (ଖ) । ୮୯. ବସିଲେ—ପଶିଲେ (ଖ) । ୯୦. ଧାସ—ଝାସ (ଖ) । ୯୪. ଅମରସ୍ୱର୍ଗ—ଅମର (ଖ) । ୪. କଟି—ନାକ୍ତ (ଖ) ।

ଶ୍ରୀରାମ ଚନ୍ଦ୍ରଙ୍କୁ ଶୁଣିଷ୍ଟି ତପିଷ୍ଟ ।
ଏ ନିମନ୍ତେ ଆମ୍ଭେ ପାଇଲୁ ମହାକଷ୍ଟ ॥ ୭ ॥
ସୁତଙ୍କୁ ରାଜ୍ୟରେ ଥାପି ମୁଁ ଦେଶାନ୍ତର କରିଥିବି ।
ନାନା ତୀର୍ଥ କରି ମୁଁ ଏ ଦେହ ଖୋସିବି ॥ ୮ ॥
ଏ ରାଜ୍ୟରେ ଥିବାକାଇ ନ ବଳଇ ଚିତ୍ତ ।
ବିଚାରି ଅଗ୍ରଜଂ ଦେବା ପିତାମହ ସୁତ ॥ ୯ ॥
ଏଣିକି ଚନ୍ଦ୍ର ଶୁଣସି ଗୁପଧନ୍ତ୍ରା ।
କିଛିବାକି ନୃପ ତେଜସି ମନବ୍ୟଥା ॥ ୧୦ ॥
ଗର୍ଭିଣୀ ଜନନୀ ତୋହର ଅଗ୍ନିରେ ପଶିଲେ ।
ଅଭର ସମସ୍ତ ଜନନୀ ତୋହର ଅଗ୍ନିରେ ଧାସ ଦେଲେ ॥୧୧॥
ସୀତା ଜନନୀ ତୋହର ମନରମଣି ।
ଏ କୁଳକରି ଜଟିଳ ଲୁହଇ ଏ ବାଣୀ ॥ ୧୨ ॥
ଅପଚାର ଶରୀରେ ମନରୁ ବାହାର ହୋଇ ନ ଯୋଗାଇ ।
ତୀର୍ଥକୁ ନ ଗମି ପରଅନ୍ନ ଯୁଗତ ନୋହଇ ॥ ୧୩ ॥
ନିଶେଷେ କୁମାରେ ହୋଇଲେ ମାତୃହୀନ ।
ତୋତେ ନ ଦେଖି ସେ ଉଛର୍ଗିବେ ମନ ॥ ୧୪ ॥
ତୋହର ମାତା ଏ ଯେବେ ଜୀବନ୍ତେଣ ଥାନ୍ତେ ।
ଏ କୁମାରଙ୍କୁ ସେ ପ୍ରତିପାଳନ୍ତେ ॥ ୧୫ ॥
ଏତା ବୋଲି ନ ଜାଣନ୍ତେ ଜନକ ଘରେ ଥିଲେ ।
ରାଜ୍ୟର କଥା କାହୁଁ ହେଁ ନ ଜାଣିଲେ ॥ ୧୬ ॥
ମାତାର ବନ୍ଧୁନେ ଏହାଙ୍କର ମନେଣ ଶୋଧ ନାହିଁ ।
କେମନେକ କରିବୁ ପୁତ୍ରଙ୍କର ଭରସା ନାହିଁ ॥ ୧୭ ॥
ଅଗତ କରତେ ଶରୀର ଶୁଦ୍ଧ ହୋଇବୁ ।
ତେବେ ସେ କୁମରଙ୍କୁ ରକ୍ଷା କରାଇବୁ ॥ ୧୮ ॥
ତୋହର ତିନ ଭାଇଙ୍କର ତିନ କୁମାର ଅଛନ୍ତି ।
ଏହାଙ୍କୁ ରକ୍ଷା କଲେ ସେ ଧର୍ମ ବର୍ଦ୍ଧଇ ॥ ୧୯ ॥
ତେବେ ସେ ରାଜ୍ୟରେ ଅଭିଷେକ କରିବୁ ।
ଏବେ ଧଇର୍ଯ୍ୟପଣେ ଥିବୁ ବାଇରାଗ ନୋହିବୁ ॥ ୨୦ ॥
ତଦଅନ୍ତରେ ବଗୃରକୁ ମିଳଇ ଯେବେ ।
ନାନା ତୀର୍ଥକୁ ବୁଲି ଯିବୁ ତେବେ ॥ ୨୧ ॥

---

୮. ଖୋସିବ—ଧ୍ୱଂସିବ (କ) ।   ୧୨. ପ୍ରଥମ ପାଦଟି ଖ ପୋଥିରେ ନାହିଁ ।
୧୪. ଦେଖି ସେ ଉଛର୍ଗିବେ—ଦେଖିଲେ ଉଚ୍ଛନ୍ନ ତାହାଙ୍କର (ଖ) ।

ଏବେ ତୁ ଶତ୍ରୁଘନ ତହିଂକ ବେଗେ ବରଗ ଦୂତ ।
ସେ ଜାଣିମ ନା ତାହାର ଗର୍ଭଧାଷ୍ଟ ହୋଇବାର ହିତ ॥ ୨୨
ବଶିଷ୍ଠଙ୍କର ବଚନ ଯହୁଂ ଶ୍ରୀରାମ ଶୁଣିଲେ ।
ମଧୁକେଶୀ ସାରଥିଙ୍କୁ ବେଗେଣ ହକାରିଲେ ॥ ୨୩ ॥
ମଧୁବନକଇ ତୁହି ଏହିକ୍ଷଣି ଯିବୁ ।
ଶତ୍ରୁଘନକୁ ମୋହର ଲେଖନ ନେଇ ଦେବୁ ॥ ୨୪ ॥
ଶ୍ରୀହସ୍ତେ ପତ୍ର ଲେଖନ କରନ୍ତି ରଘୁନାଥ ।
ଏହିକ୍ଷଣି ଆସିବୁ ତୁହି ସୁମିତ୍ରାଙ୍କ ନନ୍ଦନ ॥ ୨୫ ॥
ସାରଥିର ହସ୍ତରେ ପତ୍ର ରାମ ଦେଲେ ।
ମୁଖେ ସମାଦ ବିଶ୍ୱାସ କଥା କହିଲେ ॥ ୨୬ ॥
ଏ ମୋହର ମାତା ଅଗ୍ନିରେ ହୋଇଲା ଧାସ ।
ଶତ୍ରୁଘନର ଆଗେ ତୁହି ନ କର ପ୍ରକାଶ ॥ ୨୭ ॥
ମାନତ ଝାଇ ସୋଦର ପ୍ରତାପ ଚୂଡ଼ାମଣି ।
ପ୍ରାଣ ତେଜ ନ ପୁଣ ଏ କଥାନ୍ତ ଶୁଣି ॥ ୨୮ ॥
ଶତ୍ରୁଘନକୁ ଆଜର ମଧରେ ଘେନ ଆସିବୁ ।
ମଧୁପୁର ତହିଂର ମନ୍ତ୍ରୀଙ୍କ ସମର୍ପିବୁ ॥ ୨୯ ॥
ଶ୍ରୀରାମର ଫରମାଣ ପାଇଲାକ ଯହୁଂ ।
ତତକ୍ଷଣେ ମଧୁକେଶୀ ରଥେ ବସିଲାକ ତହୁଂ ॥ ୩୦ ॥
ନଳର ମନ୍ତ୍ରବଦ୍ୟା ଉପନେଷଣେ ଗଲା ।
ମଧୁବନ ନଗ୍ରେଣ ଦୁଇ ଘଡ଼ିରେ ପ୍ରବେଶ ହୋଇଲା ॥ ୩୧ ॥
ଆସ୍ଥାନେ ବସିଅଛୁ ଶତ୍ରୁଘନ ବୀର ।
ମଧୁକେଶୀ ମିଳିଲା ହସ୍ତର ଉପର ॥ ୩୨ ॥
ମନ ବିରଙ୍ଗ ତାର ପଡ଼ିରେଷି ନ ଦଣଇ ।
ଦେଖି ବଗ୍ଯରଇ ଦଶରଥଙ୍କର କନେଷ୍ଟ କୁମରଇ ॥ ୩୩ ॥
କେବଣ ଅରିଷ୍ଟି ହୋ ଅଯୋଧାରେ ଉପୁଜିଲା ।
ତେଣେ ସେ ମୋହର ତହିଂକ ଦୂତ ଅଇଲା ॥ ୩୪ ॥
ଶତ୍ରୁଘନ ପଚ୍ଚରଇ ଶୁଣ ମଧୁକେଶୀ ।
କିମର୍ଥେ ଅଇଲୁ ତୋହର ମୁଖ ପଡ଼ିରେଷି ନ ଦଶି ॥ ୩୫ ॥
ଶୁଭେ ଅଛନ୍ତି ନା ମୋହର ଠନ ଭାଇ ।
ଆରୋଗ୍ୟ ବ୍ରତନ୍ତ ନା ଆମ୍ଭର ସକଳ ମାଇଇ ॥ ୩୬ ॥

---

୨୨. ହୋଇବାର—ହୋଇବାକ (କ) । ୨୫. ଆସିବୁ—ଆଣିମୁ (ଖ) ।
୨୮. ତେଜ—ତେଜଇ (ଖ) । ୩୧. ମନ୍ତ୍ରବଦ୍ୟା—ମନ୍ତ୍ରିବଦ୍ୟା ।

ତୁମ୍ଭର ଧନି କେଉଁଠି କ୍ଷେମେଣ ଅଛନ୍ତି ନା ଭଲେ ।
ଏତିକି ବାରତା ରାମ ପାଇଲେ କି ନ ପାଇଲେ ॥ ୩୭ ॥
ମଧୁକେଶୀ ବୋଲଇ ଶୁଣସି ମହାବୀର ।
ତିଳେ ଦେଇ ବରଗିଲେ କ୍ଷନ୍ଦିବର ସୁନ୍ଦର ॥ ୩୮ ॥
ଶୁଣିଣ ଶତ୍ରୁଘନ ଅଷ୍ଟାନୁ ଉଠିଲା ।
ପାଏଡ଼ା ପାଡ଼ିଣ ପଣନ୍ତ ପ୍ରସାଦ ଶ୍ରୀମୁଖ ଦେଖିଲା ॥ ୩୯ ॥
ଶ୍ରୀରାମ ଶ୍ରୀମୁଖ ଶ୍ରୀହସ୍ତର ପତ୍ର ।
ମଧୁକେଶୀ ଦେଲା ଶତ୍ରୁଘନର ହସ୍ତ ॥ ୪୦ ॥
ପତ୍ର ଦେଖି ଶତ୍ରୁଘନ ଶିରେ ଲଗାଇଲା ।
ମୁଦ ଭକ୍ତି ଆପଣେ ଶ୍ରୀମୁଖେ ପଢ଼ିଲା ॥ ୪୧ ॥
ପଢ଼ିଣ ଶତ୍ରୁଘନ ଉଦବେଗ ମନ ।
ଘାଷୁ ମନ୍ତ୍ରୀକି କହଇ କୋମଳ ବଚନ ॥ ୪୨ ॥
ରାଜ୍ୟ ପଦ୍ମପାଳ ଥିବ ତୁମ୍ଭେ ଭଲେ ।
ସ୍ୱାମୀ ଆଜ୍ଞାଂ ଦେଲେ ଆସିବୁ ଦୂତ ରୂଲେ ॥ ୪୩ ॥
ଶୁଣିଣ ମନ୍ତ୍ରୀଗଣେ କହନ୍ତି କର ଯୋଡ଼ି ।
ଦେଖା ଦେବ ଶୀଘ୍ରେଣ ଏଥକୁ ଆସିବ ବାହୁଡ଼ି ॥ ୪୪ ॥
ଲବଣ ରାଜାର କାଳେ ଯେବଣ ମତେ ଥିଲୁ ।
ତୁମ୍ଭଂ ଅଧିକରେ ଏବେ ଖେଳ ଭୁଞ୍ଜିଲୁ ॥ ୪୫ ॥
ତୁମ୍ଭ ସେ ମାତା ତୁମ୍ଭ ସେ ପିତା ।
ତୁମ୍ଭେ ସେ ଆମ୍ଭର ବନ୍ଧୁବଧାତା ॥ ୪୬ ॥
ଶ୍ରୀରାମର ଆଜ୍ଞାଂ ଯେବେ କେମନ୍ତେ ନ ଯିବୁ ।
ଖନ୍ଦିବର ସୁନ୍ଦରକୁ କହି ବେଗେଣ ଆସିବୁ ॥ ୪୭ ॥
ମନ୍ତ୍ରୀର ବଚନ ଶୁଣି ଶ୍ରୀରାମର କନେଷ୍ଠ ଭାଇ ।
ତକ୍ଷଣେ ଶତ୍ରୁଘନ ରଥବର ଆରୋହି ॥ ୪୮ ॥
ମଧୁକେଶୀ ରଥ ବାହାଇ ପବନହୁଂ ବେଗ ।
ଶୀଘ୍ରେ ରଥବର ଗମଇଂ ଗଗନ ମାର୍ଗ ॥ ୪୯ ॥
ଅଯୋଧ୍ୟା ନଗ୍ରେ ପ୍ରବେଶ ହୋଇଲେ ଯାଇ ।
ବସିଛନ୍ତି ରାମ ଶୋକ ଭରତ ହୋଇ ॥ ୫୦ ॥
ବଶିଷ୍ଠ ମହାମୁନି ସୁମନ୍ତ ପାତ୍ର ।
ଭରଥ ଲକ୍ଷ୍ମଣ ଆବର ପାତ୍ର ଅମାତ୍ୟ ॥ ୫୧ ॥

---

୩୭· ତୁମର—ତୁମ୍ଭର । ୪୭· ସୁନ୍ଦରକୁ—ସୁନ୍ଦର (କ) ।

ଲବକୁଶ ଦୁଇଭାଇ ବସିଛନ୍ତି ବନେ ।
ତିନି ରାତ୍ରି ବସିଲନ୍ତି ତାହାଙ୍କ ସନ୍ନିଧ୍ୟାନେ ॥ ୫୨ ॥
କାହାର ମୁଖ ପଢ଼ିବେସ ନ ଦିଶଇ ।
ଦେଖିଣ ଶତ୍ରୁଘନ ଉଠିଲା ହାହାସଇ ॥ ୫୩ ॥
ବଶିଷ୍ଠଙ୍କର ପସ୍ଥିର ଧଶ ଓଳଗି ସୁଧିଲା ।
ତଦଅନ୍ତରେ ଶ୍ରୀରାମର ସନ୍ନିଧ୍ୟେ ମିଳିଲା ॥ ୫୪ ॥
ଶିରେ କର ଯୋଡ଼ି ଲୋଟଇ ପୟର ତଳେ ।
ଚରଣ ଧୂଳି ସେ ଲଗାଇ କପୋଳେ ॥ ୫୫ ॥
ଭରଥ ଲକ୍ଷ୍ମଣଙ୍କୁ ହୋଇଲା ନମସ୍କାର ।
ଦେଖିଣ ମଥା ଲୁଅାଇଂଲେ କ୍ଷତ୍ରି ବର ସୁନ୍ଦର ॥ ୫୬ ॥
ଆନ ବେଳେ ଶତ୍ରୁଘନ ଆସଇଁ ଯେବେ ।
ନଗ୍ର ଉଚ୍ଛବ ରାମ କରନ୍ତି ତେବେ ॥ ୫୭ ॥
ଘରେ ଘରେ ଅର୍ଘ୍ୟଥାଳି ଘେନଣ ଆସନ୍ତି ।
ସମସ୍ତ ମାତାଏ ଶତ୍ରୁଘନର ଶିରେ ଦୁବାକ୍ଷତ ଦିଅନ୍ତି ॥ ୫୮ ॥
ସେ ଦିନ କଲ୍ୟାଣ ସମାସ୍ୟା ନ ଦେଲ ।
ତହୁଁ ଶତ୍ରୁଘନ ମନେ ବିସ୍ମରିଲା ॥ ୫୯ ॥
ନିଶ୍ଚୟେ ପ୍ରମାଦ ପଡ଼ିଲାକ ଏଥେ ।
ତେଣୁ ସେ ଦୂତ ବରଗାଇ ଅଣାଇଲେ ଏଥେ ମୋତେ ॥ ୬୦ ॥
ଶ୍ରୀରାମର ସନ୍ନିଧ୍ୟେ ଅଛନ୍ତି ବେନି କୁମାରଇ ।
ତାହାନ୍ତ ଦେଖି ଶତ୍ରୁଘନ ଭରଥଙ୍କୁ ପଗ୍ଭରଇ ॥ ୬୧ ॥
ଏ ପୁତ୍ର ଗୋଟିଏ ଦେଖିଲି ମୋର ନାହିଁ ।
କାହାର ତନୟେ ଥିଲେ ଅବା କାହିଁ ॥ ୬୨ ॥
ପ୍ରତକ୍ଷେଣ ଦିଶନ୍ତି ଏ କ୍ଷେତ୍ରି ବର ସାଦୃଶଇ ।
ରୂପ ଅଭିନବ ଏକ ବୟସଇ ॥ ୬୩ ॥
ଭରଥ କହଇ ହୋ ଶ୍ରୀରାମଙ୍କ ଦୁହେ ପୁତ୍ର ।
ବନସ୍ତେ ସୀତାର ଗର୍ଭେ ହୋଇଲେ ଜାତ ॥ ୬୪ ॥
ଜନେକ ଋଷିର ରାଜ୍ୟରେ ଥିଲେ ।
ବାଲ୍ମୀକ ମହାମୁନି ଶାସ୍ତ୍ର ପଢ଼ାଇଲେ ॥ ୬୫ ॥

---

୫୫-୫୬. ଏ ଦୁଇ ପଦ ଖ ପୋଥିରେ ନାହିଁ । ୫୮. ଦୁବାକ୍ଷତ ଦିଅନ୍ତି— ଦୁର୍ବାକ୍ଷତ ଦିଅନ୍ତି । ୫୯. ସମାସ୍ୟା— ସମସ୍ତ (କ) । ୬୧. ଭରଥଙ୍କୁ ପଗ୍ଭରଇ— ମନେ ମନେ ବିଚାରଇ (କ) ।

ମିଷ୍ଟ ଭିକ୍ଷା ମୂଳ ତଣ୍ଡୁଳ ନଅନ୍ତି ।
ବାଲମୀକ ମହାଋଷିଙ୍କି ନିତ୍ୟେ ଏହୁ ଦିଅନ୍ତି ॥ ୬୬ ॥
ଏସନେକ କେତେହେ କାଲ ଯେବେ ଗଲା ।
ଆମ୍ଭର ଏଥକଇ ଲବକୁମର ଅଇଲା ॥ ୬୭ ॥
ସୀତା ଶୁଣି ରାମ ହରଷ ହୋଇଲେ ।
ରାମାୟଣ ଗ୍ରନ୍ଥ ସମ୍ପୂର୍ଣ୍ଣ କରି ଶୁଣିଲେ ॥ ୬୮ ॥
ସେହୁ ଦିବସ ଏଥୁ ଲବକୁମର ଗଲା ।
କୁଶକୁମରକୁ ଘେନି ଆରକ ଦିନ ଅଇଲା ॥ ୬୯ ॥
ଆମ୍ଭେହ୍ମଂ ରାମାୟଣ ସମସ୍ତେ ହେ ଶୁଣିଲୁ ।
ଏହାଙ୍କ କହନ୍ତେ ପୁତ୍ର ବୋଲି ଜାଣିଲୁ ॥ ୭୦ ॥
ଲବକୁଶ ଘେନି କରି ବଶିଷ୍ଠ ସହିତେ ।
ସୀତାମଣ୍ଡଳକଇ ଗଲଇ ସମସ୍ତେ ॥ ୭୧ ॥
ଶ୍ରୀରାମକଇ ଦେଖି ସୀତା ମୁଖ ନ ଗୃହ୍ନଂନ୍ତି ।
କୋପେ ଜନନୀ ପୃଥିବୀରେ ପଶିଲା ॥ ୭୨ ॥
ତହୁଂ ଏଥକୁ କୁମରନ୍ତି ଘେନିଣ ଅଇଲୁ ।
ରଜନୀ ପ୍ରହରକେ କାଳି ପ୍ରବେଶ ହୋଇଲୁ ॥ ୭୩ ॥
ସୀତାକଇ ସହୁଂ ଆମ୍ଭର ମାତାଏ ନ ଦେଖିଲେ ।
ସମସ୍ତ ଜନନୀ ମହାକୋପ କଲେ ॥ ୭୪ ॥
ସକଲେ ଅଗ୍ନିରେ ହୋଇଲେ ପ୍ରାଣନାଶ ।
ତେଣେ ସେ ଆମ୍ଭର ସବୁରି ମନ ବିରସ ॥ ୭୫ ॥
ତୁମ୍ଭେ ଯେ ଏ କଥା ନ ଜାଣିଣ ଥିଲୁ ।
ତେଣୁ ଦୂତ ବରଗି ତୋତେ ଅଣାଇଲୁ ॥ ୭୬ ॥
ଶୁଣିଣ ଶତ୍ରୁଘନ ଢଳିଣ ପଡ଼ିଲା ।
ଆତ୍ମା ଉଛୁଳିଲା ଚେତନା ହାରିଲା ॥ ୭୭ ॥
କ୍ଷଣକେ ଚେତନା ପଶିଲା ଶରୀରଇ ।
ରୋଦନ କରିଣ ସେ ଭରଥକୁ ପଚାରଇ ॥ ୭୮ ॥
ସୀତାସ୍ଥା ଅଗ୍ନିମାକୁ ଜନେକ ରାଜ୍ୟକୁ ଗଲା ।
ମୋହର ତୁହ୍ମଂଙ୍କ ଆଗହ୍ମଂ ଦୂତ ନ ପେଷିଲ ॥ ୭୯ ॥
ମୁହିଂ ଯାଇ ସତୀଙ୍କ ପ୍ରବୋଧି କହନ୍ତି ।
ଚରଣେ ପଡ଼ି ଏଥକଇ ଘେନିଣ ଆସନ୍ତି ॥ ୮୦ ॥

---

୬୮. ସଂପୂର୍ଣ୍ଣ କରି ଶୁଣିଲେ—ଶୁଣି ଚିତ୍ତ ହରଷ କଲେ (ଘ) । ୭୦. ରାମାୟଣ—ନାରାୟଣ (ଘ) । ୭୧ ସୀତାମଣ୍ଡଳକଇ—ସ୍ୱାହାମଣ୍ଡଳକୁ (ଖ) ।

ମାନବା ଦୟା କରନ୍ତୁ ମୋତେ ସୀତା ।
ଯେସନେକ ସୁମିତ୍ରା ଜାନେକୀ ତେସନେକ ମାତା ॥ ୮୧ ॥
ଏବେ ଗଲେ କିସ ପ୍ରୟୋଜନ ।
ଲକ୍ଷ୍ମଣ ଲେଖନ କାହାର ବୋଲେ କରଇ ଅନ ॥ ୮୨ ॥
ଏମନେକ କହୁ ଶତ୍ରୁଘନ ବୀର ।
କୁମରନ୍ତ କୋଳେ ଧଣ ଅଶ୍ୱାସଇ ଶରୀର ॥ ୮୩ ॥
ଶତ୍ରୁଘନ ବୋଲି ଯହୁଂ ଲବକୁଶେ ଜାଣିଲେ ।
ଚରଣ ଧଣ ଦୁଇ ଭାଇ ପ୍ରଣମିତ ହୋଇଲେ ॥ ୮୪ ॥
କଲ୍ୟାଣ କରଇ ସୁମିତ୍ରାର ସାନ ସୁତ ।
ଭୁଜବଳେ ଖଣ୍ଡିଲ୍ଲ କରଛି ଖସ୍ତାନ୍ତ ॥ ୮୫ ॥
ଲକ୍ଷ୍ମୀ ଅଳଂକୃତ ହୋଉ ଜଗତେ ପାଅ ଧନ୍ୟ ।
ଧାଇ କୁମରନ୍ତ ତୋଳି ଧଇଲେ ଶତ୍ରୁଘନ ॥ ୮୬ ॥
ଦୁଇ ଜାନୁରେ ଦୁଇ କୁମରନ୍ତ ବସାଇଲ ।
ଶ୍ରୀରାମର ମୁଖ ଗୃହୁଂ ଶତ୍ରୁଘନ କହିଲା ॥ ୮୭ ॥
କେଷ୍ଟେ ଦେବ ମାତାଏ ମଲେ ସେ ବିଧବା ଯୁବତୀ ।
ମାନଭରେ ପଶିଲ ସୀତୟା ମହାସତୀ ॥ ୮୮ ॥
କେମନେକେ ପୁଣ ହୁଅନ୍ତି ଧାରଣ ।
ଏହାକଇ ପୁଣ ସେ ଜରନ୍ତୁ ନା କାରଣ ॥ ୮୯ ॥
ମାନଭର ହୋଇ କାହିଁକି ବସିଲୁ ।
ମହତ ପୁରୁଷ ହୋଇ ଅଜାଣ କୃତ କଲୁ ॥ ୯୦ ॥
କେବଣ ଦୋଷେ ସତୀକି କଲୁ ତେଜ୍ୟା ।
ରଜର ବଚନ ଶୁଣି ଅନମିତେ କଲୁ ଲଜ୍ଜା ॥ ୯୧ ॥
ସପତ ପ୍ରଳୟ କଥା ସେ ଜାଣଇ ।
ଏ ବଶିଷ୍ଠଙ୍କର କଥା ଲଂଘିଲୁ କେବଣ କାରଣେ ॥ ୯୨ ॥
ଭଜନ ଭାଇଙ୍କର ଆମ୍ଭର ଦଇନ ନ ଯେଣିଲୁ ।
ତୋହର ସସ୍ୱଂକୃତେ ଲକ୍ଷ୍ମୀ ତେଜ୍ୟା କଲୁ ॥ ୯୩ ॥
କେ ଆନ କରି ପାରଇ ଦଇବର କୃତ ।
ଏ କଥା ଶୁଣି ରାମ କପୋଳେ ଦେଲେ ହସ୍ତ ॥ ୯୪ ॥

---

୮୧. କରନ୍ତୁ—କର । ୮୫. ଖସ୍ତାନ୍ତ—ପ୍ରସ୍ଥାନ୍ତ । ୮୯. କେସନେକେ—ଏସନେକେ; ପୁଣ—ପୁତା । ୯୧. ଦୋଷେ—ଦୋଷେ । ୯୨. ପ୍ରଳୟ—ପ୍ରଳୟର (ଖ) । ୯୩. ଖ ପୋଥିରେ ଏହାର ଶେଷ ପାଦ ବଦଳେ ୯୦ ପଦର ଶେଷ ପଦଟି ପୁନରୁକ୍ତ ହୋଇଛି; ସସ୍ୱଂ— ସଖ୍ୟ ।

କଣିଷ୍ଠ କହନ୍ତି ଶୁଣସି ରଘୁପତି ।
ଭୃଥ ଲକ୍ଷ୍ମଣ ଶତ୍ରୁଘନର ତିନ ଯୁବତୀ ॥ ୯୫ ॥
ତାହାଙ୍କର ଗର୍ଭେ ତିନ ପୁତ୍ର ଜାତ ।
ସୀତାର ଭଗ୍ନୀ ଯେ ଜନେକର ଦୋହିତ ॥ ୯୬ ॥
ଭୃଥର ନନ୍ଦନ ସୁରଥ ବୋଲି ବିଖ୍ୟାତ ।
ଅଳକାର ଗର୍ଭୁ ହୋଇଅଛୁ ସମ୍ଭୂତ ॥ ୯୭ ॥
ଲକ୍ଷ୍ମଣର ତନୟେ ଉର୍ମିଳର ଗର୍ଭେ ଜାତ ।
ବିଧଂସରଥ ଯେ ତାହାର ନାମ ବିଖ୍ୟାତ ॥ ୯୮ ॥
ତାଙ୍କ କନ୍ୟା ଗର୍ଭରେ ଶତ୍ରୁଘନର ନନ୍ଦନ ।
ବୀରବର ନାମ ତାହାର ରୂପେଣ ମଦନ ॥ ୯୯ ॥
ଲବକୁଶ ତାଙ୍କର ସେ କନେଷ୍ଟ ହୁଅନ୍ତି ।
ମାସ୍ ମାସକେ ସାନ ଏକ ରୂପ ଦିଶନ୍ତି ॥ ୧୦୦ ॥
ସେ ତିନ କାମେନ ପଞ୍ଚ ପୁତ୍ର ପାଳିବେ ।
ଏକ ଗର୍ଭରୁ ହିତପତି ପ୍ରାୟେ ବୁଝିବେ ॥ ୧୦୧ ॥
ଏବେ ଆମ୍ଭର କଥାଏ ଶୁଣ ଋଷି ବର ସୁନ୍ଦର ।
କୋପ ଶୋକ ଦେହରୁ ପରତେଜ୍ୟା କର ॥ ୧୦୨ ॥
ଭାଇନ୍ତି କୁମ୍ଭଚନ୍ଦ୍ର ସଙ୍ଗତରେ ଘେନ ।
ଆବର ବିଶେଗ ସୀତସ୍ୱାର ତିନ ଭଗ୍ନୀ ॥ ୧୦୩ ॥
ବନ୍ଧୁ ସୋଦର ତୋହର ଅନନାତ୍ୟ ପ୍ରୀତିଜନ ।
ଏହାଙ୍କର ସମେତେ କରସି ସ୍ନାହାନ ॥ ୧୦୪ ॥
ଜଳେ ପଶି ସ୍ନାହାନ କଲେ ଦେହୁ କ୍ରୋଧ ଛୁଟଇ ।
ମାନଭରତ ଦେହେ ବେଗ ବଢ଼ଇ ॥ ୧୦୫ ॥
ଶୋକଭରତେ ରାମ ନ ଶୁଣିଲେ ତାହା ।
ତହୁଂ ଶୋକ ବସାଇଲେ ଶ୍ରୀରାମ ରଘୁନାହା ॥ ୧୦୬ ॥
ଭୃଥ ଲକ୍ଷ୍ମଣ ଶତ୍ରୁଘନର ଭୁଲେ ।
ସନଧ୍ୟେ ଅଛନ୍ତି ଯେ ପାଞ୍ଚ ବୁଲିଲେ ॥ ୧୦୭ ॥
ବନ୍ଧୁ ସହୋଦର ଏ ଆବର ପାନ୍ଦ ମନ୍ତ୍ରୀ ।
ସମସ୍ତଙ୍କୁ ଘେନ ସ୍ନାହାନ କର ଯାନ୍ତି ॥ ୧୦୮ ॥

---

୯୫· ଲକ୍ଷ୍ମଣ—ଲକ୍ଷ୍ମଣର (କ) । ୯୬-୯୭· ଏ ଦୁଇ ପଦ କ ପୋଥିରେ ନାହିଁ ।
୯୮· ବିଧଂସରଥ—ବିଧିତରଥ (କ) ବିଧଂସ (ଖ); ବିଖ୍ୟାତ—ବିକ୍ଷାତ ।
୧୦୦· ଲବକୁଶ ତାଙ୍କର—ଲବକୁଶଙ୍କର । ୧୦୧.ତିନ—ସ୍ତ୍ରୀନ । ୧୦୫. କ୍ରୋଧ —ପାତେକ (ଖ); ମାନଭରତ—ମାନଭରତେ (ଖ); ଦେହେ—ଦେହୁ (କ) ।
୧୦୬· ତହୁଂଶୋକ—ତହୁଂ (କ); ରଘୁନାହା—ର ନାହା ।

ଅଳକା ଉର୍ମିଳା ତାରା ଛନ୍ଦ କାମେମା ।
ଧାନୀ ଘଟେ ଗମନ୍ତି ଛନ୍ଦ କାମିନୀଙ୍କୁ ଘେନି ।। ୧୦୯ ।।
ପରିବାରୀମାନ ସମସ୍ତ ଘେନି କରି ।
ଅଳକା ଉର୍ମିଳା ତାରା ଅସନ୍ତି ସ୍ନାହାନ କରି ।। ୧୧୦ ।।
ସୀତସ୍ନାନ୍ତୁ ସୁମରି ଜନେକର ଛନ୍ଦ ବୁଲିଲୀ ।
ଭୂମିରେ ପଡ଼ି ଅଣ୍ଟାଳନ୍ତି ଧୂଳି ।। ୧୧୧ ।।
ଧାର ଚକ୍ଷୁର ଅସମ୍ଭାଳ ବିଗଳିତ କେଶ ।
ଛିଚରେ କରତାଡ଼ି ରୋଦନ୍ତି ବିଶେଷ ।। ୧୧୨ ।।
କେ ସଖି ବିଷ୍ଣୁ ହୋଇ ଯେ, ପିତା ଘରୁ ଆଇଲୁ ।
ତୋତେ ଦେଖନ୍ତେ ପିଅର ଜନନୀ ପାସୋରିଲୁ ।। ୧୧୩ ।।
କଇକ୍ୟା ମନ୍ଦାମ୍ଭାଣୀ ମନ୍ଦବୁଦ୍ଧି କଲା ।
ତୋହର ସ୍ୱାମୀଙ୍କି ବନବାସ ପଠାଇଲା ।। ୧୧୪ ।।
ଭିଆର ତୁଲେ ତୁହି ବନକଇ ଗଲୁ ।
ଅନେକ ମୃଗକୁ ତୁହି ଅଣ୍ଡା ବଢ଼ାଇଲୁ ।। ୧୧୫ ।।
ତୋହର ବୋଲେ ରାମଚନ୍ଦ୍ର ଗଲେ ମୃଗମାରି ।
କପଟେ ହରି ତୋତେ ନେଲା ଦଶଗିରି ।। ୧୧୬ ।।
ରାବଣ ଘରେ ତୁହି ବନ୍ଦୀ ପଡ଼ିଥିଲୁ ।
ଅପୁର ଘରେ ଅତି ହୁ ଦୁଃଖ ପାଇଲୁ ।। ୧୧୭ ।।
ଏମିବଲ ଘେନି ରାମ ଦଣ୍ଡ କରି ଗଲେ ।
ଅସୁରନ୍ତି ନାଶି ଦଶଙ୍କଣ୍ଠ ଛେଦିଲେ ।। ୧୧୮ ।।
ଅନେକ ମୃଗଚର୍ମ ଅମଲାଣ ପାଟ ମୃଗନାଭି କସ୍ତୁରୀ ।
ଘେନି ଭଉଣୀକି ଦେଲୁ ଯେ ସେନେକହେ ଅଧ କରି ।।୧୧୯।।
ତୋହର ଗୁଣ କେମନେକେ ପାସୋରିବୁ ।
ଆବର ତୋହର ପଦ୍ମମୁଖ କାହିଂ ଗୋ ଦେଖିବୁ ।। ୧୨୦ ।।
ଏ ସୁନ ଦୁଇଗୋଟି ତେଜି କାହିଁକି ତୁ ଗଲୁ ।
କେବଣ ମତେ ମନ ମୁରୁଛି ପାରିଲୁ ।। ୧୨୧ ।।
କାନ୍ଦି କାନ୍ଦି ଜଳେ ସ୍ନାହାନ କରନ୍ତି ।
ଧାଇ ମୁହସୁଲ୍ଲା ତୁଳେ ଅନେକ ସ୍ତ୍ରିଯା ଅଛନ୍ତି ।। ୧୨୨ ।।

---

୧୧୨. ଅସମ୍ଭାଳ—ନ ସମ୍ଭାଳନ୍ତି (କ); ବିଗଳିତ—ବିଗଢ (କ), ବିପର୍ଯ୍ୟତ (ଖ)
୧୧୩. ତୋତେ—ମୋତେ (କ); ପିଅର—ପିସ୍ୱର । ୧୧୪. ପଠିଆଇଲା—
ପଠାଇଲା । ୧୧୯. ଯେ ସେନେକହେ—ଯେସନେକେ (କ) । ୧୨୨. ସ୍ତ୍ରିଯା
ଅଛନ୍ତି—ତିଅରି କହନ୍ତି (ଖ) ।

ବାହୁଡ଼ି ଜାନକୀ ଅନ୍ତଃପୁରେ ପଶିଲେ ।
ନାନା ମଧ୍ୟରେ ଶ୍ରୀରାମ ପ୍ରବେଶ ହୋଇଲେ ॥ ୧୨୩ ॥
ସୀତାଙ୍କୁ ନ ଦେଖି ରାମ ମନେ ବିରସ ହେଲ ।
ଧ୍ୟାନନ୍ତେ ଦେଖି ଜନକ ସୁତା ପାଇଲା ପଞ୍ଚ ମନ ॥ ୧୨୦ ॥
ନିଜନ୍ତ କୋଳେ ଧରି ରାମ ସୁନ୍ଦରୀ କାମନେ ।
ଅବେଣିକ ନିଦ୍ରା ନ ଆସିଲ କ୍ଷଣେ ବିରହ ନୟନେ ॥ ୧୫୪ ॥
ଅରୁଣ ତେଜ ବିକାଶିଲା ଉଦୟେ ଆଦିତ୍ୟ ।
ରାମର ସ୍ନାନଧ୍ୟେ ମିଳିଲେ ବନ୍ଧୁ ଜନ ଅମାତ୍ୟ ॥ ୧୨୬ ॥
ବ୍ରାହ୍ମଣ ବିପ୍ରମାନେ ଅନେକ କଥା କହିଲେ ।
ପ୍ରବୋଧି ରାମଙ୍କୁ ଅନ୍ନ ଭୁଞ୍ଜାଇଲେ ॥ ୧୨୭ ॥
ଜନନୀ ଭାଇ ଆବର ପଞ୍ଚ କୁମର ।
ଅନ୍ନ ଭୁଞ୍ଜି ତୋଷ କଲେକ ଶରୀର ॥ ୧୨ ॥

## ବାର୍ଷିକ ଶ୍ରାଦ୍ଧ

ଏମନେ ଦଶ ଦିବସ ବହିଯାଉନ୍ତି ।
ପ୍ରେତ କାର୍ଯ୍ୟମାନ ସାରନ୍ତି ଦେବ ଉତ୍ତରେ ॥ ॥
ଯେ ଯାହାର ମାତାଙ୍କୁ ପିଣ୍ଡ (ସମର୍ପନ୍ତି ।
ବିପ୍ର ପ୍ରୋହିତଙ୍କୁ ଅନେକ) ଦାନ ଦେନ୍ତି ॥ ୨ ॥
ଏମନେକ ବର୍ଷିଷ୍ଟେ ଦଶ ଦିବସେ ତାଙ୍କୁ ଶୁଦ୍ଧ କଲେ ।
ଶତ୍ରୁଘନଙ୍କୁ ହକାରି ଶ୍ରୀରାମ କହିଲେ ॥ ୩ ॥
ଏବେ ତୁହି ମଧୁବନ ନଗ୍ରକୁ ଯିବୁ ।
ବରଷିକା ଶ୍ରାଧକୁ ବାହୁଡ଼ି ଆସିବୁ ॥ ୪ ॥
କୁମରନ୍ତ ବିଷ୍ଣୁ ବିଧାନ କରିବା ।
ଲବକୁମରଙ୍କୁ ପାଟ ଦେଇ ରାଜ୍ୟେ ବସାଇବା ॥ ୫ ॥
ତାହାଂର ଉତ୍ତରେ ମୁହିଂ ବନକୁ ଯିବି ।
କି ସୁଖେ ଆବର ରାଜ୍ୟ ମୁହିଂ ଥିବି ॥ ୬ ॥
ଶ୍ରୀରାମର ବଚନ ଏମନେକ ଶୁଣିଲେକ ସେହୁଂ ।
ଶୋକ କରି ଶତ୍ରୁଘନ କରଯୋଡ଼ି କହିଲେକ ତାହୁଂ ॥ ୭ ॥

---

୧୨୧. ଦିବସ ରଜ—ବିରନ (ଖ); ଦ୍ୱିତୀୟ ପାଦଟି ଖ ପୋଥିରେ ନାହିଁ ।
୧୨୭. ସୁବର୍ଣ୍ଣ—ରାଣେ (କ) । ୧-୨ ଏ ଦୁଇ ପଦ କ ପୋଥିରେ ନାହିଁ ।
୫. ରାଜ୍ୟେ—ରାଜ୍ୟ । ୭. ସୁଖେ—ସୁଖେ (କ), ସୁଖେ (ଖ) ।

ହେ ଦେବ ଝର୍ଣ୍ଣି କର ଧୂଳର ମୁହିଂ ତୋତେ
ଆବର ମଧୁବନକୁ ପମନ୍ତୁ ଅଛୁ ମୋତେ ॥ ୮ ॥
ସେହୁ ରାଜ୍ୟରେ କା ମୋହର କାର୍ଯ୍ୟ ।
ଯେଣେ ତୋତେ ନ ଛାଡ଼ଇ ଦେବରାଜ ॥ ୯ ॥
ମୋତେ ଭ୍ରାତ୍ର ଉନ୍ନ ବନକଇ ଗଲେ ।
ପ୍ରାଣ ହରାଇବନ୍ତି ତୋତେ ନ ଦେଖିଲେ ॥ ୧୦ ॥
ଭ୍ରଥ କହଇ ହୋ ସତ୍ୟ ତୋହର ବଚନ ।
ଅବର ମୁଳ ଲେଜ କସ ପ୍ରୟୋଜନ ॥ ୧୧ ॥
ତାହାଙ୍କର ସଙ୍ଗେ ଦିନ ଭାଇ ଆମ୍ଭେ ଯିବା ।
ଯେଣିକି ଯାଇ ଝଣ୍ଡ ଦର ପଛେ ଗୋଡ଼ାଇବା ॥ ୧୨ ॥
ଏଣିଣ ଶ୍ରୀରାମ ମଣ୍ଡନ ହୋଇଲେ ।
ଭାଇଙ୍କର କଥା ଅମୃତ ପରାୟେ ବୁଝିଲେ ॥ ୧୩ ॥
ଶ୍ରୀରାମ ଲକ୍ଷ୍ମଣ ଭ୍ରଥ ଶତ୍ରୁଘନ ।
ଅଯୋଧ୍ୟାରେ ବିଶ୍ରାମିଲେ ଦଶରଥର ସୁତ ନନ୍ଦନ ॥ ୧୪ ॥
ଚନ୍ଦ୍ରାରେ ଶରୀର ସରସ ତ ନାହିଂ ।
ଜୋଟ ଅଗ୍ନି ଯେସନେକେ ହୃଦସ୍ତ ଦହଇ ॥ ୧୫ ॥
ଏସନେକ ଦିନ ଗଣନ୍ତେ ରଘୁପତି ।
ଏକ ବରଷେକ ପୂରା ପ୍ରାୟେ ମଣନ୍ତି ॥ ୧୬ ॥
ଧନେକ ଗଲେ କାହ୍ନେ ନଥନ୍ତି ଗାରେ ।
ଧରଣି ଧବହ ମାସେକ ପ୍ରକାରେ ॥ ୧୭ ॥
ଏସନେକ ବାରମାସ ସମ୍ପୂର୍ଣ୍ଣ ହୋଇଲାକ ଯହିଂ ।
ପ୍ରୋହିତ ମନ୍ତ୍ରୀକି ହକାରି ରାମ କହନ୍ତି ତହିଂ ॥ ୧୮ ॥
ମୋହର ଭାରଯା ପାତାଳେ ପ୍ରବେଶ ।
ତାହାର ନିମନ୍ତେ ମାତାଏ ଅଗ୍ନିରେ ଦେଲେ ଧାସି ॥ ୧୯ ॥
ନରହିବା ଯୋଗାଡ଼ କର ହୋ ଭଡ଼ତ ।
ଯେସନେକେ ପିତୃଲୋକେ ସନ୍ତୋଷ ହୁଅନ୍ତି ॥ ୨୦ ॥
ଅବର ବେଳେ ମୁହିଂ ଶ୍ରାଧ ନ କରିବ ।
ରାଜ୍ୟ ତେଜି ମୁହିଂ ତୀର୍ଥ କରିଯିବ ॥ ୨୧ ॥
ଶ୍ରୀରାମ ଆଜ୍ଞା ଯହୁଂ ମନ୍ତ୍ରୀଗଣେ ଶୁଣିଲେ ।
ଅନେକ ସମ୍ପର୍କରେ ଶ୍ରାଧ ଯୋଗାଡ଼ କଲେ ॥ ୨୨ ॥

---

୧୫. ଶତ୍ରୁଘନ (କ) । ୧୬. ନରସେନ—ଧନ (ଖ) । ୧୭. ଧରଣି —ଧରିତ୍ର (କ) ।

କନିଷ୍ଠ ମାଆଙ୍କୁ ଶ୍ରୀରାମ ଶ୍ରାଧ କରନ୍ତି ।
ବେଦ ଉକତେ ପିଣ୍ଡଦାନ ଦିଅନ୍ତି ॥ ୧୩ ॥
ଏକସ୍ଥାକରି ଶ୍ରାଧ ଶୁଧି ଭୁଥ ଦେଲେ ।
ଅନେକ ବ୍ରାହ୍ମଣ ମିଳାଣ ଯେ ଥିଲେ ॥ ୧୪ ॥
ଅଳଂକାର ବସ୍ତ୍ର ବହୁ ଦାନ ପାଇଲେ ।
ସୁମିତ୍ରାଙ୍କୁ ଲକ୍ଷ୍ମଣ ପିଣ୍ଡ ଦାନ ଦେଲେ ॥ ୧୫ ॥
ଏକୋଇଶ ଶତ ଦଶରଥଙ୍କର ରାଣୀ ।
ସମସ୍ତଙ୍କର ପିଣ୍ଡଦାନ ଶତ୍ରୁଘନ ଦେଲେ ପୁଣି ॥ ୧୬ ॥
ସୀତାଙ୍କୁ ଶ୍ରୀତଙ୍କ ଲବ ଶ୍ରାଧବଧ୍ଧ କଲା ।
ସଂସାର ବେଭାରେ ବେଦ ଉକତେ ଦାନ ଦେଲା ॥ ୧୭ ॥
ଅନେକ ବ୍ରାହ୍ମଣ ମିଳିଲେ ଅନେକ ଦାନ ପାଇଲେ ।
ଭିକ୍ଷୁ ବନ୍ଧୁବର୍ଗ ନଗର ଯେତେ ଜନ ଆସିଥିଲେ ॥ ୧୮ ॥
ସମସ୍ତଙ୍କୁ ଷଡ଼ରସ ଦେଲେକ ଭୋଜନ ।
ପ୍ରୋହିତ ଅମାତ୍ୟ ପାତ୍ର ମନ୍ତ୍ରୀମାନ ॥ ୧୯ ॥
ସମସ୍ତଙ୍କୁ ବସ୍ତ୍ର ଅଳଂକାର ରାମ ଦେଲେ ।
ଅଯୋଧ୍ୟା ନରନାରୀ ସମସ୍ତେ ଦେ ଦରଷ ହୋଇଲେ ॥ ୨୦ ॥

## କୁମାରଙ୍କ ବିବାହ

ଏସନେକେ ରଜନୀ ହୋଇଲା ପ୍ରଭାତ ।
ମନେ ବିଚାର କରନ୍ତି ରଘୁନାଥ ॥ ୧ ॥
ନିତ୍ୟକର୍ମ ସାରି ରାମ ଆସ୍ଥାନେ ବସନ୍ତି ।
ପ୍ରୋହିତ ମନ୍ତ୍ରୀ ଘେନି ବିଚାର କରନ୍ତି ॥ ୨ ॥
ସୁନ୍ଦର ବିଚକ୍ଷଣ ଅଛୁ କାହାର କୁମାରୀ ।
କୁମାରଙ୍କୁ ବିଭା ଯୋଗ କରାଇବି ବିଚାର ॥ ୩ ॥
ଶ୍ରୀରାମ ବଚନ ଶୁଣି ବଶିଷ୍ଠ ଉପଜନ୍ତି ।
ଅମାତ୍ୟ ଘେନି ବସନ୍ତି ସଦଗୋଷ୍ଠୀ ॥ ୪ ॥
ଦୋହିତା ସୁନ୍ଦର ଅଛୁ କାହାର କହ ।
ମିଥ୍ୟା କହିଲେ ଶ୍ରୀରାମଙ୍କୁ କରିବଟି ଦ୍ରୋହ ॥ ୫ ॥

---

୧୪-୧୫. ଖ ପୋଥିରେ ୧୪ ପଦର ଶେଷ ପାଦ ଓ ୧୫ ପଦ ନାହିଁ ।
୧୭. ଶ୍ରାଧବଧ୍ଧ—ଶାପ୍ରବଧ୍ଧ (କ) । ୪. ସଦଗୋଷ୍ଠୀ—ଦଶଗୋଟି (କ) ।

ଧନ୍ୟାନ୍ତ ସମଯୋଗେ କୁସୁମ ବନ୍ଦାଇଲେ ।
ତଦଅନ୍ତରେ ଲଜ୍ଜା ହୋମ ଆରମ୍ଭିଲେ ॥ ୧୦ ॥
ଧନ୍ୟାନ୍ତ ପେନ କୁମରେ ଅନ୍ତଃପୁରେ ପଶନ୍ତ
ଅନେକ କାମିନୀ ହୁଳହୁଳି ଦିଅନ୍ତି ॥ ୧୧ ॥
ଅଲକା ଉର୍ମିଳା ଆଗ ଜନେକର ଧନ କୃମାସୀ ।
ହରଷ ଆନନ୍ଦେ ପୁତ୍ରବଧୂ କୋଳେ ଧରି ॥ ୧୨ ॥
ଦୂର୍ବାକ୍ଷତ ଦେଇ କୁମରଙ୍କୁ ବନ୍ଦାନ୍ତି
ମଧୁଶେଯ୍ୟାରେ ବରକନ୍ୟା ଶୟନ କରନ୍ତି ॥ ୧୩ ॥
ରଜନୀ ଶେଷ ହୋଇଲାକ ଯହୁଂ ।
ଶେଯ୍ୟା ଛାଡ଼ି କୁମରେ ଉଠିଲେକ ତହୁଂ ॥ ୧୪ ॥
ଯହୁଂ ନକଯେ କରିଛନ୍ତି ଷର୍ବିବର ସୁନ୍ଦର ।
ପ୍ରଣମ୍ୟ କରନ୍ତ ଯାଇ ପଞ୍ଚ କୁମର ॥ ୧୫ ॥
ତଦଅନ୍ତରେ ଭ୍ରତ ସନଧ୍ୟକୁ ଗଲେ ।
ଚରଣ ଧରି ସେ ନମସ୍କାର କଲେ ॥ ୧୬ ॥
ଲକ୍ଷ୍ମଣ ଶତ୍ରୁଘନ ସନଧ୍ୟକୁ ଗଲେ ।
ପଞ୍ଚ କୁମରେ ଓଲଗ ମେଲାଇଲେ ॥ ୧୭ ॥
କଲ୍ୟାଣ କରଣ ଶିରେ ଚୁମ୍ବନ ଦିଅନ୍ତି ।
ଯେ ଯାହାର କୁମରଙ୍କୁ କୋଳରେ ବହାବନ୍ତି ॥ ୧୮ ॥

## ଉତ୍ତରାଧିକାର ବ୍ୟବସ୍ଥା

ଏଥୁ ଅନନ୍ତରେ ଶୁଣ ପଣ୍ଡୁସୁତ ।
ଆସ୍ଥାନେ ବିଜେ କଲେ ରଘୁକୁଳନାଥ ॥ ୧ ॥
ବଶିଷ୍ଠ ମହାମୁନିଙ୍କି ସନଧେ ଧ୍ୟାଇଛନ୍ତି ।
ମନ୍ତ୍ରୀ ଅମାତ୍ୟ ଅନେକ ଅଛନ୍ତି ॥ ୨ ॥
ବଶିଷ୍ଠଙ୍କର ପୟରେ ରାମ ପ୍ରଣମ୍ୟ କରନ୍ତି ।
ଭ୍ରତ ଲକ୍ଷ୍ମଣ ଶତ୍ରୁଘନ ଶିରେ କର ଦେନ୍ତି ॥ ୩ ॥
ପଞ୍ଚ କୁମରେ ମୁନି ସନଧ୍ୟକୁ ଗଲେ ।
ପୟର ଯୁଗଳ ଛୁଇଂ ଓଲଗ ମେଲାଇଲେ ॥ ୪ ॥
ମସ୍ତକେ କର ଦେଇ ସମସ୍ତେ ହେ ଭବ ।
ରଜନୀରେ ଯେସନ୍ତେ ତାରାଗଣେ ଶୋଭ ॥ ୫ ॥

---

୧୦-୧୧ ଏ ଦୁଇ ପଦ ଖ ପୋଥିରେ ନାହିଁ ।

ମୁମରଙ୍କୁ କଲ୍ୟାଣ କରନ୍ତି ବ୍ରହ୍ମାସୁତ ।
ଭୂଜବଳେ କ୍ଷତ୍ରିବରକୁ କରସି କ୍ଷୟାନ୍ତ ॥ ୬ ॥
ତହୁଂ ଆସ୍ଥାନେ ବସିଲେ ବ୍ରହ୍ମଋଷି ।
ଋଷିବରସୁନ୍ଦର କର ଯୋଡ଼ିଣ ପଚାରି ॥ ୭ ॥
ଦେଖ ମୁନି ଶୁଭ ଅନକୂଳ ଯୋଗ ।
ଲବଙ୍କର ଅଯୋଧ୍ୟାପୁରେ କରିବ ମହାରାଜ ॥ ୮ ॥
ବଶିଷ୍ଠେ କହନ୍ତି ଶୁଣ ଦାଶରଥି ।
ମକର ଶୁକ୍ଳ ଷେଟ୍ୟା ଶୁଭ ତିଥି ॥ ୯ ॥
ଶୁକ୍ରଙ୍କର ବାର ଯେ ପୁଷ୍ୟା ନକ୍ଷତ୍ର ।
ତେଣୁ ତେଣିକି ବଳମ୍ବେ ପତ୍ରେଣ ॥ ୧୦ ॥
ଶ୍ରୀରାମ କହନ୍ତି ମୋହର ବିଳମ୍ବେ କାର୍ଯ୍ୟ ନାହିଁ ।
ଦେହ ଅଥିର ଏ ନବରକୁ ଗୃହିଂ ॥ ୧୧ ॥
ମାତା ନ ଥିଲେ ନ ଶୋହଇ ଅନ୍ତଃପୁରୀ ।
ମାଡ଼ି ପଡ଼ୁଅଛୁ ମୋତେ ଅଯୋଧ୍ୟା ନଗରୀ ॥ ୧୨ ॥
ଦେଖ ମୁନି ସୀତଙ୍କର ରୂପ ଯେ ପ୍ରତିମା କରାଇଲି ।
ଭଲ ନୋହିଲା ମୋତେ ସେ ହୃଦଗତେ ଶଳି ॥ ୧୩ ॥
ଏ ପ୍ରତିମା ଦେଖନ୍ତେ ନ ରହଇ ମୋହର ପ୍ରାଣ ।
ଆବର କଥା ଏକ ସମସ୍ତେହେ ଶୁଣ ॥ ୧୪ ॥
ଶତ୍ରୁଘନ ଯେବେ ମୋହର ତୁଲେ ଯିବ ।
ମଧୁବନ କଟକେ କେହୁ ନୃପତି ହୋଇବ ॥ ୧୫ ॥
ଲବଣକଇ [ମାରି ସେ] ମହାରାଜ୍ୟ ଘେନିଲ ।
ମହାସ୍ୱର ଏକ ମଥାରେ ବସାଇଲ ॥ ୧୬ ॥
ରାଜ୍ୟ ଅରକ୍ଷଣ କଲେ ହୋଇବନା ଦୋଷ ।
ବିଗୃର କହନ୍ତୁ ଏ ମହତ ବିଧଂସ ॥ ୧୭ ॥
ବଶିଷ୍ଠେ କହନ୍ତି ଶୁଣ ଋଷିବର ସୁନ୍ଦର ।
ଯାନ ତନୟ ତୋହର କୁଶ କୁମର ॥ ୧୮ ॥
ଏ ଯାଇ ମଧୁବନ ନଗ୍ରେ ରାଜା ହୋଉ ।
ଲକ୍ଷ୍ମଣ ଶତ୍ରୁଘନ ପୁତ୍ର ସଙ୍ଗେ ନେଉ ॥ ୧୯ ॥

---

୬. କରସି—ବରସି । ୧୦. ଶୁକ୍ର—ଭୃଗୁ (ଖ) । ୧୨. ମାତା—ସୀତା (ଖ), ନ ଶୋହଇ—ଗୋନହଇ (କ) । ୧୩. କରାଇଲି—କରାଇଲ (ଖ); ହୃଦଗତେ ଶଳି—ହୋଇଲାକ ସଲ (ଖ) । ୧୭. ଅରକ୍ଷଣ—ରକ୍ଷଣ ।

ବଶିଷ୍ଠଙ୍କର ବଚନ ଏହିଂ ସୁଗ୍ରୀବ ଶୁଣିଲେ ।
ନାବକୁମରକୁ ତତକ୍ଷଣେ ରାଜା କରାଇଲେ ॥ ୨୦ ॥
ପାତ୍ର ଅମାତ୍ୟ ପ୍ରୋହିତ ମିଳନ୍ତି ।
ନାବକୁମରକୁ ପାଟେ ଅଭିଷେକ କରନ୍ତି ॥ ୨୧ ॥
ନଗ୍ର ଲୋକେ ଘରଘେ ଧ୍ୱଜ ଟେକିଲେ ।
ଅନେକ ବ୍ରାହ୍ମଣଙ୍କଇ ଦାନ ଦକ୍ଷିଣା ଦେଲେ ॥ ୨୨ ॥
ସିଂହାସନେ ବଇସ୍ୱେ ଶ୍ରୀରାମର ଜ୍ୟେଷ୍ଠପୁତ୍ର
ରୂପେଣ କାମଦେବ ସେ ସାଦୃଶେ ପ୍ରତ୍ୟକ୍ଷ ॥ ୨୩ ॥
ଦୃଢ଼ତ୍ୱୀର୍ଯ୍ୟାଂରେ ଯମ (ସେତୁ) ଧୈର୍ଯ୍ୟେ ମେରୁଅଚଳ ।
ଏସନେକ ସାଦୃଶ ଶ୍ରୀରାମର ବାଳ ॥ ୨୪ ॥
ସିଂହାସନ ଉପେକି ପଶଇ ନବର ଭିତରେ ।
ଫୁଲଫୁଲ ଦେଇ ଅର୍ଘ୍ୟ ଦେଲେ ଶିରେ ॥ ୨୫ ॥
ତଦନ୍ତରେ କୁଶ (କୁମରକୁ ହକାଶ ।
କୋଳେ ବସାଇଣ କହନ୍ତି ବୁଦ୍ଧିଧାରୀ ॥ ୨୬ ॥
ମଧୁବନ ଯେ ଉତ୍ସେ ଏହ୍ଷର୍ଣ୍ଣ ଦେବ ।
ସେ ରାଜ୍ୟେ ରାଜା ହୋଇ ସେ ରାଜ୍ୟ ପାଳିବ ॥ ୨୭ ॥
ଭିଧଂସ ବୀରବରଙ୍କଇ ଯେ ତୋହର ସଙ୍ଗେ ନେବ ।
× × ×
ପ୍ରସାଦେଣ ଅହର୍ନିଶି ସୁ ହୃଦ ହୋଇବ ॥ ୨୮ ॥
ମତ୍ତଗଜ ନୋହିବ ନସ୍ରମେଣ ଥିବ ।
ଅନ୍ନ ବସ୍ତ୍ର ଦାନ ଅହର୍ନିଶି ଦେବ ॥ ୨୯ ॥
ପାତ୍ର ମନ୍ତ୍ରୀଙ୍କ କଷ୍ଟେ କରିବ (ତୋଷ ।
ଆଶ୍ରିତ ଲୋକଙ୍କଇ ନ କରିବୁ ରୋଷ ॥ ୩୦ ॥
ମନ୍ତ୍ରୀବର ବଚନ ନ କରିବୁ ଅବଜ୍ଞା ।
ଅହର୍ନିଶି ତେଜ କରିଥିବୁ ପ୍ରତଜ୍ଞା ॥ ୩୧ ॥
ତୋହର ବଚନ ଯେ କରିବୁ ନିଷ୍ଠ ।
ଶତ୍ରୁ ଲୋକଙ୍କୁ ଆଉ ନ ଥୋଇବୁ ତୋହର ରାଷ୍ଟ୍ର ॥ ୩୨ ॥
× × ×

---

୨୩-୪୦. ଏହି ପଦଗୁଡ଼ିକ କ ପୋଥିରେ ନାହିଁ, ଏହା ବଦଳେ ପଢ଼ାଟିଏ ରହିଛି:— ସିଂହାସନେ ବଇସ୍ୱେ ଶ୍ରୀରାମର ଜ୍ୟେଷ୍ଠପୁତ୍ର ବସନ୍ତି । ଧନ କନ୍ୟାଏ ଅନ୍ତଃପୁରେ ପଶନ୍ତି । ଲେଖନକାର ଭୁଲରେ ପଢ଼ାଟିଏ ଉଡ଼ାଇ ଦାଇଛି । ତହିଁ ବଦଳା ଭୁଲ୍ ପାଠ ଖ ପୋଥିରେ ନଷ୍ଟ ହୋଇଯାଇଛି ।

ମାନଥିଲା ଶୁଣି କହନ୍ତି ରଘୁବୀର ।
କୁଶକୁମରଙ୍କୁ ନେଇଯାଅ ମଧୁବନ ପୁର ॥ ୩୩ ॥
କୁଶକୁମରଙ୍କୁ ରଥରେ ବସାଇଲେ ।
ଆବର ନେଇ ଭାଇ ରଥ ଆରୋହିଲେ ॥ ୩୪
(ତିନି ଭାଇଙ୍କର ତିନି ନୃବର୍ତ୍ତୀ) ।
ଘଣ୍ଟବାଦ୍ୟ ସହିତେ ରଥରେ ବସନ୍ତି ॥ ୩୫ ॥
ରତ୍ନାକର ନାମେଣ ମଧୁକେଶୀର ପୁତ୍ର ।
(ସାରଥି ହୋଇ ସେ) ବାହାଇ ରଥ ॥ ୩୬ ॥
(ମଧୁକେଶୀ ଶିକ୍ଷା ଦେଲା ଯାହାର) ସେ ମନ୍ତ୍ର ପ୍ରସନେ
ବାହନ ରଥବର ଗମଇ ଗଗନେ ॥ ୩୭ ॥
(କ୍ଷଣକେ ମଧୁବନପୁରେ ହୋଇଲେ) ପ୍ରବେଶ ।
ଦେଖି ନଗରଲୋକେ ହୋଇଲେ ହରଷ ॥ ୩୮ ॥
(ଦ୍ୱାରେ ଦ୍ୱାରେ)ପୂର୍ଣ୍ଣକୁମ୍ଭ ସୁବର୍ଣ୍ଣ କଳସ ବସାନ୍ତି ।
କାମଦେବ ଯେସନେକେ ରୂପ ବିନାଶନ୍ତି ॥ ୩୯ ॥
ରଥରୁ ଓହ୍ଲାଇ ଆସ୍ଥାନେ ବସନ୍ତି ।
ତିନି କନ୍ୟାଏ ଅନ୍ତଃପୁରେ ପଶନ୍ତି ॥ ୪୦ ॥
ସିଂହାସନ ଉପରେ କୁଶ କୁମର ବସଇ ।
ଦୁଇଭାଇ ଚାମର ଧରନ୍ତି ଦୁଇ ହସ୍ତଇ ॥ ୪୧ ॥
ମନ୍ତ୍ରୀ ଅମାତ୍ୟେ ଆସି କରନ୍ତି ଦର୍ଶନ ।
ସମସ୍ତଙ୍କୁ କୁଶକୁମର କରଇ ସନମାନ ॥ ୪୨ ॥
ନେତ ପାଟ ବିବିଧ ଅଳଂକାରମାନ ଦେଲା ।
ମୁକ୍ତାର ହାର କାହାର କାହାର ଗଳାରେ ଲମ୍ବାଇଲା ॥ ୪୩ ॥
ମଧୁବନର ନରନାରୀ ଯେ ହରଷ ହୋଇଲେ ।
କୁଶକୁମରଙ୍କୁ ପାଟେ ଅଭିଷେକ କଲେ ॥ ୪୪ ॥
ଶ୍ରୀରାମ ଆଗ୍ୟାଂରେ ସୀତାର କନେଷ୍ଠ ନନ୍ଦନ ।
ଶୁଭେଣ ପ୍ରତିପାଳଇ ଯେ ମଧୁପୁର ଭୁବନ ॥ ୪୫ ॥
ଏଥୁଅନନ୍ତରେ ଶୁଣ ପାଣ୍ଡୁସୁତ ।
କୁଶକଇ ପଠିଆଇ ରଘୁବଂଶ ନାଥ ॥ ୪୬ ॥
କୋଳ କରି ଲବକୁମାରଙ୍କୁ ବସାନ୍ତି ।
ଶ୍ରୀରାମ ଆଶ୍ୱାସି ଲବକୁମରଙ୍କୁ କହନ୍ତି ॥ ୪୭ ॥

୪୦. ବସନ୍ତି—ବିଜେ ସେ କରନ୍ତି (ଖ) । ୪୧. କୁଶ କୁମର ବସଇ—କୁସୁମ ନରମଇ (ଜ) । ୪୩. ହାର—ର (କ) । ୪୬. ପଠିଆଇ—ପଠିୟାଇ ।

ରାଇଜ ଧର୍ମ କଥା ଶୁଣରେ ନନ୍ଦନ ।
ଏକାକାଳ ଦେଖିବୁ ଯୁଗର ସମାନ ॥ ୪୮ ॥
ଅନ୍ୟେକ ନଶ୍ୱାନର ପାଇବ ଅନ୍ତ ।
ସନ୍ଦର୍ଭ ଦାନବା ଶ୍ରଣ୍ଣୁଥିବୁ ନିତ ।
ପରମ ଗୃହଁ ଦାନ ଜାହାନ୍ତି ରଘୁପତି ॥ ୪୯ ॥
ଶ୍ରୀରାମ କହନ୍ତି ଯେ ରଜା ନ ଦଣ୍ଡିବୁ ।
ଲୋକଙ୍କ ଅନରୂପେ ଅପ୍ରାଧ ବହିବୁ ॥ ୫୦ ॥
ଲକ୍ଷେକ ମାତ୍ର ନାଶ କରଇ ଯେବେ ।
ତାହାକୁ ସେ ନାଶ କରିବୁ ତେବେ ॥ ୫୧ ॥
ମନ୍ତ୍ରୀ ବ୍ରାହ୍ମଣେ ଯେ କରିବୁ କାର୍ଯ୍ୟ ସାବଧାନ ।
ଅଦାଣ ସେ କରଇ ତାହାଂକ ଦେବୁ ଅବଧାନ ।
ଦରିଦ୍ର ଲୋକଙ୍କୁ ଯେ ଅନ୍ନବସ୍ତ୍ର ଦାନ ॥ ୫୨ ॥
ଉତପାତ ଅରଣ୍ଟି [ଯେବେ] ଗ୍ରହପୀଡ଼ା ପଡ଼ଇ ।
ଦାନ ଦେଲେ ସେ ଉତପାତ ହରଇ ॥ ୫୩ ॥
ମନ୍ତ୍ରୀ ଅମାତ୍ୟ ଯେ ପାତ୍ର ସ୍ୱଧଂସେ ।
ତେସନେକ ଧୀରଢ ତୁ ଥୋଇବୁ ପାଶେ ॥ ୫୪ ॥
ଦେବତା ବ୍ରାହ୍ମଣଙ୍କୁ ଭଗତ ହୋଇବୁ ।
ବୈଷ୍ଣବଙ୍କ ସାଙ୍ଗ ସେ ଆହ୍ଲାନେ ବସିବୁ ॥ ୫୫ ॥
ଏ ଯେ ସୁରଥ ଭରଥର ନନ୍ଦନ ।
ଏହାଙ୍କୁ ଦେଖିବୁ ତୁ ପ୍ରାଣର ସମାନ ॥ ୫୬ ॥
ମୋହର ପିତା ଭ୍ରଥକଇ ରାଜ୍ୟ ଦେଲା ।
ମୋତେ ଭଗତେ ରାଜ୍ୟରେ [ନ] ରହିଲା ॥ ୫୭ ॥
ସୁବାହୁ ବନେ ଯେ ସେ ଥିଲା ତପ ଦାହୁ ।
କସା ବସନ ପଶହରଣେ କନ୍ଦମୂଳ ଖାଇ ॥ ୫୮ ॥
ମୁହିଂ ଏ ନଗରକଇ ଅଇଲଇ ଯେବେ ।
ମୋହର ସଙ୍ଗେ ରାଜ୍ୟକୁ ଅଇଲିକ ତେବେ ॥ ୫୯ ॥
ଭାଇଙ୍କର ମହତପଣ କସ କହିବ ବିଶେଷି ।
ମୋହର ବଚନେ ସେ ଥାନ୍ତି ଉଦାନଶି ॥ ୬୦ ॥

---

୪୮. ରାଇଜଧର୍ମ କଥା—ଶ୍ରୀରାମ ବୋଲନ୍ତି (କ) । ୪୯. ଦ୍ୱିତୀୟ ପାଦଟି କ ପୋଥିରେ ନାହିଁ ଓ ଶେଷ ପାଦଟି ଖ ପୋଥିରେ ନାହିଁ । ୫୧. ସେ ନାଶ—ପ୍ରାଣନାଶ (ଖ) । ୫୨. ପ୍ରଥମ ପାଦଟି ଖ ପୋଥିରେ ନାହିଁ ଓ ଦ୍ୱିତୀୟ ପାଦଟି କ ପୋଥିରେ ନାହିଁ; ସାବଧାନ—ସାବଧାନେ; ଦାନ—ଦାନେ (କ) । ୫୪. ଧୀରଢ—ପିରଢ (କ) ।

ମଧୁବନ ନଗ୍ରକଇ ଉଗର ବରଗ୍ନଥିବୁ ।
ନଚ୍ଛ କୁଶକୁମରର ବାରତା ପାଇବୁ ॥ ୬୧ ॥
ତୁଙ୍ଗବଂଶେ ମୋହର ଅକାଦ ପଯ୍ୟୋଧି ।
ସମସ୍ତ ଆସ୍ତି ଯାକ କରୁଥିବୁ ଆଗ୍ରହ ॥ ୬୨ ॥
ମନ୍ତ୍ରୀ ପାନ୍ତ ଯେବେ କରନ୍ତି ଶତ ନ ଶ ।
ତନ୍ହଂଙ୍କ ମନେ କିଛୁ ନ କରିବୁ ନେଷ ॥ ୬୩ ॥
ପୁତ୍ରକୁ ତଥଣ ଅଜନ୍ତ ପଢରର ନାଥ ।
ବଶିଷ୍ଠ ମହାମୁନଙ୍କି ସନଧ୍ୟକୁ ହକାରନ୍ତି ॥ ୬୪ ॥
ମନ୍ତ୍ରୀ ଅମକାତ୍ୟେ ଯେ ସୋଦର ବନ୍ଧୁଜନ ।
ସମସ୍ତେ ହେ ମିଳଲେ ଯେ ଶ୍ରୀରାମର ସନଧ୍ୟାନ ॥ ୬୫ ॥
ସମସ୍ତ ସାମନ୍ତ ଘେନ ଯେ କରନ୍ତି ବିଗ୍ଭର ।
ଶୁଣସି ସାବଧାନେ ପଣ୍ଡୁର କୁମାର ॥ ୬୬ ॥
କିସ୍କିନ୍ଦା ନଗ୍ରେ ଯେ ସୁଗ୍ରୀବର ଥିଲ ।
ଶ୍ରୀରାମକୁ ଦର୍ଶନ କରିତ ଅଇଲ ॥ ୬୭ ॥
କଦଳୀବନେ ଥିଲ ଯେ ହନୁମନ୍ତ ବୀର ।
ରାମର ତହ୍ନଂଙ୍କ ଅଇଲ ପବନକୁମର ॥ ୬୮ ॥
ସିଦ୍ଧ କଦଳୀ ଘେନ ଶ୍ରୀରାମଙ୍କୁ କରଇ ଦର୍ଶନ ।
ଦେଖିଣ ସନ୍ତୋଷ ହୋଇଲେ ରଘୁବଂଶ ରାଜନ ॥ ୬୯ ॥
ପୟର ଧର ସୁଗ୍ରୀବର ପ୍ରଣମିତ କରଇ ।
ମଇନ୍ଦକୁ କୋଳ କଲେ କ୍ଷତି ବର ସୁନ୍ଦରଇ ॥ ୭୦ ॥
ବଶିଷ୍ଠଙ୍କର ପୟର ଧଶ ଓଳଗଇ କପିରାଜ ।
ପ୍ରଣମ୍ୟ କରଇ ମୁନକ ଅଞ୍ଜନାର ତନୁଜ ॥ ୭୧ ॥
କଲ୍ୟାଣ କରନ୍ତି ବଶିଷ୍ଠ ମହର୍ଷି ।
ଶ୍ରୀରାମ କହନ୍ତି ହନୁମନ୍ତର ମଥା ଆଘ୍ରାଂଷି ॥ ୭୨ ॥
ଶୁଣ ହନୁମନ୍ତ କଦଳୀବନକୁ ଗଲୁ ଯହୁଂ ।
ସକଳ ଅରଷ୍ଟି ହୋଇଲାକ ମୋତେ ତହୁଂ ॥ ୭୩ ॥
ମନ୍ଦ ବୁଧି କର ଯେ ସୀତାଙ୍କୁ ନବାସିଲ ।
ବଶିଷ୍ଠଙ୍କ ବଚନ ସହିତେ ଉପେଖିଲ ॥ ୭୪ ॥

---

୬୧· ପାଇବୁ—ପଗ୍ଭରିବୁ (ଖ) । ୬୨. ଅକାଦ—ଅପାଦ (କ); ଅସ୍ତି ଯାକ—ସମ୍ମାଳନ (ଖ) । ୬୫. ସୋଦର—ସଦସ୍ୟେ (କ) । ୬୭· କସ୍କିନ୍ଦା ନଗ୍ରେ—କିସ୍କିନ୍ଦା ବନେ (ଖ) ।

ଅନନ୍ତେ ସୀତାମ୍ମା ବହୁତ ଦୁଃଖ ପାଇଲା ।
ଦୁଇ କୁମାର ତାହାର ଗର୍ଭେ ଉପୁଜିଲେ ॥ ୭୫ ॥
ବାଲ୍ମୀକି ମହର୍ଷି ସୀତାଙ୍କୁ ନେଲେ ।
ଅନେକ ମହାମୁନି ରାଜ୍ୟରେ ପ୍ରବେଶ ହୋଇଲେ ॥ ୭୬ ॥
ମହାଶାସ୍ତ୍ର ପଢ଼ାଇଲେ ପିତାମହ ଶିଷ୍ୟ ।
ରାମାୟଣ ଚରିତ୍ର ଅଭ୍ୟାସିଲେ ଲବକୁଶ ॥ ୭୭ ॥
ଏ ରାଜ୍ୟକଇ ଗୀତ ଗାଇତ ଅଇଲେ ।
ରାମାୟଣ କଥା ସେ ସମସ୍ତ କହିଲେ ॥ ୭୮ ॥
ତୋହର ଗାରମା ଅଙ୍କରେ ଯେବଣେ ମତ ।
ସକଳ ଚରିତ କହିଲେ ସୀତାଙ୍କର ବେନି ସୁତ ॥ ୭୯ ॥
ନାତ ଆଗତ କଥା ସମସ୍ତ ଶୁଣିଲି ।
ପଶ୍ଚାତ୍ତେ ପୁତ୍ର ମୋହର ବୋଲି ଜାଣିଲି ॥ ୮୦ ॥
ଲବକୁଶ ଘେନି ଯେ ସୀତାଙ୍କୁ ଗଲି ଆଣି ।
ମୋହର ମୁଖ ନ ଚାହିଁଲେ ଜନକ ନନ୍ଦିନୀ ॥ ୮୧ ॥
ପାତାଳେ ପଶିଲେ ଜନକ ନନ୍ଦନୀ ।
ତାହିଁ ଅଇଲି ବାହୁଡ଼ି ଦୁଇ କୁମରଙ୍କୁ ଘେନି ॥ ୮୨ ॥
ସୀତାଙ୍କୁ ନ ଦେଖି ମାତାଏ କୋପ କଲେ ।
ସମସ୍ତ ଜନନୀ ସେ ଅଗ୍ନିରେ ଧାସ ଦେଲେ॥ ୮୩ ॥
ବରଷିକା ଶ୍ରାଧ ପର୍ଣ୍ଣିକା ସାରିଲି ।
ପଞ୍ଚ କୁମରଙ୍କୁ ଏବେ ବ୍ରତ କରାଇଲି ॥ ୮୪ ॥
କୁଶକୁମର ମଧୁବନକଇ ଗଲା ।
ଲକ୍ଷ୍ମଣ ଶତ୍ରୁଘନ ଏ ଦୁହିଙ୍କର ପୁତ୍ର ସଙ୍ଗେ ନେଲା ॥ ୮୫ ॥
ଏ ମୋହର ପରମ ଆତ୍ମା ଲବକୁମର ।
ଅଯୋଧ୍ୟା ନଗ୍ରକଇ କଲି ରାଜ୍ୟଧର ॥ ୮୬ ॥

ଭଲ ହୋଇଲା ତୁହି ଅଇଲୁ ହନୁମନ୍ତ ।
ଆବର ଦେଖିଲି ପ୍ରାଣର ମଇତ୍ର ॥ ୮୭ ॥

ଏସନେକ କଥା ଯହୁଁ ରାମଚନ୍ଦ୍ର କହିଲେ ।
ଶୁଣି ସୁଗ୍ରୀ ହନୁମନ୍ତ ବିସ୍ମୟେ ହୋଇଲେ ॥ ୮୮ ॥

---

୭୮. ରାମାୟଣ—ରାବାଏଣ (ଖ) ।
୮୦. ପଶ୍ଚାତ୍ତେ—ପଶ୍ଚାଲୁ (ଭ) ।
୮୪. ପର୍ଣ୍ଣିକା—ପ୍ରେତକାର୍ଯ୍ୟ ।
୮୬. ପରମ ଆତ୍ମା—ପୁତ୍ର (ଖ) ।
୮୭. ତୁହି—ତୁହିଂ ।

# ତୀର୍ଥଯାତ୍ରା

ରାମ କହନ୍ତି ଏବେ ତୀର୍ଥକୁ ଯିବା ।
ରାଜ୍ୟରେ ଆଉର କି କାର୍ଯ୍ୟ ଥିବ ॥ ୧ ॥
ସୁଗ୍ରୀବର କହନ୍ତି ଶୁଣ ରଘୁନାନ ।
ମୂଟଙ୍କ ଆମ୍ଭେ ଯେ କରିଅଛୁ ଧନ୍ୟ ॥ ୨ ॥
ଯେତେବେଳେ ଇନ୍ଦ୍ରଜିତ ମୋହନାଶର ମାରିଲା
ହେମବନ୍ତ ତହୁଁ ହନୁମନ୍ତ କଳପ ପତ୍ର ଆଣିଲା ॥ ୩ ॥
ସେ ପତ୍ର ପ୍ରସଙ୍ଗେ ସମସ୍ତେ ବଞ୍ଚିଲୁ ସହୁଁ ।
ହନୁମନ୍ତ ହାଥରେ [ପତ୍ର] ଥୋଇଲୁ ତହୁଁ ॥ ୪ ॥
ରାବଣ ମାରି ଲଙ୍କାରୁ ଆଇଲୁ ।
ଅଯୋଧ୍ୟା ଦେଶେ ପ୍ରବେଶ ହୋଇଲୁ ॥ ୫ ॥
ଅଭିଷେକ ଉତ୍ସବରେ ଦାନ ଦେବାର ବେଳେ
ତହୁଁ ପଦ୍ମେକ ଦେଖିଲୁ ସେ ବେଳେ ॥ ୬ ॥
ଗୁଣ ଖାଇନ୍ତି ଗୁଣ ପତ୍ର ଦେନ ଦେଲୁ ।
ଆଉକ ପତ୍ର ହନୁମନ୍ତ କରେ ଦେଲୁ ॥ ୭ ॥
ଅଙ୍ଗଦକାଳ ଯାଚନ୍ତେ ସେ ପତ୍ର ଦେନାଲ୍ ।
ସେ ପତ୍ର ଜମ୍ବେବ ତୋତେ ମାଗି ନେଲା ॥ ॥
ହନୁମନ୍ତ ତହୁଁ କଳପ ହୋଇ ଅଛୁ ।
ତୋହର ସ୍ୱପଦ ସେ ନ ଜାଣଇ ଅଛି ॥ ୯ ॥
ଜମ୍ବେବ ଯେବେ ଏ କଥା ଜାଣନ୍ତା ।
ସେ କି ଆମ୍ଭର ତୁଲେ ତୀର୍ଥଯାତ୍ରା ଯାନ୍ତା ॥ ୧୦ ॥
ହନୁମନ୍ତ କେନ ମୁଁ ତୋହର ତୁଲେ ଯିବ ।
ସର୍ବଦା ଦେବ ତୋତେ ସେବା କରିଥିବ ॥ ୧୧ ॥
ତନ୍ନ ଖାଇ ତୋହର ତୁଲେ ଯେବେ ଯିବେ ।
ଆମ୍ଭେ ସେ ନାଥ କାହୁଁକି ଥିବୁ ଏବେ ॥ ୧୨ ॥
ଶୁଣିଣ ଶ୍ରୀରାମ କରନ୍ତି ସନମତ ।
ସୁଗ୍ରୀବ କହନ୍ତି ଶୁଣ ମୋହର ମିତ ॥ ୧୩ ॥

---

୩. ପତ୍ର—ମହୌଷଧ (ଖ) । ୬. ପଦ୍ମେକ—ପୁଦ୍ମେକ ।
୭. ଦେନ ଦେଲୁ—ଦେନାଲୁ, ଗୁଣପତ୍ର—ଗୁରୁପତ୍ର । ୮. ଜମ୍ବେବ—ଜେବେ (ଢ) ।

ମୋତେ ଦେଖିବାର ଅର୍ଥେ ସେ ଅଇଲୁ ।
ପତ୍ନୀ ପୁତ୍ର ଅମନାତ୍ୟ କାହାକୁ ହି ନ କହିଲୁ ॥ ୧୪ ॥
ମୋହର ଭୁଲେ ଯେବେ ତୀର୍ଥ କରି ଯିବୁ ।
କିଷ୍କିନ୍ଧା ବନେ କାହାକଇ ରାଜପଦ ଦେବୁ ॥ ୧୫ ॥
କାହୁଣ୍ଡି ମୋହର ଯେ ରାଜ୍ୟକୁ ଅସିବାକୁ ନାହିଂ ।
ସୁଖଭୋଗ୍ୟ ରାଜ୍ୟେ ଅଛୁ ପୁଣ କାହିଂ ॥ ୧୬ ॥
ସୀତସ୍ତା ମହାସନ୍ଧ ଯେବେ ଜୀବନ୍ତେଣ ଥାନ୍ତା ।
ଜ ଅବା ନବରେଣ ଥାନ୍ତା ମୋହର ମାତା ॥ ୧୭ ॥
ଏସ ନିମନ୍ତେ ଏ ରାଜ୍ୟକୁ ଆସିବା ।
ତାହାର ମୁଖ ଅନେ ନମ୍ଭନେ ଗୃହିଂବା ॥ ୧୮ ॥
ସୁଗ୍ରୀବଙ୍କ କହଇ ଶୁଣ ଷଧ ବରସୁନ୍ଦର ।
ବାଳୀର ରାଜ୍ୟ ସିନା କିଷ୍କିନ୍ଧା ନବର ॥ ୧୯ ॥
ତାହାର ପୁତ୍ର ଅଛଇ ଅଙ୍ଗଦ ବୀର୍ଯ୍ୟମାନେ ।
ସେ ରାଜା ହୋଇବ ଇସ୍କିନ୍ଧା ଭୁବନେ ॥ ୨୦ ॥
ତୋହର ପ୍ରସାଦେ ମୁହିଂ ପାଳଇ ରାଜ୍ୟ ।
ଭୁହି ଯେବେ ତୀର୍ଥ କରିଯିବୁ ରାଜ୍ୟେ ମୋହର କିସ କାର୍ଯ୍ୟ॥୨୧॥
ଏସନେକ ଯେବେ କହିଲେ କପିମଣି ।
ଗୃଲ ଯିବା ବୋଲି ଆଗ୍ୟାଂ ଦେଲେ ଗୃପପାଣି ॥ ୨୨ ॥
ବୃଷସିଂହ ବୋଲି ବାନରେ ସୁଗ୍ରୀବର ଭୁଲେ ଆସିଥିଲେ ।
ତାହାର ମୁଖ ଗୃହିଂ କପିରାଜ କହିଲେ ॥ ୨୩ ॥
ଏହି କ୍ଷଣି ତୁହି କିଷ୍କିନ୍ଧାପୁରକୁ ଯିବୁ ।
ଶ୍ରୀରାମର ଆଗ୍ୟାଂ ଅଙ୍ଗଦକୁ କହିବୁ ॥ ୨୪ ॥
କିଷ୍କିନ୍ଧା ବନେ ରାଜା ସେ ହୋଉ ।
ସକଳ କପିବଳ ପରିପାଳଣ ଥାଉ ॥ ୨୫
ତାର ନାମେଣ ଯେ ମୋହର ଭାବେଣୀ ।
ତାହାକୁ କହିବୁ ଚନ୍ତା ନ କରୁ ସେ କାମେଣୀ ॥ ୨୬ ॥
ଅଙ୍ଗଦ ରାଜା ହୋଇବ ତାର ହୋଇବ ରାଜମାତା ।
ଯେମନ୍ତେ ରାଜ୍ୟରେ ବାନରେ ନ ପାଇବେ ଚନ୍ତା ॥ ୨୭ ॥

---

୧୬. ରାଜ୍ୟେ—ଅଛି (କ) । ୧୭. ଥାନ୍ତା—ଥାନ୍ତେ (ଖ) । ୨୦. ଅଛଇ ଅଙ୍ଗଦ—ଅଙ୍ଗଦ ଅଛଇ (ଖ ; ରାଜା-ହୋଇବ ଇସିନ୍ଧା—ରାଜ୍ୟ ହୋଇବ କ ଅଯୋଧ୍ୟା (କ) । ୨୨. ଏସନେକ —ଏସନେକ କଥା (ଖ) । ୨୩. ବୃଷସିଂହ—ବୃଷଭ (କ), ବୃଷଶୀଳ (ଖ) । ୨୫. ହୋଉ—ହୋଇଲା (କ); ପରିପାଳଣ ଥାଉ—ପରିପାଳଣ କଲା (କ) ।

ଶ୍ରୀରାମର ଆଜ୍ଞାଂରେ ବୃକ୍ଷସିଂହ ଗଲା ।
କିଷ୍କିନ୍ଧା ଭୁବନରେ ପ୍ରବେଶ ହୋଇଲା ॥ ୨୮ ॥
ତାରା ଅଙ୍ଗଦଙ୍କୁ ବସାଇ ଶ୍ରୀରାମର କଥା କହଇ ।
ଶୁଣି ତାରା ଅଙ୍ଗଦ ପଡ଼ିଲେ ମୋହ ଯାଇ ॥ ୨୯ ॥

ଚେତନା ପାଇକରି କାନ୍ଦଇ କୁମର ।
କପାଇଁ ନ ଗଲି ମୁହିଂ ସୁଗ୍ରୀବର ସଙ୍ଗର ॥ ୩୦ ॥
ଆଖିରେ ଦେଖନ୍ତି ଶ୍ରୀରାମର ବଦନ ।
ସକଳ ପାତେକ ମୁଂ କରନ୍ତି ଦହନ ॥ ୩୧ ॥
ତାରା କହଇ ବୃକ୍ଷସିଂହ ମୂଖ ଗୃହିଂ ।
ମୋତେ କପାଂ ସଙ୍ଗେ ନ ନେଲେ ମୋର ସାଇଂ ॥ ୩୨ ॥
କ୍ଷତ୍ରିବରର ମୁଖ ଯେବେ ଦେଖନ୍ତି ।
ଶତେ କୋଟି ଜନ୍ମର ପାତେକ ହରନ୍ତି ॥ ୩୩ ॥
ଏସନେକ ବିଚାରି ତାରା ମନ୍ତ୍ରୀଙ୍କ ହକାରିଲା ।
ଅଙ୍ଗଦଙ୍କୁ ରାଜ୍ୟେ ଅଭିଷେକ କରାଇଲା ॥ ୩୪ ॥
କିଷ୍କିନ୍ଧା ବନେ ଅଙ୍ଗଦ ହୋଇଲା ନୃପତି ।
ରାଜମାତା ହୋଇଲା ତାରା ମହାସତୀ ॥ ୩୫ ॥
ଏଥୁ ଅନନ୍ତରେ ଶୁଣ ପଣ୍ଡୁର କୁମର ।
ଶ୍ରୀରାମ କହନ୍ତି ଶୁଣ ବଶିଷ୍ଠ ମୁନିବର ॥ ୩୬ ॥
ଏ ମୋହର ତନୟ ଅଟି ବାଳମତି ।
ତୁମ୍ଭର ପସ୍ତରେ ହୋଇଥିବେ ଭରତ ॥ ୩୭ ॥
ଏହାଙ୍କୁ ତୁମ୍ଭେ ଆଶ୍ୱାସନା କରିବ ।
ରାଜ୍ୟର ଭାର ତୁମ୍ଭେ କର୍ତ୍ତା କରିବ ॥ ୩୮ ॥
ମନ୍ତ୍ରୀ ଅମାତ୍ୟେ ରାଜ୍ୟରେ ଥିବେ ।
ଜନପ୍ରଜାଏ କେହି ଚିନ୍ତା ନ ପାଇବେ ॥ ୩୯ ॥
ମୋତେ ଯେମନ୍ତେ ଲବକୁମର ନ ସୁମରଇ ।
ଅହନିଶି ଚିନ୍ତା କରୁଥିବ ମୁନିବରଇ ॥ ୪୦ ॥
ପାଞ୍ଚ ମନ୍ତ୍ରୀ ଅମାତ୍ୟ ସବୁନ୍ତି ଢଆରିଲେ ।
ଗୃହ ମୃତ୍ତି କଷାବସନ ପରିହରଣ ହୋଇଲେ ॥ ୪୧ ॥

---

୨୮. ବୃକ୍ଷସିଂହ—ବୃକ୍ଷଶୀଳ (ଖ) । ୩୦. ନ ଗଲି—ଗଲି । ୩୧. ଆଖିରେ—ଆଜ୍ଞାଂ ଦେଲ (କ) । ୩୨. ବୃକ୍ଷସିଂହ—ବୃକ୍ଷଶୀଳ (ଖ) ।

ସୁଗ୍ରୀବର ହନୁମନ୍ତ ତପୋଧନ ବେଶ ।
ଦଣ୍ଡ କମଣ୍ଡଳ ଘେନ ମିଳିଲେ ଶ୍ରୀରାମର ପାଶ ॥ ୪୨ ॥
ସୀତାର ଗୃହର କେଶ ଯେ ଶ୍ରୀରାମ ଆଣିଥିଲେ ।
ମଥାରୁ ଖୋପା କଟି ଡୋର କଲେ ॥ ୪୩ ॥
ବାହେଣ ରୁଦ୍ରାକ୍ଷ ଗଳାରେ କାଠମାଳ ।
ବିଭୂତି ବିଲେପନ କର୍ଣ୍ଣରେ ତମ୍ବାର କୁଣ୍ଡଳ ॥ ୪୪ ॥
ଏସନେକେ ଷଡ଼ଜଣ ହୋଇଲେକ ସଜ ।
ସୁରମୁନି କହନ୍ତି ରୂପ ଆଦିତ୍ୟ ତେଜ ॥ ୪୫ ॥
ଅଲକା ଉର୍ମିଳି ତାର୍ ତିନି ଭଗିନୀ ।
ନଗରୁ ବାହାର ହୋଇଲେ ଜନେକ ନନ୍ଦିନୀ ॥ ୪୬ ॥
ସ୍ୱାମୀଙ୍କର ତୁଲେ ବନକୁ ସଜ ହୋଇଲେ ।
ତାହାଙ୍କଇ ମଣାଇଂ ବଶିଷ୍ଠ ଋଷି କହିଲେ ॥ ୪୭ ॥
ତୁମ୍ଭେ କନ୍ୟା ଗୋ ବନସ୍ତକଇ ଯିବ ।
ଏ ରାଜ୍ୟ ସମ୍ଭାଳି ଅନ୍ତଃପୁରେ ଥିବ ॥ ୪୮ ॥
ସ୍ୱାମୀଙ୍କର ତୁଲେ ତୁମ୍ଭେ କି କରିବ ଯାଇ ।
କୌଣସି ସୁଖ ଭୋଗ ଗୋ ବନସ୍ତରେ ନାହିଂ ॥ ୪୫ ॥
ଶ୍ରୀରାମ କହନ୍ତି ବଶିଷ୍ଠଙ୍କର ବଚନେ ।
ରାଜମାତା ହୋଇଲ ଏହି ଭୁବନେ ॥ ୪୬ ॥
ତୁମ୍ଭର ଗଲେ ଆମ୍ଭନ୍ତ ସୁସ୍ତ ନାହିଂ ।
ନାନା ତୀର୍ଥ କରି ଆମ୍ଭେ ଯିବୁ ତପ ଦାହି ॥ ୪୭ ॥
ସୀତସ୍ତାକୁ ଘେନି ବସବାସକୁ ଗଲୁ ।
ତାହାର ନିମନ୍ତେ ଅନେକ ଦୁଃଖ ପାଇଲୁ ॥ ୪୮ ॥
ପାପିଷ୍ଠ ରାବଣ ସୀତାକୁ ହରି ନେଲା ।
ବଂଶବର୍ଗ ମରାଇ ଆପଣେ କ୍ଷୟେ ଗଲା ॥ ୪୯ ॥
ରାବଣକୁ ମାରି ସୀତାକୁ ଅଗ୍ନି ପରୀକ୍ଷ କଲି ।
ବହୁତ ମୁଖେ ଅପବାଦ ସହି ନ ପାରି ବନବାସ ଦିହଲ ॥୫୦॥
ତେବଣେ ସେ ମହାସତୀ ମୋତେ କୋପ କଲା ।
ମୋହର ମୁଖ ନ ଚାହିଂ ପାତାଳେ ପଶିଲା ॥ ୫୧ ॥
ଭାରଯା ସେ ଯେବେ ହୋଇଲା ପ୍ରାଣନାଶ ।
ରାଜ୍ୟରେ ସୁଖ ମୋହର ପ୍ରୟୋଜନ କସ ॥ ୫୨ ॥

---

୪୫. କୌଣସି—କେଉଣି (ଖ) ।

ମୋତେ ନ ଛୁଣ୍ଡି ମୋହର ଧନ ଭାଇ ।
ପାର ଯେବେ ତୁମ୍ଭର ସ୍ୱାମୀଙ୍କି ରୁହାଅ ଗୋ ଅଇ ॥ ୫୩ ॥
ନଉଟେତ ବାହୁଡ଼ି ନବରକୁ ଯଅ ।
ମୋହର ଭାଇଙ୍କ ମୁହାଁସ ନ ଲଗାଅ ॥ ୫୦ ॥
ଶ୍ରୀରାମ ଟେନ ଯହୁଂ ନସ୍ତ୍ରର ଶୁଣିଲେ ।
ଶୋକଭରେ ଧନ ଭଗ୍ନୀ ବାହୁଡ଼ି ଅଇଲେ ॥ ୫୫ ॥
ଅନ୍ତଃପୁର ଭିତରେ ହୋଇଲେ ପ୍ରବେଶ ।
ଶୋକଭରେ ତାହାଙ୍କର ମନ ବିରସ ॥ ୫୬ ॥
ଏକର ଆଗରେ ଆରେକ କହଇ ।
ଶ୍ରୀରାମ ଯାନ୍ତେ ଆମ୍ଭର ପ୍ରାଣ କମ୍ପା ରହଇ ॥ ୫୭ ॥
ଯାହାର ମୁଖ ସେ ଦେଖିଲେ ମୃକଣ୍ଡ ।
ସ୍ୱଦେହେ ବସ୍ତ୍ରୁ ଧେ ମାନବେ ଉତପତ ॥ ୫୮ ॥
ଆମ୍ଭର ସୁଖ ଯେବେ ଶେଷ ହୋଇଲା ।
ତେଣେ ସେ ଶ୍ରୀରାମ ଅଯୋଧ୍ୟା ତେଜିଲା ॥ ୫୯ ॥
ତେଲରେ ମାଛ ପଡ଼ିଲେ ଯେସନେ ।
ସମସ୍ତେ ହେ ବଛନ ହୋଇଲେ ତେସନେ ॥ ୬୦ ॥
ତଦଅନ୍ତରେ ବଶିଷ୍ଠଙ୍କର ଚରଣ ଧରି ।
ଭାଇନ୍ତ ଯେନ ଶ୍ରୀରାମ ପ୍ରଣମ୍ୟ କରି ॥ ୬୧ ॥
ସୁଗ୍ରୀ ହନୁମନ୍ତ ବଶିଷ୍ଠଙ୍କର ଚରଣେ ପ୍ରଣମିତେ କରନ୍ତି ।
ଶ୍ରୀରାମ କର ଧରି ତୋଳନ୍ତ ମହାଯତ ॥ ୬୨ ॥
କଲ୍ୟାଣ କରନ୍ତ ବ୍ରହ୍ମାଙ୍କର ନନ୍ଦନ ।
ତୋହର ବାଞ୍ଛା ସେ ହୋଉ ସମ୍ପୂର୍ଣ୍ଣ ॥ ୬୩ ॥
ପୃଥୀର ଭରା ସେ ଉଣ୍ଡାସ କରବୁ ।
ଜନ୍ମେ ଜନ୍ମେ ଉପୁଜି ଦନୁଜନ୍ତ ମାରବୁ ॥ ୬୪ ॥
ତହୁଂଣ ଶ୍ରୀରାମ ଗଲେ ବାହାର ହୋଇ ।
ଏଁତାର ଯାନ୍ତେ ଲବରାଜା ରୋଦନ କରଇ ॥ ୬୫ ॥
ବଶିଷ୍ଠେ କହନ୍ତ ଏ କଥା ନୁହଇ ଉଚିତ ।
ତୋହର କାନ୍ଦନ୍ତେ ପିତା ହୋଇବ ଦୁଃଖିତ ॥ ୬୬ ॥
ରାଜ୍ୟରାଷ୍ଟ୍ର କଥାକୁ ମନେଣ ଭଲାବୁ ।
ଦେହ ଥିର କରି ଶତ୍ରୁଦର୍ପ ଗଞ୍ଜିବୁ ॥ ୬୭ ॥

---

୫୩. ପାର—ପାରୁ । ୫୪. ନ ଲଗାଅ—ଲଗାଅ । ୫୮. ସ୍ୱଦେହେ—ସମ୍ମୁଖେ (କ) । ୫୯. ସୁଖ ଯେବେ ଶେଷ—ମୁହଁଜେବେ ଗେସ ।

ବଶିଷ୍ଠଙ୍କର ବଚନ ଶୁଣି ଶୋକ ସମ୍ଭାଳିଲ ।
ଭରଥଙ୍କଇ ଘେନି ନଗରେ ପଶିଲ ॥ ୭୮ ॥
ବଶିଷ୍ଠ ମହା ମୁନି ମନ୍ତ୍ରୀ ଅମାତ୍ୟ ସଙ୍ଗତେ ।
ଜନପ୍ରଜା ଦେଶଘୋଷ ପାଳନ୍ତି ସୁଚରେ ॥ ୭୯ ॥

## ସ୍ୱର୍ଗାରୋହଣ

ଏଥୁ ଅନନ୍ତରେ ଶୁଣ ପଣ୍ଡୁସୁତ ।
ନାନା ତୀର୍ଥ ଗମନ୍ତି ଦଶରଥଙ୍କର ସୁତ ॥ ୧ ॥
ଶ୍ରୀ ହନୁମନ୍ତ ଅଛନ୍ତି ରାମ ତୁଳେ ।
ଅମାର୍ଗେ ମାର୍ଗେ ନାନା ତୀର୍ଥ ବୁଲିଲେ ॥ ୨ ॥
ଯୋଗମାର୍ଗେ କାୟା ସିଦ୍ଧ କଲେ ।
ବ୍ରହ୍ମା ପୁରନ୍ଦର ଯେ ସୁରଗଣେ ମେଳେ ॥ ୩ ॥
ଦେବଋଷି ରାଜଋଷି ଦଶଦିଗପାଳେ ।
ସିଦ୍ଧ ସାଧ୍ୟ ଋଷିଗଣ ସକଳେ ॥ ୪ ॥
ଗୋମାତ ସହିତେ ସୋମ ସୂର୍ଯ୍ୟ ପବନ ।
ଇନ୍ଦ୍ର ଆସ୍ଥାନେ ଅଛନ୍ତି ପୁନ୍ୟ ଲୋକମାନ ॥ ୫ ॥
ଶ୍ରୀରାମ ଆସିବାର ସେ ଦୂରହୁଁ ଦେଖିଲେ ।
ଏକ ଆଗରେ ଆରେକ କହିଲେ ॥ ୬ ॥
ବିଶ୍ରବା ଋଷିର ପୁତ୍ର ରାବଣ ମହାରାଜା ।
ଦିଗପାଳ ଚକ୍ରବର୍ତ୍ତୀ ପଉଲେସ୍ତିର ଆତ୍ମଜା ॥ ୭ ॥
ମହା ତପ ଆଗ୍ରେ ଈଶ୍ୱର ସେବା କଲା ।
ଈଶ୍ୱର ପ୍ରସନେ ତିନିପୁର ଜିଣିଲା ॥ ୮ ॥
ତାହାଙ୍କଇ ସଂହାତେ କଲାକ ପ୍ରାଣେନାଶ ।
ବ୍ରହ୍ମହତ୍ୟା ପାତେକ ଅଲଂଘିତ ଦୋଷ ॥ ୯ ॥
ଏ ରାମର କେହ୍ନ ବନ୍ଦନ ନ ଗୃହ୍ନଂ ।
ଏ ରାମଙ୍କଇ କେହ୍ନ କଥା ନ କହ ॥ ୧୦ ॥
ତବଦ ହୋଇ ସମସ୍ତେ ହେ ବସି ।
ଯେ ଯାହାର ମୁଖକୁ ଗୃହଂଣ ହଂସି ॥ ୧୧ ॥
ଏମନ୍ତେ ସମସ୍ତେ ହେଟମାଥ କରନ୍ତି ।
ଉତ୍ତର ସମାସ୍ୟା କେହ୍ନ କାହାକୁ ନ ଦଅନ୍ତି ॥ ୧୨ ॥

୫· ସହିତେ—ସହି; ଆସ୍ଥାନେ—ଆସନେ (କ); ଲୋକମାନ—ଲୋକମାନେ ।
୬· ଆସିବାର—ସିବାର (କ) ।

ସୁର ସଙ୍ଗରେ ରାମ ଉଭା ହୋଇଲେ ।
ଦେବତା ଋଷିଙ୍କର ମନ ସେ ଜାଣିଲେ ॥ ୧୩ ॥
ସୁଗ୍ରୀବର ମୁଖ ଗୃହଂ କହନ୍ତି ରଘୁନାଥ ।
ଜାଣିଲ କି ମଇଁ ଦେବତାଙ୍କର ଚରିତ ॥ ୧୪ ॥
ଜାନୁରେ ମଥା ଲଗାଇ ହେଟ କରଣ ବସିଲେ ।
ସ୍ତବଣ କେଇ ମାଇଲି ବୋଲି କେହୁ କଥା ନ କହିଲେ ॥୧୫॥
ଦଶଗିରି ଆସ୍ଥାନେ ଥିଲେ ଭୃତ୍ୟମତେ ।
ସେ କଥାନ୍ତ ଏବେ ପାସୋରିଲେ ସମସ୍ତେ ॥ ୧୬ ॥
ଉପକାର କଟନ୍ତେ ହୋଇଲାକ ଦୋଷ ।
ଏହା କରି କୋପ କଲେ ଧର୍ମ ହୋଇବ ନାଶ ॥ ୧୭ ॥
ଗରୁଡ଼ବ ସନମାନ ଯହୁଂ ସେ ନପାଇ ।
ସେ ସ୍ଥାନେ ଟେଭେ ମଇଁ କ୍ଷଣେହେ ନ ଥାଇ ॥ ୧ ॥
ସୁଗ୍ରୀବର କହଇ ଯୋଡ଼ଣ ବେନକର ।
ସେ ଦେବ ପୁରୁଷ ପରମାର୍ଥ ମହତକାର ॥ ୧୯ ॥
ଯାହା ମେ ନିକରେ କହିଲୁ ବ୍ରହ୍ମଜ୍ଞାନଇ ।
ଉପଗାର କରନ୍ତେ ଯେ ମୂର୍ଖପଣ ଧରଇ ॥ ୨୦ ॥
ଅନେକ ପାପ କର୍ମ ସେହୁ ଭୁଞ୍ଜଇ ।
ରଉରୋବ ନର୍କେ ସେ ପାଞ୍ଚ ଯୁଗ ଥାଇ ॥ ୨୧ ॥
ସେ ଜନେ ଯେ ପଶୁଯୋନିରେ ଉତପତି ।
ଅନେକ ପାପ କର୍ମ ସେହୁ ଆଚରନ୍ତି ॥ ୨୨ ॥
ଦେବୀଙ୍କି ଆଧାର ବଳି ହୁଅନ୍ତି ଭୋଜା ।
ତେବେ ସେ ମାନବେ ଜାତ କରଇ ଜନ୍ତୁ ରାଜା ॥ ୨୩ ॥
ମାନବେ ଉପୁଜଇ ଶିବଙ୍କୁ ସେବା କରଇ ।
ଶତେ ପୁରୁଷ ତାର ନର୍କୁ ଉଦ୍ଧରଇ ॥ ୨୪ ॥
ସୁଗ୍ରୀବର ବଚନ ଯହୁଂ ରାମଚନ୍ଦ୍ର ଶୁଣିଲେ ।
ସେ ପୁର ଉପେଖି ଛଡ଼ଜଣ ଗଲେ ॥ ୨୫ ॥

---

୧୩· କ ପୋଥିରେ ଦ୍ୱିତୀୟ ପାଦର ପାଠ :—ଦେବଋଷି ବ୍ରହ୍ମଋଷିଙ୍କର ମେଳେ
୧୫· ମାଇଲି—ମାଇଲ । ୧୨· କ ପୋଥିରେ ପ୍ରଥମ ପାଦର ପାଠ :—ହେ
ସୁର ଆସ୍ଥାନେ ବାଭୂତଗଣ ମତେ । ୧୮. ସେ ସ୍ଥାନେ—ସେମାନେ । ୨୨· ପଶୁ
ଯୋନିରେ—ଶତେ ଜନ୍ମ ମାନବେ (କ) । ୨୩· ବଳି ହୁଅନ୍ତି—ହୁଅନ୍ତି ବଳି ।
କରଇ—କର (କ); ଜନ୍ତୁରାଜା—ନୃରାଜା କ) । ୨୪. ଶିବଙ୍କୁ—ବୈଷ୍ଣବେ
(ଖ); ତାର ନର୍କୁ—ଜନନ୍ତୁ (କ) ।

ଅଟର ଭୁବନେ ବିଷ୍ଣୁନାଥର ଯହିଂ ବାସ ।
କନେକମସ୍ତ ପୁରେ ହୋଇଲେ ପ୍ରବେଶ ॥ ୨୬ ॥
ଅମରପୁର ସେ ନିରନ୍ଦ ନିରଞ୍ଜନ ।
ସେ ଅନାଦି ଦେହରେ ସମସ୍ତେ ଲୀନ ॥ ୨୭ ॥
କାୟା କଳ୍ପ ହୋଇଲେ ଚିରଂଜୀବୀ ।
ଅନ୍ତସ୍ତେ ହୋଇଣ ବୃଳନ୍ତି ନିଂଜୀବୀ ॥ ୨୮ ॥
ଯୁଗେ ଯୁଗେ କାୟା ହୋଇଲା ଅମର ।
ଆଧେ ସମ୍ଭାଇଲେ ଶ୍ରୀ ନାରାୟଣ ଶରୀର ॥ ୨୯ ॥
ବିଷ୍ଣୁର ଦେହେ ରାମ ପ୍ରବେଶ ହୋଇଲେ ଯହୁଂ ।
କ୍ଷୀରସମୁଦ୍ରକୁ ଦେବ ବିଜୟେ କଲେ ତହୁଂ ॥ ୩୦ ॥
ଅନନ୍ତ ଶେଯ୍ୟାରେ ବିଜୟେ ଶ୍ରୀହରି ।
ପସ୍ତିର ମଣ୍ଡାଳଇ ରତ୍ନାକର କୁମାରୀ ॥ ୩୧ ॥
ଦେଖିଣ ସୀତାସ୍ତା ଯେ ହରଷ ହୋଇଲେ ।
ମାଣିକ୍ୟର ଦୀପାବଳୀ ଘେନି ଶ୍ରୀହରିଙ୍କି ବନ୍ଦାଇଲେ ॥ ୩୨ ॥
କରଯୋଡି କହିଲ କନେକ କୁମାରୀ ।
ସ୍ୱାମୀ ଦେବ ପୃଥୀର କଷ୍ଟେ ଥିଲୁ ମଞ୍ଚପୁରୀ ॥ ୩୩ ॥
ତହିଂ ଯେବେ ମୋତେ ଅପମାନ କଲୁ ।
ଲୋକର କଥା ଶୁଣି ବନସ୍ତକୁ ପଠିଆଇଲୁ ॥ ୩୪ ॥
ସେ ମଞ୍ଚପୁରେ ଆମ୍ଭର କାର୍ଯ୍ୟ କିସ ।
ତେବେ ସେ ସ୍ୱାମୀ ନାଥ ନ ଧର ସେ ଦୋଷ ॥ ୩୫ ॥
ଶୁଣିଣ ଶ୍ରୀରାମ ହରଷ ହୋଇଲେ ।
ଧଣ୍ଡାକୁ ଘେନି ଅନ୍ତଃପୁରକଇ ଗଲେ ॥ ୩୬ ॥
ଶୀଘ୍ର ସନ୍ଧ୍ୟେ ବସଇ ବହ୍ମାର ଦୁଲଣୀ ।
ସ୍ୱର ନାଦ ଧରି ବାବଇ ବ୍ରହ୍ମବେଣୀ ॥ ୩୭ ॥
ଉପରେ ଛତ୍ରଗୁଡ଼ା ବରିଜ ନାମେ ଅଛି ।
ମଳୟ ମରୁତ ହିଂ ମନ୍ଦ ମନ୍ଦ ହୋଇ ବହି ॥ ୩୮ ॥
ଏସନେକ ନିଦ୍ରା ଶ୍ରୀ ଜଗନ୍ନାଥ ।
ରାମାୟଣ ଗ୍ରନ୍ଥ ହୋଇଲା ସମାପତ ॥ ୩୯ ॥

---

୨୬. ଅମର—ଅଭୟ (କ) । ୨୭. ପୁରସେ—ପୁରୁଷେ (ଖ); ନିରଞ୍ଜନ—ନିରଞ୍ଜନଏ (କ); ଲୀନ—ଲୀନଏ (କ) । ୨୮. ଚିରଂଜୀବୀ—ନିଂଜୀବୀ (କ) । ୩୪. ପଠିଆଇଲୁ—ପଠିସ୍ତାଇଲୁ । ୩୮. ବରିଜ ନାମେ—ବରିଜଇ ନାମ (କ); ମରୁତ—ତରୁତ ।

## ଉପସଂହାର

ମାର୍କଣ୍ଡେ କହନ୍ତି ଯୁଧିଷ୍ଠି ନୃପତି ।
ସପତକାଣ୍ଡ ରାମାୟଣ ଶୁଣିଲୁ ଦିବ୍ୟ ରୀତି ॥ ୧ ॥
ଏତେକେ ଅଶ୍ୱମେଧ ଫଳ ଲଭିଲୁ ।
କୋଟିଏ ପୁରୁଷ ତୋର ମୁକତି କରାଇଲୁ ॥ ୨ ॥
ସୋମବଂଶ ଭୋଜବଂଶ ହୋଇଲେ ମୁକତ ।
ଯେତେକ ପାପ ଅର୍ଜିବ ନ ଭେଦିବ ତୋହର ଗାତ ॥ ୩ ॥
ଯିସ ମନ୍ତ୍ରକନ ତୋତେ ଦକ୍ଷିଣା ଦେସି ।
ମାର୍କଣ୍ଡ ରାମାୟଣ ଶୁଣିଲି ଫଳେ ସ୍ୱର୍ଗେ ଯାସି ॥ ୪ ॥
ଦକ୍ଷିଣା ଦେଲେ ସେ ଫଳଶ୍ରୁତି ପଛ ।
ଦକ୍ଷିଣା ଦିଅନ୍ତୁ ତୋହର ଗୁରୁ ଭାଇ ॥ ୫ ॥
ଦ୍ରୌପଦୀର ଦୋହିତା ସାଧବୀ ଯଜ୍ଞସେନୀ ।
ଦକ୍ଷିଣା ଦେଉ ଧୃଷ୍ଟଦ୍ୟୁମ୍ନର ଭଗ୍ନୀ ॥ ୬ ॥
ମାର୍କଣ୍ଡଙ୍କର ବଚନ ଯୁଧିଷ୍ଠି ଦେବେ ଶୁଣିଲେ ଯହୁଁ ।
ଶଙ୍ଖେ ପାଣି ଭରି ଜଳ ତୁଳ ମିଶାଇଲେ ତହୁଁ ॥ ୭ ॥
କୃଷ୍ଣାର୍ପଣ ହୋଇ ସେ ଗୋଟି ଉଚ୍ଚାରି ।
ଲକ୍ଷେ ସୁବର୍ଣ୍ଣ ବୋଲି ଦକ୍ଷିଣା ନାମ ଧରି ॥ ୮ ॥
ଲକ୍ଷେକ ସୁରଭୀ ଯେ ଲକ୍ଷେକ ବସନ ।
ଲକ୍ଷେକ ବ୍ରାହ୍ମଣଙ୍କୁ ଦେବି ଭୋଜନ ।
ସତ୍ୟ ସତ୍ୟ ବୋଲନ୍ତି ଯୁଧିଷ୍ଠି ରାଜନ ॥ ୯ ॥
ସହସ୍ରେକ ବ୍ରାହ୍ମଣଙ୍କୁ ଶାସନ ମୁହିଁ ଦେବି ।
ହସ୍ତିନାପୁରେ ଯେବେ ରାଜା ହୋଇବି ॥ ୧୦ ॥
ଭୀମ ଅର୍ଜ୍ଜୁନ ନକୁଳ ସହଦେବ ଚାରିଭାଇ ।
ଲକ୍ଷେ ଲକ୍ଷେ ରତ୍ନ ଦକ୍ଷିଣା ଶଙ୍ଖେ ପାଣି ତୋଳି ଦେଇ ॥୧୧॥
ଦ୍ରୌପଦୀ ଦୋହିତା ଯୁଧିଷ୍ଠି ପାଟରାଣୀ ।
ଆପଣାର ହୃଦରେ ବିଚାରଇ ମନେ ଗୁଣି ॥ ୧୨ ॥
ଲକ୍ଷ ଦକ୍ଷିଣା ମୁହିଁ ମହର୍ଷିଙ୍କି ଦେବି ।
ମୋହର ପାତକ କେସନେକେ ବିନାଶିବ ॥ ୧୩ ॥

---

୨. ମୁକତି—ଭକତି । ୪. ଯିସ—କିସ; ଦ୍ୱିତୀୟ ପାଦର ପାଠ କ ପୋଥିରେ :—ଯେ ତୋହର ଇଚ୍ଛା ମନେ ବାଞ୍ଛା କରସି । ୯. ପ୍ରଥମ ପାଦଟି କ ପୋଥିରେ ନାହିଁ ଓ ଶେଷ ପାଦଟି ଖ ପୋଥିରେ ନାହିଁ ।

ଲୌକିକ କର୍ମରେ ମୁହିଁ ମହାଦୋଷୀ ।
ପାଞ୍ଚ ଭାଇଙ୍କର ମୁଁ ଏକଇ ବଳାସୀ ॥ ୧୪ ॥
ରାମାୟଣ ଶୁଣିଲି ମୋହର ଦୋଷ ହୋଇଲାକ ପାର ।
ଏତେ ବଲି ଗଳାରୁ କାଢ଼ିଲା ମଣିହାର ॥ ୧୫ ॥
ମାରକଣ୍ଡଙ୍କର କରେ ଦେଇ କହଇ ମହାସତୀ ।
ଶୁଣସି ତପୋଧନ ମହାବ୍ରହ୍ମସତ ॥ ୧୬ ॥
ପାପ ବିନାଶିଲି ତୋହର ବଚନେ ।
ଅଗ୍ୟାଂତ ବାସ କେହି ନ ଜାଣନ୍ତି ଆନେ ॥ ୧୭ ॥
କୁରୁବୀରନ୍ତ ମାରି ସ୍ୱାମୀ ହସ୍ତିନାଏ ହୋଇବେ ଯେ ରାଜା ।
ସହସ୍ର ସୁବର୍ଣ୍ଣ ତୋତେ ଦେବି ପୟର ପୂଜା ॥ ୧୮ ॥
ମାରକଣ୍ଡେ କହନ୍ତି ବାଞ୍ଛା ସିଦ୍ଧ ହୋଉ ।
ଶତ୍ରୁ ବିନାଶି ଯୁଧିଷ୍ଠି ନିଜ ରାଜ୍ୟ ପାଉ ॥ ୧୯ ॥
ଶୁଣିଣ ପାଣ୍ଡବେ ଯେ ହରଷ ହୋଇଲେ ।
ମହାଋଷିର ପୟର ଧରି ଭୂମିରେ ଲୋଟିଲେ ॥ ୨୦ ॥
ଶିର ଆଉଂସି କହନ୍ତି ବ୍ରହ୍ମଋଷି ।
ମୋହର ବଚନ ଯୁଧିଷ୍ଠି ଦେବ ହୃଦରେ ଧରି ଆସି ॥ ୨୧ ॥
ଦ୍ୱାଦଶ ବରଷ ବନରେ ପାରି କଲୁ ।
ରାମାୟଣ ଶୁଣି ସକଳ ପାପ ଦୁଷ୍କୃତ ନାଶ କଲୁ ॥ ୨୨ ॥
ଏବେ ଅଗ୍ୟାଂତବାସ ବରଷେ ଥିବ ।
ମତ୍ସ୍ୟ ଦେଶ ବିରାଟ ରାଜ୍ୟରେ ରହିବ ॥ ୨୩ ॥
ଭ୍ରାଥମାନଙ୍କୁ ଚିନ୍ତା ନ ଛାଡ଼ିବୁ ।
ଗୁପତ ପାରି ଗଲେ ଯୁଦ୍ଧ ଆରମ୍ଭିବୁ ॥ ୨୪ ॥
ସଙ୍ଗତେ ଅଛନ୍ତି ଯେ ସହସ୍ରେ ବିଦ୍ୟୁଜନ ।
ଆବର ଅଛନ୍ତି ଯେ ଅନେକ ବୈଷ୍ଣବ ତପୋଧନ ॥ ୨୫ ॥
ଅତିଥ ଅଭ୍ୟାଗତ ଭିକ୍ଷୁକ ପରବାସୀ ।
କାବ୍ୟକୁତ ନଟ ଭାଟ ତପୁସୀ ॥ ୨୬ ॥
ତୋହର ସଂଗତେ ସମସ୍ତେ ହୋ ଥିଲେ ।
ରାମାୟଣ ଶୁଣି ପାତେକ ବିନାଶିଲେ ॥ ୨୭ ॥
ଏହାଙ୍କୁ ତୁ ବେଗେ ନିଜପୁରକୁ ପଠିଆଅ ।
ମଧୁର କୋମଳ ପ୍ରୀତ ବଚନ କହ ॥ ୨୮ ॥

୧୫· ରାମାୟଣ—ରାବାୟଣ (ଖ) । ୧୭· ଆନେ—ଜନେ (ଖ) ।
୨୨. ରାମାୟଣ—ରାବାୟଣ (ଖ) । ୨୪· ଭ୍ରାଥ—ଭ୍ରଥ । ୨୬· ତପୁସୀ—ତପହସୀ (କ) । ୨୭. ରାମାୟଣ—ରାବାୟଣ (ଖ) । ୨୮. ବଚନ--ବଶ୍ୟ(କ)

ମାରକଣ୍ଡ ବଚନ ଯୁଧିଷ୍ଠି ଦେବ ଶୁଣିଲେ ।
ଶିରେ କର ଦେଇ ବିନୋଇ କହିଲେ ॥ ୨୯ ॥
ଶ୍ରେ ମହାଋଷି ମୋହର ଦୁଃଖ ଦେଖିଲ ।
ନଗ୍ର ଗ୍ରାମ ଉପେଖି ଯେ ବନସ୍ତରେ ଥିଲ ॥ ୩୦ ॥
ପଶାରେ ଦୁର୍ଯୋଧନ କପଟ ମୋତେ କଲା ।
ଦ୍ୱାଦଶ ବରଷ ହୋଇଲା ରାଜ୍ୟ ମୋହର ନେଲା ॥ ୩୧ ॥
ଆବର ବରଷେକ ଅଗ୍ୟାଂତେଣ ଥିବୁ ।
କ୍ଲେକଡ ଗ୍ୟାଂନ ହୋଇଲେ ପୁଣି ବନବାସ ଯିବୁ ॥ ୩୨ ॥
ଯେ ଯାହାର ଆଶ୍ରମକୁ ତୁମ୍ଭେ ଯାଅ ।
ଶୁଭ କଲ୍ୟାଣ ବାଞ୍ଛା ମୋତେ ବାଞ୍ଛୁଥାଅ ॥ ୩୩ ॥
ସକଳ ବିପ୍ରଜନେ ଶୁଣି ପରମ ତୋଷ ହୋଇଲେ ।
ବେଦ ଉଚ୍ଚାରଣ ଯେ ଶୁଭ ଲଗ୍ନ କହିଲେ ॥ ୩୪ ॥
ରାମାୟଣ ଶୁଣିଲୁ ଯେ ତୋହର ସରଲ ବିପଦ ।
ଅଳପ ଦିନେ ଲଭ ସୁଖ ଶିଘ୍ର ସମ୍ପଦ ॥ ୩୫ ॥
ମାରକଣ୍ଡେ କହନ୍ତି ବ୍ରାହ୍ମଣଙ୍କୁ ଚାହିଁ ।
ବଶିଷ୍ଠ ତପୋଧନ ସବୁର ମୁଖ ଚାହିଁ ॥ ୩୬ ॥
ଯେ ଯାହାର ଆଶ୍ରମକୁ ତୁମ୍ଭେ ଗମନ କର ।
ହର ହର ବୋଲ ରାମାୟଣ ନାମ ଧର ॥ ୩୭ ॥
ମାରକଣ୍ଡଙ୍କର ବଚନ ଶୁଣି ସକଳ ତପଗୃଷ୍ଟ ।
ଦୁର୍ଗାମାଧବ ସୁମର ମଙ୍ଗଳ ଉଚ୍ଚର ॥ ୩୮ ॥
ହର ହର ନରସିଂହ ନାମ କୀର୍ତ୍ତନ କରନ୍ତି ।
ତହୁଂଣ ପାଣ୍ଡବେ ତଦନ୍ତରେ ଉପେଖିଣ ଯାନ୍ତି ॥ ୩୯ ॥
ମାରକଣ୍ଡ ମହାଋଷି ଦ୍ୱାରକାକୁ ଗଲେ ।
ପୁଣି ଇନ୍ଦ୍ର ସଭରେ ମହାଋଷି ମିଳିଲେ ॥ ୪୦ ॥
ମହାଋଷିଙ୍କି ପଗ୍ଗୁଚଇ ମଘବାନ ।
ଯୁଧିଷ୍ଠିରଙ୍କର ତହିଁକି ପଠିଆଇଲୁ ତୋତେ ମହାମୁନ୍ୟ ॥ ୪୧ ॥

---

୩୦. କ ପୋଥିରେ ଶେଷ ପାଦର ପାଠ :—ମୋହର ତୁମ୍ଭେ ଅବସ୍ଥା ଦେଖିଲ । ୩୪. ଉଚ୍ଚାରଣ ଯେ ଶୁଭ ଲଗ୍ନ—ହୁଂକାରେ ସେ ଶୁଭେ ରାମାୟଣ (କ) । ୩୫. ଖ ପୋଥିରେ ଏହି ପଦ ପରେ ଲେଖାଅଛି :—"(ଏତେ) କହି ଋଷିଗଣ ଯେ ଯାହା ପୁରେ ପରବେଶ । ଶ୍ରୀରାମ ଚରଣେ ଶରଣ ସିଦ୍ଧେଶ୍ୱର ଦାସ ॥ ବନ୍ଦିଜ ରାମାୟେଣ ସଦାଜନ୍ମେ ସଂପୂର୍ଣ୍ଣ ।" ଅବଶିଷ୍ଟ ପଦଗୁଡ଼ିକ ଖ ପୋଥିରେ ନାହିଁ । ୪୧. ପଠିଆଇଲୁ—ପଠାଇଥିଲୁ ।

ପଣ୍ଡୁର ତନୟେ ସେ କଲେ କେବଣ କୃତ୍ୟ ।
ଏଥିର କଥା ମୋତେ କହ ତୁମ୍ଭେ ତଥ୍ୟ ॥ ୪୨ ॥
ମାରକଣ୍ଡେ କହନ୍ତି ଶୁଣସି ପୁରନ୍ଦର ।
ଦ୍ୱାଦଶ ବରଷେ ପାଣ୍ଡବେ ବନେ କଲେ ପାର ॥ ୪୩ ॥
ଏବେ ବରଷେ ଥିବେ ଗୋପ୍ୟ ହୋଇ ।
ଶୁକ୍ତି ହରଷ ହୋଇଲେ ଶଚୀଦେବୀର ସଂଇଂ ॥ ୪୪ ॥
ପୃଥିବୀର କମନ୍ତେ ମାନବ ରୂପ ଧରି ।
ଜନ୍ମେ ଜନ୍ମେ ସେ ଅସୁରନ୍ତ କରିବେ କବାର ॥ ୪୫ ॥
ଦୃଷ୍ଟାନ୍ତ କାତ ତୁ କରାଉ କୃତ୍ୟହଲେ ।
ଖେଳ ସରିଲେ ତାହାଙ୍କୁ ବିନାଶୁ ଅବଳିଲେ ॥ ୪୬ ॥
ହରିନାମ ସୁମରିଲେ ଭୂକତ ମୁକତ ।
ସ୍ୱବୁ ବିନାଶି (ପାପ) ପାଇବ ସଦଗତ ॥ ୪୭ ॥
ଶ୍ରୀରାମ ରୂପକୁ ଯେ କତ୍ୟେ ନେ କରି ଧ୍ୟାନ ।
ଗଙ୍ଗାସ୍ନାହାନେ (କି) ଲଭନ୍ତି ମହାପୁନ୍ୟ ॥ ୪୮ ॥
ଶ୍ରୀରାମ ସୁମରିଲେ ଯେ ସମ୍ପଦ ଐଶ୍ୱର୍ଯ୍ୟ ଭୁଞ୍ଜଇ ।
ହରିଯା ପରମପ୍ରୀତ ପୁଧଦୋହତା ଉପୁଜଇ ॥ ୪୯ ॥
ସ୍ତ୍ରୀ ହୋଇଲେ ରାମାୟଣ ଶୁଣଇଂ ଦବ୍ୟଗାଢ ।
ଅଇହୋସୁଲକ୍ଷଣୀ ହୁଅନ୍ତି ସେ ଯୁବତୀ ॥ ୫୦ ॥
ଅବସାନ କାଲେ ସେ ନ ଯାଇ ଯମପୁର ।
ଉତ୍ତମ କୁଳେ ଯାଇ ହୁଅଇ ଅବତାର ॥ ୫୧ ॥
ଧନଜନ ବିପୁଳ ଭୋଗ୍ୟ ବିଳାସଇ ।
ସର୍ବଦା ଲକ୍ଷ୍ମୀ ତାହା କାନ୍ଧରେ ବସିଥାଇ ॥ ୫୨ ॥
ରାମାୟଣ ଚରିତ ଅକାଦ ପୟୋଧି ।
ସଞ୍ଚପି କହିବାକୁ କିସ ମୋହର ବୁଧି ॥ ୫୩ ॥
ଚଞ୍ଚଳ ମନୁଷ୍ୟ ମୁଂ ଶୁଦ୍ର କୁଳେ ଜାତ ।
ଅନିତ୍ୟା ଆତ୍ମର ମନ କି ସଚଇତ ॥ ୫୪ ॥
ମୋହର କହନ୍ତେ ଗ୍ରନ୍ଥ ଶୁଦ୍ଧ ହୋଇବ କାହିଁ ।
ରାମ ନାମ ସୁମରନ୍ତେ ପାପ ହୋଇବ ଦହି ॥ ୫୫ ॥
ବ୍ରାହ୍ମଣ ବୈଷ୍ଣବ ମହନ୍ତ ସୁଗ୍ୟଂଜନ ।
ପଣ୍ଡିତ ଜନମାନେ ମୋହର ଦୋଷ ନ ଘେନ ॥ ୫୬ ॥

---

୪୩· ମାରକଣ୍ଡେ—ମାର୍କଣ୍ଡେୟ । ୪୬. କରାଉ—କରାଇଲୁ ; ଅବଳିଲେ—ଅବନଲେ । ୪୭. ଭୂକତ— ଭକତ । ୪୮· କରି—କର । ୫୧. ଯାଇ—ଜାତ । ୫୨· ତାହା କାନ୍ଧରେ—ତାହାରେ ।

ସିଦ୍ଧେଶ୍ୱର ଦାସ ମୁଂ ରାମାୟଣ ଗ୍ରନ୍ଥ କହିଲି ।
ଲବକୁଶଙ୍କର ଜନ୍ମ ମୁଂ ପ୍ରକାଶ କଲି ॥ ୫୭ ॥

ଉପହାସ୍ୟ କରିବେ ବୋଲି ମୁଂ ଭାଳଇ ମନେମନ ।
କିମ୍ଭୂତ ପୁଚ୍ଛେ କହନ୍ତେ କରଇ ଲେଖନ ॥ ୫୮ ॥

ତେଣୁ ସେ ହୃଦଗତେ ଭାବନା କଲଇ ।
ଶୁଣ ହେ ସୁଜ୍ଞଲୋକେ ବିସ୍ତର କହିଲଇ ॥ ୫୯ ॥

ରାମାୟଣ କହିବାକୁ କିସ ମୋହର ମତି ।
ରାମାୟଣ ଶୁଣନ୍ତେ ପାପକୁ କିସ ଭୀତି ॥ ୬୦ ॥

ଅନନ୍ତ କୋଟି ଭୁବନେ ରାମନାମ ଅନୁପାମ ।
ରାମନାମ ସୁମରନ୍ତେ ସିଦ୍ଧ ହୁଅଇ ଇଷ୍ଟକାମ ॥ ୬୧ ॥

ହରି ହର ବ୍ରହ୍ମା ଏ ନୁହନ୍ତି ଭିନ୍ନ ଭିନ୍ନ ।
ରାମାୟଣ ଗ୍ରନ୍ଥ ଏ ପ୍ରତକ୍ଷେ ବ୍ରହ୍ମଗ୍ୟାଂନ ॥ ୬୨ ॥

ଲବକୁଶ ଜନ୍ମ ଶ୍ରୀରାମ ସ୍ୱର୍ଗକୁ ଆରୋହଣ ।
ଏକଚିତ୍ତ ହୋଇ ସୁଜ୍ଞ ଜନେ ଶୁଣ ॥ ୬୩ ॥

ବେଦ ପୁରାଣେ ରାମନାମ ବଖ୍ୟାତି ।
ରାମନାମ ସୁମରନ୍ତେ କେ ପ ନ କରଇ ଜନ୍ମୁପତି ॥ ୬୪ ॥

ସକଳ ଜନଙ୍କର ଜନ୍ମେ ଜନ୍ମେ ପ୍ରବୋଧ ଏହୁ ଗ୍ରନ୍ଥ ।
ମନେ ଯିସ ବାଢଂସଇ ସେ କଥା ହୁଅଇ ପ୍ରାପତି ॥ ୬୫ ॥

ରାମାୟଣ ଶୁଣନ୍ତେ ଦୁରିତ ବିନାଶ ।
ସିଦ୍ଧେଶ୍ୱର ଦାସ ଗୀତେ ଗାଅନ୍ତି ହରିର ପାଶ ॥ ୬୬ ॥

ବିଚିତ୍ର ରାମାୟଣ ବାଲମିକ କଲା ଗ୍ରନ୍ଥ ।
ପୁସ୍ତକ ଲେଖନେ ହୋଇଲା ସମାପତି ॥ ୬୭ ॥

ଶ୍ରୀ ଜଗନ୍ମୋହନ ବିଚିତ୍ର ରାମାୟଣ
ସଦାଜୟେନ୍ତୁ ସମ୍ପୂର୍ଣ୍ଣ ॥ ଶ୍ରୀ ॥
ଶ୍ରୀରାମ ଚରଣେ ଶରଣ ॥"



୬୪·ବଖ୍ୟାତି—ବିଖ୍ୟାତି ।

# ପରିଶିଷ୍ଟ

## ପ୍ରାଚୀନ ଶବ୍ଦ ସଂଚୟନ

[ବିରାଟ ରାମାୟଣରେ ବ୍ୟବହୃତ ପ୍ରାଚୀନ ଶବ୍ଦାବଳୀର ବିଶଦ ଆଲୋଚନା କଲେ ଏକ ସ୍ୱତନ୍ତ୍ର ପୁସ୍ତକ ହେବ । ଏଠାରେ ବନ୍ଧନୀ ମଧ୍ୟରେ ଅର୍ଥ ସହ କେତୋଟି ଶବ୍ଦ ମାତ୍ର ବର୍ଣ୍ଣାନୁକ୍ରମେ ଲେଖାଗଲା ।]

ଅଗୁଜ (ଉଦ୍‌ବୃଦ୍ଧ); ଅଚେବନ (ଅଚେତନ); ଅଣହୃତ (ଅନାସ୍ୱଦ୍ଧ ; ଅନାଶ୍ରୋଆ (ଅନାସ୍ୱତ୍ତରେ); ଅନାସ୍ତ (ଅନାଥ); ଅନାସ୍ତ, ଅନାସ୍ତା (ଅନ୍ୟଥା); ଅନୁଆନ (ଅନୁଯାନ); ଅନୁସରିବା (ଲୋଡ଼ିବା); ଅପାଂକ (ଅପାଂକ୍ତେୟ); ଅବିକ୍ଷଣ (ଅବିଚ୍ଛିନ୍ନ); ଅବିଲାଷ (ପ୍ରୀତି); ଅବିଲାଷୀ (ପ୍ରିୟବତୀ); ଅମ୍ବ (ମାତା); ଅମନାତ୍ୟ (ଅମାତ୍ୟ); ଅସ୍କନ୍ଦ (ସ୍କନ୍ଦ);

ଆଈ (ମାତା); ଆକଶିବା (ଆକ୍ରୋଶ କରିବା); ଆଗେ୍ରବନ (ଆଚମନ); ଅଗୁନ (ଆଖ୍ୟାନ); ଆଢ଼ଗ୍ (ନଆଁ କୁଢ଼); ଆଦ୍ୟାନ (ଆଧାନ); ଆଧାର (ଆହାର); ଆନକୃତ (ଅନ୍ୟଥା); ଆରୋପଣ (ଆୟୋଜନ); ଆଶ୍ୱାସିବା (ଆଉଁଶିବା);

ଉତସଲ୍ୟ ଆନନ୍ଦ ; ଉପଗାର (ଉପକାର); ଉପନେସ (ଗୂଢ଼ କଥା ; ଉପଲେଖିବା (ଉପଲକ୍ଷ୍ୟ କରିବା); ଉପୁଚଆଇବା (କୁଢ଼ାଇବା); ଓହନାଶି (ଅହୋନାଶ); ଓହବଳ (ଉଭୟବଳ);

କଏ (କରେ); କପୋଳ (କପାଳ); କହଣ ନ ଯାଇ (କହୁ ନ ହୁଏ) କାହା (କପର); କକେ (କପର]; କେନ (କାହିଁକି); କେର୍ଣ୍ଣେ, କେହ୍ଣେ (କପର); କୃଡ଼ା (କ୍ରୀଡ଼ା); କୃତେ (ଯୋଗୁଁ); କୋଳ (କୁଳ); କ୍ଷୟାନ୍ତେକ (ଅନ୍ତକ); କ୍ଷେମ (କ୍ଷମା); କ୍ଷେଉଣୀ (ଅକ୍ଷୌହିଣୀ); ଖେଡ଼ାଉଳ(ଖେଳୁଆଡ଼);

ଖୋଟ (କୋଠ); ଗଡ଼ଗାଲ (ତଳେ ଲୋଟିବା); କନ୍ଦମୂଳ (କନ୍ଦମୂଳ); ଗବନ (ଗମନ); ଗରୁଡ଼ହଂସୀ (ଗଣ୍ଡସ୍ଥାନ୍); ଗହଳ (କନ୍ଦନ କଥା); ଗାମ୍ଭେଣ (ଗାମ୍ଭୁକ); ଘୂମାଇବା (ଦାଙ୍କି ହେବା);

ଚଉ (ଚକ୍ଷୁ), ଚେବନ (ଚେତନ); ଝିଂଘାସ (ଝଙ୍କାର); ଝଙ୍କ (ପଙ୍କ); ଯଜ୍ଞସେନୀ (ଦ୍ରୌପଦୀ, ସୀତା);

ତଦ୍ୟାପି (ତଥାପି); ତଳପୁ, ତଳୁ (ଲଘୁ); ତୀକ୍ଷ୍ଣ (ତୀକ୍ଷ୍ଣ); ତେଜ (ତରଜା); ତେବେବେସେ (ତେଣୁକରି); ତୋବଣ (ଅଟକାଳ); ତିପୁର (ତ୍ରୁଟ); ଦକ୍ଷ (ଯକ୍ଷ); ଦଶ (ଯଶ); ଦହୃପ (ଦର୍ପ); ଦ ତବ୍ୟ (ଦାନ); ଦୁସ୍ତ (ଦୁଃଖ); ଦୁଙ୍କର (ଦୁବାର); ଦୂଷ୍ଟ (ଦୃଷ୍ଟି); ଦୋଷାଧି (ଗୃହ); ଦ୍ୱୋହନା (ଲୋଚଣ); ଧାଡ, ଧାଢକାରେ (ଶୀଘ୍ର); ଧିଙ୍କାର (ଧିକ୍କାର); ଧୃତ (ଧୃତ, ଧୀର); ଧୂନ (ଧ୍ୱନ); ଧୂର (ଦୂର); ଧୋନ୍ଦ (ଦ୍ୱନ୍ଦ); ନଡ଼ (କଚଟି); ନାଡକା (ଡଙ୍କ; ନାନ (ନନ୍ଦନ); ନତ୍ୟାପଥ (ପ୍ରତିନତ୍ୟ); ନମିତ୍ୟ (ନମିତ୍ତ); ନରହ (ନଳଯୁ); ନରପକ୍ଷ (ନଷ୍ଟୁର); ନର୍ଟର (ନର୍ଟାଡ଼); ନବାଣ, ନବାଣି (ନର୍ମାଣ); ନର୍ଭା (ନର୍ବାହ); ନୁଅଣବା (ନ ପାଣବା); ନୋଇବା (ନ ଅଇସିବା);

ପାଉଳମ (ଥାଳି); ପକ୍ୱ (ପକ୍ୱ); ପମନ୍ତିବା (ପଠାଇବା); ପସ୍ୟାତ, ପସ୍ୟାନ୍ତ (ପ୍ରଯାତ); ପରସ୍ତ (ପଶ୍ଚାନ୍ତ); ପଣାମ, ପ୍ରଣମ୍ୟ (ପ୍ରଣାମ); ପରମାଣ, ପରମାଣି (ପ୍ରମାଣ); ପରିହରଣ (ପରିଧାନ): ପାଟୋଳି (ପାଟ); ପାଣିଦ୍ରବ୍ୟ (ଯୁନା); ପାତାଙ୍ଗ (ପତାକା); ପାହାସ୍ତ (ପ୍ରହସ୍ତ; ପିଞ୍ଜାଇବା (କ୍ଷତବିକ୍ଷତ କରିବା); ପୁନ୍ୟବତୀ (ପୁଣ୍ୟବତୀ); ପୁରଇ, ପୁରସ୍ୱାଇ (ସ୍ଫୁରେ); ପ୍ରକାଶମ୍ନ (ପ୍ରକାଶ); ପ୍ରଜାଇତ (ପ୍ରଜାପ୍ତ); ପ୍ରତେ (ପ୍ରତ୍ୟୟ); ଫୁଟିବା (କ୍ଲାନ୍ତ ହେବା);

ବଇସୀ (ବୟସୀ); ବଖାଣ (କଥନ); ବଖାଣ, ବଖାନ (ବଚନ); ବରୁଣ (ବରଣ); ବଣାବୃତ (ବଣବର୍ତ୍ତୀ : ବସ୍ତ୍ର (ବସ୍ତ୍ର); ବହେଣୀ (ଭଉଣୀ); ବାଇବାଉଡ଼ (ବାଇବାଉଳ ; ବାଣରସୀ (ବାରଣସୀ); ବାଦଂସିବା (ବିକଶିବା); ବିତପନ (ନିର୍ମଳ); ବିତକ୍ଷଣ (ବିଚକ୍ଷଣ); ବିଦୁଜନ, ବିଦ୍ୟୁଜନ (ବିଦ୍ୱଜ୍ଜନ); ବିଧଂସ, ବିଧ୍ୱଂସ (ବିଦ୍ରୁପ); ବିନୋପି (ବିନସ୍ତୁ ସହ); ବିବର୍ଦ୍ଧିତ (ବିବର୍ଦ୍ଧମାନ) ବିରଙ୍ଗ (ବିରସତା); ବିରେଳ ସ୍ପଷ୍ଟତଃ ; ବିଶ୍ୱାସ (ଗୋପନ କଥା); ବିସରିବା (ସରିବା); ବେବସ୍ଥା, ବ୍ୟବସ୍ଥା (ପ୍ରସଙ୍ଗ); ବେଳ (ସୂର୍ଯ୍ୟ); ବେଲେ (ଦ୍ୱାର); ବୃଶାଳ (ବିଶାଳ); ବୃଦ୍ଧିବା, ବୃଦ୍ଧବାଜ (ବର୍ତ୍ତିମାନ ହେବା); ବ୍ରିଦ୍ଧ (ବୃତ୍ତି); ବ୍ରିଦ୍ଧିକ (ବୃଦ୍ଧିଯୁକ୍ତ); ଭବାନୀ (ସ୍ୱପ୍ନି ; ଭୂଗତ (ବେଗ); ଭୂବ (ଭୂମି); ଭେବଲ (ବିହ୍ୱଳ); ଭୃଥା (ଭର୍ତ୍ତା); ଭ୍ରାଥ (ଭ୍ରାତା);

ମଞ୍ଚାଳିବା (ଗୋଡ଼ ହାତ ମୋଡ଼ିବା); ମନ୍ତାର (ବିଲେଇ); ମଂଯୂର (ମୟୂର); ମଡ଼ୁଆଲ (ଶ୍ରେଷ୍ଠ ଲୁଗା); ମଦନମାତୃ (ବେଶ୍ୟା); ମସ୍ୟେମଣ୍ଡ (ମଦମଣ୍ଡ); ମହାନ୍ଧ (ଇଙ୍କିତ); ମାଖି (ମକ୍ଷିକା); ମାରୁତ (ମରୁତ); ମାହାଗ (ମାଘ); ମିଳିବା (ପହଞ୍ଚିବା); ମୁଖରବ (ଜନାପବାଦ); ମୁନେହ (ଦୂତ); ମୁନ୍ୟ (ମୃନ); ମୃଗାଟ (ନିର୍ଭୟ); ମୁହାଁସ (ଲୋଭ); ମେଞ୍ଜନ (ବ୍ୟଞ୍ଜନ); ମେଳପକ୍ଷ (ସମାନ ହେବା); ମେଳିବା (ଗ୍ରୁଡ଼ିବା);

ଯିସ (ଯାହା); ଯୁଗତ (ଯୁକ୍ତିଯୁକ୍ତ); ଯୁଗତ (ହେତୁ); ଯୁଗତେ (ସହକେ); ଯେସ୍ତେ, ଯେହ୍ନେ (ଯେପରି); ରକ୍ଷନ୍ତା (ରକ୍ଷକ); ରୟଣୀ, ରହଣୀ (ରଜନୀ); ରପାଣ (ବପୁ); ରତ୍ନବର (ରଥ); ରାଇ (ରାସ୍ତ); ରାଇବା (ଡାକିବା); ରାଇଦାର (ଡଗର); ରାଷ୍ଟ (ରାସ୍ତା); ରାଦାଏଣ (ରାମାୟଣ); ରଢ (ଇଢ); ଲେକ୍ଷ (ଲକ୍ଷ); ଲୁଳିବା, ଲୋଳିବା (ଓହଳିବା); ଲେଞ୍ଚିବା (ତ୍ୟାଗ କରିବା);

ଶଂକୁନ୍ୟ (ଶକୁନ); ଶାସ୍ତ୍ର (ଶାସ୍ତ୍ର); ଶିଷି (ଶିଷ୍ୟ, ପୁତ୍ର); ଶିଷ୍ଟି (ଶ୍ରେଷ୍ଠ); ଶ୍ରିପତି, ଶ୍ରିପତ୍ତ (ତୃପ୍ତ); ଶ୍ରୀମୁଖ (ଆଜ୍ଞାପତ୍ର);

ସଂଘରିବା (ସଂହରଣ କରିବା, ସାଇତିବା); ସଂଚପି (ବିଶ୍ଳେଷଣ କରି); ସଜାତ (ସାଦୃଶ୍ୟ); ସଂଜାଳିବା (ଜାଳିବା); ସପ୍ରତେ (ବିଶ୍ୱାସ କରି); ସସ୍ୟେ, ମସ୍ୟେ (ସ୍ୱୟଂ); ସହାତେ (ନିଜହାତରେ); ସଚଇତ (ସଚେତ); ସମାଦ, ସମାଧ (କଥା); ସମାଦନ୍ତ (କଥାଭାଷା); ସମାସ୍ୟା (ସମ୍ଭାଷ୍ୟ); ସମ୍ଭାଇବା (ସମ୍ଭବିବା); ସଦ୍ୟେନ୍ଦ୍ର (ସଦ୍ୟ); ସାଦୃଶ, ସାଦ୍ରିଶ (ସଦୃଶ); ସାଧ୍ୟ (ସାହାଯ୍ୟ); ସାନ୍ନଧ୍ୟ (ସନ୍ନିଧି); ସାରକ୍ଷ, ସାରକ୍ଷ୍ୟ (ସଦୃଶ); ସିମସ୍ଥାନ (ତକିଆ); ସୁଣ୍ଡିବା (ଶୋଇବା, ସ୍ଥିର କରିବା); ସୁଫଳ (ସଫଳ); ସୃନ (ସୃନୁ); ସୋହେଡ଼ ପଞ୍ଚାଣ (ସୁନ୍ଦର ବାର); ସ୍ୱରୂପ (ସତ୍ୟ);

ହାକିବା (ଡାକିବା); ହାନ୍ଦେ (ନିଶ୍ଚୟାର୍ଥକ ଅବ୍ୟୟ); ହାନ୍ଦୋଳ (ଚାଳନ); ହୁଣ୍ଡ ପଞ୍ଜିବା (ଝୁଣ୍ଟିବା); ହେଟ (ତଳମୁହାଁ); ହେମ (ହିମ) ।

—o—